# ସ୍କନ୍ଦ ପୁରାଣ

## (ଉତ୍କଳ ଖଣ୍ଡ)

ଅନୁବାଦକ : ପଣ୍ଡିତ ଶ୍ରୀ ହରିହର ମିଶ୍ର






ପ୍ରକାଶକ ଓ ପ୍ରାପ୍ତିସ୍ଥାନ - ଧର୍ମଗ୍ରନ୍ଥ ଷ୍ଟୋର

ପ୍ରତିଷ୍ଠାତା : ଶ୍ରୀ ବିଦ୍ୟାଧର ସାହୁ

ପରିଚାଳକ : ଶ୍ରୀ ମହିମା ପ୍ରସାଦ ସାହୁ

ଅଲିଶା ବଜାର, କଟକ-୨

ଫୋନ୍ ନଂ- (୦୬୭୧) ୨୫୦୮୨୯୬

ମୂଲ୍ୟ - ଟ.୮୦.୦୦

Digitized by srujanika@gmail.com

# କ୍ଷମାଭିକ୍ଷା

ପୁରାଣ ଶାସ୍ତ୍ର ଇତିହାସ ପରି ଭାରତୀୟମାନଙ୍କର ପ୍ରାଚୀନ ସଭ୍ୟତା, ସଂସ୍କୃତି ତଥା ରୀତି ନୀତି, ଧର୍ମ ସାଧନାର ପରିସ୍ଥିତି, ଲୋକ ସାଧାରଣଙ୍କର ବ୍ୟବହୃତ ଏବଂ ସନାତନ ଧର୍ମର ମହତ୍ତ୍ୱ ଆମ୍ଭମାନଙ୍କର ସମକ୍ଷରେ ଉପସ୍ଥିତ କରୁଅଛି । ପରନ୍ତୁ ନବ୍ୟ ସଭ୍ୟଯୁଗର ବିଦ୍ୱାନ ମଣ୍ଡଳୀ ମହତ୍ତ୍ୱ ପଣ୍ଡିତ ପୁରାଣ ଶାସ୍ତ୍ରକୁ କଳ୍ପକମାନଙ୍କର କଳ୍ପନା ପ୍ରସୂତ ବୋଲି କହୁଛନ୍ତି । ପୁରାଣରେ ଯାହାସବୁ ବର୍ଣ୍ଣିତ ହୋଇଅଛି, ସେସବୁ ପୁରୁଣାକାଳ ମରହଟିଆମାନଙ୍କ କଥାପରି ମନେ କରି ପୁରାଣଶାସ୍ତ୍ର ଉପରେ ବିଶ୍ୱାସ ସ୍ଥାପନ କରୁନାହାନ୍ତି । ଏହି ବିଦ୍ୱାନମାନଙ୍କ ଆଦର୍ଶରେ ସାଧାରଣ ଲୋକ ପୁରାଣ ଶାସ୍ତ୍ର ପ୍ରତି ଅନାସ୍ଥାଭାବ ପୋଷଣ କରି ଐହିକ ଓ ପାରତ୍ରିକ ଏହି ଉଭୟ ଲୋକ ସୁଖରୁ ବଞ୍ଚିତ ହେଉଛନ୍ତି ।

ଭାରତୀୟ ଧର୍ମଗ୍ରନ୍ଥମାନଙ୍କ ମଧ୍ୟରେ ପୁରାଣର ମହତ୍ତ୍ୱ ସର୍ବାଧିକ । ଯେତେବେଳେ ବେଦର ଗୂଢ଼ତତ୍ତ୍ୱ ଲୋକ ସାଧାରଣଙ୍କ ପକ୍ଷରେ ଅବୋଧ୍ୟ ହୋଇ ଉଠିଲା, ସେତେବେଳେ ଲୀଳାମୟ ପରମାତ୍ମା ମହର୍ଷି ବେଦବ୍ୟାସ ରୂପରେ ଅବତୀର୍ଣ୍ଣ ହୋଇ ମାନବ ସମାଜର କଲ୍ୟାଣ ସାଧନ ନିମିତ ବେଦର ନିଗମ (ଗୁଢ଼) ଅର୍ଥକୁ ସାଧାରଣଙ୍କ ପକ୍ଷରେ ସୁବୋଧ କରିଦେଲେ । ଯେପରି ଉଚ୍ଚନୀଚ ଉଭୟ ସ୍ତରର ଲୋକେ, ବେଦର ଗୁଢ଼ ତତ୍ତ୍ୱ ସାଧନ କରିବାକୁ ସକ୍ଷମ ହେବେ । ଯେଉଁ ନିଗମ ତତ୍ତ୍ୱ ମନ, ଇନ୍ଦ୍ରିୟ ବୁଦ୍ଧିର ପର ପାରରେ ଭାବାତୀତ କ୍ଷେତ୍ରରେ ଲୁଚି ରହିଥିଲା, ତାହା ପୁରାଣ ମାଧ୍ୟମରେ ସାଧାରଣଙ୍କ ଉପଭୋଗ୍ୟ ହୋଇପାରିଲା । ଏ ହେତୁ ପୁରାଣ ଶାସ୍ତ୍ର ଭାରତୀୟ ମାନଙ୍କର ମାନ୍ୟ ଗ୍ରନ୍ଥ । ବେଦରେ ଯେଉଁ ସତ୍ୟ ଶିବ ସୁନ୍ଦର, ଜ୍ଞାନ ସ୍ୱରୂପ ପ୍ରେମମୟ ଅସୀମ ବ୍ରହ୍ମ ଉପାସ୍ୟ ତାହା ପୁରାଣରେ ଶ୍ୟାମସୁନ୍ଦର ମଦନ ମୋହନ, ପତିତ ପାବନ, ଭଗବାନ, ଜଗଦୀଶ୍ୱର ରୂପରେ ସେବ୍ୟ । ପୁରାଣ କହେ ଏ ଅଦ୍ୱିତୀୟ ପରମାତତ୍ତ୍ୱ ଷଡ଼ୈଶ୍ୱର୍ଯ୍ୟଶାଳୀ ଭଗବାନ୍ ବିଭିନ୍ନ ନାମରୂପ ଭେଦରେ ବିଚିତ୍ର ଶକ୍ତି ସାମର୍ଥ୍ୟ ପ୍ରକାଶ କରି ଜଡ଼ ଚେତନ ରୂପରେ ଲୀଳା କରୁଛନ୍ତି ।

ପୁରାଣ ଶାସ୍ତ୍ର ଅଷ୍ଟାଦଶ ସଂଖ୍ୟକ ହେଲେ ମଧ୍ୟ ତାହା ଏକ । ଯେପରି ଗୋଟିଏ ଗ୍ରନ୍ଥ କତିପୟ ଅଧ୍ୟାୟ ବା ପରିଚ୍ଛେଦ ବିଶିଷ୍ଟ ହେଲେ ମଧ୍ୟ ତାହା ଗୋଟିଏ ଗ୍ରନ୍ଥପରେ ପରିଚିତ ହୁଏ । ବିଷ୍ଣୁ ପୁରାଣରୁ ଜଣାଯାଏ ଏକମାତ୍ର ବ୍ରହ୍ମ ବ୍ରାହ୍ମାଣ୍ଡାକାରରେ ଆକାରିତ । ଏକ ଅଦ୍ୱିତୀୟ ବ୍ରହ୍ମ କିପରି ବ୍ରହ୍ମାଣ୍ଡ ରୂପରେ ପ୍ରକାଶ ପାଇଲେ ତାହା ଅଷ୍ଟାଦଶ ପୁରାଣରୁ ଜଣାଯାଏ । ଅଷ୍ଟାଦଶ ପୁରାଣର ନାମ (୧) ବ୍ରହ୍ମପୁରାଣ, (୨) ପଦ୍ମ, (୩) ବିଷ୍ଣୁ, (୪) ଶିବ, (୫) ଶ୍ରୀମଦ୍‌ଭାଗବତ, (୬) ନାରଦ, (୭) ମାର୍କଣ୍ଡେୟ, (୮) ଅଗ୍ନି, (୯) ଭବିଷ୍ୟ, (୧୦) ବ୍ରହ୍ମବୈବର୍ତ୍ତ, (୧୧) ଲିଙ୍ଗ, (୧୨) ବରାହ, (୧୩) ସ୍କନ୍ଦ, (୧୪) ବାମନ, (୧୫) କୁର୍ମ, (୧୬) ମତ୍ସ୍ୟ, (୧୭) ଗରୁଡ଼, (୧୮) ବ୍ରହ୍ମାଣ୍ଡ ପୁରାଣ । ଏତଦ୍‌ବ୍ୟତୀତ ବିଂଶତି ସଂଖ୍ୟକ ଉପ ପୁରାଣ ଦେଖାଯାଏ । ଏହି ଅଷ୍ଟାଦଶ ପୁରାଣର ଅନ୍ୟତମ ସ୍କନ୍ଦ ପୁରାଣରେ କାର୍ତ୍ତିକେୟ ଶିବଙ୍କର ତତ୍ତ୍ୱ ନିରୂପଣ କରିଥିବାରୁ ଏହାର ନାମ ସ୍କନ୍ଦ ପୁରାଣ । ଏହା ସାତଖଣ୍ଡରେ ବିଭକ୍ତ । (୧) ମାହେଶ୍ୱର ଖଣ୍ଡ, (୨) ବୈଷ୍ଣବ ଖଣ୍ଡ, (୩) ବ୍ରହ୍ମ ଖଣ୍ଡ, (୪) କାଶୀ ଖଣ୍ଡ, (୫) ରେବା ଖଣ୍ଡ, (୬) ତାପୀଖଣ୍ଡ, (୭) ପ୍ରଭାସ ଖଣ୍ଡ । ଏହି ସାତଖଣ୍ଡର ଆଉ କେତେ ଉପଖଣ୍ଡ ରହିଅଛି । ଏହିପରି ସ୍କନ୍ଦ ପୁରାଣ ଏକ ବିପୁଳ ଗ୍ରନ୍ଥ ରୂପରେ ଆଦୃତ ହେଉଅଛି । ଏହା ମଧ୍ୟରୁ ବୈଷ୍ଣବ ଖଣ୍ଡର ଅନ୍ତର୍ଗତ ଉତ୍କଳ ଖଣ୍ଡ । ଏଥିରେ ପୁରୁଷୋତ୍ତମ ଖଣ୍ଡର ମହିମା ପ୍ରକାଶ ହୋଇଅଛି । ଉତ୍କଳ ଖଣ୍ଡ ଏହି ନାମକୁ ଉତ୍କଳ ପ୍ରଦେଶର ସଭ୍ୟତା, ସଂସ୍କୃତ ଆଦି ବର୍ଣ୍ଣିତ ହୋଇଅଛି ବୋଲି କେହି ବୁଝିବେ ନାହିଁ । ଏଥିରେ ପୁରୁଷୋତ୍ତମ କ୍ଷେତ୍ରରେ ବିରାଜମାନ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ମହତ୍ତ୍ୱ ବର୍ଣ୍ଣନା ସଙ୍ଗେ କ୍ଷେତ୍ରର ମାହାତ୍ମ୍ୟା ବର୍ଣ୍ଣିତ ହୋଇଅଛି । ପରମାତ୍ମା ଯେ ରୂପେ ଅବିନାଶୀ, ସେହିରୂପେ ଏହି କ୍ଷେତ୍ର ବିନାଶ ରହିତ । ପ୍ରଳୟ କାଳରେ ସମସ୍ତ ବ୍ରହ୍ମାଣ୍ଡ ଏକର୍ଣ୍ଣବୀକୃତ ହୋଇଥିଲାବେଳେ ଏହି କ୍ଷେତ୍ର ବିଦ୍ୟମାନ ଥିଲା । ଚିରଂଜୀବୀ ମହର୍ଷି ମାର୍କଣ୍ଡେୟ ପ୍ରଳୟ ଜଳରେ ଭାସି ଭାସି ଏହି କ୍ଷେତ୍ରର ଅବସ୍ଥିତ ବଟ ବୃକ୍ଷରେ ପତ୍ରପୁଟଶାୟୀ ବାଳ ଗୋପାଳଙ୍କର ଉଦର ମଧ୍ୟରେ ବିଶ୍ରାମ ନେଉଥିଲେ । ଏଥିରୁ ଜଣାଯାଏ ପ୍ରଳୟକାଳ ଉପସ୍ଥିତ ହେଲେ ମଧ୍ୟ ଏହି କ୍ଷେତ୍ର ଅବିକୃତ ରହିଥାଏ । ଯେତେବେଳେ ପୁନର୍ବାର ସୃଷ୍ଟି ହେଲା ସେତେବେଳେ ସ୍ୱୟଂ ପରମାତ୍ମା ନୀଳମଣିମୟ ମାଧବ ରୂପ ଧାରଣ କରି ଏହି ସ୍ଥାନରେ ପୂଜିତ ହୋଇଥିଲେ ।

ଏହି କ୍ଷେତ୍ରରେ ବିଭିନ୍ନ ଧର୍ମ ସମ୍ପ୍ରଦାୟର ବିଦ୍ୱେଷ ଭାବ ବ୍ରାହ୍ମଣାଦି ବର୍ଣ୍ଣ ଓ ଆଶ୍ରମ ଭେଦ, ରାଜା ପ୍ରଜା, ବିଦ୍ୱାନ, ମୂର୍ଖ, ସ୍ୱଜାତି, ଉଚ୍ଚ ନୀଚ କୁଳାଦି ଅଭିମାନ ନାହିଁ । ବିଭିନ୍ନ ମତାବଲମ୍ବୀ ସାଧକ ଭକ୍ତ

Digitized by srujanika@gmail.com

ମଣ୍ଡଳୀ ଅଧିଷ୍ଠିତ ଏହି ପୁରୁଷୋତ୍ତମ କ୍ଷେତ୍ରରେ ବ୍ରହ୍ମାଦି ଅମରଗଣ ବନ୍ଦିତ, ସକଳ ଦେବ ଦେବୀଗଣ ସେବିତ, ବ୍ରହ୍ମର୍ଷି ଦେବର୍ଷି ସିଦ୍ଧ ସାଧୁଗଣାଧ୍ୟୁଷିତ ଯୋଗୀଜନ ଧ୍ୟାନୈକ ଗମ୍ୟ, ଭକ୍ତଜନ ହୃଦୟ କମଳ ବିହାରୀ, ସର୍ବ ଦେବମୟ ପରମାତ୍ମା, ଅରୂପ କ୍ଷେତ୍ରରୁ ଅବତୀର୍ଣ୍ଣ ହୋଇ ପରଂବ୍ରହ୍ମ ରୂପରେ ଲୀଳା କରୁଛନ୍ତି । ଲୀଳା ଛଳରେ ପାପୀର ପାପମୋଚନ କରି, ତାପୀଜନର ତାପ ଶାନ୍ତି କରି ଦୀନ ଦୁଃଖୀଜନମାନଙ୍କର ଦୁଃଖ ହରଣ କରି ପତିତପାବନ ନାମରେ ପରିଚିତ । ଏହି ପ୍ରଭୁଙ୍କର ପ୍ରସାଦ କଣିକାଏ ପାଇବା ପାଇଁ ବ୍ରହ୍ମାଦି ଅମରଗଣ ସର୍ବଦା ଉତ୍କଣ୍ଠିତ । ଯେଉଁ ପ୍ରସାଦ ମହାପ୍ରସାଦ ନାମରେ ଅଭିହିତ, ପବିତ୍ରରୁ ପବିତ୍ରତମ, ସ୍ୱର୍ଗ ଭୋଗ ମୋକ୍ଷ ଫଳର ଜନକ, ସ୍ପୃଶ୍ୟା ସ୍ପୃଶ୍ୟ ଦୋଷ ବର୍ଜିତ, ବିକାରଶୂନ୍ୟ ନିର୍ବିକାର ରୂପେ ସକଳର ସେବ୍ୟ ହୋଇ ଜଗନ୍ନାଥ ଧର୍ମ୍ମ ନାମରେ ଅଭିନବ ଧର୍ମ୍ମ ପ୍ରତିପାଦନ କରୁଅଛି ।

ଏହି ପୁରାଣ ଶିବ କହିଥିଲେ କାର୍ତ୍ତିକେୟଙ୍କୁ, କାର୍ତ୍ତିକେୟ କହିଥିଲେ ଜୈମିନି ମହର୍ଷିଙ୍କୁ ଏବଂ ଜୈମିନି ମୁନି ନୈମିଷାରଣ୍ୟରେ ଋଷିମାନଙ୍କୁ କହିଥିଲେ । ଏହି ପୁରାଣରୁ ପୁରୁଷୋତ୍ତମ କ୍ଷେତ୍ରର ସୀମା ପରିମାଣ ରୋହିଣୀ କୁଣ୍ଡ, କାକପକ୍ଷୀର ଚତୁର୍ଭୁଜ ପ୍ରାପ୍ତ, ଲକ୍ଷ୍ମୀଦେବୀଙ୍କର ଯମରାଜା ପ୍ରତି ନିର୍ଦ୍ଦେଶ, ମାର୍କଣ୍ଡେୟ ହ୍ରଦ ପ୍ରଭୃତିର ବିବରଣ, କ୍ଷେତ୍ର ସ୍ଥିତ ଦେବ ଦେବୀମାନଙ୍କର ଅବସ୍ଥା ବର୍ଣ୍ଣନା, ଉତ୍କଳ ଦେଶ ବର୍ଣ୍ଣନ ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ପରିଚୟ, ଇନ୍ଦ୍ରଦ୍ୟୁମ୍ନ ତୀର୍ଥଯାତ୍ରୀମାନଙ୍କଠାରୁ ପୁରୁଷୋତ୍ତମ ବୃତ୍ତାନ୍ତ ଶ୍ରବଣ, ନୀଳମାଧବଙ୍କର ଅନ୍ୱେଷଣାର୍ଥେ ବିଦ୍ୟାପତିଙ୍କ ଗମନ, ବିଦ୍ୟାପତିଙ୍କର ଶବର ବିଶ୍ୱାବସୁଙ୍କ ସହ ସାକ୍ଷାତ, ବିଶ୍ୱାବସୁ ଆନୁକୂଲ୍ୟରେ ନୀଳମାଧବଙ୍କୁ ଦର୍ଶନ ଓ ମାଳବ ଦେଶକୁ ପ୍ରତ୍ୟାଗମନ, ନୀଳମାଧବଙ୍କର ଅନ୍ତର୍ଦ୍ଧାନ ଓ ଦେବତାଙ୍କର ଶୋକ ବର୍ଣ୍ଣନ, ଇନ୍ଦ୍ରଦ୍ୟୁମ୍ନ ବିଦ୍ୟାପତିଙ୍କଠାରୁ ଶ୍ରୀକ୍ଷେତ୍ର ବାର୍ତ୍ତା ଶ୍ରବଣ ଓ ପୁରୁଷୋତ୍ତମ କ୍ଷେତ୍ର ପ୍ରତି ଆଗମନ, ଉତ୍କଳଦେଶ ରାଜାଙ୍କ ସହିତ ସାକ୍ଷାତ, କୋଟି ଲିଙ୍ଗେଶ୍ୱର ଦର୍ଶନ, ଶ୍ରୀ ନୀଳମାଧବଙ୍କର ଅନ୍ତର୍ଦ୍ଧାନ, ବାର୍ତ୍ତା ଶ୍ରବଣେ ଇନ୍ଦ୍ରଦ୍ୟୁମ୍ନଙ୍କର ଶୋକ ଓ ନାରଦ ଋଷିଙ୍କ ସାନ୍ତ୍ୱନା, ଇନ୍ଦ୍ରଦ୍ୟୁମ୍ନଙ୍କର ଦୈବବାଣୀ ଶ୍ରବଣ, ନୃସିଂହ ମୂର୍ତ୍ତି ସ୍ଥାପନ, ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ଇନ୍ଦ୍ରଦ୍ୟୁମ୍ନ ପ୍ରତି ବରଦାନ, ଗାଲମାଧବ ରାଜାଙ୍କୁ ଶ୍ରୀ ଠାକୁରଙ୍କର ସେବା ତତ୍ତ୍ୱାବଧାନରେ ନିଯୁକ୍ତି, ଇନ୍ଦ୍ରଦ୍ୟୁମ୍ନଙ୍କର ବ୍ରହ୍ମଲୋକ ପ୍ରତି ଗମନ, ପଞ୍ଚତୀର୍ଥ ବିଧି ଦ୍ୱାଦଶ ଯାତ୍ରା ବିଧାନ ବର୍ଣ୍ଣନ ଏବଂ ନିତ୍ୟନୈମିତ୍ତିକ ସେବା ପୂଜା ବର୍ଣ୍ଣିତ ହୋଇଅଛି । ପୁରୁଷୋତ୍ତମ କ୍ଷେତ୍ରରେ ମରଣ ପ୍ରଶଂସା, ଜ୍ୟେଷ୍ଠା; ପଞ୍ଚକାଦି ବିବିଧ ବ୍ରତ ବିଧି ବର୍ଣ୍ଣନ, ମହାମାଘୀ ପ୍ରଭୃତି ସ୍ନାନ ଯୋଗ, ସମୁଦ୍ର ସ୍ନାନର ଫଳ କୁହାଯାଇଅଛି ।

ଉପର୍ଯ୍ୟୁକ୍ତ ବିଷୟମାନଙ୍କ ମଧ୍ୟରେ ମହର୍ଷି ଜୈମିନି ମୁନି ଯେଉଁପରି ଅଦ୍ୱୈତମତ ପ୍ରତିପାଦନ କରିଛନ୍ତି, ତାହା ସୁଧୀ ଭକ୍ତମାନଙ୍କର ପ୍ରଣିଧାନଯୋଗ୍ୟ । ଅଦ୍ୱୈତ ଭାବ ଜୀବାତ୍ମା ସହିତ ପରମାତ୍ମାଙ୍କର ଐକ୍ୟଜ୍ଞାନ ଉଦୟ ହେଲେ ସେବ୍ୟ ଓ ସେବକ ଭାବ ରହିବ ନାହିଁ । କାହାର ସେବା କିଏ କରିବ । କିନ୍ତୁ ସେବ୍ୟ ସେବକ ଭାବ ବିଦ୍ୟମାନ ପାଇଁ ଅଦ୍ୱୈତ ମତରେ ପ୍ରତିଷ୍ଠିତ ହେବା ସାଧନାର ବିଶେଷତ୍ୱ ଏ ସମ୍ବନ୍ଧେ ବିସ୍ତର ଆଲୋଚନା ନ କରି ବ୍ରହ୍ମା ନାରଦ ଇନ୍ଦ୍ରଦ୍ୟୁମ୍ନ ପ୍ରଭୃତି ଯେ ସକଳ ସ୍ତୁତି କରିଛନ୍ତି ତହିଁରୁ ଦୁଇଟି ଶ୍ଳୋକ ଉଦ୍ଧାର କରି ଆଲୋଚନାରୁ କ୍ଷାନ୍ତ ହେଲି ।

ନମସ୍ତୁଭ୍ୟ ନମୋ ମହ୍ୟଂ ତୁଭ୍ୟଂ ମହ୍ୟ ନମୋନମଃ
ଅହତ୍ୱଂ ତ୍ୱମହଂ ସର୍ବଂ ଜଗଦେତଚ୍ଚରାଚରମ୍ ।୧୫।
ମହାଦିକ ମିଦଂ ସର୍ବଂ ମାୟା ବିଲସିତଂ ତବ
ଅଧ୍ୟସ୍ତଂ ତ୍ୱୟି ବିଶ୍ୱାତ୍ମନ୍ ତ୍ୱୟୈବ ପରିଣାମିତମ୍ ।୧୬।

୨୭ ଅଧ୍ୟାୟ ଶ୍ଳୋକ - ୧୫ / ୧୬

ହେ ବିଶ୍ୱାତ୍ମନ ଆପଣଙ୍କୁ ନମସ୍କର ଓ ମୋତେ ନମସ୍କାର । ଏହି ଚରାଚର ଜଗତରେ ମୁଁ ଯେଉଁ ବସ୍ତୁ ଆପଣ ସେହି ବସ୍ତୁ । ଅର୍ଥାତ୍ ଅଭିନ୍ନାତ୍ମା । ଆପଣଙ୍କୁ ଓ ନିଜକୁ ବାରମ୍ବାର ପ୍ରଣାମ କରୁଅଛି ।୧୫।

ମୋଠାରୁ ଆରମ୍ଭ କରି ଏହି ସକଳ ଜଗତ ଆପଣଙ୍କ ମାୟାର ସ୍ଫୁରଣ ମାତ୍ର । ବାସ୍ତବିକ ଆପଣଙ୍କ ମାୟାବଳେ ଉତ୍ପାଦିତ ସମସ୍ତ ବସ୍ତୁ ଏକମାତ୍ର ଆପଣଙ୍କଠାରେ ପ୍ରତିଫଳିତ ହୋଇ ପରିଣାମିତ ହେଉଅଛି ।୧୬।

ଯେଉଁମାନଙ୍କର ଶ୍ରୀ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ପ୍ରତି ଶ୍ରଦ୍ଧା, ଭକ୍ତି, ବିଶ୍ୱାସ ରହିଅଛି ସେମାନେ ଏହି ଗ୍ରନ୍ଥ ଅଧ୍ୟୟନ କଲେ ପୁରୁଷୋତ୍ତମ କ୍ଷେତ୍ରରେ ନିଜର କର୍ତ୍ତବ୍ୟ ବିଷୟରେ କୌଣସି ତ୍ରୁଟି ରହିବ ନାହିଁ । ସଂସ୍କୃତ ଭାଷା ସାଧାରଣଙ୍କ ପକ୍ଷରେ ଦୁର୍ବୋଧ ହେତୁ ମଦୀୟ ବନ୍ଧୁ ଶ୍ରୀମାନ ବନମାଳୀ ନନ୍ଦଙ୍କର ପ୍ରେରଣାରେ ଉତ୍ସାହିତ ହୋଇ ଉତ୍କଳ ଭାଷାରେ ଅନୁବାଦ କରିବାକୁ ପ୍ରବୃତ୍ତି ହେଲି । ଭ୍ରମ ପ୍ରମାଦ ବଶତଃ ଅନୁବାଦ ମଧ୍ୟରେ କୌଣସୁ ତ୍ରୁଟି ପରିଲକ୍ଷିତ ହେଲେ ସେଥିନିମିତ୍ତ ମରାଳଧର୍ମ୍ମୀ ସହୃଦୟ ପାଠକମାନଙ୍କ ନିକଟରେ କ୍ଷମାଭିକ୍ଷା କରୁଅଛି ।

-ସମାପ୍ତ-

Digitized by srujanika@gmail.com

# ସୂଚୀପତ୍ର



Digitized by srujanika@gmail.com

-ସମାପ୍ତ-

Digitized by srujanika@gmail.com

ଓଁ ତତ୍‌ସତ୍‌

# ସ୍କନ୍ଦ ପୁରାଣ

## ଉତ୍କଳ ଖଣ୍ଡ



ମହାମ୍ଭୋଧେ ସ୍ତୀରେ କନକ-ରୁଚିରେ ନୀଳ-ଶିଖରେ
ବସନ୍‌ ପ୍ରାସାଦାନ୍ତୋ ସହଜ ବଳଭଦ୍ରେଣ ବଳିନା ।
ସୁଭଦ୍ରା ମଧ୍ୟସ୍ଥଃ ସକଳ ସୁର ସେବାବସରଦୋ
ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବ ତୁମେ ।
କସ୍ତୁରୀ ତିଳକଂ ଲଲାଟ ପଟ୍ଟକେ ବକ୍ଷସ୍ଥଳେ କୌସ୍ତୁଭଂ
ନାସାଗ୍ରେ ଗଜମୌକ୍ତିକଂ କରସ୍ଥଳେ ବେଣୁକରେ କଙ୍କଣଂ ।
ସର୍ବାଙ୍ଗେ ହରିଚନ୍ଦନ ସୁଲଳିତଂ କଣ୍ଠେ ଚ ମୁକ୍ତାବଳି ।
ଗୋପସ୍ତ୍ରୀ ପରିବେଷ୍ଟିତଂ ବିଜୟତେ ଶ୍ରୀ ଗୋପାଳ ଚୂଡ଼ାମଣି ।
ଭକ୍ତଂ ପ୍ରିୟ ବାନ୍ଧବ ନଟବରଂ ଚୂଡ଼ା କିରୀଟି ଶିଖଂ ।
ଶ୍ୟାମା ତୁ କୁଣ୍ଡଳ ସୁରୁଚିରଂ ଭ୍ରୂଭଙ୍ଗୀ ଭଙ୍ଗୀକ୍ଷଣଂ ।
ବେଣୁଧର ହେ ତ୍ରିଭୁବନ ଲଳିତଂ ଗୁପ୍ତଂ ଜଗନ୍ମୋହନଂ ।
ଗୋବତ୍ସା ପ୍ରତିପାଳନଂ କୁଞ୍ଜସୂଦନଂ ବନଦାହ ତାରଣଂ ।
କଂସ କେଶୀନିସୂଦନଂ ଗୋପ ସ୍ତ୍ରୀ ତରୁଣଂ ହେ ଶ୍ୟାମ ରାଧା ପତେ ।
କାଳିନ୍ଦୀ ବିପନେ ସଦାବସ ତୁମେ ତ୍ରାହିତ୍ୟବେମଂ ପ୍ରଭୋ ।

Digitized by srujanika@gmail.com

ତୀର୍ଥରାଜ ସମୁଦ୍ରର ତଟେ ବିଦ୍ୟମାନ
କନକ ରୁଚିର ବାଲୁକାରେ ପରିପୂର୍ଣ୍ଣ ।
ନୀଳ-ସୁନ୍ଦର ପର୍ବତେ ବଡ଼ ଦେଉଳରେ
ବଡ଼ଭାଇ ବଳରାମ ଅଛନ୍ତି ସଙ୍ଗରେ ।
ଭଦ୍ର ଦାୟିନୀ ସୁଭଦ୍ରା ମଧ୍ୟେ ଅବସ୍ଥିତି
ସକଳ ଦେବାତଗଣ ସେବାରେ ଖଟନ୍ତି ।
ଆର୍ତ୍ତତ୍ରାଣ ପରାୟଣ ଜଗନ୍ନାଥ ସ୍ୱାମୀ
ସତ୍ୱର ହୁଅନ୍ତୁ ମୋ ନୟନ-ପଥଗାମୀ ।
ଜୟ ଜୟ ଜଗନ୍ନାଥ କରୁଣା ସାଗର
ଭକ୍ତ ବାଞ୍ଛା କଳ୍ପତରୁ ପ୍ରେମର ଆଧାର ।
ଦୀନବନ୍ଧୁ କୃପାସିନ୍ଧୁ ସିନ୍ଧୁ ସୁତା ବନ୍ଧୁ
ଦାରୁବ୍ରହ୍ମ ସ୍ୱରୂପ ହେ ଭକ୍ତଜନ ବନ୍ଧୁ ।
ନିତ୍ୟଲୋକ ନିତ୍ୟ ଲୀଳାରସ ପାନ କରି
ଭକତ ଭାବରେ ବଶ ହୋଇଛି ଶ୍ରୀହରି ।
ଅରୂପ କ୍ଷେତ୍ରରୁ ଅବତରିଛି ଗୋସାଇଁ
ସ୍ୱରୂପେ ଧାରଣ ଭକ୍ତ ଉଦ୍ଧାରିବା ପାଇଁ ।
ଯେଉଁ ରୂପ ଧରିଅଛ ଆହେ ଭଗବାନ
ଲେଖନୀରେ ଲେଖିବାକୁ ହେବ କେ ଭାଜନ ।
ହାତ ନାହିଁ ପାଦ ନାହିଁ ଇନ୍ଦ୍ରିୟ ବିହୀନ
ବ୍ରହ୍ମରୂପେ ଦାରୁ ମଧ୍ୟେ ହୋଇଅଛ ଲୀନ ।
ଦାରୁବ୍ରହ୍ମ ରୂପେ କର ଭକ୍ତ ଉଦ୍ଧାରଣ
ନୀଳାଦ୍ରି ମଣ୍ଡନ ନାମ ପତିତପାବନ ।
ନୀଳାଚଳ ଧାମେ ନିତ୍ୟ ଲୀଳା କରୁଅଛ
ନୀଳାଚଳେ ଭକ୍ତ ମନୋବାଞ୍ଛା ପୂରାଇଛ ।
ଜୀବର ବନ୍ଧନ ରଜ୍ଜୁ ଛିଣ୍ଡାଇବା ପାଇଁ
ବାରମାସେ ତେରଜାତ ଭ୍ୟାଇଛ ଗୋସାଇଁ ।
ଆକର୍ଷି ଆଣୁଛ ଦୂରଦେଶୁ ନରନାରୀ
ଯେସନେ ଧାମନ୍ତି ଭୃତ୍ୟଗଣ ଆଜ୍ଞାକାରୀ ।
ସେବାକାରୀ ଗଣେ ସେବା ଖଟୁଛନ୍ତି ନିତି
ସେ ସେବା ଗ୍ରହଣ କର ଭକ୍ତଭାବ ଚିନ୍ତି ।
ଭକ୍ତମାନଙ୍କ ଭାବନା ନୁହଇ ସମାନ
ଯେ ଯେଉଁରୂପେ ଭାବଇ କର ତା ଗ୍ରହଣ ।
ନୀଳାଚଳେ ରହି ଲୀଳା କରୁଅଛ ଯେତେ
ତାହା ବର୍ଣ୍ଣିବାକୁ କ୍ଷମ ହେବ କେ ଜଗତେ ।
ନୀଳାଚଳ ଧାମ ନାମ ଶ୍ରୀପୁରୁଷୋତ୍ତମ
ଯହିଁ ବିଜେ କରିଛନ୍ତି ପୁରୁଷ ଉତ୍ତମ ।
ବଡ଼ ଦେଉଳରେ ରତ୍ନ ସିଂହାସନ ପରେ
ବଳଭଦ୍ର ସୁଭଦ୍ରାଙ୍କୁ ଘେନିଣ ସଙ୍ଗରେ ।
ରତ୍ନ ସିଂହାସନେ ବସି ଜଗତ ପାଳୁଛ
ଏଣୁ ଜଗନ୍ନାଥ ନାମେ ପ୍ରସିଦ୍ଧ ଲଭିଛ ।
ପତିତ ଉଦ୍ଧାର ନାମ ପତିତପାବନ
ଜଗତର ଆଦି ଗୁରୁ ରୂପେ ବିଦ୍ୟମାନ ।
ଗୁରୁ ରୂପେ ଦେଇ ଦୀକ୍ଷା ପତିତ ଉଦ୍ଧାରି
ପତିତପାବନ ବାନା ଉଡ଼ାଉଛ ହରି ।
ଜନ୍ମ ଜନ୍ମାନ୍ତର ଅପରାଧ କ୍ଷମା କର
ମୁକତି ଦେବ କି ନାହିଁ ମନରେ ବିଚାର ।
ସ୍କନ୍ଦ ପୁରାଣରେ ଉକ୍ତ ଉତ୍କଳ ମହିମା
ସଂସ୍କୃତ ଭାଷାରେ ଅଛି ତାହାର ଗାରିମା ।
ଉତ୍କଳ ଛନ୍ଦୋବନ୍ଧରେ ଲେଖିବାକୁ ଇଚ୍ଛା
କରିଅଛି ଆହେ ପ୍ରଭୁ ପୁରୁ ମନୋବାଞ୍ଛା ।
ଆହେ ନୀଳଶଇଳ ଗୋସାଇଁ ଜଗଦ୍‌ଗୁରୁ
ଶ୍ରୀପଦେ ନମୁଛି ଉଦ୍ଧାରିବ ବିପଦରୁ ।
ନମସ୍କାର କରୁଅଛି ନାରାୟଣ ନର
ନରୋତ୍ତମ ଦେବୀ ସରସ୍ୱତୀଙ୍କ ପୟର ।
ବଦରୀ ବନରେ ବ୍ୟାସ ମୁନିଙ୍କ ଚରଣ
ବନ୍ଦନା କରୁଛି ଆଜ୍ଞା ଦିଅନ୍ତୁ ବହନ ।
ଉତ୍କଳଖଣ୍ଡ ଉତ୍କଳ ଭାଷାରେ ଲେଖିଣ ।
ସୁଜ୍ଞାନୀମାନଙ୍କ ପଦେ ପଶିଲି ଶରଣ ।
ବଳ ନାହିଁ ଧନ ନାହିଁ ନାହିଁ ବୁଦ୍ଧି ବିଦ୍ୟା ।
କେବଳ ଭରସା କରିଅଛି ପଦ ଆଦ୍ୟା ।
ସେ ପଦ ପଙ୍କଜ ମଧୁ ବେଗେ କରି ପାନ
ମନୋଭୃଙ୍ଗ ନାମ ଭଜି କରୁ ବିଚରଣ ।

□□

Digitized by srujanika@gmail.com



## ପ୍ରଥମ ଅଧ୍ୟାୟ

ଏକ ସମୟରେ ସର୍ବ ମୁନିଗଣ ମିଳି
ଜୈମିନି ମୁନିଙ୍କ ପାଶେ କରିଲେ ଯେ ଅଳି ।
ହେ ମହର୍ଷି ଅଟ ତୁମ୍ଭେ ସର୍ବଶାସ୍ତ୍ର ବେତ୍ତା
ଯେ ତୀର୍ଥର ଯେ ମାହାତ୍ମ୍ୟ ଯେ ସକଳଜ୍ଞାତା ।
ଶ୍ରୀପୁରୁଷୋତ୍ତମ କ୍ଷେତ୍ର ସର୍ବତୀର୍ଥେ ସାର
ଇତି ପୂର୍ବେ କହୁଅଛି ଆହେ ମୁନିବର ।
ମନୁଷ୍ୟ ଲୀଳା କରିବା ପାଇଁ ନାରାୟଣ
ନୀଳାଚଳେ ଦାରୁବ୍ରହ୍ମ-ରୂପେ ବିଦ୍ୟମାନ ।
ଯାହାର ଦର୍ଶନ ମାତ୍ରେ ସାକ୍ଷାତରେ ମୁକ୍ତି
ସକଳ ତୀର୍ଥର ଫଳ ମିଳଇ ଝଟତି ।
ସେହି କ୍ଷେତ୍ରଟିକୁ କେଉଁ ବ୍ୟକ୍ତି ନିର୍ମାଣିଛି
ତାହା ଶୁଣିବାକୁ ଆମ୍ଭ ଶରଧା ବଢ଼ିଛି ।
ପରମ ପୁରୁଷ ନାରାୟଣ ଭଗବାନ
ଜ୍ୟୋତି ସ୍ୱରୂପରେ ସଦାକାଳେ ବିଦ୍ୟମାନ ।
କି ନିମିତ୍ତ ଦାରୁମୟ ରୂପକୁ ଧଇଲେ
ଶ୍ରୀପୁରୁଷୋତ୍ତମ କ୍ଷେତ୍ରେ ପ୍ରକାଶ ହୋଇଲେ ।
ତାହା ଶୁଣିବାକୁ ଶ୍ରଦ୍ଧା ହୋଇଅଛି ଜାତ
ଆପଣ ତ ଲୋକ ଗୁରୁ ଆଉ ସୁପଣ୍ଡିତ ।

### ଜୈମିନି ଉବାଚ

ମୁନିଗଣ ଶୁଣ ସର୍ବେ ଏ ରହସ୍ୟ କଥା
ଶିବଙ୍କ ମୁଖୁଁ କାର୍ତ୍ତିକ ଶୁଣି ଏ ବାରତା ।
ମନ୍ଦର ପର୍ବତେ ଗଲେ ଆନନ୍ଦିତ ମନେ
ସଭା କରୁଛନ୍ତି ବସି ତହିଁ ଦେବଗଣେ ।
ଯାହା ଶୁଣିଥିଲୁ ତାହା କରୁଛୁ ବର୍ଣ୍ଣନ
ପୁରୁଷୋତ୍ତମ କ୍ଷେତ୍ରରେ ମହିମା ଏସନ ।
ଯେତେବେଳେ ଗଲୁ ଆମ୍ଭେ ଶିବ ପୂଜିବାକୁ
ଶିବଙ୍କ କଳା ଶୁଣିଲୁ କାର୍ତ୍ତିକେୟ ମୁଖୁଁ ।
ଯେଉଁ ଜନ ତ ନୁହଇ ବିଷ୍ଣୁ ପରାୟଣ
ଭକ୍ତି ଜାତ ହୁଏ ନାହିଁ କରିଲେ ଶ୍ରବଣ ।
କିନ୍ତୁ ସେ କ୍ଷେତ୍ର ମହିମା କରିଲେ କୀର୍ତ୍ତନ
ହୃଦୟରେ ତମୋଗୁଣ ହୋଇଯାଏ ଲୀନ ।
ଜଗନ୍ନାଥ ସର୍ବବ୍ୟାପୀ ସକଳ କାରଣ
ପାପ ବିନାଶେ ସକଳ କ୍ଷେତ୍ର ବିଦ୍ୟମାନ ।
ଅଧିକ ଏ କ୍ଷେତ୍ରେ ମୂର୍ତ୍ତିମାନ ଜଗନ୍ନାଥ
ଏଣୁ ସର୍ବତୀର୍ଥ ମଧ୍ୟେ ଶ୍ରେଷ୍ଠ ଏହି କ୍ଷେତ୍ର ।
ଏହିସ୍ଥାନେ ଦେହ ଧରିଛନ୍ତି ଭଗବାନ
ଏଣୁ ଏ ତୀର୍ଥର ନାମ ଶ୍ରୀ ପୁରୁଷୋତ୍ତମ ।
ଯେଉଁ ଜନ ଏହି କ୍ଷେତ୍ରେ କରେ ଅବସ୍ଥାନ
ତାହାର ସକଳ ପାପ ହୁଅଇ ଖଣ୍ଡନ ।
କ୍ଷେତ୍ରେ ବାସ କରି ନିତି କରିଲେ ଦର୍ଶନ
ତାହାର ସୌଭାଗ୍ୟ କିଏ କରିବ ବର୍ଣ୍ଣନ ।
ପରମ ପବିତ୍ର ଅତି ଆଶ୍ଚର୍ଯ୍ୟ ଏ ତୀର୍ଥ
ଦଶ ଯୋଜନ ବିସ୍ତୃତ ସାଗର ବେଷ୍ଟିତ ।
ତୀର୍ଥରାଜ ସମୁଦ୍ର ଜଳରୁ ଉତପନ୍ନ
ବାଲିବନ୍ତ ମାନ ସବୁସ୍ଥାନେ ବିଦ୍ୟମାନ ।
ମଧ୍ୟସ୍ଥଳେ ବିରାଜିତ ଶ୍ରୀ ନୀଳ ପର୍ବତ
ପୃଥିବୀର ଏକସ୍ତନ ପରି ସୁଶୋଭିତ ।
ପୁରାକାଳେ ବରାହ ରୂପରେ ନାରାୟଣ
ପ୍ରଳୟ ଜଳେ ପୃଥିବୀ ହୁଅନ୍ତେ ନିମଗ୍ନ ।
କରିଲେ ଉଦ୍ଧାର ବ୍ରହ୍ମା ମିଳି ତତକ୍ଷଣ
ସର୍ବତୋ ଭାବେ ତାହାକୁ କରିଲେ ଶୋଭନ ।
ସର୍ବତେ ବେଷ୍ଟନ କଲେ ହୋଇଲା ସୁସ୍ଥିର
ସୃଷ୍ଟି କଲେ ତୀର୍ଥକ୍ଷେତ୍ର ଆଦି ଚରାଚର ।
ଏପରି କରିଲେ ସୃଷ୍ଟି ନ ପାଇଲେ ସୁଖ
ଭାବିଲେ ନ ହେବ ଆଉ ଏହିପରି ଦୁଃଖ ।
ତ୍ରିତାପରେ ସନ୍ତାପିତ ଜନମାନଙ୍କର
କିପରି ହୋଇବ ମୁକ୍ତି ଚିନ୍ତିଲେ ସତ୍ୱର ।
ତହୁଁ ବ୍ରହ୍ମାଙ୍କର ମନେ ଜାତ ହେଲା ଜ୍ଞାନ
ପରାତ୍ପର ବିଷ୍ଣୁଙ୍କର କଲେ ସ୍ତୁତି ଗାନ ।
ନମସ୍ତେ ନମସ୍ତେ ପ୍ରଭୁ ଜଗତ ଆଧାର
ଶଙ୍ଖ ଚକ୍ର ଗଦା ପଦ୍ମ ଶୋଭିତ ଶ୍ରୀକର ।
ଯାହାଙ୍କ ନାଭିପଦ୍ମରୁ ହେଲି ମୁଁ ଜନମ
ଚରାଚର ସୃଷ୍ଟି କରିବାକୁ ହେଲି କ୍ଷମ ।
ସେହି ବ୍ରହ୍ମା ଆପଣଙ୍କୁ କରେ ନମସ୍କାର
ଆହେ ପ୍ରଭୁ ପରମାତ୍ମା-ସ୍ୱରୂପ ଶ୍ରୀଧର ।
ତୁମ୍ଭ ବ୍ୟତୀତ ଜଗତେ ନ ଜାଣଇ ଆନ
ତୁମ୍ଭ ମାୟା ଏ ଜଗତେ କରିଛି ନିର୍ମାଣ ।

Digitized by srujanika@gmail.com

ଯାର ନିଃଶ୍ୱାସରୁ ଶବ୍ଦ-ବ୍ରହ୍ମ ହୋଇ ଜାତ
ଓଁ ତତ୍‌ସତ୍ ଏହି ତ୍ରିଗୁଣେ ବିଭକ୍ତ ।
ତାହାକୁ ଆଶ୍ରୟ କରି ସୃଜିଲି ଜଗତ
ତୁମ୍ଭ ବିନା ଅନ୍ୟ କିଛି ନାହିଁ ହେ ଶାଶ୍ୱତ ।
ସ୍ଥୂଳ ସୂକ୍ଷ୍ମ ହ୍ରସ୍ୱ ଦୀର୍ଘ ଆଦି ଯେ ବିକାର
ପୃଥକ ନୁହଇ ବିଷ୍ଣୁମୟ ଚରାଚର ।
ସୁବର୍ଣ୍ଣରୁ ହୁଏ ଜାତ ନାନା ଅଳଙ୍କାର
ତାଦୃଶ ଜଗତ ଗୁଣ-ତ୍ରୟର ବିକାର ।
ତୁମ୍ଭେ ଏ ଜଗତସ୍ରଷ୍ଟା ସୃଜ୍ୟ ଓ ସୃଜନ
ପୋଷ୍ୟ ପୋଷଣ ପାଳକ ଅଟନ୍ତି ଆପଣ ।
ତୁମ୍ଭେ ଜଗତ ଆଧାର ତୁମ୍ଭେ ତ ଆଧେୟ
ତୁମ୍ଭେ ତ ଧାରଣକର୍ତ୍ତା ଆହେ ଦୟାମୟ ।
ତୁମ୍ଭେ ଅଟ ସୃଷ୍ଟିକର୍ତ୍ତା ତୁମ୍ଭେ ସୃଷ୍ଟି ବସ୍ତୁ
ପାଳନକର୍ତ୍ତା ତୁମ୍ଭେ ତ ପାଳନୀୟ ହେତୁ ।
ତୁମ୍ଭ ପ୍ରେରିତ ବୁଦ୍ଧିରେ ସର୍ବ ଜୀବଗଣ
କରନ୍ତି ଜଗତେ ଶୁଭାଶୁଭ ଅନୁଷ୍ଠାନ ।
କର୍ମ ଅନୁରୂପ ଫଳ ହୁଅଇ ପ୍ରାପତ
ଜୀବର ଯେ ଗତି ହୁଏ ସେତୁ କର୍ମ ପଥ ।
ଏଣୁ ଜଗତର ଅଟ ତୁମ୍ଭେ ଗତିଭର୍ତ୍ତା
ସାକ୍ଷୀରୂପେ ବିଦ୍ୟମାନ ରହିଛ ସର୍ବଥା ।
ଆହେ ପ୍ରଭୁ ଚରାଚର ଜଗତର ଗୁରୁ
ଜୀବ ଜଗତର ବୀଜ ରୂପରେ ବିହରୁ ।
ଜଗନ୍ନାଥ ତୁମ୍ଭପଦେ ପଶିଲି ଶରଣ
ଦୁଃଖ ନାଶିବାକୁ ପ୍ରଭୁ ହୁଅ ସୁପ୍ରସନ୍ନ ।
ନୀଳ ଜଳଧର କାନ୍ତି ଶଙ୍ଖଚକ୍ରଧାରୀ
ଗରୁଡ଼ ଧ୍ୱଜ ଗରୁଡ଼ ପୃଷ୍ଠେ ବିଜେ କରି ।
ବ୍ରହ୍ମାଙ୍କ ସ୍ତୁତିରେ ତୋଷ ହେଲେ ଭଗବାନ
କହିବାକୁ ଓଷ୍ଠାଧର କରିଲେ କମ୍ପନ ।
ଆହେ ବ୍ରହ୍ମା ଯେ ନିମନ୍ତେ କଲ ସ୍ତୁତିଗାନ
ତାହା ଯେ ନୁହଇ ଆତ୍ମ ଶକ୍ତିର ଅଧୀନ ।
ସ୍ୱଭାବ ସିଦ୍ଧା ଅନାଦି ସୁକଠିନା ମାୟା
କର୍ମରୂପ ବନ୍ଧନରେ ଦୁଶ୍ଛେଦ୍ୟଟି ତାହା ।
ସେହି ମାୟାର ପ୍ରଭାବ ଆଇ କି ପ୍ରକାରେ
ଜନ୍ମ-ମୃତ୍ୟୁ ପରିତ୍ୟାଗ ହେବ ଏ ସଂସାରେ ।
ହେ ଅନଘ ହୋଇଅଛି ଯେବେ ତୁମ୍ଭ ଶ୍ରଦ୍ଧା
ଯେପରି ତୁଟିବ ଶୁଣ ଜନ୍ମ ମୃତ୍ୟୁ ବାଧା ।
ଏ ଅଖିଳ ଜଗତଟି ମୋ ନିଜ ସ୍ୱରୂପ
ତୁମ୍ଭ ମୋ ମଧ୍ୟରେ ଆଉ ନାହିଁ ବିକଳପ ।
ତୁମ୍ଭର ଯହିଁରେ ରୁଚି ମୋ ରୁଚି ତହିଁରେ
ଅନ୍ୟଥା ବିଚାର ଆଉ ନ କର ମନରେ ।
ସମୁଦ୍ର ଉତ୍ତରେ ମହାନଦୀ ଦକ୍ଷିଣରେ
ଯେ ପ୍ରଦେଶେ ସର୍ବତୀର୍ଥ ଫଳ ଦାନ କରେ ।
ସେଠାରେ ଯେଉଁ ମନୁଷ୍ୟ କରିଥାନ୍ତି ବାସ
ଜନ୍ମାନ୍ତର କର୍ମଫଳ ଲଭନ୍ତି ବିଶେଷ ।
ପୁଣ୍ୟହୀନ ନାହିଁ ଯାର ଭକତି ମୋଠାରେ
ସେ ଜନ-ଜନ୍ମଗ୍ରହଣ ନ କରେ ସେଠାରେ ।
ଏକ୍ରାମ କାନନଠାରୁ ଦକ୍ଷିଣ ସମୁଦ୍ର
ଯାଏ ସ୍ଥାନ ପାହୁଣ୍ଡକେ ଅଧିକ ପବିତ୍ର ।
ସିନ୍ଧୁତୀରେ ବିଦ୍ୟମାନ ଯେ ନୀଳ ପର୍ବତ
ପୃଥିବୀ ମଧ୍ୟେ ସେ ସ୍ଥାନ ଅତୀବ ଗୁପତ ।
ଦେବତା ଅସୁର କେହି ନ ଜାଣନ୍ତି ତାହା
ଆବୃତ୍ତ କରି ରଖିଛି ମୋର ନିଜ ମାୟା ।
ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ହୋଇ ଦେହଧାରୀ
ଅବସ୍ଥାନ କରିଅଛି ସର୍ବସଙ୍ଗ ଛାଡ଼ି ।
ସେ କ୍ଷେତ୍ରକୁ ସୃଷ୍ଟି ନାହିଁ ନାହିଁ ତ ପ୍ରଳୟ
ଏଠାରେ ଯେ ରୂପେ ଦେଖୁଅଛ ମହାଶୟ ।
ସେ କ୍ଷେତ୍ରକୁ ଗଲେ ଏହା କରିବ ଦର୍ଶନ
ଶଙ୍ଖ ଚକ୍ରଧାରୀ ଚତୁର୍ଭୁଜେ ବିଦ୍ୟମାନ ।
ନୀଳାଦ୍ରି ପର୍ବତ କଳ୍ପ ବଟର ମୂଳରେ
ବାୟୁ କୋଣେ କୁଣ୍ଡ ଅଛି ରୋହିଣୀ ନାମରେ ।
ତାର ତୀରେ କଲେ ବାସ ଏ ଚର୍ମ ଚକ୍ଷୁରେ
କରିବ ଦର୍ଶନ ନାହିଁ ସନ୍ଦେହ ଏଥିରେ ।
ସେ କୁଣ୍ଡ ଜଳରେ ସ୍ନାନ କଲେ ପାପ କ୍ଷୟ
ସାଯୁଜ୍ୟ ମୁକ୍ତି ମିଳଇ ନ କର ସଂଶୟ ।
ମହାଭାଗ ସେ କ୍ଷେତ୍ରକୁ କରନ୍ତୁ ଗମନ
ମୋତେ ଚିନ୍ତାକରି କ୍ଷେତ୍ର ମହିମା ଦର୍ଶନ ।
ପରମ ଆଶ୍ଚର୍ଯ୍ୟ ତୁମ୍ଭ ମନରେ ହୋଇବ
ତୁମ୍ଭ ମନରୁ ସନ୍ଦେହ ଦୂର ହୋଇଯିବ ।
ଶ୍ରୁତି ସ୍ମୃତି ଇତିହାସ ପୁରାଣେ ଗୋପନ
ମାୟାଯୋଗେ ସେହିକ୍ଷେତ୍ର ଲୋକେ ଅକଳନ ।
ତୁମ୍ଭର ଏହି ସ୍ତବରେ ହୋଇଲୁ ପ୍ରସନ୍ନ
ସେ କ୍ଷେତ୍ରେ ସକଳ ବ୍ୟକ୍ତି କରିବେ ଦର୍ଶନ ।
ବ୍ରହ୍ମ ତୀର୍ଥ ଯଜ୍ଞଦାନେ ଯେ ଫଳ ପ୍ରାପତ
ଅହୋରାତ୍ର ବାସ କଲେ ସେହି ଫଳ ପ୍ରାପ୍ତି ।
ନିମିଷେ ମାତ୍ର ଯେ ସ୍ଥାନେ କରିଲେ ବସତି
ଅଶ୍ୱମେଧ ଯଜ୍ଞଫଳ ହୋଇଥାଏ ପ୍ରାପ୍ତ ।
ଆହେ ବିପ୍ରଗଣ ବିଧାତାଙ୍କୁ ଏହା କହି
ପୁରୁଷୋତ୍ତମ ଅନ୍ତରହିତ ହେଲେ ତହିଁ ।
ଆହେ ପ୍ରଭୁ ଦୟାମୟ କରୁଣା ସାଗର
ଏ ଦୀନ ଜନର ଅପରାଧ କ୍ଷମା କର ।

Digitized by srujanika@gmail.com

ତୁମ୍ଭ ଶ୍ରୀପାଦ ପଦ୍ମରେ ପଶୁଛି ଶରଣ
ରଖିବ କି ନ ରଖିବ ତାହା ତୁମ୍ଭେ ଜାଣ ।
ଭୂତାଦି ସପ୍ତଲୋକରେ ତୁମ୍ଭେ ଅଛ ପୂରି
ଏ ସଂସାରେ ଜୀବରୂପେ ବହୁ ଲୀଳା କରି ।
ଲୀଳା କ୍ଲାନ୍ତ ଜୀବକୁ ଯେ ଶ୍ରୀଗୁରୁ ରୂପରେ
ପାରିକରି ହେଉଅଛ ଭବ ପାରାବାରେ ।
ତୁମ୍ଭେ ଗୁରୁ ସଦ୍‌ଗୁରୁ ଜଗତର ଗୁରୁ
କୃପାକର ହରିହର ମନୋବାଞ୍ଛା ପୂରୁ ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳଖଣ୍ଡେ
ଶ୍ରୀପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟ
ବର୍ଣ୍ଣନେ ନାମ ପ୍ରଥମୋଽଧ୍ୟାୟଃ ।



## ଦ୍ୱିତୀୟ ଅଧ୍ୟାୟ

### ଜୈମିନି ଉବାଚ

କହନ୍ତି ଜୈମିନି ମୁନି ଶୁଣ ତପୋଧନ
ବ୍ରହ୍ମା ଶ୍ରୀକ୍ଷେତ୍ରକୁ ତହୁଁ କରିଲେ ଗମନ ।
ସ୍ତୁତି କାଳେ ଥିଲା ଯେଉଁ ରୂପ ଦୃଷ୍ଟିପଥେ
ସେ ରୂପ ଧରି ଦର୍ଶନ ଦେଲେ ଜଗନ୍ନାଥେ ।
ଆହେ ମୁନିଗଣ ବ୍ରହ୍ମା କରନ୍ତେ ଦର୍ଶନ
ମନରେ ଜାତ ଅଭୁତ ଜ୍ଞାନ ତତକ୍ଷଣ ।
ଅନେକ ସ୍ତୁତି କରିଲେ ବ୍ରହ୍ମା ସେ କାଳରେ
କାକଟିଏ ଉପସ୍ଥିତ ହେଲା ସେ ସ୍ଥାନରେ ।
ପିପାସାର୍ତ୍ତ ଥିଲା କୁଣ୍ଡଜଳେ କଲା ସ୍ନାନ
ନୀଳ-ମାଧବଙ୍କୁ ତହିଁ କରନ୍ତେ ଦର୍ଶନ ।
କାକଦେହ ଛାଡ଼ି ହେଲା ତାର ଚାରିହାତ
ଶଙ୍ଖ ଚକ୍ର ଗଦାପଦ୍ମ ହସ୍ତରେ ଶୋଭିତ ।
ପ୍ରଭୁଙ୍କ ନିକଟେ ଯାଇଁ କଲା ଅବସ୍ଥାନ
ଏହା ସ୍ୱଚକ୍ଷୁରେ ବ୍ରହ୍ମା କରିଲେ ଦର୍ଶନ ।
କାକର ଏ ଗତି ଦେଖି ମନେ କଲେ ଧାତା
ଯୋଗୀନ୍ଦ୍ର ଗଣେ ଦୁର୍ଲ୍ଲଭ ଏ ଗତି ସର୍ବଥା ।
ମୋର ଏ ସୃଷ୍ଟି ନିଶ୍ଚୟ ହୋଇବ ତ କ୍ଷୟ
ବେଦାନ୍ତେ ମୁକ୍ତି ବିଷୟେ ରହିଛି ସଂଶୟ ।
ଏ କ୍ଷେତ୍ର କଲେ ବସତି ବିଷ୍ଣୁଭକ୍ତଙ୍କର
ଦୁର୍ଲ୍ଲଭ ନୁହଇ ମୁକ୍ତି ମାନବ କୁଳର ।
ଆହେ ଦ୍ୱିଜଗଣ ବିଷ୍ଣୁ କହିଥିଲେ ଯାହା
ବ୍ରହ୍ମା ଦର୍ଶନ କରିଲେ ସ୍ୱଚକ୍ଷୁରେ ତାହା ।
ନାମ କୀର୍ତ୍ତନରେ ପାପ ହୁଅଇ ଦହନ
ମୋକ୍ଷ ନୁହଇ ଦୁର୍ଲ୍ଲଭ କରିଲେ ଦର୍ଶନ ।
ପ୍ରାଣତ୍ୟାଗ କାଳେ ମନେ ବିଷ୍ଣୁ ଚିନ୍ତା କଲେ
ମୁକ୍ତି-ଲାଭ ହୋଇଥାଏ ବୁଝିବେ ସକଳେ ।
ସାକ୍ଷାତ ଦର୍ଶନ କଲେ ଭଗବାନଙ୍କର
ମୁକ୍ତି ଦୁର୍ଲ୍ଲଭ ନୋହିବ ସଂଶୟ ନ କର ।
ପୁରୁଷୋତ୍ତମ କ୍ଷେତ୍ରର ମହିମା ଅଦ୍ଭୁତ
କାକ ହୋଇଛି ଯେ ସ୍ଥାନେ ବିଷ୍ଣୁରୂପ ପ୍ରାପ୍ତ ।
ପରମ ଦୁର୍ଲ୍ଲଭ ଏହି କ୍ଷେତ୍ରଟି ସତତ
ଅଜ୍ଞାନ ଜୀବମାନଙ୍କୁ କରଇ ମୁକତ ।
ଯେ ନର ଶାନ୍ତି ବୈରାଗ୍ୟ ଆତ୍ମ-ଜ୍ଞାନେ ଯୁକ୍ତ
ମୁକ୍ତି ବିଷୟେ ତାହାର ସଂଶୟ ନାହିଁ ତ ।

### ଋଷୟ-ଊଚୁଃ

ନୀଳମାଧବଙ୍କୁ ବ୍ରହ୍ମା କଲେ ଦରଶନ
କାକ ମୁକ୍ତି ହୋଇଗଲା ଦେଖିଲେ ତତ୍‌କ୍ଷଣ ।
ତହୁଁ କି କରିଲେ ଧାତା ଆହେ ମୁନିବର
କହନ୍ତି ମନୁ ସଂଶୟ ହୋଇଯାଇ ଦୂର ।

### ଜୈମିନି ଉବାଚ

ଅଦ୍‌ଭୁତ ଏ ଦୁଇ କଥା ଦେଖି ବେଦବର
ମାଧବଙ୍କୁ ମନମଧ୍ୟେ ଚିନ୍ତିଲେ ସତ୍ୱର ।
ସେ କାଳରେ ଯମ ରାଜା ନିଜ ଅଧିକାର
ଚାଲିଯିବ ବୋଲି ମନେ କରିଲେ ବିଚାର ।
ବ୍ୟାକୁଳେ ମ୍ଳାନ ବଦନେ ଧାଇଁଧାଇଁ ଗଲେ
ନୀଳ ସୁନ୍ଦର ପର୍ବତେ ଉପସ୍ଥିତ ହେଲେ ।
ନୀଳ ମାଧବଙ୍କୁ କଲେ ସାଷ୍ଟାଙ୍ଗ ପ୍ରଣାମ
ଅଧିକାର ଭିକ୍ଷାଅର୍ଥେ କଲେ ନିବେଦନ ।

### ଯମ ଉବାଚ

ନମସ୍ତେ ଦେବଦେବଶ ଶୁଣ ମୋ ବଚନ
ସୃଷ୍ଟି ସ୍ଥିତି ପ୍ରଳୟର ତୁମ୍ଭେ ତ କାରଣ ।
ସୂତ୍ରେମଣି ଗୁନ୍ଥାପରି ସମସ୍ତ ଜଗତ
ଗ୍ରଥିତ ହୋଇଛି ତୁମ୍ଭଠାରେ ଜଗନ୍ନାଥ ।
ଆପଣ ତ ଜଗତକୁ କରିଛ ଧାରଣ
ସୃଷ୍ଟି କରିଅଛ ପୁଣି କରୁଛ ପାଳନ ।
ଚନ୍ଦ୍ର ସୂର୍ଯ୍ୟ ଅଗ୍ନିରୂପେ ସମଗ୍ର ଜଗତ
ପ୍ରକାଶିତ କରୁଅଛ ଆହେ ବିଶ୍ୱନାଥ ।
ବିଶ୍ୱେଶ୍ୱର ! ଜଗଦ୍‌ଯୋନି ! ବିଶ୍ୱର ଆଧାର
ତୁମ୍ଭେ ଜଗଦ୍‌ଗୁରୁ ରୂପେ ସାକ୍ଷୀ ଏ ବିଶ୍ୱର ।
ଉତ୍ପତ୍ତି ବିନାଶ ଶୂନ୍ୟ ତୁମ୍ଭଙ୍କୁ ପ୍ରଣାମ
କୃପାଜଳ ସାଗର ହେ ଘେନ ନିବେଦନ ।
ତୁମ୍ଭେ ପର ଯେ ଅପର ଆଉ ପରାତୀତ
ତୁମ୍ଭଠାରୁ ଏହି ବିଶ୍ୱ ହୋଇଛି ସମ୍ଭୂତ ।

Digitized by srujanika@gmail.com

ତ୍ରିତାପ ତୃଷାର ନାଶ ଅର୍ଥେ ସୂର୍ଯ୍ୟ ସମ
ଦୁଃଖୀଜନ ମାନଙ୍କର ବାନ୍ଧବ ସମାନ ।
ନିଜ-ମାୟାରେ ତ୍ରିଗୁଣ ରଜ୍ଜୁ କରିଅଛ
ସେ ରଜ୍ଜୁରେ ଜୀବ ଜଗତକୁ ଭ୍ରମାଉଛ ।
ପଦ୍ମକେଶର ସମାନ ପୀତବସ୍ତ୍ର ଧାରୀ
ମହାଯୁଦ୍ଧେ ରିପୁଶିର ଚକ୍ରରେ ନିବାରି ।
ନିଜ ଦନ୍ତରେ ପୃଥିବୀ କରି ଉତ୍ତୋଳନ
ଋକ୍ ଯଜୁଃ ସାମ ସ୍ୱରୂପ ପ୍ରଭୋ ନମୋନମଃ ।
ଯଜ୍ଞବରାହ ସ୍ୱରୂପ କରିଛ ଧାରଣ
ଚନ୍ଦ୍ର ସୂର୍ଯ୍ୟ ଅଗ୍ନିସମ ତ୍ରିନେତ୍ର ଶୋଭନ ।
ନରସିଂହ ଅବତାର ହୋଇଣ ଆପଣ
ଭୀଷଣ ଦନ୍ତରେ ଶତ୍ରୁଗଣ କଲ ଚୂର୍ଣ୍ଣ ।
କଟାକ୍ଷ ପାତ ମାତ୍ରକେ ସୃଷ୍ଟିସ୍ଥିତି ଲୟ
ବିବିଧ ରୂପେ ସଂସାର ହୁଅଇ ଉଦୟ ।
ନୀଳମେଘ ବର୍ଣ୍ଣ ନୀଳକାନ୍ତ ମଣିମୟ
ଦେହଧରି ନୀଳାଦ୍ରିରେ କରିଛ ବିଜୟ ।
ଆହେ କୃପାନିଧି ତବ ପଦେ ନମୋନମଃ
ଶଙ୍ଖଚକ୍ର ଗଦାପଦ୍ମ ହସ୍ତେ ସ୍ୱଶୋଭନ ।
ଶୁଭକାରୀ ମୁରବୈରୀ ପ୍ରଣତ ଜନର
ଅଶେଷ ଦୂରିତ ରାଶି କରୁଅଛ ଦୂର ।
କମଳାଙ୍କର ଅପାଙ୍ଗ ସଂସ୍ପର୍ଶରୁ ନିତି
ଶୋଭିତ ତବ ନୟନ କରୁଛି ପ୍ରଣତି ।
ଶ୍ରୀବତ୍ସ କୌସ୍ତୁଭ ଶୋଭା ପାଏ ବକ୍ଷସ୍ଥଳେ
ପାଦପଦ୍ମ ଆଶ୍ରେ କଲେ ଅଷ୍ଟୈଶ୍ୱର୍ଯ୍ୟ ମିଳେ ।
ସେ ପଦ ଆଶ୍ରୟେ ଲକ୍ଷ୍ମୀ ଐଶ୍ୱର୍ଯ୍ୟ ଶାଳିନୀ
ଆଶ୍ରିତ ଜନଗଣର ଐଶ୍ୱର୍ଯ୍ୟ ଦାୟିନୀ ।
ସୃଷ୍ଟି ଇଚ୍ଛା ହେଲାବେଳେ ପ୍ରକୃତି ପୁରୁଷ
ପୃଥକ୍ ପୃଥକ୍ ଭାବେ ହୁଅନ୍ତି ପ୍ରକାଶ ।
ସେ ପ୍ରକୃତି ନିର୍ବିକାର ପରଂବ୍ରହ୍ମଙ୍କର
ବିକାର ସମ୍ପାଦନରେ ହୁଅଇ ତତ୍ପର ।
ଲକ୍ଷ୍ମୀରୂପେ ଜଗତର ପୂର୍ଣ୍ଣ ଶୁଭଙ୍କରୀ
ନାରାୟଣଙ୍କର ବକ୍ଷ ଦେଶରେ ବିହରି ।
ସେହି ଲକ୍ଷ୍ମୀ ଦେବୀଙ୍କର ଚରଣେ ପ୍ରଣାମ
କହନ୍ତି ଜୈମିନି ମୁନି ଶୁଣ ମୁନିଗଣ ।
ଯମରାଜା ସ୍ତୁତି ଶୁଣି ତୋଷ ଭଗବାନ
ନେତ୍ରଠାରି ଦେଖି ଲକ୍ଷ୍ମୀ ଦେବୀଙ୍କୁ ବହନ ।
ଭବଦୁଃଖ ବିନାଶିନୀ ଲକ୍ଷ୍ମୀଦେବୀ ତହିଁ
ଯମ ରାଜାଙ୍କୁ ସେ ଲୋକହିତ ଅର୍ଥ କହି ।

### ଲକ୍ଷ୍ମୀରୁବାଚ

ପାପୀଙ୍କୁ ଦଣ୍ଡିବା ଅର୍ଥ କରୁଅଛ ସ୍ତୁତି
କେହି ପାପୀ ଏ କ୍ଷେତ୍ରରେ ନ କରେ ବସତି ।
ଏ ପୁରୁଷୋତ୍ତମ କ୍ଷେତ୍ର ଆମ୍ଭ ଦୁହିଁଙ୍କର
ସ୍ୱତନ୍ତ୍ର ଅଟଇ ଏଥେ ସନ୍ଦେହ ନ କର ।
ଯେତେବେଳେ ହୋଇବଟି କଳ୍ପ ଅବସାନ
କ୍ଷେତ୍ର ପରିତ୍ୟାଗ ନ କରିବୁ କଦାଚନ ।
ଏ କ୍ଷେତ୍ରରେ ବ୍ରହ୍ମା ବିଷ୍ଣୁ ମହେଶ୍ୱରଙ୍କର
କେବେ ଅଧିକାର ନାହିଁ ଜାଣ ନିରାଧାର ।
ଶୁଭାଶୁଭ କର୍ମରେ ତ ଯେଉଁ ଫଳ ଲାଭ
ସେହି ଫଳ ଏ କ୍ଷେତ୍ରରେ ନୁହଇ ସମ୍ଭବ ।
ଦୁରାଚାରୀ ନର ପକ୍ଷୀ ଆଦି ଜୀବଗଣ
ପ୍ରବେଶିଲା ମାତ୍ରେ ଏଥି ଦୂରିତ ଦହନ ।
ଯେଉଁପରି ତୁଳାରାଶି ଅଗ୍ନିରେ ଦହନ
ହୋଇଯାଏ ପାପରାଶି ଏ କ୍ଷେତ୍ରରେ ଲୀନ ।
ପାପପୁଣ୍ୟ-ଶୃଙ୍ଖଳାରେ ଆବଦ୍ଧ ଯେ ଜୀବ
ତାକୁ ତୁମ୍ଭେ ଯମ ହୋଇ ଶାସନ କରିବ ।
ଏ କ୍ଷେତ୍ରରେ ମୂର୍ତ୍ତିମାନ ନାରାୟଣଙ୍କର
ଦର୍ଶନରେ କର୍ମଫଳ ହୋଇଯାଏ ଦୂର ।
ଯମରାଜା ଅନ୍ୟସ୍ଥାନ କର ଅଧିକାର
ଏହି କ୍ଷେତ୍ର ପାପପୁଣ୍ୟ ବିଚାର ନ କର ।
ତୁମ୍ଭର ପ୍ରପିତାମହ ବ୍ରହ୍ମା କୌତୁକରେ
ଏ ସ୍ଥାନେ କାକର ମୁକ୍ତି ଦେଖିଲେ ଚକ୍ଷୁରେ ।
ଜୀବର ଏ କର୍ମଫଳ କିଏ ବା ଜାଣଇ
କ୍ଷେତ୍ର ମାହାତ୍ମ୍ୟ ବଖାଣେ ପ୍ରଭୁଙ୍କୁ ନମଇଁ ।
ଯେ ଜନ ଏ କ୍ଷେତ୍ର ମଧ୍ୟେ କରିଅଛି ବାସ
ସେ ଜନ ନୋହିବ କେଉଁ କାଳେ ତୁମ୍ଭ ବଶ ।
ସୂର୍ଯ୍ୟ ପୁତ୍ର ଶୁଣ ମୁକ୍ତି କାମୀ ଜୀବଗଣ
ଜୀବନ୍ମୁକ୍ତ ହୋଇ ବାସ କରନ୍ତି ଏ ସ୍ଥାନ ।
ବିଷ୍ଣୁଙ୍କର ପ୍ରତିନିଧି ଲକ୍ଷ୍ମୀ ଦେବୀଙ୍କର
ବାକ୍ୟେ ଯମ ନିଜ ଅହଂକାର କଲେ ଦୂର ।
କହିଲି ହେ ମାତ ଶୁଣ ତୁମ୍ଭେ ମୋର କଥା
ଅନ୍ୟଠାରୁ ଶୁଣିନାହିଁ ଏ କ୍ଷେତ୍ର ବାରତା ।
କ୍ଷେତ୍ରର ଏ ଗୁପ୍ତକଥା ଜାଣିବି କେମନ୍ତ
ଯାହାର ସ୍ୱରୂପ ବେଦେ ନୁହଇ ବିଦିତ ।
ପିତାମହ ନ ଜାଣନ୍ତି ମୁହିଁ କି ପ୍ରକାରେ
ଜାଣିବି ଅହଂକାର ତ ପୂର୍ଣ୍ଣ ମୋ ହୃଦରେ ।
ଏ କ୍ଷେତ୍ରବର ମହିମା ଅଟଇ ଅନନ୍ତ
କିପରି ଜାଣିବି ମୁହିଁ ଆଗୋ ଜଗନ୍ମାତ ।

Digitized by srujanika@gmail.com

କହୁଅଛ ଏ କ୍ଷେତ୍ରରେ ନିତ୍ୟ ଭଗବାନ
ଅବସ୍ଥାନ କରି ମୁକ୍ତି କରନ୍ତି ପ୍ରଦାନ ।
ଏଥିରେ ନାହିଁ ସଂଶୟ ନୁହେଁ ଅସମ୍ଭବ
ଈଶ୍ୱରେଚ୍ଛା ନିରଙ୍କୁଶା ଏଥିରୁ ବୁଝିବ ।
ଅନ୍ୟକ୍ଷେତ୍ରେ ଭଗବାନ ଜୀବର ବନ୍ଧନ
ଦାନ କରନ୍ତି ଏ କ୍ଷେତ୍ରେ କରନ୍ତି ଛେଦନ ।
ଅନ୍ୟକ୍ଷେତ୍ରେ ମନସ୍କାମ ପୂର୍ଣ୍ଣ ହୁଏ ହେଲେ
କାମନା ତେଜିଲେ ଏ କ୍ଷେତ୍ରରେ ମୁକ୍ତି ମିଳେ ।
କେଉଁ ହେତୁ ଭଗବାନ ଜୀବର ନିମିତ୍ତ
ସ୍ୱର୍ଗ ନରକ ଏ ଦୁଇ ସର୍ଜିଲେ ନିଶ୍ଚିତ ।
ଏ କ୍ଷେତ୍ରରେ ମୃତ୍ୟୁ ହେଲେ ଯଦି ମୁକ୍ତିପ୍ରାପ୍ତି
କହ ତେବେ କେତେକାଳ ଏ କ୍ଷେତ୍ରର ସ୍ଥିତି ।
ଏ କ୍ଷେତ୍ରରେ ବାସ କଲେ ଲାଭ କେଉଁ ଫଳ
କେତେ ତୀର୍ଥ କେଉଁସ୍ଥାନେ ହରେ ଜୀବମଳ ।
ଗୋପନୀୟ ସ୍ଥାନ କେତେ ରହିଛି ଏ କ୍ଷେତ୍ରେ
ଅଧିଷ୍ଠାତ୍ରୀ ଦେବତା ଯେ କିଏ ଏହି କ୍ଷେତ୍ରେ ।
ଦୟାକରି ଏ ସମସ୍ତ କରନ୍ତୁ ବର୍ଣ୍ଣନ
ନ କରିବି ଏହି କ୍ଷେତ୍ର ସୀମାକୁ ଲଙ୍ଘନ ।
ନିର୍ଭୟରେ ଏହିଠାରୁ ଗମନ କରିବି
ମାଗୋ ତୁମ୍ଭ ପାଦ-ପଦ୍ମ ମନେ ଭାବୁଥିବି ।
ଉତ୍କଳ ଖଣ୍ଡ ଦ୍ୱିତୀୟ ଅଧ୍ୟାୟ ସମାପ୍ତ
ବିପଦ ସାଗରୁ ରକ୍ଷାକର ଲକ୍ଷ୍ମୀକାନ୍ତ ।
ଅଘଟନ ଘଟନାର ପଟ୍ଟୀୟସି ମାୟା
ଭିଆଇ ଅଛ ହେ ପ୍ରଭୁ ଜୀବେ କରି ଦୟା ।
ଏ ମାୟା ପାଶରେ ପଡ଼ି ଖେଳୁଅଛି ଜୀବ
ତାହାକୁ କାଟିଲେ ଜୀବ ଶିବ ହୋଇଯିବ ।
ଅଧମ ଜୀବମାନଙ୍କୁ ଦୟା ବେଗେ କର
କରୁଛି ପ୍ରାର୍ଥନା ଦୀନ ଦ୍ୱିଜ ହରିହର ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳଖଣ୍ଡେ
ଲକ୍ଷ୍ମୀ ଯମରାଜା ସମ୍ବାଦେ କ୍ଷେତ୍ର ମାହାତ୍ମ୍ୟ
ବର୍ଣ୍ଣନଂ ନାମ ଦ୍ୱିତୀୟୋଽଧ୍ୟାୟଃ ।

□□

## ତୃତୀୟ ଅଧ୍ୟାୟ

କହନ୍ତି କମଳା ଜନ୍ତୁପତି ବାଣୀ ଶୁଣି
ପୁରୁଷୋତ୍ତମ କ୍ଷେତ୍ରର ପ୍ରାଚୀନ କାହାଣୀ ।
ବତ୍ସ ! ବିଷ୍ଣୁଙ୍କର ସନ୍ନିଧାନ ଲଭିବାରୁ
ଶୁଭ ବୁଦ୍ଧି ଉପୁଜିଲା ତୁମ୍ଭର ମନରୁ ।
ଏହି କ୍ଷେତ୍ରରେ ଆଶ୍ଚର୍ଯ୍ୟ ଗୁପ୍ତସ୍ଥାନ ମାନ
କହୁଅଛି ଶୁଣ ବାବା ରବିର ନନ୍ଦନ ।
ପୂର୍ବକାଳେ ଥିଲି ବିଷ୍ଣୁଙ୍କର ବକ୍ଷସ୍ଥଳେ
ଯେ ରୂପ ଦର୍ଶନ କଲି ନୟନ ଯୁଗଳେ ।
ଏ କ୍ଷେତ୍ରର ସେ ଆଶ୍ଚର୍ଯ୍ୟ ବିଷୟ ବର୍ଣ୍ଣନ
ଶୁଣିଲେ ତୋଷ ହୋଇବ ଯମ ତୁମ୍ଭ ମନ ।
ପ୍ରଳୟକାଳେ ଜଗତ ହୋଇଥିଲା ଲୀନ
ମୋର ସଙ୍ଗେ ଏହି କ୍ଷେତ୍ର ଥିଲା ବିଦ୍ୟମାନ ।
ସପ୍ତକଳ୍ପ ଜୀବୀ ମାର୍କଣ୍ଡେୟ ମହାଋଷି
ଉପସ୍ଥିତ ଏ ସ୍ଥାନରେ ଜଳେ ଭାସି ଭାସି ।
ନ ପାଇ ଆଶ୍ରୟ ଶାନ୍ତି ନ ଲଭିଲେ ମନେ
ଏ କ୍ଷେତ୍ରରେ ବଟବୃକ୍ଷ ଦେଖିଲେ ନୟନେ ।
ସେ ବୃକ୍ଷର ମୂଳ କାହିଁ କଲେ ଅନ୍ୱେଷଣ
ବୁଡ଼ି ବୁଡ଼ି କରି ଗଲେ ବୃକ୍ଷ ସନ୍ନିଧାନ ।
ସେକାଳେ ବାଳକ ବାକ୍ୟ କରିଲେ ଶ୍ରବଣ
ମାର୍କଣ୍ଡେୟ ବେଗ ଆସ ମୋର ସନ୍ନିଧାନ ।
ତୁମ୍ଭର ଏ ଅତି ଦୁଃଖ ହୋଇବ ବିନାଶ
ଆଉ ଶୋକ କର ନାହିଁ ହେ ମୃକୁଣ୍ଡ ଶିଷ୍ୟ ।
ଏ ବାଣୀ ଶୁଣି ବିସ୍ମୟ ହେଲେ ମାର୍କଣ୍ଡେୟ
ନିଜ ଦୁଃଖ ଚିନ୍ତା ତେଜି ହୋଇଲେ ଅଥୟ ।
ଏହି କ୍ଷେତ୍ର ଜଳମଧ୍ୟେ ନ ହୁଅଇ ଶୀର୍ଣ୍ଣ
ପ୍ରଳୟର କାଳାଗ୍ନିରେ ନ ହୁଏ ଦହନ ।
ନୁହେ ସମ୍ବର୍ତ୍ତ କାହିଁରେ ଶୁଷ୍କ ବିଚଳିତ
ଘୋର ଏକାର୍ଣ୍ଣବ ଜଳେ ନୌକା ପରିସ୍ଥିତ ।
ଏହି କ୍ଷେତ୍ରମଧ୍ୟେ ଯୂପ କାଷ୍ଠର ସଦୃଶ
ରହିଅଛି ବଟବୃକ୍ଷ ହୁଅଇ ସେ ଦୃଶ୍ୟ ।
ଅଟଇ ଉତ୍ତମ କ୍ଷେତ୍ର ଶ୍ରୀପୁରୁଷୋତ୍ତମ
ବଟବୃକ୍ଷ ବିଷ୍ଣୁଙ୍କର ଶରୀରଟି ଜାଣ ।
ଏ ବୃକ୍ଷର ଶାଖା ମହାପ୍ରଳୟ ବାୟୁରେ
ବିଚଳିତ ନ ହୁଅଇ ରହିଥାଏ ସ୍ଥିରେ ।
ମୁନିବର ମାର୍କଣ୍ଡେୟ ସେ ବୃକ୍ଷର ତଳେ
ଉପବିଷ୍ଟ ହୋଇ ମନେ ମନେ ଚିନ୍ତା କଲେ ।
ପ୍ରଳୟ ଏକାର୍ଣ୍ଣବରେ ସ୍ଥାବର ଜଙ୍ଗମ
ସକଳ ବିନଷ୍ଟ ଏହି ବୃକ୍ଷ ବିଦ୍ୟମାନ ।
ଏହି ଭୂମି କି ପ୍ରକାରେ ରହିଅଛି ସ୍ଥିର
ପୁନର୍ବାର ଶୁଣିଲେ ସେ ବାଳକର ଗୀର ।
ଆଗତ ହେ ମାର୍କଣ୍ଡେୟ ଶୁଣି ଏହି କଥା
ଇତଃସ୍ତତ ହୋଇଗଲେ ମନେ ବହିଚିନ୍ତା ।
ବତ୍ସ ସୂର୍ଯ୍ୟ ପୁତ୍ର ଋଷି କରିଲେ ଦର୍ଶନ
ଶଙ୍ଖ ଚକ୍ର ଗଦା ପଦ୍ମଧାରୀ ଜନାର୍ଦ୍ଦନ ।
ତାହାଙ୍କର ବକ୍ଷସ୍ଥଳେ ନିତ୍ୟ ଅବସ୍ଥିତ
ମୋତେ ଦେଖି ଋଷିଙ୍କର ତୋଷ ହେଲା ଚିତ୍ତ ।

Digitized by srujanika@gmail.com

ଜଳ ପବନ ବେଗରେ ସେ ମୁନି କାତର
ହୋଇଥିଲେ ସୁସ୍ଥ ହେଲା ତାଙ୍କର ଶରୀର ।
ହୃଷ୍ଟଚିତ୍ତେ ମାର୍କଣ୍ଡେୟ କରିଲେ ପ୍ରଣାମ
କରଯୋଡ଼ି ସ୍ତୁତି ବାକ୍ୟ କଲେ ଉଚ୍ଚାରଣ ।
ପ୍ରଭୋ ତବ ପାଦପଦ୍ମ ଦର୍ଶନର ଲାଭ
ବ୍ରହ୍ମାରୁଦ୍ର ଚନ୍ଦ୍ରଙ୍କର ଯା ଅଟେ ଦୁର୍ଲ୍ଲଭ ।
ସେ ସମ୍ପଦେ ଅଧିକାରୀ ହୋଇଅଛି ଦେବ
ଏ ଦୀନ ଜନର ଦୁଃଖ ଆଉକି ରହିବ ।
ଏତେଦିନଯାଏ ତୁମ୍ଭ ନାମ ନ ଭଜିଲି
ବିବିଧ ପ୍ରକାରେ ଦୁଃଖ ଭୋଗ କରୁଥିଲି ।
ହେ ଦୟାସାଗର ଏତେବେଳେ ରକ୍ଷାକର
ଆପଣଙ୍କ ପାଦପଦ୍ମ ମହିମା ଅପାର ।
ଏକମାତ୍ର ମୁକ୍ତିଲାଭ ବିଷୟେ କାରଣ
ସେବା କରୁଛନ୍ତି ବ୍ରହ୍ମା ଆଦି ଦେବଗଣ ।
ଭଜନ ପୂଜନ ହୀନ ମୁଁ ଅତି ଅଧର୍ମ
ଦୟାକରି ରକ୍ଷାକର ଆହେ ଭଗବାନ ।
ଯାହାର ଅଙ୍ଗରୁ ବିଶ୍ୱ ବ୍ରହ୍ମାଣ୍ଡ ଉତ୍ପନ୍ନ
ବିସ୍ତୃତ ହୋଇଛି ତଦପେକ୍ଷା କୋଟିଗୁଣ ।
ଏ ସଂସାର ଲୀଳା ଯାହାଠାରୁ ପରକାଶ
ସୃଷ୍ଟି ସ୍ଥିତି ଲୟ ହୁଏ ଆହେ ହୃଷୀକେଶ ।
ଦେବ ତୁମ୍ଭେ ସର୍ବବ୍ୟାପୀ ବିଷ୍ଣୁରୂପେ ଖ୍ୟାତ
ଅଧମ ଜନକୁ ରକ୍ଷାକର ଲକ୍ଷ୍ମୀକାନ୍ତ ।
ଏକଇ ସୁବର୍ଣ୍ଣହାର ବଳୟ କଙ୍କଣ
ନାମରେ ବିଭେଦ ସିନା ନୁହେଁ ସ୍ୱର୍ଣ୍ଣ ଭିନ୍ନ ।
ଜଳେ ପ୍ରତିବିମ୍ବ ହୋଇ ଏକ ଦିବାକର
ନାନାବିଧ ରୂପେ ହୁଏ ଦୃଷ୍ଟିର ଗୋଚର ।
ସେହିପରି ଆପଣ ତ ଅଟନ୍ତି ନିର୍ଗୁଣ
ଅଦ୍ୱୟ ବ୍ରହ୍ମସ୍ୱରୂପୀ ନାମ ରୂପଶୂନ୍ୟ ।
ତଥାପି ବହୁ ସ୍ୱରୂପୀ କରିଛ ଧାରଣ
ଅପାର ଶକ୍ତି ସମ୍ପନ୍ନ ଅଟନ୍ତି ଆପଣ ।
କାମନା ବାସନା ଶୂନ୍ୟ ଅଟନ୍ତି ନିର୍ଗୁଣ
ଜୀବ ଦୁଃଖ ନାଶ ଅର୍ଥେ ବିଗ୍ରହ ଧାରଣ ।
ଦେହଧାରୀ ପ୍ରତିଯୁଗେ ଆହେ ଭଗବାନ
ଆମ୍ଭମାନେ ତବପାଦ ନ କଲି ସେବନ ।
ତେଣୁ ଦାରୁଣ ଦୁର୍ଦ୍ଦଶା ଭୋଗ ଉପସ୍ଥିତ
କୃପାନିଧି ରକ୍ଷାକର ଅଧମକୁ ନିତ୍ୟ ।
ତବ ତ୍ରିଗୁଣ ଶରୀର ନିଖିଳ ଜଗତ
ସୃଷ୍ଟି ସ୍ଥିତି ଲୟ କରିବାକୁ ସମରଥ ।
ମହତାଦି ଚତୁର୍ଦ୍ଦଶ ତତ୍ତ୍ୱର କାରଣ
ପ୍ରକୃତି ଅତୀତ ଆତ୍ମା ଜଗତ କାରଣ ।
ଏ ଦୀନର ଅପରାଧ ଥରେ କ୍ଷମା କର
ମହାପ୍ରଭୁ ତବ ପାଦପଦ୍ମେ ନମସ୍କାର ।
ସର୍ବତ୍ର ଗମନ କରେ ବୃହତ୍ ଅପ୍ରମେୟ
ବୃଦ୍ଧି ହୋଇ ବ୍ରହ୍ମରୂପେ ହୁଏ ପରିଚୟ ।
ସେ ବ୍ରହ୍ମ ସ୍ୱରୂପ ପରିଣାମ ହେତୁ ଭୂତ
ଅଧ୍ୟାତ୍ମ ସ୍ୱରୂପ ବିଶ୍ୱରୂପେ ପରିଣତ ।
ସେ ରୂପକୁ କରିଅଛି ମୁହିଁ ତ ଆଶ୍ରୟ
ଲକ୍ଷ୍ମୀପତେ କର କୃପା ଯେଣୁ ଦୟାମୟ ।
ବାତ୍ୟା ବୃଷ୍ଟିଦ୍ୱାରା ହୁଏ ନିତାନ୍ତ ଦୁଃଖିତ
ଏ ପ୍ରଳୟ କାଳରେ ତ ନ ପାଏ ମୁଁ ପଥ ।
ଭୀଷଣ ଏକାର୍ଣ୍ଣବରେ ବିନ୍ଦୁ ମାତ୍ର ସ୍ଥାନ
ମିଳୁନାହିଁ ବସିବାକୁ ଆହେ ନାରାୟଣ ।
ମୁଁ ତ ହୋଇଅଛି ଭବ ପାରାବାରେ ମଗ୍ନ
ରକ୍ଷାକର ରକ୍ଷାକର ମୋତେ ଜନାର୍ଦ୍ଦନ ।
ହେ ଗୋବିନ୍ଦ କର କୃପାଦୃଷ୍ଟି ବିଲୋକନ
ଏ ଭବ ସଂସାରେ ଆଉ ନ ହେବି ଜନମ ।
ଏପରି ସ୍ତୁତି କରନ୍ତେ ମାର୍ଗଣ୍ଡେୟ ମୁନି
ନାରାୟଣ କୃପାନେତ୍ରେ ଚାହିଁଲେ ସେ କ୍ଷଣି ।
କହିଲେ ମଧୁର ସ୍ୱରେ ଆହେ ତପୋଧନ
ମୋତେ ନ ଚିହ୍ନିଣ ତପ କଲ ବହୁଦିନ ।
ସେ ଫଳ ଦୀର୍ଘାୟୁ ଲାଭ ହୋଇଲା ତୁମ୍ଭର
ଦେଖାଯାଉଅଛି ଉର୍ଦ୍ଧ୍ୱ ଶାଖା ଏ ବୃକ୍ଷର ।
ସେ ଶାଖା ପତ୍ରପୁଟରେ ସ୍ୱୟଂ ଭଗବାନ
ବାଳରୂପ ଧରି କରି ଅଛନ୍ତି ଶୟନ ।
ତାହାଙ୍କୁ ଦର୍ଶନ କରି ଆହେ ତପୋଧନ
ତାଙ୍କ ବଦନ ମଧ୍ୟରେ ପାଇବ ଯେ ସ୍ଥାନ ।
ଏକଥା ଶୁଣନ୍ତେ ମୁନି ହୋଇଲେ ବିସ୍ମୟ
ବୃକ୍ଷ ଆରୋହଣ କଲେ ନ କରି ସଂଶୟ ।
ଦେଖିଲେ ବାଳକରୂପ ତା ମୁଖ ମଧ୍ୟରେ
ପ୍ରବେଶ କରନ୍ତେ ଚଳିଗଲେ କଣ୍ଠନାଳେ ।
ବିସ୍ତୃତ ମହା ଉଦର ମଧ୍ୟରେ ପ୍ରବିଷ୍ଟ
ଯହିଁ ଚଉଦ ଭୁବନ ବିଶ୍ୱ-ସନ୍ନିବିଷ୍ଟ ।
ଦେବତା ଗନ୍ଧର୍ବ ବ୍ରହ୍ମା ଆଦି ଦିଗପାଳ
କିନ୍ନର ରାକ୍ଷସ ଋଷି ଦେବର୍ଷି ସକଳ ।
ସସାଗରା ପୃଥିବୀ ଯେ ନାନା ତୀର୍ଥେ ପୂର୍ଣ୍ଣ
ନଦୀ ପର୍ବତ କାନନ ସର୍ବ ବିଦ୍ୟମାନ ।
ଗ୍ରାମ କର୍ଣ୍ଣାଟ ନଗର ପୁର ଶୋଭାମାନ
ତା ମଧ୍ୟରେ ଅଛି ମନୋହର ସ୍ଥାନମାନ ।
ସପ୍ତପାତାଳ ସହସ୍ର ନାଗ କନ୍ୟା ଦଳ
ମହାମୂଲ୍ୟ ଚୂର୍ଣ୍ଣଲିପି ସଉଧ ବିଶାଳ ।

Digitized by srujanika@gmail.com

ମସ୍ତକରେ ବହୁ ମୂଲ୍ୟମଣି ସୁଶୋଭିତ
ନାଗଗଣ ରହିଛନ୍ତି ସେବାରେ ନିଯୁକ୍ତ ।
ସହସ୍ର ଫଣା ବେଷ୍ଟିତ ପରମ ଅଦ୍ଭୁତ
ଅନନ୍ତ ଦେବଙ୍କୁ କଲେ ଋଷି ପ୍ରଣିପାତ ।
ଶିଷ୍ୟଗଣ ଘେନି ଗୁରୁ ଶାସ୍ତ୍ର ବ୍ୟାଖ୍ୟାରତ
ବ୍ରହ୍ମା କରିଛନ୍ତି ସୃଷ୍ଟି ଯେ ବସ୍ତୁ ସମସ୍ତ ।
ସେ ସକଳ ବାଳକର ଉଦରେ ଦେଖିଲେ
କୁକ୍ଷିମଧ୍ୟେ ଇତଃସ୍ତତ ବିଚକ୍ଷଣ କଲେ ।
ବୁଲି ବୁଲି ତାର ଅନ୍ତ ନ ପାଇଲେ ମୁନି
କୁକ୍ଷିମଧ୍ୟରୁ ନିର୍ଗତ ହେଲେ ତତକ୍ଷଣି ।
ବାହାରେ ଦେଖିଲେ ମୁନି ଲକ୍ଷ୍ମୀ ନାରାୟଣ
ପୂର୍ବପରି କରିଲେ ଯେ ତାହାଙ୍କୁ ପ୍ରଣାମ ।
ହେ ଦେବ ଦେବଶ ଅତି ଆଶ୍ଚର୍ଯ୍ୟ ବାରତା
ମହାପ୍ରଳୟ କାଳରେ ଏ ସୃଷ୍ଟି ଅବସ୍ଥା ।
ଆପଣଙ୍କ କୁକ୍ଷି ମଧ୍ୟେ ହୋଇ ଅବସ୍ଥିତ
ଦୁର୍ଭେଦ୍ୟ ତୁମ୍ଭର ମାୟା ନ ହୁଅଇ ଜ୍ଞାତ ।
କହୁଛନ୍ତି ଭଗବାନ ଶୁଣ ତପୋଧନ
ଆମ୍ଭର ଆଶ୍ଚର୍ଯ୍ୟ କ୍ଷେତ୍ର ନିତ୍ୟ ବର୍ତ୍ତମାନ ।
ବୁଝିରଖ ଏ କ୍ଷେତ୍ରରେ ସୃଷ୍ଟି ଯେ ପ୍ରଳୟ
ସଂସ୍ଥିତି ଏ ତିନି ନାହିଁ ନରକ ସଂଶୟ ।
ନିରନ୍ତର ଏକ ରୂପ ଶ୍ରୀପୁରୁଷୋତ୍ତମ
ନାମରେ ଆମ୍ଭଙ୍କୁ ମୁକ୍ତିଦାତା କରି ଜ୍ଞାନ ।
ଯେ ବ୍ୟକ୍ତି ଏ କ୍ଷେତ୍ରବରେ ହୁଏ ପରବେଶ
ସେ ସୁଖ ସ୍ୱରୂପୀ ତାର ନାହିଁ ଗର୍ଭକ୍ଳେଶ ।
ମହାମୁନି ମାର୍କଣ୍ଡେୟ ଭଗବାନଙ୍କର
ଆଜ୍ଞା ପାଇଣ ଏ କ୍ଷେତ୍ରେ ବାସ କଲେ ସ୍ଥିର ।
ଅନ୍ୟକ୍ଷେତ୍ରେ ଯିବି ନାହିଁ ମନେ କରି ସ୍ଥିର
ଭକ୍ତିଭରେ କରଯୋଡ଼ି କହିଲେ ଏ ଗୀର ।
ପ୍ରଭୋ ଭଗବାନ ମୋତେ ଅନୁଗ୍ରହ କର
ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରେ ବାସ ଚିରକାଳ ।
ମୁଁ କଦାଚ ନ ହୋଇବି ମୃତ୍ୟୁର ଅଧୀନ
ଏ ଦୀନକୁ ଏହି ଆଜ୍ଞା ହେଉ ନାରାୟଣ ।
କହୁଛନ୍ତି ନାରାୟଣ ମାର୍କଣ୍ଡେୟ ଶୁଣ
ମୁକ୍ତି ସାଧକ ଏ କ୍ଷେତ୍ରେ ଆମ୍ଭେ ବିଦ୍ୟମାନ ।
ରହିବୁ ମହାପ୍ରଳୟ ଅବସାନ ଯାଏ
ସନ୍ଦେହ ନ କର ବାବା ଚିତ୍ତେ କର ଲୟେ ।
ମହାପ୍ରଳୟାବସାନେ ତୁମ୍ଭରି ନିମିତ୍ତ
ରଚନା କରିବି ଏକ ନିତ୍ୟ ପୁଣ୍ୟତୀର୍ଥ ।
ତୀର୍ଥତୀରେ ରହି ତୁମ୍ଭେ ତପସ୍ୟା କରିବ
ଆମ୍ଭର ଦ୍ୱିତୀୟ ଦେହ ଶିବ ଆରାଧିବ ।
ଆମ୍ଭ ଅନୁଗ୍ରହ ଲାଭ କରିବ ନିଶ୍ଚୟ
ସମର୍ଥ ହୋଇ କରିବ ତୁମ୍ଭେ ମୃତ୍ୟୁ-ଜୟ ।
ଲକ୍ଷ୍ମୀଦେବୀ ପୁନର୍ବାର କହନ୍ତି ବଚନ
ଯମରାଜା ଶୁଣ ମାର୍କଣ୍ଡେୟ ତପୋଧନ ।
ବର ଲଭି ବଟବୃକ୍ଷ ବାୟୁକୋଣେ ଖାତ
ପ୍ରସ୍ତୁତ କରି ଆଶ୍ରୟ କଲେ ସେତୁ ଗର୍ତ୍ତ ।
ଦେବ ଦେବ ମହାଦେବଙ୍କର ପୂଜା କଲେ
ତପସ୍ୟା କରି ମୃତ୍ୟୁକୁ ଶୀଘ୍ର ଜୟ କଲେ ।
ସେ ଗର୍ତ୍ତର ନାମ ମାର୍କଣ୍ଡେୟ ସରୋବର
ତହିଁ ସ୍ନାନ କରି ଦରଶନ କଲେ ହର ।
ଅଶ୍ୱମେଧ ଯଜ୍ଞ ଫଳ ହୋଇବ ତ ଲାଭ
ଏହିକଥା କଦାଚନ ନୁହେ ଅସମ୍ଭବ ।
କହନ୍ତି କମଳା କ୍ଷେତ୍ର ସାଗର ପର୍ଯ୍ୟନ୍ତ
ବିସ୍ତୃତ ହୋଇଛି ପଞ୍ଚ କ୍ରୋଶ ପରିମିତ ।
ସେ ପଞ୍ଚକ୍ରୋଶ ମଧ୍ୟରେ ସମୁଦ୍ର ନିକଟ
ଦୁଇ କ୍ରୋଶ ଅଟେ ଅତି ପବିତ୍ର ଯେ ଶ୍ରେଷ୍ଠ ।
ସୁବର୍ଣ୍ଣ ବାଲୁକା ରାଶି ତହିଁ ପରିପୂର୍ଣ୍ଣ
ନୀଳ ସୁନ୍ଦର ପର୍ବତ ଅତି ସୁଶୋଭନ ।
ସାକ୍ଷାତରେ ନାରାୟଣ ରୂପୀ ବିଶ୍ୱେଶ୍ୱର
ଯମ ଭୀତି ନିବାରକ ନାମ ଯମେଶ୍ୱର ।
ପ୍ରଭୁ ଚତୁଃଷଷ୍ଠୀତମ ବିଷୟ ବାସନା
ତ୍ୟାଗ କରି ଜଗନ୍ନାଥଙ୍କର ଉପାସନା ।
କରିବା ନିମିତ୍ତ ବିଜେ ସମୁଦ୍ର ତଟରେ
ଏହାଙ୍କୁ ଦର୍ଶନ ଅବା ପୂଜନ ଯେ କରେ ।
କୋଟି ଶିବଲିଙ୍ଗ ପୂଜା ଫଳ ହୁଏ ପ୍ରାପ୍ତ
ଉତ୍କଳ ଖଣ୍ଡେ ତୃତୀୟ ଅଧ୍ୟାୟ ସମାପ୍ତ ।
ଜଗତ୍‌ଗୁରୁ ଜଗନ୍ନାଥ ଏକ ନୁହେଁ ଭିନ୍ନ
ସଦ୍‌ଗୁରୁ ରୂପରେ ଜୀବ ହିତେ ଅବତୀର୍ଣ୍ଣ ।
ତୁମ୍ଭେ କୁଳଗୁରୁ ରୂପେ ଆସି ଦିଅ ଦୀକ୍ଷା
ସ୍ୱରୂପ ସାଧନ ମନ୍ତ୍ର ଜୀବ ପାଏ ଶିକ୍ଷା ।
ସେ ମନ୍ତ୍ର-ମନ ନ କଲେ ହୃଦୟ ପଙ୍କଜେ
ଇଷ୍ଟଦେବତା ରୂପରେ ତୁମ୍ଭେ ହୁଅ ବିଜେ ।
ସହସ୍ରାରେ ଗୁରୁରୂପେ ହୋଇ ଅବସ୍ଥିତ
ସ୍ୱରୂପଦାନେ ଜୀବକୁ କରୁଛ କୃତାର୍ଥ ।
ଜୀବକୁ ଯେ କୃପାକର ତୁମ୍ଭେ ଏକମାତ୍ର
କୃପା ପ୍ରବାହେ ଷଟ୍‌ପରୁ ହୁଅଇ ପ୍ଲାବିତ ।
କୁଣ୍ଡଳିନୀ ସଙ୍ଗେ ଜୀବ ସୁଧା ପାନ କରେ
ଗୁରୁଙ୍କ ପାଦପଦ୍ମରୁ ମକରନ୍ଦ ଝରେ ।
ସେହି ପଦ ମକରନ୍ଦ ପାନରେ ମନୀଷା
କୃପା କଲେ ଗୁରୁଦେବ ପୂରିବ ମୋ ଆଶା ।

Digitized by srujanika@gmail.com

ଆହେ ଗୁରୁଦେବ ତୁମ୍ଭ ଶ୍ରୀଚରଣେ ଭିକ୍ଷା
ମାଗୁଅଛି ହରିହର ବେଗେ ଦିଅ ଦୀକ୍ଷା ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳଖଣ୍ଡେ
ଲକ୍ଷ୍ମୀ ଯମରାଜ ସମ୍ବାଦେ ନାମ
ତୃତୀୟୋଽଧ୍ୟାୟଃ ।

ଚତୁର୍ଥ ଅଧ୍ୟାୟ

କହନ୍ତି କମଳା ଦେବୀ ଯମରାଜ ଶୁଣ
ପଞ୍ଚକ୍ରୋଶ ଅଟେ ଶ୍ରୀକ୍ଷେତ୍ରର ପରିମାଣ ।
ସୁବର୍ଣ୍ଣ ବାଲୁକା ପୂର୍ଣ୍ଣ ନୀଳ ପର୍ବତରେ
ଶୋଭା ପାଏ ତିନିକ୍ରୋଶ ସମୁଦ୍ର ତଟରେ ।
ଇନ୍ଦ୍ରିୟ ସଞ୍ଜମ କରି ଦେବ ବିଶ୍ୱେଶ୍ୱର
ଉପାସନା କରିବାକୁ ଜଗନ୍ନାଥଙ୍କର ।
ରହିଛନ୍ତି ସମୁଦ୍ରର ଉତ୍ତର ତଟରେ
ଏ ବଚନ ଶୁଣି ଯମ ଶିବପୂଜା କରେ ।
ଯମ-ସଞ୍ଜମନ ନଷ୍ଟ କରିବାରୁ ହର
ତାହାଙ୍କର ନାମ ହେଲା ଲୋକେ ଯମେଶ୍ୱର ।
ଯମେଶ୍ୱରଙ୍କୁ ଦର୍ଶନ କରି ପୂଜା କଲେ
କୋଟି ଶିବଲିଙ୍ଗ ପୂଜିବାର ଫଳ ମିଳେ ।
ଏ କ୍ଷେତ୍ର ଶଙ୍ଖ ଆକାର ପଶ୍ଚିମ ଦିଗରେ
ନୀଳକଣ୍ଠ ରହିଛନ୍ତି ଶଙ୍ଖର ଅଗ୍ରରେ ।
ଏଥି କ୍ରୋଶ ପରିମିତ ଅତି ପୁଣ୍ୟସ୍ଥାନ
ନାରାୟଣ ଏହିଠାରେ ଚିର ବିଦ୍ୟମାନ ।
ଶଙ୍ଖର ଉଦର ଭାଗ ସମୁଦ୍ର ଜଳରେ
ନିମଜ୍ଜିତ ହୋଇ ରହିଅଛି ଶୁଣ ଧୀରେ ।
ଶଙ୍ଖ ସଂସର୍ଗରୁ ତୀର୍ଥରାଜ ନାମ ଧରି
ସମୁଦ୍ର ରହିଛି ଏହି ତୀର୍ଥକୁ ଆବୋରି ।
ଏହି କ୍ଷେତ୍ରେ ଭଗବାନ କରିଲେ ଦର୍ଶନ
ମୁକ୍ତି ଲାଭ କରି ଜୀବଗଣ ହୋନ୍ତି ଧନ୍ୟ ।
ତାଦୃଶ ଜୀବର ଏଥି ହୋଇଲେ ମରଣ
ମୁକ୍ତିଲାଭ ହୁଏ ସମୁଦ୍ରରେ କଲେ ସ୍ନାନ ।
କ୍ଷେତ୍ରରେ ମରଣ ଜଗନ୍ନାଥଙ୍କୁ ଦର୍ଶନ
ସମୁଦ୍ରେ ସ୍ନାନ ଏ ତିନି ମୁକ୍ତିର ସାଧନ ।
ଇତିପୂର୍ବେ କ୍ରୋଧାନ୍ୱିତ ହୋଇ ଉମାକାନ୍ତ
ବ୍ରହ୍ମାଙ୍କ ପଶ୍ଚିମ ମୁଖ ଛେଦିଲେ ତୁରିତ ।
ଛେଦନ୍ତେ ଲାଗି ରହିଲା ମସ୍ତକ ହସ୍ତରେ
ତେଣୁ ଶିବ ଭ୍ରମଣ ଯେ କଲା ବ୍ରହ୍ମାଣ୍ଡରେ ।
ଶଙ୍ଖାକାର ଏ କ୍ଷେତ୍ରର ଦ୍ୱିତୀୟ ଆବର୍ତ୍ତ
ବେଷ୍ଟନୀ ସ୍ଥାନରେ ଆସି ହେଲେ ଉପସ୍ଥିତ ।
ତକ୍ଷଣେ ବ୍ରହ୍ମ କପାଳ ହସ୍ତରୁ ଖସିଲା
କପାଳ ମୋଚନ ଶିବ ନାମ ବୋଲାଇଲା ।
କପାଳ ମୋଚନ ଶିବ କଲେ ଦରଶନ
ପୂଜନ ଅବା ପ୍ରଣାମ କରନ୍ତି ଯେ ଜନ ।
ବ୍ରହ୍ମ ଇତ୍ୟାଦି ପାପରୁ ହୁଅନ୍ତି ମୁକତ
କପାଳ ମୋଚନ ଦକ୍ଷିଣରେ ହେଲେ ମୃତ ।
ନ ହୁଏ ଆଉ ଜନମ ଧର୍ମରାଜ ଶୁଣ
ଶଙ୍ଖର ତୃତୀୟାବର୍ତ୍ତ କଥା ଏବେ ଶୁଣ ।
ଆମ୍ଭର ବିମଳା ନାମେ ଅଛି ଯେଉଁ ଶକ୍ତି
ଭୁକ୍ତି ମୁକ୍ତି ଫଳ ସେହି ପ୍ରଦାନ କରନ୍ତି ।
ଯେ ଜନ ବିମଳା ଦେବୀ ପୂଜଇ ଭକ୍ତିରେ
ପ୍ରଣାମ ଅବା କୀର୍ତ୍ତନ କରେ ଧାତିକାରେ ।
ସକଳ ଅଭିଲକ୍ଷିତ ଫଳ ଲାଭ କରେ
ସାଯୁଜ୍ୟ ମୁକତି ଲଭେ ଜୀବ ଅନ୍ତକାଳେ ।
ଶଙ୍ଖର ନାଭି ଦେଶରେ କୁଣ୍ଡ ବିଦ୍ୟମାନ
କଳ୍ପ ପାଦପ ତାମୂଳେ ବିଜେ ଭଗବାନ ।
କପାଳ ମୋଚନ ଠାରୁ ନାଭି ଦେଶଯାଏ
ବିରାଜିତା ଅର୍ଦ୍ଧାଶନୀ ଶକ୍ତି ଶୋଭା ପାଏ ।
ମହାପ୍ରଳୟ ବର୍ଦ୍ଧିତ ଜଳ ହୁଏ ଯେତେ
ଅଧେ ତହୁଁ ସୃଷ୍ଟି ଆଦ୍ୟେ ଅଶନ କରନ୍ତେ ।
ଅର୍ଦ୍ଧାଶନୀ ଶକ୍ତି ନାମ ହୋଇଛି ତାହାର
ଦର୍ଶନ ପ୍ରଣାମ କଲେ ଭବୁଁ ହେବ ପାର ।
ସିନ୍ଧୁରାଜ ଜଳଠାରୁ ବଟମୂଳଯାଏ
କୀଟପକ୍ଷୀ ମନୁଷ୍ୟର ଯେବେ ମୃତ୍ୟୁ ହୁଏ ।
ତାହାଙ୍କୁ ତ ଭଗବାନ ଦେଇଥାନ୍ତି ମୁକ୍ତି
ଯହିଁ ପବିତ୍ର ଦେବତାଗଣ ତା ଇଚ୍ଛନ୍ତି ।
ଅତି ପବିତ୍ର ଦେବତାଗଣ ତା ଇଚ୍ଛନ୍ତି
ଏହି ସ୍ଥାନେ ଯେତେ ଜୀବ ବାସ କରିଥାନ୍ତି ।
ତାଙ୍କୁ ଭଗବାନରୂପେ ଦେବେ ଦେଖୁଛନ୍ତି
ପୃଥିବୀ ଗମନ ସ୍ୱର୍ଗେ ତୀର୍ଥ ଯେ ଅଛନ୍ତି ।
ସାର୍ଦ୍ଧତ୍ରିକୋଟି ସଂଖ୍ୟକ ଦିଅନ୍ତି ମୁକତି
କିନ୍ତୁ ଶ୍ରୀକ୍ଷେତ୍ରେ ସାଯୁଜ୍ୟ ମୁକ୍ତି ହୁଏ ପ୍ରାପ୍ତ ।
ଏହି ଶ୍ରୀକ୍ଷେତ୍ରେ ବାସ କରିଛନ୍ତି ଯେତେ ଲୋକ
ତାହାଙ୍କର ନାହିଁ ଜନ୍ମ ମୃତ୍ୟୁ ଜରାଶୋକ ।
ଏ ଯେଉଁ ରୋହିଣୀ କୁଣ୍ଡ କାରଣ ଜଳରେ
ନିତ୍ୟ ପୂର୍ଣ୍ଣ ରହିଥାଏ ସ୍ପର୍ଶ ଯେହୁ କରେ ।
ସେ ଜୀବ ଭବବନ୍ଧନୁ ହୁଅଇ ମୁକତ
ପ୍ରଳୟେ ଏ କୁଣ୍ଡଜଳ ହୁଅଇ ବର୍ଦ୍ଧିତ ।
ସେହି ଜଳ ଏହିସ୍ଥାନେ ହୁଅଇ ଯେ ଲୀନ
ତେଣୁ ଏ କୁଣ୍ଡର ନାମ ଅଟଇ ରୋହିଣ ।

Digitized by srujanika@gmail.com

ଯମରାଜ ତୁମ୍ଭ ଅଧିକାର ବିପର୍ଯ୍ୟୟ
ହେବ ବୋଲି ଛାଡ଼ ଚିନ୍ତା ମନରୁ ନିଶ୍ଚୟ ।
ଏ ସ୍ଥାନେ କେବେଳ ମୋକ୍ଷଭାଗୀ ଜୀବଗଣ
ତୁମ୍ଭେ ଯମରାଜ ତାଙ୍କୁ ନ କର ଶାସନ ।
ଲକ୍ଷ୍ମୀ ଦେବୀ ଯମରାଜାଙ୍କୁ ଯେ ଏହା କହି
ବ୍ରହ୍ମାଙ୍କ ମୁଖକୁ ଦୃଷ୍ଟିକୋଣେ ଦେଲେ ଚାହିଁ ।
କହିଲେ ଅତି ଆଦରେ ଶୁଣ ବେଦପତି
ଏକ୍ଷେତ୍ର ଜୀବଗଣଙ୍କୁ ମୋକ୍ଷ କରେ ନିତି ।
କାମାକ୍ଷା ମଧ୍ୟେ ବିମଳା କ୍ଷେତ୍ରପାଳ ଶିବ
ଭଗବାନଙ୍କ ଦକ୍ଷିଣେ ଶ୍ରୀନୃସିଂହ ଦେବ ।
ହିରଣ୍ୟ କଶିପୁ ବକ୍ଷସ୍ଥଳେ ବିଦାରିଣ
ସ୍ୱଦେହ କାନ୍ତିରେ ପୂର୍ଣ୍ଣକଲେ ତ୍ରିଭୁବନ ।
ଏ ସକଳ ଦେବତାଙ୍କୁ କରିଲେ ଦର୍ଶନ
ସର୍ବପାପ ନିଃସଂଶୟେ ହୁଅଇ ଦହନ ।
ଭକ୍ତି ମୁକ୍ତି ଫଳ ଲାଭ ହୁଅଇ ତାହାର
ସନ୍ଦେହ ନ କର ମନେ ଆହେ ବେଦବର ।
ଏହି ନୃସିଂହଙ୍କ ଆଗେ ପ୍ରାଣତ୍ୟାଗ କଲେ
ବହୁ ସାଯୁଜ୍ୟ ପ୍ରାପତି ହୁଏ ତତକାଳେ ।
ଆଉ ଯେଉଁ କର୍ମ୍ମ କିଛି କରିବ ସେଠାରେ
କୋଟି କୋଟି ଗୁଣ ଫଳ ଲାଭ ସେହୁ କରେ ।
କଳ୍ପବଟ ବୃକ୍ଷଛାୟା ନୃସିଂହ ତେଜରେ
ଦୀପ୍ତିମାଳ ହୋଇ ରହିଅଛି ସର୍ବକାଳେ ।
ଜ୍ଞାନେ ବା ଅଜ୍ଞାନେ ଏହି ବୃକ୍ଷର ଛାୟାରେ
ପ୍ରାଣ ତ୍ୟାଗ କଲେ ମାୟା ଚାଲିଯାଏ ଦୂରେ ।
ବେଦାନ୍ତ ଶାସ୍ତ୍ରେ ପ୍ରସିଦ୍ଧ ଶ୍ରବଣ ନନ୍ଦନ
ନିଦିଧ୍ୟାସନ ଏ ତିନି ମୋକ୍ଷର ସାଧନ ।
ଏ ତିନି ସାଧନ ବିନା ମୂର୍ଖ ଲୋକଙ୍କର
ମୁକ୍ତି ହୁଏ ଏ କ୍ଷେତ୍ରରେ ସନ୍ଦେହ ନ କର ।
ବାରାଣସୀ କ୍ଷେତ୍ରେ କୃପାନିଧି ମହେଶ୍ୱର
ବ୍ରହ୍ମ ନାମ କହନ୍ତି ଯେ ମନୁଷ୍ୟ କର୍ଣ୍ଣର ।
ସେ ନାମ କର୍ଣ୍ଣ ବିବରେ ହୁଅନ୍ତେ ପ୍ରବେଶ
ହୃଦୟ ପଦ୍ମରେ ଜ୍ଞାନ ହୁଅଇ ପ୍ରକାଶ ।
ସେ ଜ୍ଞାନ ସାଧନ କଲେ ଜୀବ ପାଏ ମୁକ୍ତି
କେବଳ ଏ କ୍ଷେତ୍ରେ ମୃତ୍ୟୁ ହେଲେ ପରାଂଗତି ।
ଉପଦେଷ୍ଟା ଗୁରୁଙ୍କର ମହିମା ଏସନ
ଅନ୍ୟଥା ନ ହୁଏ ସେହି ଜ୍ଞାନ କଦାଚନ ।
ଏ କ୍ଷେତ୍ରେ ମରଣ ହେଲେ ସ୍ୱରୂପ ମୁକତି
ଲାଭ ହୁଏ ଯମ ମନେ କର ନାହିଁ ଭ୍ରାନ୍ତି ।
ଯେଉଁମାନେ କରୁଥାନ୍ତି କର୍ମଫଳ ଭୋଗ
ଜନ୍ମପରେ ମୃତ୍ୟୁ ହେବ ବୋଲି ଉଦବେଗ ।
ଅଜ୍ଞାନ ସ୍ୱାର୍ଥାନ୍ଧ ଆଉ ମୂର୍ଖବ୍ୟକ୍ତିଗଣ
ଏ କ୍ଷେତ୍ରେ କରନ୍ତି ନାହିଁ ବିଶ୍ୱାସ ସ୍ଥାପନ ।
ଯେପରି ତୃଷାର୍ତ୍ତ ବ୍ୟକ୍ତି ତେଜି ଗଙ୍ଗାଜଳ
ପାନ କରେ ଯାଇ କ୍ଷୁଦ୍ର ସରୋବରୁ ଜଳ ।
ସେହିପରି ଏ କ୍ଷେତ୍ରକୁ ତେଜି ମୂଢ଼ଜନ
ଅନ୍ୟ ତୀର୍ଥମାନଙ୍କରେ କରନ୍ତି ଭ୍ରମଣ ।
ଫଳ ଆଶା ମୋହକରେ ହୋଇଥାଏ ତୃପ୍ତ
ଶ୍ରମଜାତ ହୁଏ ଫଳ ଲାଭରେ ଆସକ୍ତ ।
ସମୁଦ୍ରରେ ସ୍ନାନ ଜଗନ୍ନାଥଙ୍କୁ ଦର୍ଶନ
କଳ୍ପ-ବୃକ୍ଷ ଛାୟାତଳେ ହୋଇଲେ ମରଣ ।
ଯେକୌଣସି ସ୍ଥାନେ ଅବା ଏ କ୍ଷେତ୍ର ମଧ୍ୟରେ
ମୃତ୍ୟୁ ହେଲେ ମୁକ୍ତିଲାଭ ଜୀବ ବେଗେ କରେ ।
ଏ କ୍ଷେତ୍ରେ ଯେଉଁ ବିଷୟେ ବିଶ୍ୱାସ ଭକତି
ଯେ ଜନ କରେ ତାହାର ହୁଅଇ ମୁକତି ।
ଅତଏବ ଏହିପରି ତୀର୍ଥ ପୃଥିବୀରେ
କୁତ୍ରାପି ନାହିଁ ଏକଥା ରଖନ୍ତୁ ମନରେ ।
ଯେ ବ୍ୟକ୍ତି ଏହି କ୍ଷେତ୍ରକୁ ପରିତ୍ୟାଗ କରି
ଲାଭ ଲାଳସାରେ ଅନ୍ୟ ତୀର୍ଥରେ ବିହରି ।
ସେ ବ୍ୟକ୍ତି ନିଶ୍ଚୟେ ହୁଏ ବିଷ୍ଣୁ ମାୟାଗ୍ରସ୍ତ
କାଳେ କାଳେ ହୁଏ ମୁକ୍ତି ଲାଭରୁ ବଞ୍ଚିତ ।
ଆଉ ଉପଦେଶ ଦିଆଯିବ କି ତୁମ୍ଭଙ୍କୁ
ପ୍ରତ୍ୟକ୍ଷରେ ମୁକ୍ତି ହେଲା ଦେଖିଲ କାକକୁ ।
ଅନ୍ତର୍ବେଦି ରକ୍ଷାଅର୍ଥେ ଆଠଗୋଟି ଶକ୍ତି
କଳପନା କରିଅଛୁ ଆହେ ବେଦପତି ।
ରୁଦ୍ର ଉଗ୍ର ତପସ୍ୟା ଯେ କଲେ ପତ୍ନୀ ପ୍ରତି
ତେଣୁ ସ୍ୱଦେହରୁ ଜାତ କଲୁ ଗୌରୀ ଶକ୍ତି ।
ଗୌରୀଙ୍କୁ ଆଦେଶ କଲୁ ଆଗୋ ମାଏ ଶୁଣ
ଅନ୍ତର୍ବେଦୀ ରକ୍ଷାଅର୍ଥେ ହୁଏ ସାବଧାନ ।
ଆତ୍ମ ପ୍ରୀତି ଅର୍ଥେ ଗୌରୀ ହେଲେ ଅପମୂର୍ତ୍ତି
ଅନ୍ତର୍ବେଦି ରକ୍ଷାଅର୍ଥେ ହୋଇଲେ ନିଯୁକ୍ତି ।
ବଟମୂଳେ ଅଗ୍ନି କୋଣେ ମଙ୍ଗଳା ନାମରେ
ବିମଳା ନାମେ ଶକତି ପଶ୍ଚିମ ଦିଗରେ ।
ସର୍ବମଙ୍ଗଳା ନାମରେ ବାୟୁକୋଣେ ସ୍ଥିତି
ଉତ୍ତମ ଦିଗରେ ଅର୍ଦ୍ଧାଙ୍ଗିନୀ ନାମେ ଶକ୍ତି ।
ଐଶାନ୍ୟରେ ଲମ୍ବା ଦକ୍ଷିଣରେ କାଳରାତ୍ରି
ପୂର୍ବେ ମରିଚିକା ନୈର୍ଋତରେ ଚଣ୍ଡାଶକ୍ତି ।
ଅନ୍ତର୍ବେଦୀ ରକ୍ଷାଅର୍ଥେ ଏହି ଅଷ୍ଟଶକ୍ତି
ଅଷ୍ଟଦିଗେ ରହି ପୂଜା ପାଉଛନ୍ତି ନିତି ।
ଅଳ୍ପ ପୁଣ୍ୟକାରୀ ପକ୍ଷେ ଦୁର୍ଲ୍ଲଭ ଏ ସ୍ଥାନ
ଅଷ୍ଟମୂର୍ତ୍ତି ଦରଶନ ଅଥବା କୀର୍ତ୍ତନ ।

Digitized by srujanika@gmail.com

କରିଲେ ସକଳ ପାପ ହୁଅଇ ଦହନ
ଅଶ୍ୱମେଧ ଯାଗଫଳ ଲଭେ ତତକ୍ଷଣ ।
ରୁଦ୍ର ଦେଖିଲେ ରୁଦ୍ରାଣୀ ଅଷ୍ଟମୂର୍ତ୍ତି ହେଲେ
ନିଜର ଯେ ଅଷ୍ଟମୂର୍ତ୍ତି କଳ୍ପନା କରିଲେ ।
ପରମେଶ୍ୱରଙ୍କୁ ଉପସନା ତହୁଁ କଲେ
ତପସ୍ୟା କରି ଏ ବର ପ୍ରାର୍ଥନା କରିଲେ ।
ଆହେ ଦେବ ତୁମ୍ଭେ ଯେଉଁ ସ୍ଥାନରେ ରହିବ
ସେ ସ୍ଥାନରେ ମୋର ବାସ ନିତ୍ୟ ଯେ ହୋଇବ ।
ହେ କମଳାକାନ୍ତ ତୁମ୍ଭ ବିନା ଆଉ କେହି
ଜୀବକୁ ମୁକ୍ତି ଦେବାକୁ ସମର୍ଥ ନୁହଇ ।
ତୁମ୍ଭେ ଜୀବଗଣଙ୍କର ଅଟ ଅନ୍ତର୍ଯ୍ୟାମୀ
ତୁମ୍ଭ ବ୍ୟତିରେକେ ଦେହ ଧରିବକେ ପୁଣି ।
ତୁମ୍ଭ ସ୍ୱରୂପ ନ ବୁଝି ବିଷୟ ଅଗ୍ନିରେ
ଆନନ୍ଦିତ ମୂଢ଼ ଲୋକେ ହୁଅନ୍ତି ମନରେ ।
ନିର୍ମ୍ମଳ ଜଳଦ କାନ୍ତି ଦେବ ଭଗବାନ
ତୁମ୍ଭ ପାଦପଦ୍ମରେ ମୁଁ ପଶିଲି ଶରଣ ।
ସେ ଅଷ୍ଟରୁଦ୍ରଙ୍କୁ କ୍ଷେତ୍ରସ୍ୱାମୀ ଭଗବାନ
ତୁରିତେ ଅଷ୍ଟ ଦିଗରେ କରିଲେ ସ୍ଥାପନ ।
ମଧ୍ୟ ବେଦୀରେ ବିଜୟେ ସ୍ୱୟଂ ଭଗବାନ
ଶୁଣ ଅଷ୍ଟରୁଦ୍ର ନାମ କପାଳ ମୋଚନ ।
ଦ୍ୱିତୀୟରେ କାମ କ୍ଷେତ୍ରପାଳ ତୃତୀୟରେ
ଯମେଶ୍ୱର ମାର୍କଣ୍ଡେୟଶ୍ୱର ପଞ୍ଚମରେ ।
ଷଷ୍ଠେ ବିଶ୍ୱେଶ୍ୱର ନୀଳକଣ୍ଠ ସପ୍ତମରେ
ଅଷ୍ଟମରେ ବଟେଶ୍ୱର କଳ୍ପବଟ ମୂଳେ ।
ଏ ଅଷ୍ଟଲିଙ୍ଗ ଦର୍ଶନ ସ୍ପର୍ଶନ ପୂଜନ
କରିଲେ ସକଳେ ହେବେ ମୁକତି ଭାଜନ ।
ଅତଏବ ଯମରାଜ ଏ କ୍ଷେତ୍ରେ କେବଳ
ତୁମ୍ଭେ ଶାସକ ନ ହେବ ମୃତ ବ୍ୟକ୍ତିଙ୍କର ।
ଯେ ନିମିତ୍ତ ଏହିସ୍ଥାନେ କଲେ ଆଗମନ
ଅନ୍ୟସ୍ଥାନେ ଯାଇଁ ତାହା କରନ୍ତୁ ସାଧନ ।
ଲକ୍ଷ୍ମୀଦେବୀ ଯମକୁ ଏ ଉପଦେଶ ଦେଲେ
ପିତାମହ ମୁଖ ଚାହିଁ ବଚନ ଭାଷିଲେ ।
ମନରେ ନିଶ୍ଚୟ କର ଭଗବାନଙ୍କର
ନାଭି ପଦ୍ମରୁ ଜନମ ହୋଇଛି ତୁମ୍ଭର ।
ତଥାପି ଏ ଜଗନ୍ନାଥ ଭକ୍ତର ଅଧୀନ
ଶରଣ ଗଲେ କରନ୍ତି ଦୁଃଖ ବିମୋଚନ ।
ଏହି ହେତୁ ଯମପ୍ରତି ପ୍ରଭୁ ସୁପ୍ରସନ୍ନ
ସେ କଥା କହୁଛୁ ତୁମ୍ଭେ ଶୁଣ ସାବଧାନ ।
ଶ୍ରୀ ସୁଦର୍ଶନ ଅନନ୍ତ ଦେବ ଲକ୍ଷ୍ମୀପତି
କସ୍ମିନ କାଳେ ଏ କ୍ଷେତ୍ର ତ୍ୟାଗ ନ କରନ୍ତି ।

ଯମରାଜାଙ୍କୁ ଏକଥା ବୁଝାଇଣ ଦିଅ
ଯାଆନ୍ତୁ ଏଠାରୁ ନିର୍ଭୟରେ ନିଜ ଗୃହ ।
ସତ୍ୟଯୁଗେ ଯାଗକାରୀ ବିଷ୍ଣୁପରାୟଣ
ଇନ୍ଦ୍ରଦ୍ୟୁମ୍ନ ନାମେ ରାଜା ହୋଇଥିଲେ ଜନ୍ମ ।
ସେ ରାଜା ଏହି କ୍ଷେତ୍ରକୁ କରି ଆଗମନ
ଭକ୍ତିଭରେ କରିବେ ତ ପ୍ରଭୁଙ୍କୁ ଦର୍ଶନ ।
ଭଗବାନଙ୍କର ପ୍ରୀତି ସାଧନ ନିମିତ୍ତ
କରିବେ ସହସ୍ର ଅଶ୍ୱମେଧ ନରନାଥ ।
ସେ ରାଜାଙ୍କୁ ଭଗବାନ ହୋଇବେ ସଦୟ
ଦାରୁ ମଧ୍ୟରେ ପ୍ରକାଶ ହୋଇବେ ନିଶ୍ଚୟ ।
ସେ ଦାରୁରେ ବିଶ୍ୱକର୍ମା ପ୍ରତିମା ଗଢ଼ିବେ
ପ୍ରତିଷ୍ଠା କରିବ ଇନ୍ଦ୍ରଦ୍ୟୁମ୍ନ ବାକ୍ୟେ ତୁମ୍ଭେ ।
ଆମ୍ଭ ସଦୃଶ ପ୍ରତିମା ନିର୍ମାଣ କରିବ
ସେ ମୂର୍ତ୍ତି ନିଶ୍ଚୟ ତୁମ୍ଭେ ପ୍ରତିଷ୍ଠା କରିବ ।
ବ୍ରହ୍ମା ଯମରାଜ ଦୁହେଁ ଲକ୍ଷ୍ମୀ ଦେବୀଙ୍କର
ବାକ୍ୟ ଶୁଣି ଆନନ୍ଦରେ ଗଲେ ସ୍ୱ-ମନ୍ଦିର ।
ମୁନିଗଣ ଶୁଣ ସେହି କ୍ଷେତ୍ରେ ବର୍ତ୍ତମାନ
ମେଘକାନ୍ତି ଶଙ୍ଖଚକ୍ର ଧାରୀ ଭଗବାନ ।
ଇନ୍ଦ୍ରଦ୍ୟୁମ୍ନ ରାଜାପ୍ରତି ହୋଇ ସୁପ୍ରସନ୍ନ
ନୀଳାଚଳେ ଦାରୁବ୍ରହ୍ମ ରୂପେ ବିଦ୍ୟମାନ ।
ଶ୍ରୀ ବଳରାମ ସୁଭଦ୍ରା ସୁଦର୍ଶନ ଘେନି
ଦେହଧାରୀ ହୋଇ ବିଜେ ଜଗନ୍ନାଥ ସ୍ୱାମୀ ।
ଜୀବ-ବ୍ରହ୍ମ-ହିତେ-ସାଧନରେ ହୋଇ ବ୍ରତୀ
ପାପ ଦୂର ହୋଇଯାଏ କରିଲେ ପ୍ରଣତୀ ।
ଶୁଣ ସର୍ବ ମୁନିଗଣ ଯାହାକୁ ଦର୍ଶନ
ସୁଦୃଢ଼ ପାପ ବନ୍ଧନ କରିଦିଏ ଛିନ୍ନ ।
ସୁଧାକର ତୁଲ୍ୟ କରେ ତ୍ରିତାପ ହରଣ
ସତ୍‌କର୍ମ୍ମ ସମୂହ ଫଳ ଫଳଇ ତତ୍‌କ୍ଷଣ ।
ବିଷ୍ଣୁଙ୍କର ଅଛି ବହୁବିଧ ଅବତାର
ଅଦ୍‌ଭୂତ କର୍ମ ସାଧନ ମହିମା ଅପାର ।
ଭୂଲୋକେ ମନୁଷ୍ୟଗଣ ସ୍ୱର୍ଗେ ଦେବଗଣ
ସେ ମହିମା ବୁଝିବାକୁ ନୁହନ୍ତି ଭାଜନ ।
ବିପ୍ରଗଣ ଶୁଣ ଦେବ, ଦଇତ ମାନବ
ଗନ୍ଧର୍ବ ସର୍ପ ରାକ୍ଷସ ପକ୍ଷୀଜାତି ସର୍ବ ।
ଏ ସକଳ ଆତ୍ମଭୂତ ସର୍ବ ସୁଖାବହ
ଦାରୁମୟ ଶ୍ରୀହରିଙ୍କୁ କରନ୍ତି ଆଶ୍ରୟ ।
ଆନନ୍ଦ ସ୍ୱରୂପୀ ବ୍ରହ୍ମଙ୍କର ଜୀବ ଅଂଶେ
ଜୀବର ଜନ୍ମ ହୁଅଇ ସେ ଜୀବ ବିଶେଷେ ।
ଦାରୁମୂର୍ତ୍ତି ମଧ୍ୟେ ବ୍ରହ୍ମ କରେ ଅନୁଭବ
ବେଦ ବାକ୍ୟରେ ପ୍ରସିଦ୍ଧି ଏକଥା ଜାଣିବ ।

Digitized by srujanika@gmail.com

ଏ ମୂର୍ତ୍ତି ସଂସାର ଦୁଃଖ ସକଳ ବିନାଶି
ଅବ୍ୟୟ ସୁଖ ପ୍ରଦାନେ ଜୀବକୁ ଆଶ୍ୱାସୀ ।
ଏ ହେତୁ ବେଦାନ୍ତ ଶାସ୍ତ୍ର କରଇ କୀର୍ତ୍ତନ
ଦାରୁମଧ୍ୟେ ବ୍ରହ୍ମରୂପ ଧାରୀ ଭଗବାନ ।
କେବଳ କାଷ୍ଠ ପ୍ରତିମା ନ ଦିଏ ମୁକତି
ମୋକ୍ଷ ତ ସ୍ୱଭାବ ସିଦ୍ଧ ଅକୃତ୍ରିମ ଅତି ।
କୃତ୍ରିମ ପ୍ରତିମା କେଉଁପରି ମୁକ୍ତି ଦେବ
ତ୍ରିକାଳରେ ଏକଥା ତ ସମ୍ଭବ ନ ହେବ ।
ଅତଏବ ବ୍ରହ୍ମସୁଖ ଆଶ୍ରୟ ବ୍ୟତୀତ
ଲାଭ ନ ହୁଅଇ ତେଣୁ ଏ ସ୍ଥାନ ଗୁପତ ।
ଅଲୌକିକୀ ସେ ପ୍ରତିମା ଲୌକିକୀ ହୋଇଲେ
କିଏ ବା ଶୁଣିଲେ କିଏ ନୟନେ ଦେଖିଲେ ।
ମହର୍ଷି ଜୈମିନି ମୁନିଗଣଙ୍କୁ ଏକଥା
କହିଲେ ଇନ୍ଦ୍ରଦ୍ୟୁମ୍ନର ବର ଲାଭ ବାର୍ତ୍ତା ।
ଯେ ପ୍ରଭୁ ରକ୍ଷକ ଦୀନ ଅନାଥ ଜନର
ସଂସାର ସାଗର ତାରିବାକୁ କର୍ଣ୍ଣଧାର ।
ଅବଲମ୍ବନ ଅଟନ୍ତି ସକଳ ଜୀବର
ଚରଣ ବନ୍ଦନା କରୁଛନ୍ତି ଚରାଚର ।
ଯେ ପ୍ରଭୁ ସୃଷ୍ଟି ପାଳନ ସଂହାର କାରଣ
ଜୀବର କରନ୍ତି ସଦା ପାପ ବିମୋଚନ ।
ଆପଦ ବିନାଶକାରୀ ବିଭୂତି ବର୍ଦ୍ଧକ
ବିଷୟ ଭୋଗୀର ସଦା ଅଭୀଷ୍ଟ ପୂରକ ।
ଜୀବ ଜଗତର ସଦା ପାଳନ କରତା
ଚରାଚର ଜଗତର ଅଟନ୍ତି ବିଧାତା ।
ପୃଥିବୀରେ ଯେତେ ଭାଷା ତହିଁରେ ପଣ୍ଡିତ
କଲ୍ମଷ ନାଶ କରିବା ପାଇଁ ସମରଥ ।
ପାପ ତାଙ୍କର ଶୋଷକ ଅଟନ୍ତି ଶ୍ରୀହରି
ଜୀବହିତେ ନୀଳାଦ୍ରି କନ୍ଦରେ ବିଜେ କରି ।
ମୁନିଗଣ ନୀଳାଚଳସ୍ଥିତ ନାରାୟଣ
ପ୍ରଭୁଙ୍କର ପାଦପଦ୍ମେ ପଶନ୍ତୁ ଶରଣ ।
ଯେ ପ୍ରଭୁ ଜଡ଼ ସମାନ ଦାରୁ ରୂପ ଧରି
ବିବିଧ ପ୍ରକାରେ ଦିବ୍ୟଲୀଳା ତହିଁ କରି ।
ସେ ପ୍ରଭୁଙ୍କୁ ଏକମାତ୍ର କରିଲେ ଭକତି
ଶତ ଅପରାଧ ଥିଲେ କ୍ଷମା ସେ ଦିଅନ୍ତି ।
ଶୁଣି ମୁନିଗଣ ସେହି ପ୍ରଭୁଙ୍କ ଚରିତ
ଦାରୁ ଦେହେ ଲୀଳା କରୁଅଛନ୍ତି ଅଦ୍‌ଭୂତ ।
ପାପ ନାଶନ ଚରିତ୍ର କରୁଛୁ ବର୍ଣ୍ଣନ
ସାବଧାନ ହୋଇ ତାହା କରନ୍ତୁ ଶ୍ରବଣ ।
କୁରୁକ୍ଷେତ୍ରେ ଥିଲେ ଏକଜଣ ବିପ୍ରବର
ଆଉ ଜଣେ କ୍ଷତ୍ରିୟ ଯେ ମଇତ୍ର ତାଙ୍କର ।
ଦୁହେଁ ଏକତ୍ର କରନ୍ତି ଆହାର ବିହାର
ଶୌଚାଚାର ବିବର୍ଜିତ ନିଷିଦ୍ଧ ଆମ୍ବର ।
ବେଦ ଅଧ୍ୟୟନ ତେଜିହୋଇ ମୋହଯୁକ୍ତ
ଦେବ କାର୍ଯ୍ୟ ପିତୃକାର୍ଯ୍ୟ ଆଦି ବିବର୍ଜିତ ।
ଧର୍ମହୀନ ମହାପାତକାଦିରେ ଦୂଷିତ
ସଦା ମଦୋନ୍ମତ ବେଶ୍ୟା ସହବାସେ ରତ ।
ଦୁହେଁ ପରଲୋକ ଚିନ୍ତା ଦିନେ ନ କରନ୍ତି
ଏହିପରି ଅକାର୍ଯ୍ୟରେ ଅର୍ଦ୍ଧାୟୁଷ ବିତି ।
ଏକଦା ସେ ଦୁହେଁ ଗଲେ ଏକ ଯଜ୍ଞସ୍ଥାନ
ମନୋହର ମନ୍ତ୍ର ଧ୍ୱନି କରିଲେ ଶ୍ରବଣ ।
ବୈଦିକ କ୍ରିୟା ସକଳ କରିଲେ ଦର୍ଶନ
ତେଣୁ ଧର୍ମ୍ମ କାର୍ଯ୍ୟେ ଶ୍ରଦ୍ଧା କଲେ ଦୁଇଜଣ ।
ପୁଣ୍ଡରୀକ ଅମ୍ବରୀଷ ନାମ ଦୁହିଁଙ୍କର
ନିଜ ନିଜ ଜାତି କଥା ପଡ଼ିଲା ମନର ।
ନିଜ ନିଜ ଦୁଶ୍ଚରିତ୍ର ନିନ୍ଦା ବହୁ କରି
ଏ ପାପ ସମୁଦ୍ରୁ କେଉଁରୂପେ ହେବା ପାରି ।
ଆମ୍ଭେ ଦୁହେଁ ଏ ଜନ୍ମରେ କଲୁ ଯେ ପାତକ
ତାର ପ୍ରାୟଶ୍ଚିତ କହିବାକୁ ଶାସ୍ତ୍ର ମୂକ ।
ସଞ୍ଚୟ କରିଛୁ ଯେଉଁ ପାପ ଘୋରତର
ଦୁର୍ଲ୍ଲଭ ଅଟଇ ପ୍ରାୟଶ୍ଚିତ ଯେ ତାହାର ।
ତଥାପି ଏହି ସକଳ ବ୍ରହ୍ମନିଷ୍ଠଗଣ
ସଭାସଦ ହୋଇଛନ୍ତି ଯେତେକ ବ୍ରାହ୍ମଣ ।
ଏମାନଙ୍କ ଶ୍ରୀଚରଣେ କଲେ ପ୍ରଣିପାତ
ପଚାରିବା କେଉଁପରି ହେବା ପାପମୁକ୍ତ ।
ଏକଥା ବିଚାର କରି ସେହି ଦୁଇମିତ
ବିପ୍ରମାନଙ୍କ ଚରଣେ କଲେ ପ୍ରଣିପାତ ।
ନିଜ କୃତ ପାପ ମାନ କରିଲେ ବର୍ଣ୍ଣନ
ପୁଚ୍ଛିଲେ କିପରି ହେବ ଦୁରିତ ଦହନ ।
ଦୁଇ ମିତ୍ରଙ୍କର କଥା ଶୁଣି ବିପ୍ରଗଣ
ବିସ୍ମୟ ବଦନେ କଲେ ଚକ୍ଷୁ ନିମୀଳନ ।
ପରସ୍ପର ମୁଖ ଚାହିଁ ହୋଇଲେ ମଉନ
ଆଶ୍ଚର୍ଯ୍ୟ ହୋଇଲେ ଶୁଣି ପାପକର୍ମ ମାନ ।
ଯେତେ ପାପ ଦୁହିଁଙ୍କର ହୋଇଛି ସଞ୍ଚିତ
ପ୍ରାୟଶ୍ଚିତ କରିବାକୁ ଶାସ୍ତ୍ର ଅସମର୍ଥ ।
ଏହାଙ୍କ ପାପର ଉପଯୁକ୍ତ ପ୍ରାୟଶ୍ଚିତ
କହିବାକୁ ଆମ୍ଭେମାନେ ନୋହୁତ ସମର୍ଥ ।
କରିଛନ୍ତି ପାପ କ୍ଷୟ ଭକ୍ତି ସାଧନାରେ
ବିପ୍ରଗଣ ମଧ୍ୟ ଶ୍ରେଷ୍ଠ ବକ୍ତା ସେ ଭାବରେ
ସଭାପତି ପ୍ରଧାନ ବୈଷ୍ଣବ ଚୂଡ଼ାମଣି
ହସି ହସି କହିଲେ ସଭାରେ ସେହିକ୍ଷଣି ।

Digitized by srujanika@gmail.com

ବ୍ରାହ୍ମଣ କ୍ଷତ୍ରିୟ ଦୁଇ ଜାତିର ସନ୍ତାନ
ମନଦେଇ ଶୁଣ ତୁମ୍ଭ ପାପ ଯେ ଦାରୁଣ ।
ସେ ପାପର ପ୍ରାୟଶ୍ଚିତ ଯେବେ ଇଚ୍ଛା କର
ଶ୍ରୀପୁରୁଷୋତ୍ତମ କ୍ଷେତ୍ରେ ଚଳ ହେ ସତ୍ୱର ।
ସେହିସ୍ଥାନେ ଦାରୁମୟ ଶ୍ରୀପୁରୁଷୋତ୍ତମ
ବିଜେ କରିଛନ୍ତି ସେହି କ୍ଷେତ୍ରଟି ଉତ୍ତମ ।
ରାଜର୍ଷି ଇନ୍ଦ୍ରଦ୍ୟୁମ୍ନନ ଭକ୍ତିରେ ସନ୍ତୋଷ
ହୋଇ ନାରାୟଣ ତହିଁ କରିଛନ୍ତି ବାସ ।
ଶଙ୍ଖ ଚକ୍ର ଗଦା ପଦ୍ମଧାରୀ ଜଗନ୍ନାଥ
ଆରାଧନା କଲେ ପାପ କ୍ଷୟ ଜୀବନ୍ମୁକ୍ତ ।
ଏ ଦୁଇ ମଧ୍ୟରୁ ତୁମ୍ଭେ ଯାହା ଇଚ୍ଛା କର
ନିଶ୍ଚୟ ପାଇବ ତାହା ସନ୍ଦେହ ନ କର ।
ସେ ପ୍ରଭୁ ଘୋର ଦୁଷ୍କୃତ ରୂପ ତୁଳା ରାଶି
ଅଗ୍ନିରୂପେ ଦହୁଛନ୍ତି ନୀଳାଚଳେ ବସି ।
କୋଟିଜନ୍ମ ତପ କରି ଏ ପାପ ଦହନ
କରିବାକୁ ତୁମ୍ଭେ ଦୁହେଁ ନ ହେବ ଭାଜନ ।
ଯା ଦର୍ଶନ ଏକକାଳେ ପାପ କ୍ଷୟ କରେ
ତା ନିକଟେ ଚଳିଯାଅ ଆନନ୍ଦ ମନରେ ।
ପୁଣ୍ୟଭୂମି ଉତ୍କଳ ଦେଶରେ ବିଦ୍ୟମାନ
ଦକ୍ଷିଣ ସମୁଦ୍ର ତୀରେ ସ୍ୱୟଂ ଭଗବାନ ।
ନୀଳ ପର୍ବତ କନ୍ଦରେ କରିଛନ୍ତି ବାସ
ତାହାଙ୍କର ପାଦପଦ୍ମେ ଶରଣ ଯେ ପଶ ।
ସେ କୃପାସାଗର ପୂରାଇବେ ଅଭିଳାଷ
ମୁନିଗଣ ଶୁଣିଲ କି ମନ ହେତୁ ତୋଷ ।
ବ୍ରାହ୍ମଣ କ୍ଷତ୍ରିୟ ପୁଏ ସନ୍ତୋଷ ହୋଇଲେ
ତହୁଁ ଉତ୍କଳ ପ୍ରଦେଶେ ତୁରିତେ ଚଳିଲେ ।
ଅତି ଆନନ୍ଦରେ କଲେ ଜୟ ଜୟ ଧ୍ୱନି
ଭକ୍ତିଭରେ ବ୍ରାହ୍ମଣଙ୍କ ଚରଣେ ପ୍ରଣମି ।
ଉତ୍କଳ ଖଣ୍ଡ ଚତୁର୍ଥ ଅଧ୍ୟାୟ ସମାପ୍ତ
ସଂସାର ରକ୍ଷା କରନ୍ତୁ ନୀଳାଚଳ ନାଥ ।
ବିପଦାନ୍ଧକାର ନାଶିବାରେ ସୂର୍ଯ୍ୟ ସମ
ଅଭିଳାଷ ଦାନେ କାମଧେନୁର ସମାନ ।
ଅପାର ସଂସାର ସମୁଦ୍ରରେ ନୌକାବତ
ବିପ୍ର ପାଦରଜ କରେ ତ୍ରିଭୁବନ ପୂତ ।
ଯଜ୍ଞକାରୀ ବିପ୍ରମାନଙ୍କର ପଦଧୂଳି
ଶିରେ ବହିବାକୁ ହରିହର କରେ ଅଳି ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ପୁରୁଷୋତ୍ତମ କ୍ଷେତ୍ର ବର୍ଣ୍ଣନେ ପୁଣ୍ଡରୀକ ଅମ୍ବରୀଷ
ଶ୍ରୀକ୍ଷେତ୍ରେ ଗମନେ ନାମ ଚତୁର୍ଥୋଽଧ୍ୟାୟଃ ।



## ପଞ୍ଚମ ଅଧ୍ୟାୟ

କହନ୍ତି ଜୈମିନି ମୁନି ସେହି ଦୁଇମିତ
ବେଶ୍ୟାଳୟ ଛାଡ଼ିଦେଲେ ହୋଇ ଅନୁତପ୍ତ ।
ଭୋଜନ କରିଲେ ଥରେ ମାତ୍ର ହବିଷ୍ୟାନ୍ନ
ନିଜ ମନେ ସଦା ଚିନ୍ତା କଲେ ନାରାୟଣ ।
କେତେଦିନ ପରେ ନୀଳାଚଳେ ପ୍ରବେଶିଲେ
ତୀର୍ଥରାଜ ସମୁଦ୍ରରେ ଯାଇଁ ସ୍ନାନ କଲେ ।
ଶ୍ରୀମନ୍ଦିର ସିଂହଦ୍ୱାରେ କରି ଅବସ୍ଥାନ
ଜଗନ୍ନାଥଙ୍କୁ ସାଷ୍ଟାଙ୍ଗ କରିଲେ ପ୍ରଣାମ ।
ଚକ୍ଷୁ ମେଲାକରି ଜଗନ୍ନାଥଙ୍କୁ ଦର୍ଶନ
କରିବା ନିମିତ୍ତ ଦୁହେଁ ନ ହେଲେ ଭାଜନ ।
ଦର୍ଶନ ନ ପାଇ ମନେ ହୋଇଲେ ଚିନ୍ତିତ
ତେଣୁ ଦୁଇମିତ୍ର କଲେ ଅନଶନ ବ୍ରତ ।
ପାପ ନାଶକାରୀ ନାମ କରିଲେ କୀର୍ତ୍ତନ
ତୃତୀୟ ରାତ୍ରରେ କଲେ ଜ୍ୟୋତି ଦରଶନ ।
ପୁନର୍ବାର ତିନିଦିନ ଉପବାସ କଲେ
ସପ୍ତମ ରାତ୍ରିରେ ପ୍ରଭୁ ଦରଶନ ଦେଲେ ।
ଦେବଗଣଙ୍କର ସ୍ତୁତି କରିଲେ ଶ୍ରବଣ
ତତ୍‌କ୍ଷଣେ ସେ ଦୁହିଁଙ୍କର ଜାତ ଦିବ୍ୟଜ୍ଞାନ ।
ଦେହରୁ ପାପ-କଞ୍ଚୁକ ପରିତ୍ୟାଗ କଲେ
ସାକ୍ଷତରେ ପ୍ରଭୁ-ଜଗନ୍ନାଥଙ୍କୁ ଦେଖିଲେ ।
ଶଙ୍ଖ ଚକ୍ର ଗଦା ପଦ୍ମ ହସ୍ତେ ବିରାଜିତ
ଦିବ୍ୟ ଅଳଙ୍କାରେ ଦେହ ହୋଇଛି ଭୂଷିତ ।
ପାଦରେ ରତ୍ନ ପାଦୁକା ଅତି ସୁଶୋଭନ
ଚକ୍ଷୁଶ୍ୱେତ ପଦ୍ମ ସମ ବଦନ-ପ୍ରସନ୍ନ ।
ବାମବାହୁ ଦ୍ୱାରା ଲକ୍ଷ୍ମୀ ବାମେ ଆଲିଙ୍ଗିତ
ଲକ୍ଷ୍ମୀଦତ୍ତ ତାମ୍ବୁଳରେ ବଦନ ପୂରିତ ।
କେତେ ଦାସୀ ଧରିଛନ୍ତି ରତ୍ନବେତ ହସ୍ତେ
କେତେ ଚାମର ଯେ କେତେ ଦୀପମାଳା ହସ୍ତେ ।
ଆଉ ଏକ କାନ୍ତିମତୀ ଦାସୀ ରତ୍ନଛତ୍ର
ଧରିଛନ୍ତି ପୃଷ୍ଠଭାଗେ ଅତୀବ ବିଚିତ୍ର ।
ପ୍ରମ୍ଳୋଚା ନାମେ ସୁନ୍ଦରୀ ଦାସୀର ମୁଖରେ
ଅନ୍ୟ ଦାସୀ କୃଷ୍ଣାଗୁରୁ ଧୂପ ପାତ୍ର ଧରେ ।
ପରସ୍ପର ପରିହାସ ଦାସୀଏ କରନ୍ତି
ସମ୍ମୁଖରେ ଉପସ୍ଥିତ ଥୋକାଏ ଅଛନ୍ତି ।
ଦେବ ସିଦ୍ଧି ସନକାଦି ଦିବ୍ୟ ମୁନିଗଣ
ନତଶିରେ କରଯୋଡ଼ି କରନ୍ତି ସ୍ତବନ ।
ଏମାନଙ୍କୁ ଅନୁଗ୍ରହ କଟାକ୍ଷ ପାତରେ
ଦାସୀଗଣ କରୁଛନ୍ତି ହରଷ-ମନରେ ।
ପ୍ରଭୁଙ୍କ ସମ୍ମୁଖେ ନାରଦାଦି ଋଷିଗଣ
ଗନ୍ଧର୍ବଗଣ କରନ୍ତି ସଙ୍ଗୀତ ଗାୟନ ।

Digitized by srujanika@gmail.com

ସଂଗୀତ ଶ୍ରବଣ କରି ତୋଷ ଭଗବାନ
ସେମାନଙ୍କୁ କରୁଛନ୍ତି ଅନୁକମ୍ପା ଦାନ ।
ପ୍ରହ୍ଲାଦାଦି ବଇଷ୍ଣବ କୁଳର ଭୂଷଣ
ବସି ସମ୍ମୁଖେ କରନ୍ତି ସ୍ୱରୂପକୁ ଧ୍ୟାନ ।
ଏକାଗ୍ର ଭାବରେ ଉପବିଷ୍ଟ ରହିଛନ୍ତି
ତାଙ୍କୁ ଭଗବାନ ଲୀନ ସ୍ୱଦେହେ କରନ୍ତି ।
ବକ୍ଷସ୍ଥଳେ କୌସ୍ତୁଭ ମଣିରେ ସମ୍ମୁଖସ୍ଥ
ଦେବତାଦି ମାନଙ୍କରେ ପ୍ରତିବିମ୍ବ ପାତ ।
ଦେଖାଯାଏ ସାକ୍ଷାତରେ ବିଶ୍ୱରୂପ ମୂର୍ତ୍ତି
ଉପସ୍ଥିତ ଭକ୍ତଗଣ ତୋଷ ହେଉଛନ୍ତି ।
ସ୍ୱର୍ଗରୁ ହେଉଛି ପୁଷ୍ପବୃଷ୍ଟି ଅବିରତ
ଲକ୍ଷ୍ମୀ ଦେବୀଙ୍କର ଶୋଭା ପ୍ରକାଶେ ବହୁତ ।
ଅପ୍‌ସରାମାନଙ୍କ ମନୋହର ନୃତ୍ୟଗାନ
ପ୍ରଭୁ ଭଗବାନ କରୁଅଛନ୍ତି ଦର୍ଶନ ।
ଦର୍ଶନ କରନ୍ତେ ପ୍ରଭୁଙ୍କର ଦିବ୍ୟଲୀଳା
ଦୁଇ ପାପୀଙ୍କର ତହିଁ ଜ୍ଞାନ ଜାତ ହେଲା ।
ସକଳ ବିଦ୍ୟାରେ ଦୁହେଁ ପଣ୍ଡିତ ହୋଇଲେ
କରଯୋଡ଼ି ତିନିବାର ପ୍ରଦକ୍ଷିଣ କଲେ ।
ଆନନ୍ଦ ମନରେ କଲେ ସାଷ୍ଟାଙ୍ଗ ପ୍ରଣାମ
ତହୁଁ ସ୍ତୁତି ବାକ୍ୟମାନ ପଢ଼ିଲେ ବହନ ।
କହେ ଦ୍ୱିଜ ପୁଣ୍ଡରୀକ ଆହେ ନାରାୟଣ
ଆପଣ କରି ଅଛନ୍ତି ଜଗତ ଧାରଣ ।
ସୃଷ୍ଟି ସ୍ଥିତି ପ୍ରଳୟର ଅଟଇ କାରଣ
ପରମାତ୍ମା ଆଉ ପରା ଆପଣଙ୍କ ନାମ ।
ସକଳ ପ୍ରାଣୀର ଏକମାତ୍ର ଯେ ଆଶ୍ରୟ
ଆପଣଙ୍କୁ ନମସ୍କାର ଆହେ ଦୟାମୟ ।
ଏକମାତ୍ର ପରମାର୍ଥ ବସ୍ତୁ ତ ଆପଣ
ଜାତ ଶୂନ୍ୟ ଧ୍ୱଂସହୀନ ଆହେ ଭଗବାନ ।
ଧ୍ୟାନଚକ୍ଷୁ ଯୋଗୀଗଣ ନିତ୍ୟାନନ୍ଦମୟ
ବସ୍ତୁ ମାତ୍ର ଜାଣି କରିଅଛନ୍ତି ଆଶ୍ରୟ ।
ଆପଣ ଚିନ୍ମୟ ପରାତ୍ପର ଜଗଦିଶ
ଜଗତର ଅଧିଷ୍ଠାନ ରୂପରେ ପ୍ରକାଶ ।
ଏକଥା ବୁଝନ୍ତି ନାହିଁ ମୂଢ଼ ଜୀବଗଣ
ଅତି ନିର୍ମଳ ସ୍ୱରୂପ ଅଟନ୍ତି ଆପଣ ।
ଅର୍ଥଲିପ୍‌ସା କାମନାରେ ଯେ ଜନ ବ୍ୟାକୁଳ
ଏ ସଂସାରେ ଗତାଗତ କରେ ସେ କେବଳ ।
ଗତାଗତ ରୂପ ଦୁଃଖଶ୍ରମ ଯେ ତାହାର
ଆପଣଙ୍କ ସାକ୍ଷତ୍କାରେ ସୁଖ ନାହିଁ ତାର ।
ଭାଗ୍ୟବଳେ କେବେ ଅବା ଦରଶନ ମିଳେ
ହେ ନାଥ ଦୀନଜନର କି ଅଛି କପାଳେ ।
ଲୋଭୀ ଦୁଷ୍କର୍ମ କରତା ମୁଁ ତ ଅଟେ ସ୍ୱାମୀ
ସଂସାର ସାଗରେ ବୁଡ଼ିଯାଏ ଅନ୍ତର୍ଯ୍ୟାମୀ ।
ମୁଁ ତ ଅତି ଦୀନଜନ ମୋର କେହି ନାହିଁ
ତବ ପଦାରବିନ୍ଦରେ ଶରଣ ଗୋସାଇଁ ।
ରକ୍ଷାକର ରକ୍ଷାକର ଆହେ ନାରାୟଣ
ଏକା ଶରଣ ରକ୍ଷକ ଅଟନ୍ତି ଆପଣ ।
ହେ ନାଥ ନିଜ କାର୍ଯ୍ୟରେ ଅବହେଳା କରି
ଦୀନା ଅନାଥ ଜନକୁ କିଏ ରକ୍ଷା କରି ।
ଏ ରୂପ ବାନ୍ଧବ କିଏ ବ୍ରହ୍ମାଣ୍ଡ ମଧ୍ୟରେ
ଆପଣ ତ ବିଜେ ନୀଳ ସୁନ୍ଦର ଶିଖରେ ।
ହେ କୃପା ସାଗର ଜଳ ଯନ୍ତ୍ର ଘଟପରି
ଉପରୁ ତଳକୁ ତଳୁ ଉପରେ ବିହରି ।
ଉତ୍‌ଥାନ ପତନ ଦୁଃଖ ପାଏ ନିରନ୍ତର
ଆହେ ପ୍ରଭୁ ନମସ୍କାର ପରିତ୍ରାଣ କର ।
କୌତୁକେ ଆପଣ ମୁକ୍ତି କରନ୍ତି ପ୍ରଦାନ
କୁଟୁମ୍ବ ପୋଷଣେ ମୂର୍ଖ ମାଗେ ଧନଧାନ୍ୟ ।
ଆପଣଙ୍କର ଦୁସ୍ତ୍ୟଜା-ମାୟାରେ ମୋହିତ
ହୋଇଥାନ୍ତି ମୂଢ଼ଜନ ଯେଣୁ ଭ୍ରାନ୍ତ ଚିତ୍ତ ।
ଆପଣ କେବଳ ମୁକ୍ତି କରନ୍ତି ପ୍ରଦାନ
ଆପଣଙ୍କ ନାମ କରେ ଚତୁର୍ବର୍ଗ ଦାନ ।
ନାରାୟଣ ନାରାୟଣ ମୁଖେ ଉଚ୍ଚାରିଲେ
ଧର୍ମ୍ମ ଅର୍ଥ କାମମୋକ୍ଷ ମିଳେ ତତକାଳେ ।
ହେ ନାଥ ବିଭିନ୍ନ ଯଜ୍ଞେ ଭିନ୍ନ ଭିନ୍ନ ଫଳ
ପୃଥକ ରୂପେ ପ୍ରଦାନ କର ସେହି ଫଳ ।
ସଂସାର ସାଗରେ ଢ଼େଉ ଉଠଇ ସତତ
ଜୀବ ଜଗତର ଭେଳା ରୂପେ ପରିଚିତ ।
ଭବାର୍ଣ୍ଣବେ ପଡ଼ି ମୁଗ୍ଧ ବ୍ୟକ୍ତିମାନଙ୍କର
ଜ୍ଞାନରୂପ ନୌକା ଧରି ତୁମ୍ଭେ କର୍ଣ୍ଣଧାର ।
ଦୟାରୂପ ଆହୁଲାରେ ଏହି ଭବାର୍ଣ୍ଣବ
ତାରିବାକୁ ସଦ୍ୟବ୍ୟଗ୍ର ହେଉଛ ହେ ଦେବ ।
ଏକମାତ୍ର କରେ ଭକତିରେ ନିତ୍ୟ ଧ୍ୟାନ
ତାକୁ କରିଦିଅ ପରା ସଂସାରୁ ଉତ୍ତୀର୍ଣ୍ଣ ।
ଶାସ୍ତ୍ର କହେ ଅନ୍ୟ ଅନ୍ୟ ଦେବ ଦେବୀଗଣ
ମୁକତି ଦେଇ ପାରନ୍ତି ଅଛି ଏ ପ୍ରମାଣ ।
କିନ୍ତୁ ଦେବଗଣେ ମୁକ୍ତି କରନ୍ତି ପ୍ରଦାନ
ସାଯୁଜ୍ୟ ମୁକ୍ତି ଦେବାକୁ ନ ହୁଅନ୍ତି କ୍ଷମ ।
ଏ ଦୁଃଖ ସାଗର ପାନ କରିବାକୁ ଦେବ
ଅଗସ୍ତ୍ୟ-ସ୍ୱରୂପା ତୁମ୍ଭ ଭକ୍ତି କ୍ଷମ ହେବ ।
ଆପଣଙ୍କୁ ଭକ୍ତି କରି ଶିଖିଲେ ଜୀବର
ମୁକତି ସହଜେ ମିଳେ ଆହେ ଦାମୋଦର ।

Digitized by srujanika@gmail.com

ହେ ପ୍ରଭୁ ଅଧମ ପ୍ରତି ହୁଅନ୍ତୁ ପ୍ରସନ୍ନ
ପାଦପଦ୍ମେ ଚିରଭକ୍ତି କରନ୍ତୁ ପ୍ରଦାନ ।
ଯମାଦି ଅଷ୍ଟାଙ୍ଗ ଯୋଗ ଜାଣିନାହିଁ ଦେବ
କିପରି ହୋଇବି ପାରି ଏହି ଭବାର୍ଣ୍ଣବ ।
ଧର୍ମ୍ମ ଅର୍ଥ କାମ ଏହି ତ୍ରିବର୍ଗ ସାଧନେ
ଆଦର କରନ୍ତି ସଦା ମନ୍ଦଗତି ଜନେ ।
ଅହିତକର ସାମାନ୍ୟ କ୍ଷୁଦ୍ର-ସୁଖ ଏହା
ପ୍ରାର୍ଥନା ମୁଁ କରୁନାହିଁ ଆହେ ଚଉବାହା ।
ବେଗେ ମୋତେ ଆଜ୍ଞା ହେଉ ଆହେ ଜଗନ୍ନାଥ
ଆପଣଙ୍କ ପାଦପଦ୍ମ ଚିନ୍ତିବି ସତତ ।
ସେ ସୁଖ ସାଗରେ ବୁଡ଼ି ରହିବି ଗୋସାଇଁ
ବିଷୟ ସୁଖରେ ଇଚ୍ଛା ନାହିଁ ଲକ୍ଷ୍ମୀସାଇଁ ।
ଅଶ୍ରୁପୂର୍ଣ୍ଣ ମୋତେ ଦ୍ୱିଜ କରି ବସ୍ତୁ ସ୍ତୁତି
କୃଷ୍ଣ ମୋତେ ରକ୍ଷାକର ଫେଡ଼ି ଏ ଦୁର୍ଗତି ।
ଭଗବାନଙ୍କର ପାଦପଦ୍ମ ସନ୍ନିଧାନେ
ସତ୍ୱର ପ୍ରଣାମ କଲା ହରଷିତ ମନେ ।
ଉଠି ବସିକରି ଶିରେ ଯୋଡ଼ି ବେନିକର
ଉଚ୍ଚବାକ୍ୟେ କଲା ସ୍ତୁତି ବିବିଧ ପ୍ରକାର ।
ଏ କାଳରେ ଅମ୍ବରୀଷ କ୍ଷତ୍ରିୟ ସନ୍ତାନ
ରଜଃସତ୍ତ୍ୱ ଗୁଣେ ଦେହ ତାହାର ଗଠନ ।
ଆରମ୍ଭିଲା ସ୍ତୁତି ବାକ୍ୟ ଜଗନ୍ନାଥଙ୍କର
ପ୍ରଭୋ ସହସ୍ର ସଂଖ୍ୟକ ମସ୍ତକ ତୁମ୍ଭର ।
ସହସ୍ର ବାହୁ ସହସ୍ର ଶ୍ରବଣ ନୟନ
ଏହି ଦୀନଜନ ପ୍ରତି ହୁଅ ପରସନ୍ନ ।
ଅସଂଖ୍ୟ ନାସିକା ହସ୍ତ ଅସଂଖ୍ୟ ଚରଣ
ଅସଂଖ୍ୟ ନେତ୍ର ଏ ଦୀନ କରୁଛି ପ୍ରଣାମ ।
ହେ ବିଶ୍ୱମୂର୍ତ୍ତି ଷଟ୍‌ତ୍ରିଂଶତ୍ ତତ୍ତ୍ୱରୁ ଅତୀତ
ପ୍ରପଞ୍ଚ ସମ୍ପର୍କ ଶୂନ୍ୟ-ରୂପେ ପ୍ରତିଭାତ ।
ତଥାପି ଜଗତ୍-ପ୍ରପଞ୍ଚ ରଚନା କରିଛ
ଚତୁର୍ବିଧ ଜଗତର ଆଶ୍ରୟ ହୋଇଛ ।
ଆପଣ ତ ଏକପଦ ଆଉ ତ ତ୍ରିପଦ
ତୀର୍ଥପଦ ଯେ ଅଟନ୍ତି ଅନ୍ତରୀକ୍ଷ ପଦ ।
ଆପଣଙ୍କ ପାଦପଦ୍ମ ସମ୍ଭୁତା ଜାହ୍ନବୀ
ତ୍ରିଭୁବନ-ପବିତ୍ର-କାରିଣୀ ଗଙ୍ଗାଦେବୀ ।
ଯା ନାମ ସ୍ମରଣ କଲେ ବ୍ରହ୍ମହତ୍ୟା ଦୋଷ
ବିଦୂରିତ ହୋଇଯାଏ ନ ରହେ କଲ୍ମଷ ।
ଆପଣ ତ ଶୁଭମୟ ଜଗତ୍ର ଈଶ୍ୱର
ଶୁଭଫଳ ଦାତା ଆପଣଙ୍କୁ ନମସ୍କାର ।
ସିଦ୍ଧିଲାଭ ଏହୁ ନାମ କରିଲେ କୀର୍ତ୍ତନ
ବୁଦ୍ଧିଜୀବୀ ପଣ୍ଡିତେ କରନ୍ତି ଅନ୍ୱେଷଣ ।

ଆହେ ଜଗନ୍ନାଥ ଆପଣଙ୍କ ପାଦୋଦକ
ପରମ ପବିତ୍ର ଅଟେ ତ୍ରିତାପ ନାଶକ ।
ତ୍ରିତାପରେ ତାପ ଭୋଗ କରୁଛି ଅଧମ
ତବ ପାଦପଦ୍ମେ ଭକ୍ତି କରନ୍ତୁ ପ୍ରଦାନ ।
ଏକମାତ୍ର ସ୍ୱାମ୍ମୀ ତୁମ୍ଭେ ମୋର ଜଗନ୍ନାଥ
ପାଦପଦ୍ମେ ଏକମାତ୍ର ହେଉଛି ପ୍ରଣତ ।
ପ୍ରାର୍ଥନା କରୁଛି ଆପଣଙ୍କ ପାଦତଳେ
ଅଚଳା ଭକ୍ତି ରହିବ ମୋର ସଦାକାଳେ ।
ଏତିକି ମାତ୍ର ପ୍ରାର୍ଥନା ଅଟଇ କେବଳ
ଅନ୍ୟ ପ୍ରୟୋଜନ ନାହିଁ ଆହେ ଆଦିମୂଳ ।
ପ୍ରଭୋ ଆପଣଙ୍କ ପାଦପଦ୍ମରେ ସମସ୍ତ
ପୁରୁଷାର୍ଥ ବୀଜ ରହିଅଛି ତ ନିହିତ ।
ଏ ଜୀବନ ଯେତେଦିନ ଯାଏ ରହିଥିବ
ଶ୍ରୀ ପାଦପଦ୍ମେ ଅଚଳା ଭକ୍ତିରେ ପୂଜିବ ।
ଯେଉଁ ଭକ୍ତି ବଳେ ଧାତା ସୃଷ୍ଟି କରୁଛନ୍ତି
ରୁଦ୍ର ସକଳ ଲୋକଙ୍କୁ ସଂହାର କରନ୍ତି ।
ଲକ୍ଷ୍ମୀଦେବୀ ଐଶ୍ୱର୍ଯ୍ୟ ଦାନରେ ତତପର
ହେ ଦୀନ ଦୟାଳୁ ମାଗେ ସେ ଭକ୍ତି କେବଳ ।
ଜଗନ୍ନାଥ ଅବିଦ୍ୟା ପଙ୍କରେ ହୋଇ ମଗ୍ନ
ଆଶ୍ରୟ ନ ପାଇ ଯାଉଅଛି ଏ ଜୀବନ ।
ମହିମାମୟୀ ଭକତି ଆପଣଙ୍କ ପ୍ରତି
ତଦ୍‌ଭିନ୍ନ ଅନ୍ୟ ଉପାୟ ନାହିଁ ହେ ଶ୍ରୀପତି ।
ଶ୍ରୁତି ସ୍ମୃତି ପୁରାଣରେ ବିଭିନ୍ନ ଉପାୟ
ଅଛି ତବପାଦେ ଭକ୍ତି ନ ହେଲେ ଉଦୟ ।
ସକଳ ଉପାୟ ଫଳ ନ କଲେ ପ୍ରଦାନ
ବିପରୀତେ ମୋହ-ମୁଗ୍ଧ ହୁଏ ସେହୁଜନ ।
ଜଗତ୍‌ସ୍ୱାମୀ ମୋର ଆଉ କେ ନାହିଁ ରକ୍ଷକ
ଏକମାତ୍ର ଆପଣ ତ ଅଟନ୍ତି ରକ୍ଷକ ।
ଏ ଅଧମ ଜନ ପ୍ରତି ହୁଅନ୍ତୁ ସଦୟ
ଅମ୍ବରୀଷ ସ୍ତବ କଲେ ପ୍ରଭୁଙ୍କର ଜୟ ।
ଜଗନ୍ନାଥଙ୍କର ପାଦପଦ୍ମ ନିକଟରେ
ଦଣ୍ଡବତ ପ୍ରଣାମ ଯେ ଆନନ୍ଦେ କରିଲେ ।
ପ୍ରସନ୍ନ ହୁଅ, ପ୍ରସନ୍ନ ହୁଅ ପ୍ରଭୁ ମୋର
ତତ୍‌ପରେ ଦେବତାଗଣ ମିଳିଲେ ସେଠାର ।
ପ୍ରଭୁଙ୍କର ସ୍ତୁତି ପଢ଼ି ପୂଜା ଶେଷ କଲେ
କଟାକ୍ଷ ପାତେ ସନ୍ତୁଷ୍ଟ ହୋଇ ସ୍ୱର୍ଗେ ଗଲେ ।
ଅନନ୍ତର ଦ୍ୱିଜ ପୁଣ୍ଡରୀକ ଅମ୍ବରୀଷ
ନେତ୍ର ଉନ୍ମୀଳନ କରି ହୋଇଲେ ହରଷ ।
ବିଷ୍ଣୁ-ମାୟାରେ ମୋହିତ ହୋଇ ଦୁଇଜଣ
ଜ୍ଞାନଚକ୍ଷୁ ପାଇ ଲୀଳା କଲେ ଦରଶନ ।

Digitized by srujanika@gmail.com

ସ୍ୱପ୍ନରେ ଦେଖିଲା ପରି ଦେଖି ଦିବ୍ୟ ଲୀଳା
କେତେକ୍ଷଣେ ଦିବ୍ୟଭାବ ମନେ ଉପୁଜିଲା ।
ପୁନରାୟ ମାନୁଷ ଭାବରେ ଉପନୀତ
ଚର୍ମ୍ମ-ଚକ୍ଷୁରେ ଦର୍ଶନ କଲେ ଜଗନ୍ନାଥ ।
ଦିବ୍ୟ ସିଂହାସନେ ସମାସୀନ ଦେହ କାନ୍ତି
ନୀଳ ମେଘ ବର୍ଣ୍ଣପରି ଶୋଭା ପାଏ ଅତି ।
ପ୍ରସ୍ଫୁଟିତ ପଦ୍ମଫୁଲ ପରି ସୁଶୋଭନ
ହେଉଅଛି ପ୍ରଭୁଙ୍କର ଦୁଇଟି ନୟନ ।
ଅଧର ଦାଡ଼ିମୀ ରଙ୍ଗ ନାସିକା ସୁନ୍ଦର
କର୍ଣ୍ଣେ ଶୋଭାପାଏ ଦିବ୍ୟ କୁଣ୍ଡଳ ତାଙ୍କର ।
କଣ୍ଠେ ଶୋହେ ବନମାଳା ଚାରିଗୋଟି ହାତ
ଶଙ୍ଖ ଚକ୍ର ଗଦା ପଦ୍ମ ଅତି ସୁଶୋଭିତ ।
ଗଳାରୁ ଲମ୍ବିଛି ହାର ବକ୍ଷସ୍ଥଳ ଯାଏ
ଅମୂଲ୍ୟ ମଣି ମୁକୁଟ ଶିର ଶୋଭାପାଏ ।
ଶ୍ରୀବତ୍ସ ଚିହ୍ନ କୌସ୍ତୁଭମଣି ବକ୍ଷସ୍ଥଳେ
ଉତ୍ତମ ଦିବ୍ୟ ଅଙ୍ଗଦ ଶୋଭଇ ହସ୍ତରେ ।
ଆଜାନୁଲମ୍ବିତ ବାହୁ ଦୀନାର୍ତ୍ତ-ବ୍ୟକ୍ତିର
ପରିତ୍ରାଣ କରିବାକୁ ବଦ୍ଧ-ପରିକର ।
ସୁବର୍ଣ୍ଣ-ସୂତ୍ରେ ଗ୍ରଥିତ ମଧ୍ୟ-ମଣିଯୁକ୍ତ
ଦିବ୍ୟ-ପୀତବସ୍ତ୍ର-ଧାରୀ ଦେହ ସୁଶୋଭିତ ।
ଦିବ୍ୟମାଳା ଦିବ୍ୟଗନ୍ଧ ହୋଇ ବିଭୂଷଣ
ସୁବର୍ଣ୍ଣ ପଦ୍ମାସନରେ ବିଜେ ଭଗବାନ ।
ଲକ୍ଷ୍ମୀଦେବୀ କରିଛନ୍ତି ସର୍ବାଙ୍ଗାଲିଙ୍ଗନ
ବିପନ୍ନ-ଜନ-ସନ୍ତାପ କରନ୍ତି ହରଣ ।
ସୁଗଭୀର ସୁଧାସିନ୍ଧୁ ରୂପେ ବିଦ୍ୟମାନ
ସକଳ କାମନା ରାଶି କରନ୍ତି ପ୍ରଦାନ ।
ପୁଷ୍ପବନ୍ତ କଳ୍ପ ବୃକ୍ଷ ରୂପେ ବିରାଜିତ
ତ୍ରିଭୁବନ ପାଳନ ବିଷୟେ ସମରଥ ।
ଦକ୍ଷପାର୍ଶ୍ୱେ ହଳାୟୁଧ-ଧାରୀ ବଳରାମ
ରହିଛନ୍ତି ଶିରେ ସପ୍ତଫଣା ସୁଶୋଭନ ।
ନାଗରାଜା ବାସୁକୀର ଏକି ଅବତାର
ବଳରାମଙ୍କ ଉଚ୍ଚତା କୈଳାସ ଶିଖର ।
ଉଜ୍ଜ୍ୱଳ ମଣିକୁଣ୍ଡଳ କର୍ଣ୍ଣେ ପାଏ ଶୋଭା
ଧବଳବର୍ଣ୍ଣ ଶରୀର ତ୍ରିଭୁବନ ଲୋଭା ।
ପରିଧାନ ତାହାଙ୍କର ସୁନୀଳ ବସନ
ଗଳଦେଶେ ବନମାଳା ଦିଶେ ସୁଶୋଭନ ।
ବାରୁଣୀ ମଦ୍ୟେ ନୟନ କମଳ ଘୂର୍ଣ୍ଣିତ
ପୃଷ୍ଠବଂଶ ନୀଚ ବକ୍ଷସ୍ଥଳ ସମୁନ୍ନତ ।
କୁଣ୍ଡଳୀ ଭୂତ ଦେହରେ ବିବିଧାଳଙ୍କାର
ପ୍ରଣତ ବ୍ୟକ୍ତି ଦର୍ଶନ କଲେ ପାପ ଦୂର ।
ବଳରାମ ଜଗନ୍ନାଥ ଦୁହିଁଙ୍କ ମଧ୍ୟରେ
ମଙ୍ଗଳମୟୀ ସୁଭଦ୍ରା ଦେବୀ ବାସ କରେ ।
କୁଙ୍କୁମ ରଙ୍ଗେ ରଞ୍ଜିତ ଶରୀର ତାଙ୍କର
ସକଳ ପ୍ରକାର ସୌନ୍ଦର୍ଯ୍ୟର ସେ ଆଧାର ।
ବିଷ୍ଣୁବକ୍ଷ ସ୍ଥିତା ଲକ୍ଷ୍ମୀ ପୃଥକ ଭାବରେ
ସୁଭଦ୍ରା ନାମେ ବିଜୟେ ପ୍ରଭୁଙ୍କ ମଧ୍ୟରେ ।
ହସ୍ତେ ମନୋହର ପଦ୍ମ କରିଣ ଧାରଣ
ଦିବ୍ୟ ନେପଥ୍ୟରେ ହୋଇଛନ୍ତି ବିଭୂଷଣ ।
ବିପନ୍ନ ଜନର ସର୍ବ ବିପତ୍ତି ନାଶିନୀ
କଳ୍ପ ଲତିକା ସ୍ୱରୂପା ଫଳପ୍ରଦାୟିନୀ ।
ସଂସାର ସାଗରେ ମଗ୍ନ ଜନମାନଙ୍କର
ନିସ୍ତାର କାରିଣୀ ରୂପେ ସୁଖ୍ୟାତି ତାଙ୍କର ।
ଦେବଗଣଙ୍କୁ ଅଭୟ କରନ୍ତି ପ୍ରଦାନ
ବାମପାର୍ଶ୍ୱେ ମନୋହର ଚକ୍ର ସୁଦର୍ଶନ ।
ପୁଣ୍ଡରୀକ ଅମ୍ବରୀଷ କଲେ ଦରଶନ
ଦୁଇଜଣ ଧନ୍ୟ ହେଲେ ଆହେ ମୁନିଗଣ ।
ସେ ଦୁହେଁ ଦେଖିଲେ ସ୍ୱର୍ଣ୍ଣ-ରେଖା ବିଭୂଷିତ
ଦାରୁମୟ ଦେହ ଧରିଛନ୍ତି ଜଗନ୍ନାଥ ।
ବଳରାମ ସୁଭଦ୍ରା ଯେ ଚକ୍ର ସୁଦର୍ଶନ
ଚତୁର୍ଦ୍ଧା ରୂପେ ବିଜୟ ସ୍ୱୟଂ ଭଗବାନ ।
ତହୁଁ ସ୍ୱପନରେ ଲୀଳା କରିଲେ ସ୍ମରଣ
ଏ ନୁହେଁ କାଷ୍ଠ ପ୍ରତିମା ସାକ୍ଷାତରେ ବ୍ରହ୍ମ ।
ସଭାସ୍ଥିତ ଦ୍ୱିଜଗଣ ବାକ୍ୟ ସୁମରିଲେ
ନିଜକୁ ମହାପାତକୀ ବୋଲି ବିଚାରିଲେ ।
ଏପୁର ବାସୀ କରନ୍ତି ବିଷ୍ଣୁ ଦରଶନ
ଆମ୍ଭର ଭାଗ୍ୟରେ କାହୁଁ ହେବ ତା ଘଟନ ।
ଆମ୍ଭେ ଦୁହେଁ ମୂର୍ଖ, କିନ୍ତୁ ଦରଶନ ମାତ୍ର
ଅଷ୍ଟାଦଶ ବିଦ୍ୟାରେ ତ ହୋଇଛି ପଣ୍ଡିତ ।
ଅତଏବ ଆମ୍ଭ ଦୁହିଁଙ୍କର ନାହିଁ ଭ୍ରାନ୍ତି
ସତ୍ୟବାଦୀ ବିପ୍ରଗଣେ ପରା କହିଛନ୍ତି ।
ସମୁଦ୍ର ତଟେ ପୁରୁଷୋତ୍ତମ କ୍ଷେତ୍ରବରେ
ଦାରୁମୟ ବ୍ରହ୍ମ ବିଜେ ବଟବୃକ୍ଷ ମୂଳେ ।
ତାହାଙ୍କୁ କଲେ ଦର୍ଶନ ଜୀବ ହୁଏ ମୁକ୍ତ
ଚତୁର୍ଦ୍ଧା ରୂପେ ବିଜୟ ତହିଁ ଜଗନ୍ନାଥ ।
ଆମ୍ଭେ ଦୁହେଁ ଯେତେକାଳ ଜୀବିତ ରହିବା
ସାମାନ୍ୟ କାମନା ପରିତ୍ୟାଗ ଯେ କରିବା ।
ଏ କ୍ଷେତ୍ରେ ରହି କରିବା ପ୍ରଭୁଙ୍କ ଦର୍ଶନ
ନ କରିବା ଆଉ ଅନ୍ୟ ସ୍ଥାନକୁ ଗମନ ।
ଏହିରୂପେ ହେଲେ ଦୁହେଁ ଭକ୍ତି ପରାୟଣ
ନାରାୟଣ ନାମ ସଦା କଲେ ଉଚ୍ଚାରଣ ।

Digitized by srujanika@gmail.com

କୀର୍ତ୍ତନ ସେ ଦୁହେଁ କରି ହୋଇଲେ ମୁକତ
ଶୁଣିଲ ତ ମୁନିଗଣ ଶ୍ରୀକ୍ଷେତ୍ର ଚରିତ ।
ଜୈମିନି କଥା ପ୍ରସଙ୍ଗେ କହିଲେ ଏକଥା
ପାପ ନାଶକର ଗୋପନୀୟ କ୍ଷେତ୍ର ବାର୍ତ୍ତା ।
ପୁଣ୍ଡରୀକ ଅମ୍ବରୀଷଙ୍କର ଉପାଖ୍ୟାନ
ଶ୍ରବଣ ଅବା କୀର୍ତ୍ତନ କରିବେ ଯେ ଜନ ।
ସେମାନେ ପାପରୁ ମୁକ୍ତ ହେବେ ସେହିକ୍ଷଣ
ଅନ୍ତିମେ କରିବେ ବିଷ୍ଣୁଲୋକଙ୍କୁ ଗମନ ।
ସ୍କନ୍ଦ ପୁରାଣ ଉତ୍କଳ ଖଣ୍ଡର ଚରିତ
ପଞ୍ଚମ ଅଧ୍ୟାୟ ହେଲା ଗୀତେ ସମାପତ ।
ଆହେ ସୁଜ୍ଞଜନେ ମୋର ଦୋଷ ନ ଧରିବ
ମରାଳ ଧର୍ମ୍ମ ଆଚରି ଗୁଣ ବାଛିନେବ ।
କର୍ମ୍ମଯୋଗ ଜ୍ଞାନ ଭକ୍ତି ନ କଲି ସାଧନ
ହ-ର-ଇ, ବର୍ଣ୍ଣ କେବଳ କରେ ଉଚ୍ଚାରଣ ।
ଜୟ ମାତଃ ଲକ୍ଷ୍ମୀଦେବୀ ହୁଅ ସୁପ୍ରସନ୍ନ
ହରିହର ମନୋବାଞ୍ଛା ହୋଇବ ପୂରଣ ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳ ଖଣ୍ଡେ
ପୁରୁଷୋତ୍ତମ କ୍ଷେତ୍ର ବର୍ଣ୍ଣନେ
ପୁଣ୍ଡରୀକ ଅମ୍ବରୀଷ ଉପାଖ୍ୟାନେ
ନାମ ପଞ୍ଚମୋଽଧ୍ୟାୟଃ ।

□□

## ଷଷ୍ଠ ଅଧ୍ୟାୟ

ପଚାରନ୍ତି ମୁନିଗଣ ଆହେ ତପୋବନ୍ତ
କେଉଁ ଦେଶେ ଅଟେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ।
ସେ କ୍ଷେତ୍ରରେ କରିବାକୁ ଭକ୍ତ-ପରିତ୍ରାଣ
ଦାରୁବ୍ରହ୍ମ-ରୂପେ ବିଜେ ଶ୍ରୀ ପୁରୁଷୋତ୍ତମ ।
କହନ୍ତି ଜୈମିନି ମୁନି ଉତ୍କଳ ନାମରେ
ପରମ ପବିତ୍ର ଦେଶ ଖ୍ୟାତ ପୃଥିବୀରେ ।
ସେ ଦେଶରେ ନାନାତୀର୍ଥ ଅତି ପୁଣ୍ୟସ୍ଥାନ
ବିଦ୍ୟମାନ ରହିଅଛି ଶୁଣ ମୁନିଗଣ ।
ସେ ଦେଶ ଦକ୍ଷିଣ ସିନ୍ଧୁ-ତଟେ ପ୍ରତିଷ୍ଠିତ
ଦେଶ-ଅଧିବାସୀ ଗଣ ସଦାଚାରେ ଖ୍ୟାତ ।
ବ୍ରାହ୍ମଣଗଣ ବେଦଜ୍ଞ ବେଦ ଅଧ୍ୟୟନ
କରନ୍ତି ଯଥା ବିଧିରେ ଯାଗ-ଯଜ୍ଞ-କର୍ମ୍ମ ।
ସେହି ଦେଶ ଅଷ୍ଟାଦଶ ବିଦ୍ୟାର ଯେ ଖଣି
ଲକ୍ଷ୍ମୀ ଦେବୀ ନାରାୟଣଙ୍କର ଆଜ୍ଞା ମାନି ।
ଗୃହେ ଗୃହେ ବିରାଜିତା ଦେଶବାସୀଙ୍କର
ସାର୍ଥକ ହୋଇବ ନାମ ଉତ୍କଳ ଦେଶର ।
ସେ ଦେଶେ ବୈଷ୍ଣବ ଧର୍ମ୍ମ ଦୀକ୍ଷିତ ସକଳ
ସତ୍ୟବାଦୀ ମାତା ପିତୃଭକ୍ତ ଲଜ୍ଜାଶୀଳ ।
ବିନୟୀ ଅଟନ୍ତି ଆଧି ବ୍ୟାଧି କ୍ଳେଶହୀନ
ନାସ୍ତିକ କପଟ ଧର୍ମ୍ମୀ ଲୋକ ତହିଁ ଶୂନ୍ୟ ।
ସକଳେ ପରହିତୈଷୀ ତ୍ଲୋଭୀ ଶଠ ଖଳ
ଦୁରାଚାରୀ ଲୋକ ତହିଁ ନାହାନ୍ତି କେବଳ ।
ସେ ଦେଶରେ ଦୀର୍ଘଜୀବୀ ସର୍ବ ଜନଗଣ
ପ୍ରତି ଗୃହେ ପତି ପରାୟଣା ନାରୀଗଣ ।
ସୁଶୀଳ ଧର୍ମ୍ମ ଚାରିଣୀ ଆଉ ଲଜ୍ଜାବତୀ
ଚରିତ୍ର ଗୁଣରେ ବିଭୂଷିତା ନାରୀ ଜାତି ।
ସକଳ ରମଣୀ ରୂପ ଯୌବନ ଗର୍ବିତା
ନାନାବିଧ ଭୂଷଣରେ ଶରୀର ଭୂଷିତା ।
କୁଳଶୀଳ ବୟସ ସଦୃଶ ସଦାଚାର
ପାଳିବାକୁ ନାରୀଜାତି ସର୍ବଦା ତତ୍ପର ।
ଉତ୍କଳେ କ୍ଷତ୍ରିୟଗଣ ସ୍ୱଧର୍ମ ନିରତ
ପ୍ରଜା ପାଳନ ବିଷୟେ ସର୍ବଦା ଜାଗ୍ରତ ।
ଅସ୍ତ୍ର ଶସ୍ତ୍ର ବିଦ୍ୟା ବିଶାରଦ ବହୁଦାତା
ଦକ୍ଷିଣା ପ୍ରଚୁର ଦେଇ ବହୁଯାଗ କର୍ତ୍ତା ।
ତାହାଙ୍କର ଗୃହେ ଗୃହେ କାଞ୍ଚନ ଭୂଷିତ
ଯଜ୍ଞରୂପ କାଷ୍ଠ ଶୋଭାପାଏ ଅବିରତ ।
ତାଙ୍କ ଗୃହକୁ ଆସିଲେ ଅତିଥି ସକଳ
ଉତ୍ତମରୂପେ ସତ୍କାର ପାନ୍ତି ବେଳୁଁ ବେଳ ।
ଶୁଣ ଉତ୍କଳରେ ବୈଶ୍ୟମାନଙ୍କ ଆଚାର
କୃଷି ଗୋରକ୍ଷା ବାଣିଜ୍ୟ କାର୍ଯ୍ୟେ ଧୁରନ୍ଧର ।
ଭକ୍ତିଭରେ ଶକ୍ତି ଅନୁରୂପ ଅର୍ଥ ଦାନ
ପୂଜନ୍ତି ଗୁରୁ ଦେବତା ବ୍ରାହ୍ମଣ ଚରଣ ।
କେହି ଯାଚକ ଗୃହରେ ହେଲେ ଉପସ୍ଥିତ
ତାର ଇଚ୍ଛା ଅନୁରୂପ ଅର୍ଥ ହୁଏ ପ୍ରାପ୍ତ ।
ଆଉ ଅନ୍ୟ ଦାତା ଅନ୍ୱେଷଣ ନ କରଇ
ଅଭୀଷ୍ଟ ପୂରଣ କରି ଗୃହେ ଚଳିଯାଇ ।
ସେ ଦେଶବାସୀ ସକଳ ଅତି ବୁଦ୍ଧିମାନ
କାବ୍ୟ ନାଟକାଦି ଶିଳ୍ପ ବିଦ୍ୟାରେ ନିପୁଣ ।
ଶୂଦ୍ରଗଣ ପ୍ରିୟବାଦୀ ଧର୍ମ୍ମ ପରାୟଣ
ସ୍ନାନ ଦାନାଦି ସତ୍କର୍ମ କରି ଆଚରଣ ।
କାୟ ମନୋବାକ୍ୟେ ଅର୍ଥ ଦାନେ ତତପର
ସ୍ୱ-ଇଚ୍ଛାରେ କରିଥାନ୍ତି ସେବା ବ୍ରାହ୍ମଣର ।
ଆଉ ସେ ଦେଶେ ଅଛନ୍ତି ଯେ ପାଟକ ଜାତି
ଜାତୀୟତା କର୍ମ କରି ସ୍ୱ-ଧର୍ମ ପାଳନ୍ତି ।
ବର୍ଷାକାଳ ହେଲେ ମେଘ ତ୍ସେ ଦେଶେ ବର୍ଷଇ
ଅକାଳ ବୃଷ୍ଟି ଝଟିକା ତହିଁ ନ ହୁଅଇ ।
କେବେହେଲେ ଶସ୍ୟହାନି ସେ ଦେଶେ ନୁହଇ
ବାତ୍ୟା ଅତିବୃଷ୍ଟି ଅନାବୃଷ୍ଟି ନାହିଁ ତହିଁ ।

Digitized by srujanika@gmail.com

ପ୍ରଜାଗଣ ନ ହୁଅନ୍ତି କ୍ଷୁଧାରେ କାତର
ଦୁର୍ଭିକ୍ଷ ନ ପଡ଼େ ତହିଁ ଆଉ ହା-ହା କାର ।
ମଡ଼କ ନ ହୁଏ ରାଷ୍ଟ୍ର ବିପ୍ଳବ ନୁହଇ
ପୃଥିବୀସ୍ଥ ସର୍ବବସ୍ତୁ ସୁଲଭେ ମିଳଇ ।
ଈଦୃଶ ଗୁଣରେ ପୂର୍ଣ୍ଣ ସେ ଉତ୍କଳ ଦେଶ
ନାନାବିଧ ବୃକ୍ଷଲତା ତହିଁ ହୁଏ ଦୃଶ୍ୟ ।
ଅର୍ଜ୍ଜୁନ ଅଶୋକ ତାଳ ପୁନ୍ନାଗ ହିନ୍ତାଳ
ଶାଳ ପ୍ରାଚୀନାମଳକ ଲୋଧ୍ର ନାରିକେଳ ।
ବକୁଳ ନାଗକେଶର ପନସ ପିଆଳ
କପିତ୍‌ଥ ଚମ୍ପକ, କର୍ଣ୍ଣକାର ଯେ ପାଟଳ ।
କଦମ୍ବ ନିମ୍ବ ନିଚୁଳ ଆମ୍ର କୋବିଦାର
ଆମଳକ ନାଗରଙ୍ଗ କଦମ୍ବ ଜମ୍ବୀର ।
ମାତୁଳଙ୍ଗ ପାରିଜାତ ନ୍ୟଗ୍ରୋଧ ମନ୍ଦାର
ଅଗୁରୁ ଚନ୍ଦନ ଆମ୍ରାତକ ଯେ ଖର୍ଜ୍ଜୁର ।
ସିଦ୍ଧ ମୁଚୁକୁନ୍ଦ ଆଉ କିଂଶୁକ ତିନ୍ଦୁକ
ସପ୍ତପର୍ଣ୍ଣ ବିଭୀତକ ଇତ୍ୟାଦି ଅନେକ ।
ବୃକ୍ଷ ରାଜିରେ ଉତ୍କଳ ଦେଶ ମନୋହର
ମାଳତୀ କେତକୀ କୁନ୍ଦ, ବାଣ କରବୀର ।
ଅତିମୁକ୍ତ କୁବ୍ଜ ଏଳା ଲବଙ୍ଗ କକ୍‌କୋଳ
ଦାଡ଼ିମ ବୀଜପୂରକ ନାନାବିଧ ଫୁଲ ।
ଶତ ଶତ ପୁଷ୍ପ ଉଦ୍ୟାନରେ ଦେଶ ପୂର୍ଣ୍ଣ
ମନଦେଇ ଶୁଣ ଆହେ ଦ୍ୱିଜୋତ୍ତମ ଗଣ ।
ବିବିଧ ପର୍ବତ ବୃକ୍ଷ ଲତାରେ ବେଷ୍ଟିତ
ବହୁ ନଦୀଦ୍ୱାରା ଦେଶ ଅତି ସୁଶୋଭିତ ।
ସର୍ବ ଦେଶ ମଧ୍ୟେ ଶ୍ରେଷ୍ଠ ଏ ଉତ୍କଳଦେଶ
ପୃଥିବୀର ଚୂଡ଼ାମଣି, ସଦୃଶ ପ୍ରକାଶ ।
ଦକ୍ଷିଣେ ସିନ୍ଧୁ ଗାମିନୀ ଋଷିକୁଲ୍ୟା ନଦୀ
ଉତ୍ତରେ ସୁବର୍ଣ୍ଣରେଖା ଆଉ ମହାନଦୀ ।
ଯେତେ ପ୍ରଦେଶ ଏହାର ମଧ୍ୟେ ଅବସ୍ଥିତ
ଶ୍ରୀପୁରୁଷୋତ୍ତମ କ୍ଷେତ୍ର ନାମେ ପରିଚିତ ।
ଶୁଣ ସର୍ବେ ଏ ପ୍ରଦେଶେ ବହୁବିଧ କ୍ଷେତ୍ର
ତୀର୍ଥଯାତ୍ରା କଲାବେଳେ ହେଲୁ ପରିଚିତ ।
ସେହି କଥା ତୁମ୍ଭ ନିକଟରେ କଲୁ ବ୍ୟକ୍ତ
ଭୂ-ସ୍ୱର୍ଗନାମେ ଉତ୍କଳ ଦେଶ ପରିଚିତ ।
ଉତ୍କଳ ଭାଷାରେ ଷଷ୍ଠ ଛାନ୍ଦ ହେଲା ଶେଷ
କରନ୍ତୁ ଉତ୍କଳ ଦେଶ-ରକ୍ଷା ହୃଷୀକେଶ ।
ହେ ମାତ ଦେଶ ମାତୃକେ କରତୁ ଗ୍ରହଣ
ଶତମଷ୍ଟୋତ୍ତରବାର କରୁଛି ପ୍ରଣାମ ।
ପୁରାଣରେ ବ୍ୟାସଦେବ ଲେଖିଲେ ଯତନ
ଜୈମିନି ମୁନି ଯେ ଦେଶ କଲେ ଦରଶନ ।
ନୀଳ ସୁନ୍ଦର ପର୍ବତ ଯହିଁ ବିରାଜିତ
ନୀଳାଦ୍ରୀଶ ପଦ-ସ୍ପର୍ଶେ ହୋଇଛି ପବିତ୍ର ।
ସେ ଦେଶେ ଜନମ ହୋଇ ଉଦର ଚିନ୍ତାରେ
ଦିନ ମିଳୁନାହିଁ-ରାତି କଟୁଛି ନିଦ୍ରାରେ ।
କର୍ମ-ଯୋଗ-ଜ୍ଞାନ ଭକ୍ତ, ସାଧନ ନ କଲି
ଶ୍ରୀଗୁରୁ ପଦ-ପଙ୍କଜ ସେବା ନ କରିଲି ।
ଅନିତ୍ୟ କାର୍ଯ୍ୟରେ ନିତି ବଢୁଅଛି ଶ୍ରଦ୍ଧା
ମାଆ ବୋଲି ଉଚ୍ଚସ୍ୱରେ ଡାକେ ନାହିଁ କଦା ।
ହେ ମାତା ଜନମଭୂମି ହୁଅତୁ ପ୍ରସନ୍ନ
ଜଗନ୍ନାଥ ପାଦ-ପଦ୍ମ ଚିନ୍ତି ଅନୁକ୍ଷଣ ।
ଚର୍ମ୍ମ ନେତ୍ରେ ମହାପ୍ରଭୁ କରିବି ଦର୍ଶନ
ଶିରେ କରଯୋଡ଼ି ମାଗେ ହରିହର ଦୀନ ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳଖଣ୍ଡେ
ଉତ୍କଳ ବର୍ଣ୍ଣନଂ ନାମ
ଷଷ୍ଟୋଽଧ୍ୟାୟଃ ।

## ସପ୍ତମ ଅଧ୍ୟାୟ

ପଚାରନ୍ତି ଋଷିଗଣ ମହର୍ଷି ପ୍ରଧାନ
କେଉଁ ଯୁଗେ ଇନ୍ଦ୍ରଦ୍ୟୁମ୍ନ ହୋଇଲେ ରାଜନ ।
କେଉଁ ଦେଶେ ତାହାଙ୍କର ଅଟଇ ଭବନ
ପୁରୁଷୋତ୍ତମ କ୍ଷେତ୍ରକୁ ଗଲେ କି କାରଣ ।
କି ନିମନ୍ତେ କଲେ ବିଷ୍ଣୁ-ପ୍ରତିମା ନିର୍ମାଣ
ଯଥାଯଥ ରୂପେ ଏହା କରନ୍ତୁ ବର୍ଣ୍ଣନ ।
ଆମ୍ଭମାନଙ୍କର ଏହି ସକଳ ବୃତ୍ତାନ୍ତ
ଶୁଣିବାକୁ ମନେ କୌତୁହଳ ହୁଏ ଜାତ ।
କହନ୍ତି ଜୈମିନି-ମୁନି ଶୁଣ ଋଷିଗଣ
ସର୍ବପାପ କ୍ଷୟକାରୀ-କଥା ପୁରାତନ ।
ପବିତ୍ର ମଙ୍ଗଳକର ଭୁକ୍ତି ମୁକ୍ତିପ୍ରଦ
ସତ୍ୟଯୁଗର କାହାଣୀ ନାଶଇ ବିପଦ ।
ଆଶ୍ଚର୍ଯ୍ୟ ଚରିତ କଲେ ରାଜା ଇନ୍ଦ୍ରଦ୍ୟୁମ୍ନ
ବ୍ରହ୍ମାଙ୍କର ପଞ୍ଚମ-ପୁରୁଷେ ହୋଇ ଜନ୍ମ ।
ସାତ୍ତ୍ୱିକ ଅଗ୍ରଣୀ, ସତ୍ୟବାଦୀ ସମାଚାରୀ
ନ୍ୟାୟପଥେ ପୁତ୍ରତୁଲ୍ୟ ପ୍ରଜା ରକ୍ଷାକାରୀ ।
ଆତ୍ମ-ତତ୍ତ୍ୱ ଜ୍ଞାନଚର୍ଚ୍ଚା ନିରତ ସତତ
ଧୀର ଉଦ୍‌ଯୋଗୀ ସଂଗ୍ରାମେ ବିଜୟୀ ବିଖ୍ୟାତ ।
ସଦ୍ୟ ବ୍ରାହ୍ମଣ ପୂଜକ ଆଉ ପିତୃଭକ୍ତ
ବୃହସ୍ପତି ସମ ଅଷ୍ଟାଦଶ ବିଦ୍ୟାବନ୍ତ ।
ଐଶ୍ୱର୍ଯ୍ୟରେ ଇନ୍ଦ୍ରସମ ଧନରେ କୁବେର
ରୂପବାନ ସୁଭଗା ସୁଶୀଳ ଦାନବୀର ।

Digitized by srujanika@gmail.com

ଭୋକ୍ତା ପ୍ରିୟବାଦୀ ସଦାକାଳେ ଯଜ୍ଞକାରୀ
ବ୍ରହ୍ମନିଷ୍ଠ ସ୍ୱପ୍ରତିଜ୍ଞା ସଦା ରକ୍ଷାକାରୀ ।
ପୂର୍ଣ୍ଣିମା ଚନ୍ଦ୍ରର ନ୍ୟାୟ ନର ନାରୀଙ୍କର
ପ୍ରିୟପାତ୍ର ସୂର୍ଯ୍ୟସମ ଦୁର୍ନିରୀକ୍ଷ ବୀର ।
ଶତ୍ରୁପକ୍ଷ ଜୟକାରୀ ବୈଷ୍ଣବ ପ୍ରଧାନ
କ୍ରୋଧଜୟୀ ଜିତେନ୍ଦ୍ରିୟ ସତ୍ୟ ପରାୟଣ ।
ରାଜସୂୟ ମହାଯଜ୍ଞ, ଶତ ଅଶ୍ୱମେଧ
କରିଥିଲେ ଲଭିବାକୁ ଅନ୍ତେ ବିଷ୍ଣୁପଦ ।
ଅମରାବତୀ ସମାନ ସର୍ବରତ୍ନେ ଯୁକ୍ତ
ଅବନ୍ତୀ ନାମେ ନଗରୀ ପୃଥିବୀ ବିଖ୍ୟାତ ।
ସେହି ନଗରୀର ରାଜା ନାମ ଇନ୍ଦ୍ରଦ୍ୟୁମ୍ନ
ସକଳ ଗୁଣ ଭୂଷିତ ପୃଥିବୀ ମଣ୍ଡନ ।
ରାଜ ଭବନରେ ରହି ବିଷ୍ଣୁଙ୍କର ପ୍ରତି
ଅଚଳାଭକ୍ତି ଶ୍ରଦ୍ଧାରେ ନିତି କରିଥାନ୍ତି ।
ଏପରି ସେ ରାଜା ଇନ୍ଦ୍ରଦ୍ୟୁମ୍ନ ଏକଦିନ
ଦେବାର୍ଚ୍ଚନ ଗୃହେ କଲେ ଶ୍ରୀପତି ପୂଜନ ।
ରାଜାଙ୍କ ସମୀପେ ଉପସ୍ଥିତ ସେତେବେଳେ
ଦୈବଜ୍ଞ ପଣ୍ଡିତ କବି ଶୋତ୍ରିୟ ସକଳେ ।
ତୀର୍ଥଯାତ୍ରା ପ୍ରସ୍ତାବକ ବ୍ରାହ୍ମଣ ସହିତ
ପୁରୋହିତ ଆସି ତହିଁ ହେଲେ ଉପସ୍ଥିତ ।
ଏମାନଙ୍କୁ ଯଥାବିଧି ସମ୍ମାନନା କଲେ
ରାଜା ଇନ୍ଦ୍ରଦ୍ୟୁମ୍ନ ପ୍ରିୟ ବଚନ ଭାଷିଲେ ।
ଆମ୍ଭେମାନେ ଜାଣିଅଛୁ କେତେ କ୍ଷେତ୍ର ନାମ
କେଉଁ କ୍ଷେତ୍ରେ ଜଗନ୍ନାଥ ଦିଅନ୍ତି ଦର୍ଶନ ।
ନରନାରୀ ଚର୍ମଚକ୍ଷୁ କରିଣ ଧାରଣ
କେଉଁ କ୍ଷେତ୍ରେ ଜଗନ୍ନାଥ କରନ୍ତି ଦର୍ଶନ ।
ବିଷ୍ଣୁଭକ୍ତ ନୃପ ଶ୍ରେଷ୍ଠ ରାଜା ଆଦେଶରେ
ପୁରୋହିତେ ତୀର୍ଥ ଯାତ୍ରୀମାନଙ୍କୁ ପୁଚ୍ଛିଲେ ।
ତୀର୍ଥଯାତ୍ରୀ ତୁମ୍ଭେମାନେ କର ପର୍ଯ୍ୟଟନ
କେଉଁ କ୍ଷେତ୍ରେ ଭଗବାନ ଦିଅନ୍ତି ଦର୍ଶନ ।
ଆପଣମାନେ ଧାର୍ମିକ ବୁଲି ବହୁ ତୀର୍ଥ
ଦେଖିଛନ୍ତି କାହିଁ ପୁଣି ଅଛି ଏ ବୃତ୍ତାନ୍ତ ।
ଶ୍ରେଷ୍ଠବକ୍ତା ବହୁ ତୀର୍ଥଗାମୀ ଏକ ଜଣ
ପୁରୋହିତ ବାକ୍ୟ ଶୁଣି କହିଲେ ଏସନ ।
କୃତାଞ୍ଜଳି ହୋଇ ଅତି ହରଷ ମନର
କହିଲେ ତୀର୍ଥକାହାଣୀ ରାଜାଙ୍କ ଛାମୁର ।
ବାଲ୍ୟକାଳରୁ ଯେ ତୀର୍ଥ କରୁଛି ଭ୍ରମଣ
କେତେ ତୀର୍ଥ ଯାତ୍ରୀଠାରୁ କରୁଛି ଶ୍ରବଣ ।
ଭାରତବର୍ଷେ ବିଖ୍ୟାତ ଉତ୍କଳ ଦେଶରେ
ଦକ୍ଷିଣ ସମୁଦ୍ର ତୀରେ ଅଛି ତୀର୍ଥବରେ ।।

ତାହାର ପ୍ରସିଦ୍ଧ ନାମ ଶ୍ରୀପୁରୁଷୋତ୍ତମ
ସାକ୍ଷାତ ଦିଅନ୍ତି ତହିଁ ଶ୍ରୀପୁରୁଷୋତ୍ତମ ।
ତହିଁ ନୀଳଗିରି ନାମେ ଅଛି ଯେ ପର୍ବତ
ତାର ଚତୁର୍ଦ୍ଦିଗେ ନାନାବନରେ ବେଷ୍ଟିତ ।
ସମୀପରେ ଚତୁର୍ଦ୍ଦିଗେ କ୍ରୋଶ ପରିମିତ
କଳ୍ପବୃକ୍ଷ ନାମେ ବଟବୃକ୍ଷ ଅବସ୍ଥିତ ।
ସେ ବଟବୃକ୍ଷର ତଳ ଛାୟା କଲେ ସ୍ପର୍ଶ
ଦୂର ହୋଇଯାଏ ଥିଲେ ବ୍ରହ୍ମହତ୍ୟା ଦୋଷ ।
ତା ପଶ୍ଚିମେ ବିଦ୍ୟମାନ ଯେ ରୋହିଣୀ କୁଣ୍ଡ
କାରଣ ବାରିଲେ ପୂର୍ଣ୍ଣ ହୁଏ ସେହି କୁଣ୍ଡ ।
ସେ କୁଣ୍ଡ ପୂର୍ବ ତଟରେ ବିଜେ ଭଗବାନ
ନୀଳେନ୍ଦ୍ରମଣି ନିର୍ମିତ ଦେହ ସୁଶୋଭନ ।
ସାକ୍ଷାତରେ ମୁକ୍ତି ସେହି କରନ୍ତି ପ୍ରଦାନ
ସନ୍ଦେହ ନ କର ମନେ ଶୁଣ ମୁନିଗଣ ।
ଯେ ଜନ ରୋହିଣୀ କୁଣ୍ଡ ଜଳେ କରି ସ୍ନାନ
ପୁରୁଷୋତ୍ତମଙ୍କୁ ଯାଇ କରଇ ଦର୍ଶନ ।
ସହସ୍ରେ ଅଶ୍ୱମେଧର ଫଳକୁ ସେ ପାଏ
ମର୍ତ୍ତ୍ୟଭୁବନରେ ଜୀବନ୍ମୁକ୍ତ ହୋଇଯାଏ ।
ତା ପଶ୍ଚିମେ ଶବର ଦୀପକ ନାମେ ଖ୍ୟାତ
ଏକ ଆଶ୍ରମ ଶବର ଗୃହରେ ବେଷ୍ଟିତ ।
ସେଠାରୁ ବିଷ୍ଣୁ ମନ୍ଦିର ଯିବାପାଇଁ ବାଟ
ତାହାର ନାମ ଅଟଇ ଏକପଦୀ ଘାଟ ।
ସେହିସ୍ଥାନେ ବିଜେ କରିଛନ୍ତି ଜଗନ୍ନାଥ
ଶଙ୍ଖ ଚକ୍ର ଗଦାପଦ୍ମ ଧରି ନିଜ ହାତ ।
ସେହି ଦୟାନିଧିଙ୍କର ଦର୍ଶନ ମାତ୍ରକେ
ଜୀବଗଣ ଜୀବନ୍ମୁକ୍ତ ହୁଅନ୍ତି ଛଟକେ ।
ହେ ରାଜନ ଭଗବାନ ହୋଇଲେ ପ୍ରସନ୍ନ
ଏହା ଭାବି ତପ ସାଧିଲି ଯେ ସେହିସ୍ଥାନ ।
ଏକବର୍ଷ ବିତିଗଲା ତହିଁ ପ୍ରତିଦିନ
ରାତ୍ରକାଳେ ଆସନ୍ତି ଯେ ସର୍ବ ଦେବଗଣ ।
ସମାଗତ ଦେବଗଣଙ୍କର ଦିବ୍ୟଗନ୍ଧ
ରାତ୍ର ହେଲେ ସେହିସ୍ଥାନ ହୁଅଇ ଆମୋଦ ।
ଅବିରତ ଶୁଣାଯାଏ ସ୍ତୁତିବାକ୍ୟ ମାନ
କଳ୍ପ ବୃକ୍ଷରୁ କୁସୁମ ହୁଅଇ ବର୍ଷଣ ।
ସେ ସ୍ଥାନେ ବିଷ୍ଣୁ ମହିମା ଯେ ରୂପେ ପ୍ରକାଶ
ଅନ୍ୟ ସ୍ଥାନରେ ତା ନୁହେଁ ଆହେ ନରଈଶ ।
ପୂର୍ବକାଳ କଥା ଶୁଣ ଅବନ୍ତୀର ପତି
ଏହି କାଳ ତହିଁ ଥିଲା ଅଟେ ପକ୍ଷୀଜାତି ।
ପୁଣ୍ୟ କାର୍ଯ୍ୟ କରିନାହିଁ ଅଟେ ଜ୍ଞାନହୀନ
ତୃଷାର୍ତ୍ତ ହୋଇ ରୋହିଣୀ କୁଣ୍ଡେ କଲା ସ୍ନାନ ।

Digitized by srujanika@gmail.com

ନୀଳ ମାଧବ ଦର୍ଶନ ହୋଇଲା ମୁକତ
ଚତୁର୍ଭୁଜ ହୋଇ ବିଷ୍ଣୁରୂପ ହେଲା ପ୍ରାପ୍ତ ।
ପୂର୍ବେ ଥିଲି ମୁଁ ତ ମୂର୍ଖ ଅଧମ ବ୍ରାହ୍ମଣ
ପ୍ରଭୁଙ୍କ କୃପାରେ ହୃଦେ ଜାତ ହେଲା ଜ୍ଞାନ ।
ଅଷ୍ଟାଦଶ ବିଦ୍ୟାରେ ତ ହେଲି ପାରଦର୍ଶୀ
ବୁଦ୍ଧି ସତ୍ତ୍ୱ ନିର୍ମଳ ଯେ ହୋଇଗଲା ଆସି ।
ଜଗତକୁ ବିଷ୍ଣୁ ରୂପେ କରଇ ଦର୍ଶନ
ଆଉ ଅନ୍ୟରୂପ କାହିଁ ନ କରି ଦର୍ଶନ ।
ଆପଣେ ଅଟନ୍ତି ଦୃଢ଼ ବ୍ରତ ବିଷ୍ଣୁଭକ୍ତ
ଉପଦେଶ ଦେବାଅର୍ଥେ ହେଲି ଉପସ୍ଥିତ ।
ମାଗୁନାହିଁ ଧନ ନ ମାଗଇ ଭୂମି ଦାନ
ମୋକଥା ନୁହଇ ମିଥ୍ୟା ଆହେ ନୃପରାଣ ।
ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀପୁରୁଷୋତ୍ତମ
ସାକ୍ଷାତରେ ବିଜେ କର ଯାଇ ଦରଶନ ।
ଜଟାଧାରୀ ବିପ୍ର ତହିଁ ଉପଦେଶ ଦେଇ
ସର୍ବ ସକ୍ଷମରେ ଅନ୍ତର୍ହିତ ହେଲେ ତହିଁ ।
ଇନ୍ଦ୍ରଦ୍ୟୁମ୍ନ ଏହା ଦେଖି ହୋଇଲେ ବିସ୍ମୟ
ମନେ ଚିନ୍ତାକଲେ କି କରିବେ ସେ ଉପାୟ ।
ଏ କାର୍ଯ୍ୟ ସାଧନ ପୁରୋହିତଙ୍କୁ କହିଲେ
ଆହେ ଦ୍ୱିଜୋତ୍ତମ ଶୁଣ ମୋ ବଚନ ଭଲେ ।
ଧର୍ମ ଅର୍ଥ କାମ ତିନି ତୁମ୍ଭର ଅଧୀନ
ତବ ଅନୁଗ୍ରହେ କଲି ତ୍ରିବର୍ଗ ସାଧନ ।
ଅମାନୁଷିକ ବୃତ୍ତାନ୍ତ ଶୁଣିଲି ଏକ୍ଷଣ
ମନୁଷ୍ୟ ନୁହନ୍ତି ସେ ଯେ କହିଲେ ବଚନ ।
ଯେଉଁସ୍ଥାନେ ବିଜେ କରିଛନ୍ତି ଭଗବାନ
କିପରି କରିବି ଶୀଘ୍ର ସେ ସ୍ଥାନ ଗମନ ।
ଦ୍ୱିଜଶ୍ରେଷ୍ଠ ତୁମ୍ଭେ କର ଯତ୍ନ ଏ ନିମିତ୍ତ
କିପରି ହୋଇବ ଚତୁର୍ବର୍ଗ ଫଳ ପ୍ରାପ୍ତ ।
ପୁରୋହିତ କହୁଛନ୍ତି ଶୁଣନ୍ତୁ ରାଜନ
ମୁକ୍ତିଦାତା କେଶବଙ୍କୁ କରିବେ ଦର୍ଶନ ।
ପ୍ରତିଜ୍ଞା କରି କହୁଛି କରିବି ଉପାୟ
ଚର୍ମ ଚକ୍ଷୁରେ ଦର୍ଶନ ମିଳିବ ନିଶ୍ଚୟ ।
ଅତି ପବିତ୍ର ପୁରୁଷୋତ୍ତମ କ୍ଷେତ୍ରେ ଯିବା
ସେ ସ୍ଥାନେ ଆମ୍ଭେ ସକଳେ ବସତି କରିବା ।
ଏ ସ୍ଥାନେ ଜନ୍ମି ସେ କ୍ଷେତ୍ରେ କରିବା ବସତି
ଜନ୍ମ ସାର୍ଥକ ହୋଇବ ପାଇବା ମୁକତି ।
ତମୋ ଗୁଣରୁ ଅତୀତ ସେ ପୁରୁଷୋତ୍ତମ
ମନୁଷ୍ୟ ହୋଇ ଚକ୍ଷୁରେ କରିବେ ଦର୍ଶନ ।
ହେ ରାଜନ ଆମ୍ଭ ସାନଭାଇ ବିଦ୍ୟାପତି
ଚରମାନଙ୍କ ସଙ୍ଗରେ ଯାଆନ୍ତୁ ଝଟତି ।
ପୁରୁଷୋତ୍ତମ କ୍ଷେତ୍ରକୁ କରିବେ ଗମନ
ନୀଳାଦ୍ରିରେ ଜଗନ୍ନାଥ କିରବେ ଦର୍ଶନ ।
ବାସୋପଯୋଗୀ ନଗର ସ୍ଥାନ ନିରୂପଣ
କରି ଏ ସ୍ଥାନ ସମ୍ବାଦ କରିବେ ପ୍ରେରଣ ।
ଆମ୍ଭମାନଙ୍କର ଅଭିଳାଷ ହେବ ପୂର୍ଣ୍ଣ
ଏକଥା ଶୁଣି କହିଲେ ରାଜା ଇନ୍ଦ୍ରଦ୍ୟୁମ୍ନ ।
ପୁରୋହିତେ ତୁମ୍ଭେ କଲ ଉତ୍ତମ ପ୍ରସ୍ତାବ
ଯେ କ୍ଷେତ୍ରରେ ବିଜେ ହୋଇଛନ୍ତି ବାସୁଦେବ ।
ଆମ୍ଭେ ସର୍ବେ ତହିଁ ଯାଇ କରିବା ବସତି
ସାନ ଭାଇ ଇଷ୍ଟ ସିଦ୍ଧି କରନ୍ତୁ ସଂପ୍ରତି ।
ଏହାକହି ରାଜା ଅନ୍ତଃପୁରେ ବିଜେ କଲେ
ନିଜ ନିଜ ଆଶ୍ରମକୁ ଚଳିଲେ ସକଳେ ।
ଶୁଭକ୍ଷଣେ ପୁରୋହିତ କଲେ ସ୍ୱସ୍ତ୍ୟୟନ
ସାନଭାଇ ବିଦ୍ୟପତି କରିଲେ ଗମନ ।
ବିଦ୍ୟାପତି ମନମଧ୍ୟେ କରନ୍ତି ବିଚାର
ଜନ୍ମ ସଫଳ ହୋଇଲା ଆଜି ତ ମୋହର ।
ରଜନୀ ପାହିଲା ହେଲା ଆଜି ସୁପ୍ରଭାତ
ଚର୍ମ ନେତ୍ରେ ଦର୍ଶନ କରିବି ପଦ୍ମନେତ୍ର ।
ଦିବାରାତ୍ରି ଶ୍ରବଣାଦି ଉପାୟ ସାଧନ
କଲେ ଯୋଗିଗଣେ ଯାଇ ପାଆନ୍ତି ଦର୍ଶନ ।
ମୁଁ ତ ଯାଇ ନୀଳଗିରି ଶୃଙ୍ଗେ ଅବସ୍ଥିତ
ମୁକ୍ତିଦାତା ପୁରୁଷଙ୍କୁ କରିବି ସାକ୍ଷାତ ।
ଶ୍ରୁତି ସ୍ମୃତି ଇତିହାସ ପୁରାଣ ବାକ୍ୟରେ
ଯା ରୂପ ନିର୍ଣ୍ଣୟ କରି ନ ପାରନ୍ତି ନରେ ।
ଅଲୌକିକ ସେହି ରୂପ କରିବି ଦର୍ଶନ
ସଂସାର ସାଗରୁ ହୋଇଯିବି ତ ଉତ୍ତୀର୍ଣ୍ଣ ।
ଯା ନାମ କୀର୍ତ୍ତନ ଅବା କରିଲେ ସ୍ମରଣ
କାୟ ମନୋବାକ୍ୟ ପାପ ହୁଏ ବିମୋଚନ ।
ନୀଳାଚଳେ ଅବସ୍ଥିତ ସେହି ଅପ୍ରମେୟ
ବିଶ୍ୱେଶ୍ୱରଙ୍କୁ ସାକ୍ଷାତ କରିବି ନିଶ୍ଚୟ ।
ଯା ପାଦପଦ୍ମ ସ୍ମରଣେ ମିଳେ ଅତି ସୁଖ
ଅନ୍ୟ କର୍ମେ ସୁଖ ନାହିଁ ପଦେ ପଦେ ଦୁଃଖ ।
ପାଦପଦ୍ମ ଚିନ୍ତା ବିନା ଯାଗଯଜ୍ଞ କର୍ମ
ପାପରାଶି ଦହିବାକୁ ନ ହୁଅଇ କ୍ଷମ ।
ଦୈବାନ୍ତିକଗଣ ସୂକ୍ଷ୍ମ ଆରାଧନା କରି
ପଞ୍ଚକୋଷାବୃତ ଆତ୍ମା ଗୁହାରେ ବିହରି ।
ଅନିର୍ବଚନୀୟ ରୂପେ କରନ୍ତି ନିର୍ଦ୍ଦେଶ
ଅବଗତ ନୁହନ୍ତି ସ୍ୱରୂପ ନିର୍ବିଶେଷ ।
ଅଧ୍ୟାତ୍ମ ବିଦ୍ୟାରେ ଜ୍ଞେୟ ଦେବ ଜଗନ୍ନାଥ
ଜଗତର ମୂଳ ତାଙ୍କୁ କରେ ପ୍ରଣିପାତ ।

Digitized by srujanika@gmail.com

ଯା ଲୋମ କୂପେ ବ୍ରହ୍ମାଣ୍ଡ ମାଳା ରହିଅଛି
ନିଃଶ୍ୱାସ ବାୟୁରେ ବେଦରାଶି ଉପୁଜିଛି ।
ସହସ୍ର ମସ୍ତକ ପାଦ ସହସ୍ର ଯାହାର
ସସ୍ର ଚକ୍ଷୁ ସର୍ବ ପ୍ରପଞ୍ଚର ଅଧୀଶ୍ୱର ।
ସେହି ଦେବ ଦେବ ଜଗନ୍ନାଥ ମୋ ଆଶ୍ରୟ
ବିପ୍ର ବିଦ୍ୟାପତିର ତ ପାପ ହେବ କ୍ଷୟ ।
ଯା ମାୟା ଜଗତ୍ ପ୍ରପଞ୍ଚ ସୃଷ୍ଟି କରୁଅଛି
ପାଳନ କରୁଛି ଆଉ ସଂହାର କରୁଛି ।
ଅଜ୍ଞଲୋକ ଏହି କଥା ବୁଝି ନ ପାରନ୍ତି
ଦାରୁମୟ ରୂପ ବୋଲି ମୁଖରେ କହନ୍ତି ।
ସେହି ପ୍ରଣବ ସ୍ୱରୂପୀ ଆଉ ରୂପହୀନ
ଜଗଦୀଶ୍ୱରଙ୍କୁ ମୁହିଁ କରୁଛି ପ୍ରଣାମ ।
କାକପକ୍ଷୀ ତୃଷା ଶାନ୍ତି କରିବା କାରଣ
ଯାଇଥିଲା ମାଧବଙ୍କୁ କଲା ଦରଶନ ।
ଭୌତିକ ଦେହେଁ ପାଇଲା ସ୍ୱରୂପ ମୁକତି
ସେ ପ୍ରଭୁ ହୋଇବେ ମୋର ନେତ୍ରର ଅତିଥି ।
ଆଜି ତ ସୌଭାଗ୍ୟ ଦିନ ହୋଇଛି ମୋହର
ନ ଜାଣଇ ପୂର୍ବେ କରି କେତେ ପୁଣ୍ୟାଚାର ।
ପୂର୍ବ ଜନ୍ମାର୍ଜିତ ଅପ୍ରକଟ ପୁଣ୍ୟରାଶି
ପ୍ରକଟ ହୋଇଛି ଆଜି ଭାଗ୍ୟକ୍ରମେ ଆସି ।
ଜଗତ ଆଦି କାରଣ ଅନାଦି ଈଶ୍ୱର
ଚର୍ମ ଚକ୍ଷୁରେ ଦର୍ଶନ କରିବି ସତ୍ୱର ।
ବିଦ୍ୟାପତି ଏହିରୂପେ ଚିନ୍ତା କରି କରି
ଜଗନ୍ନାଥଙ୍କୁ ଦର୍ଶନ କରିବି କିପରି ।
ରଥ ବେଗେ ଅତୀତ ହୋଇଛି କେତେ ପଥ
ନ ଜାଣଇ ବିଦ୍ୟାପତି ଚଳଇ ତୁରିତ ।
ଏହିପରି ଚନ୍ତାକରି କେତେଦିନ ପରେ
ପ୍ରବେଶ ହୋଇଲା ଯାଇ ଉତ୍କଳ ଦେଶରେ ।
ଭୁବନ ମଙ୍ଗଳ କର ପୃଥିବୀ ମଣ୍ଡନ
ଯେଉଁ ଦେଶ ବନଗିରି ଦୁର୍ଗପଥେ ପୂର୍ଣ୍ଣ ।
ନିରୀକ୍ଷଣ କରୁ କରୁ ସୂର୍ଯ୍ୟ ହେଲେ ଅସ୍ତ
ମହାନଦୀ ତୀରେ ବିଦ୍ୟାପତି ଉପସ୍ଥିତ ।
ରଥରୁ ଯେ ଓହ୍ଲାଇଲେ ବେଗେ ବିଦ୍ୟାପତି
ଆହ୍ନିକ କ୍ରିୟା ସକଳ ସାରିଲେ ଝଟତି ।
ସାୟଂ ସନ୍ଧ୍ୟା ଉପାସନା କରିଲେ ବହନ
ଚିତ୍ତରେ ସ୍ମରଣ କଲେ ଶ୍ରୀମଧୁସୂଦନ ।
ରଥର ଉଦରେ ରାତ୍ରି ଯାପନ କରିଲେ
ପ୍ରାତଃକାଳେ ମହାନଦୀ ପାର ହୋଇଗଲେ ।
ସତ୍ୱର କରିଲେ ପ୍ରାତଃ କୃତ୍ୟ ସମାପନ
ଗୋବିନ୍ଦ ସୁମରି ରଥ କଲେ ଆରୋହଣ ।
ପଥର ଉଭୟ ପାର୍ଶ୍ୱ ଦେଖି ଦେଖି ଗଲେ
ଏକାମ୍ର କାନନେ ଅତିକ୍ରମ ସେ କରିଲେ ।
ଯେଉଁ ସ୍ଥାନେ ବ୍ରହ୍ମନିଷ୍ଠ ବ୍ରାହ୍ମଣ ବସତି
ଗ୍ରାମମାନ ଯୂପକାଷ୍ଠେ ଶୋଭା ପାଏ ଅତି ।
ଶଙ୍ଖ ଚକ୍ର ଗଦାପଦ୍ମ କରିଣ ଧାରଣ
ନାରାୟଣ ରୂପେ ଦେଖାଯାନ୍ତି ନରରାଣ ।
ନିଜ ଦେହ ଦିବ୍ୟରୂପ ଦର୍ଶନ କରିଲେ
ଅନ୍ୟ ଜନ୍ମ ହୋଇଲାକି ମନେ ବିଚାରିଲେ ।
ରଥରୁ ଉତୁରି ବିଦ୍ୟାପତି ତତକ୍ଷଣ
ତହିଁ ଯେତେ ଥିଲେ ତାଙ୍କୁ କରିଲେ ପ୍ରଣାମ ।
ଆନନ୍ଦେ ଲୋତକ ପୂର୍ଣ୍ଣ ହୋଇଲା ନୟନ
କିଛି କରି ନ ପାରିଲେ ତହିଁ ଦରଶନ ।
ହୃଦୟ ମଧ୍ୟେ ବିଷ୍ଣୁଙ୍କୁ କରିଲେ ଦର୍ଶନ
ତକ୍ଷଣେ ବାହାରେ ପୁଣି କଲେ ଦରଶନ ।
ଏ ରୂପେ ଧ୍ୟାନରେ କଲେ ବିଷ୍ଣୁଙ୍କୁ ଦର୍ଶନ
କେତେବେଳେ କରନ୍ତି ବା ସାକ୍ଷାତ ଦର୍ଶନ ।
ସ୍ତବ ସ୍ତୋତ୍ର ପାଠ କରି କରି କେତେଦୂରେ
ବିଦ୍ୟାପତି ନୀଳାଚଳ ପର୍ବତ ଦେଖିଲେ ।
ଏ ପର୍ବତ ଦର୍ଶକର ପାପକରେ ଧ୍ୱଂସ
କରିଅଛି ଉଚ୍ଚତାରେ ଆକାଶକୁ ସ୍ପର୍ଶ ।
ତା ମଧ୍ୟରେ କଳ୍ପବଟ ଅତି ସୁଶୋଭିତ
ଚତୁଃପାର୍ଶ୍ୱରେ କାନନ ହୋଇଛି ବେଷ୍ଟିତ ।
ଅତି ଅଦ୍ଭୁତ ନୀଳସୁନ୍ଦର ପର୍ବତ
ମୂର୍ତ୍ତିମାନ ହୋଉଛନ୍ତି ଯହିଁ ଜଗନ୍ନାଥ ।
ବିଷ୍ଣୁଙ୍କର ବାସସ୍ଥାନ ହେତୁ ଏ ପର୍ବତ
ନାମ ହୋଇଅଛି ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ।
ପର୍ବତର ଉପତ୍ୟକା କଲେ ଆରୋହଣ
ମୁକୁନ୍ଦ ଦର୍ଶନେ ପଥ କଲେ ଅନ୍ୱେଷଣ ।
ନ ପାଇଲେ ପଥ ମୌନ ହୋଇଣ ରହିଲେ
କୁଶ ବିଛାଇ ତା ପରେ ଶୟନ କରିଲେ ।
ଶ୍ରୀଜଗନ୍ନାଥ କିପରି ଦେବେ ଦରଶନ
ଚିନ୍ତାକରି ଶ୍ରୀଚରଣେ ପଶିଲେ ଶରଣ ।
ପର୍ବତ ପଛପଟରେ ଭକ୍ତ ମେଳା ହୋଇ
ଅମାନୁଷିକ ବଚନ ବ୍ରାହ୍ମଣ ଶୁଣଇ ।
ସେ ଶବ୍ଦକୁ ଅନୁସରି ବିପ୍ର ଚଳିଗଲେ
କ୍ଷେତ୍ରର ଦୀପ ସଂସ୍ଥାନ ଦର୍ଶନ କରିଲେ ।
ଶବରମାନଙ୍କୁ ଗୃହ ଚାରିଦିଗ ପୂର୍ଣ୍ଣ
ତେଣୁ ହୋଇଛି ଶବର ଦୀପକ ତା ନାମ ।
ବିଦ୍ୟାପତି ଶବର ପଲ୍ଲୀରେ ପ୍ରବେଶିଲେ
ବିଷ୍ଣୁଭକ୍ତଗଣ ତହିଁ ଥିବାର ଦେଖିଲେ ।

Digitized by srujanika@gmail.com

ଶଙ୍ଖ ଚକ୍ର ଗଦା ପଦ୍ମ ଚିହ୍ନ ବିଭୁଷିତ
ହୋଇଛନ୍ତି ଯେଣୁ ଦେଖୁଛନ୍ତି ଜଗନ୍ନାଥ ।
ସେ ସ୍ଥାନକୁ ଅବନତ ଶିରେ ପ୍ରଣମିଲେ
ବଦ୍ଧାଞ୍ଜଳି ହୋଇ ତହିଁ ମଉନେ ରହିଲେ ।
ବୃଦ୍ଧ ଶରୀର ଶବର ବିଶ୍ୱାବସୁ ନାମ
ହରିଙ୍କର ପୂଜା ସାରି କଲେ ଆଗମନ ।
ପୂଜା ଶେଷ ନିର୍ମାଲ୍ୟରେ ଦେହ ବିଭୂଷିତ
ନୀଳ ପର୍ବତରୁ ଆସି ହେଲେ ଉପସ୍ଥିତ ।
ବୃଦ୍ଧ ଶବରକୁ ଦେଖି ଆନନ୍ଦ ମନରେ
ବିଦ୍ୟାପତି ମନ ମଧ୍ୟେ ବିଚାର କରିଲେ ।
ଏ ଜଣକ ହରିଙ୍କର ପୂଜା ଶେଷ କରି
ଆସୁଛନ୍ତି ପୂଜା ଶେଷ ନିର୍ମାଲ୍ୟକୁ ଧରି ।
ବୈଷ୍ଣବ ପ୍ରଧାନ ଏହି ହରିଙ୍କ ବାରତା
ଶୁଣାଇବେ ମୋ ମନରୁ ଛଡ଼ାଇବେ ଚିନ୍ତା ।
ବିଦ୍ୟାପତି ଏହି କଥା ଚିନ୍ତିଲେ ମନରେ
ସେତେବେଳେ ବିଶ୍ୱାବସୁ ବଚନ ଭାଷିଲେ ।
ହେ ବିପ୍ର କେଉଁ ସ୍ଥାନରୁ ତୁମ୍ଭେ ଆସିଅଛ
ଏ ଦୁର୍ଗମ କାନନରେ ପ୍ରବେଶ କରିଛ ।
କ୍ଷୁଧା ତୃଷା ଶ୍ରମ ପାଇ ଶରୀର କାତର
ଏ ସ୍ଥାନରେ କେତେକାଳ ସୁଖେ ବାସ କର ।
ବ୍ରାହ୍ମଣଙ୍କୁ ଯଥା ବିଧାନରେ ପୂଜା କଲେ
ପାଦ୍ୟ ଅର୍ଘ୍ୟ ଆସନାଦି ଉପଚାର ଦେଲେ ।
ହେ ବିପ୍ର ଆପଣ ଫଳାହାର କି କରିବେ
ଅଥବା ସ୍ୱହସ୍ତେ ପାକ କରିଣ ଭୁଞ୍ଜିବେ ।
ତୁମ୍ଭର ଯା ଅଭିରୁଚି ତାହା ସମ୍ପାଦିବି
ବ୍ରାହ୍ମଣର ସେବା କରି କୃତାର୍ଥ ହୋଇବି ।
ହେ ବିପ୍ର ମୋହର ଆଜି ସଫଳ ଜୀବନ
ପରମ ସୌଭାଗ୍ୟ ହେତୁ ଆସିଛ ଆପଣ ।
ସାକ୍ଷାତରେ ବିଷ୍ଣୁ ସମ ଅଟନ୍ତି ଆପଣ
ଦୀନଜନ ଗୃହେ କରିଛନ୍ତି ଆଗମନ ।
ଶବର ବଚନ ଶୁଣି କହନ୍ତି ବ୍ରାହ୍ମଣ
ଫଳରେ ବା ପାକ ଅନ୍ନେ ନାହିଁ ପ୍ରୟୋଜନ ।
ଯେ ନିମନ୍ତେ ଏ ସ୍ଥାନକୁ ମୋର ଆଗମନ
ବୈଷ୍ଣବ ପୁଙ୍ଗବ ତାହା କରନ୍ତୁ ଗ୍ରହଣ ।
ଅତି ଦୂରଦେଶ ଅଟେ ଅବନ୍ତୀ ନଗରୀ
ଇନ୍ଦ୍ରଦ୍ୟୁମ୍ନ ନାମେ ରାଜା ରାଜପଣ କରି ।
ମୋର ବଡ଼ଭାଇ ସେ ରାଜାର ପୁରୋହିତ
ତାଙ୍କ ଆଦେଶେ ଏ ସ୍ଥାନେ ହେଲି ଉପସ୍ଥିତ ।
ବିଷ୍ଣୁ ଦର୍ଶନ କରିବା ଅର୍ଥେ ଆସିଅଛି
ତେଣୁ ଶବର ପଲ୍ଲୀରେ ଭ୍ରମଣ କରୁଛି ।
ଦଳେ ତୀର୍ଥ ପର୍ଯ୍ୟଟନକାରୀ ଏକ ଦିନେ
ଉପସ୍ଥିତ ହେଲେ ଯାଇ ରାଜା ସନ୍ନିଧାନେ ।
ତୀର୍ଥକ୍ଷେତ୍ର ପ୍ରସଙ୍ଗରେ କହିଲେ ଯେ କଥା
ରାଜନ ଶୁଣିଲେ ଏହି କ୍ଷେତ୍ରର ବାରତା ।
ଯେପରି କହି ଜଟିଳ ଅନ୍ତର୍ହିତେ ହେଲେ
ବିଦ୍ୟାପତି ସେ ସକଳ ବୃତ୍ତାନ୍ତ କହିଲେ ।
ଏହା ଶୁଣି ଉତ୍କଣ୍ଠିତ ହେଲେ ଇନ୍ଦ୍ରଦ୍ୟୁମ୍ନ
କିପରି ନୀଳମାଧବ କରିବେ ଦର୍ଶନ ।
ହରି ଅନ୍ୱେଷଣେ ମୋତେ କରିଲେ ପ୍ରେରଣ
ସ୍ୱଚକ୍ଷୁରେ ଦର୍ଶନ କରିବି ନାରାୟଣ ।
ରାଜାଙ୍କ ନିକଟେ ଯାଇ ସକଳ ବୃତ୍ତାନ୍ତ
ନ କହିବାଯାଏ ମୋର ଭୋଜନ ନାହିଁ ତ ।
ଆହେ ସାଧୁ ତୁମ୍ଭେ ମୋତେ ବିଷ୍ଣୁ ଦରଶନ
କରାଇ ଦିଅ ଆନନ୍ଦେ ଯିବି ମୁଁ ସ୍ୱସ୍ଥାନ ।
ସପ୍ତମାଧ୍ୟାୟ ଉତ୍କଳ ଭାଷାରେ ସମାପ୍ତ
ବିପଦ ସାଗରୁ ପାରି କରିବେ ଅଚ୍ୟୁତ ।
ସଂସାର ସାଗରେ ଢେଉ ଉଠୁଛି ସତତ
ପାରିହୋଇ ଯିବାକୁ ଯେ ନ ଦିଶଇ ପଥ ।
ପାରିକରି ଦିଅ ବେଗେ ମୋର ହାତ ଧରି
ହରି ହର କରଯୋଡ଼ି କରୁଛି ଗୁହାରି ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ବିଦ୍ୟାପତି ନୀଳାଚଳ ପ୍ରଦେଶେ ଗମନ ନାମ
ସପ୍ତମୋଽଧ୍ୟାୟଃ ।

□□

## ଅଷ୍ଟମ ଅଧ୍ୟାୟ

କହନ୍ତି ଜୈମିନି ବିଦ୍ୟାପତିଙ୍କର କଥା
ଶୁଣନ୍ତେ ଶବର କଲା ମନେ ବଡ଼ ଚିନ୍ତା ।
ଆଜି ତ ଦୁର୍ଦ୍ଦୈବ ଆସି ହେଲା ଉପସ୍ଥିତ
ଆମ୍ଭମାନଙ୍କର ପ୍ରଭୁ ରହିଥିଲେ ଗୁପ୍ତ ।
ଆମ୍ଭମାନଙ୍କ ସମ୍ପଦ ପ୍ରଭୁ ଜନାର୍ଦ୍ଦନ
ବ୍ରାହ୍ମଣ ଦେଖିଲେ ଜ୍ଞାତ ହେବେ ସର୍ବଜନ ।
ନିର୍ଜନତା ଭାଙ୍ଗିଦେବେ କରି ଆଗମନ
ଯହିଁ ଇହ ପରଲୋକ କରିଲି ସାଧନ ।
ନ ଦେଖାଇ ବ୍ରାହ୍ମଣକୁ ଯେବେ ଫେରାଇବି
ଏ ବ୍ରାହ୍ମଣ ଶାପ ହେଲେ ତାହା ମୁଁ ଭୋଗିବି ।
ସକଳ ଜାତିର ମାନ୍ୟ ଅତିଥି ବ୍ରାହ୍ମଣ
ଫେରିଗଲେ ନାଶ ହେବ କୃତ ପୁଣ୍ୟ-କର୍ମ ।
ଶବର ପୁଙ୍ଗବ ବିଶ୍ୱାବସୁ ବିଚାରିଲେ
ପ୍ରାଚୀନ ଜନ ପ୍ରବାଦ ସ୍ମରଣ କରିଲେ ।

Digitized by srujanika@gmail.com

ଏ ସ୍ଥାନେ ଆସିବେ ଇନ୍ଦ୍ରଦ୍ୟୁମ୍ନ ପ୍ରଜାନାଥ
ନୀଳମାଧବ ଭୂତଳେ ହେବେ ଅନ୍ତର୍ହିତ ।
ମନୁଷ୍ୟ ଶରୀର ଧରି ରାଜା ଇନ୍ଦ୍ରଦ୍ୟୁମ୍ନ
ବ୍ରହ୍ମଲୋକ ପରିଯନ୍ତେ କରିବେ ଗମନ ।
ପ୍ରଜାବର୍ଗ ସହିତରେ ଆସି ଏହି ସ୍ଥାନ
ଶତ ଅଶ୍ୱମେଧ ଯାଗ କରିବେ ସମ୍ପନ୍ନ ।
ଦାରୁମୟ ରୂପ ଧରି ପ୍ରଭୁ ଭଗବାନ
ଚତୁର୍ଦ୍ଧା ରୂପରେ ତାଙ୍କୁ ଦେବେ ଦରଶନ ।
ଅତିଥି ବ୍ରାହ୍ମଣ ହୋଇଥିଲେ ଭାଗ୍ୟବାନ
ଅନ୍ତର୍ଦ୍ଧାନ ପୂର୍ବରୁ ଯେ କରିବେ ଦର୍ଶନ ।
ଅତଏବ ସମାଗତ ଅତିଥି ବ୍ରାହ୍ମଣ
ନେଇ କରାଇବି ନୀଳମାଧବ ଦର୍ଶନ ।
ଈଶ୍ୱର କରିବେ ଯାହା ତାହା ସିଦ୍ଧ ହେବ
ମନୁଷ୍ୟ ଶତ ଚେଷ୍ଟାରେ କରି ନ ପାରିବ ।
ଏପରି ବିଚାର ମନେ କରିଲା ଶବର
ବିଷ୍ଣୁ ସ୍ମରି ବ୍ରାହ୍ମଣଙ୍କୁ ଦେଲା ସେ ଉତ୍ତର ।
ଏକଥା ପୂର୍ବ କାଳରୁ ଶୁଣିଅଛୁ ଆମ୍ଭେ
ଇନ୍ଦ୍ରଦ୍ୟୁମ୍ନ ମହାରାଜା ଏସ୍ଥାନେ ଆସିବେ ।
ନୀଳ-ଇନ୍ଦ୍ର-ମଣିମୟ ଦେବ ଭଗବାନ
ବିପ୍ର ତୁମ୍ଭେ ଚର୍ମନେତ୍ରେ କରିବ ଦର୍ଶନ ।
ବିଶ୍ୱାବସୁ ଏହି କଥା କହିଲେ ସତ୍ୱର
ହସ୍ତ ଧରି କରିନେଲେ ବିଦ୍ୟାପତିଙ୍କର ।
ଜଣେ ମାତ୍ର ଯାଇପାରେ ପଥ ଗୋ ସଂକୀର୍ଣ୍ଣ
ପଥର କଣ୍ଟା ବଣରେ ଅତୀବ ଦୁର୍ଗମ ।
ଅନ୍ଧକାରମୟ ପଥେ ଚଳିଲେ ସତ୍ୱର
ପଥମଧ୍ୟେ କେତେ କଥା କହିଲେ ଶବର ।
ମୁହୂର୍ତ୍ତକେ କୁଣ୍ଡ ତଟେ ହେଲେ ଉପସ୍ଥିତ
ରୋହିଣୀ କୁଣ୍ଡ ଦେଖାଇ କହିଲେ ଏମନ୍ତ ।
ହେ ବ୍ରାହ୍ମଣ ଏହି କୁଣ୍ଡ ନାମ ଯେ ରୋହିଣ
ସ୍ନାନମାତ୍ରେ ବୈକୁଣ୍ଠକୁ କରିବ ଗମନ ।
ଏହାର ପୂର୍ବ ଦିଗରେ କଳ୍ପକାଳ ସ୍ଥାୟୀ
କଳ୍ପବଟ ବିଦ୍ୟମାନ ଅଛି ତାର ଛାଇ ।
ମନୁଷ୍ୟର ବ୍ରହ୍ମହତ୍ୟା ଦୋଷ କରେ ନାଶ
କୁଣ୍ଡ ବଟ ମଧ୍ୟସ୍ଥଳେ ନିକୁଞ୍ଜ ପ୍ରକାଶ ।
କୁଞ୍ଜମଧ୍ୟେ ବେଦାନ୍ତରେ ଯେ ପ୍ରତିପାଦିତ
ସେହି ସାକ୍ଷାତରେ ବିଜେ ଦେଖ ଜଗନ୍ନାଥ ।
ଦର୍ଶନରେ ସର୍ବପାପ କ୍ଷୟ ହୋଇଯିବ
ଶୋକ କରନାହିଁ ଭବ ସାଗରୁ ତରିବ ।
ଜୈମିନି କହନ୍ତି ବିଦ୍ୟାପତି ବୁଦ୍ଧିମାନ
ଅତି ଶୀଘ୍ର କୁଣ୍ଡ ଜଳେ କରିଲେ ସ୍ନାହାନ ।

କାୟ ବାକ୍ୟ ମନରେ ଯେ କରିଲେ ପ୍ରଣାମ
ଏକାଗ୍ର ଚିତ୍ତେ ଗାଇଲେ ସ୍ତୁତି ବାକ୍ୟମାନ ।
ଆହେ ପ୍ରଭୁ ସର୍ବବ୍ୟାପୀ ଦେବ ପରମେଶ୍ୱର
ପ୍ରକୃତି ପୁରୁଷାତୀତ ସର୍ବ ବସ୍ତୁ ସାର ।
ଚରାଚର ସୃଷ୍ଟି ପରିମାଣ ହୋଇ ପ୍ରାପ୍ତ
ସେ ପରମ ବସ୍ତୁକୁ ମୁଁ କରେ ଦଣ୍ଡବତ ।
ଶ୍ରୁତି ସ୍ମୃତି ଇତିହାସ ପୁରାଣେ ବର୍ଣ୍ଣିତ
ଏକମାତ୍ର କର୍ମଦ୍ୱାରା ତୁମ୍ଭେ ଆରାଧିତ ।
ବିଭୋ ସୃଷ୍ଟିକାଳେ ଏହି ଅଖିଳ ଜଗତ
ଆପଣଙ୍କ ଶରୀରରୁ ହୋଇଅଛି ଜାତ ।
ଆପଣ ଅଟନ୍ତି ଏକା ଜଗତ ଆଧାର
ଜଗତ ପାଳନ କରିବାରେ ତତପର ।
ପ୍ରଳୟ କାଳ ହୁଅନ୍ତେ ସମଗ୍ର ଜଗତ
ଆପଣଙ୍କ ଉଦରରେ ହୁଏ ଲୟ ପ୍ରାପ୍ତ ।
ବିଶାଳ ଉଦରେ ସୁଖେ କରେ ଅବସ୍ଥାନ
ଅନ୍ତର୍ଯ୍ୟାମୀ କରୁଅଛି ତୁମ୍ଭଙ୍କୁ ପ୍ରଣାମ ।
ଋକ୍ ଯର୍ଜୁଃ ସାମ ସ୍ୱରୂପ ଅଟନ୍ତି ଆପଣ
ଦେବଗଣଙ୍କୁ ଦେବତା ତୁମ୍ଭେ ଭଗବାନ ।
ଚନ୍ଦ୍ର ସୂର୍ଯ୍ୟାଦି ଜ୍ୟୋତିଷ୍କ ରୂପେ ବିଦ୍ୟମାନ
ହେଉଅଛି ଆହେ ପ୍ରଭୁ ତୁମ୍ଭଙ୍କୁ ପ୍ରଣାମ ।
ଗଙ୍ଗାଦେବୀ ଯାର ପାଦ-ପଦ୍ମେ ଲଭିସ୍ଥାନ
ପବିତ୍ର ହୋଇ କରୁଛି ଜଗତ ପ୍ଲାବନ ।
ଗଙ୍ଗାଜଳ ପବିତ୍ରତା କାରୀ ନାରାୟଣ
ତୁମ୍ଭ ଦୁଇ ପାଦପଦ୍ମେ କରୁଛି ପ୍ରଣାମ ।
ଯଥାବିଧି ମନ୍ତ୍ର ପାଠ କରି ଯଜମାନ
ଘୃତାହୃତି ଦେଇ କରେ ଅଗ୍ନି ତରପଣ ।
ଯଜ୍ଞ ଭୋକତା ଆପଣ ସର୍ବ ଯଜ୍ଞେଶ୍ୱର
ନାରାୟଣ ରୂପେ ହବି ଗ୍ରହଣ ଯେ କର ।
ଜଗତ ପରିବର୍ତ୍ତନ ଘଟାନ୍ତି ଆପଣ
ରକ୍ଷା କରନ୍ତି ଜଗତବାସୀଙ୍କ ଜୀବନ ।
କରୁଛି ପ୍ରଣାମ ତୁମ୍ଭେ ସର୍ବସଙ୍ଗ ଶୂନ୍ୟ
ମାୟାବଳେ ଶୁଭଫଳ କରୁଛ ପ୍ରଦାନ ।
ଆହେ ପ୍ରଭୁ ବିଶ୍ୱଶାୟୀ ନିର୍ମଳ ସ୍ୱରୂପ
ପ୍ରଣାମ କରେ ଗ୍ରହଣ କର ସର୍ବରୂପ ।
ତୁମ୍ଭେ ପ୍ରଭୁ ବହୁପାଦ ବହୁନେତ୍ର ଧାରୀ
ବହୁ ମସ୍ତକରେ ବହୁ ମୁଖ ଅଛି ପୂରି ।
ବହୁ ବାହୁ ସର୍ବସ୍ଥାନେ ବିଜୟୀ ଆପଣ
ପ୍ରାଣୀମାନଙ୍କ ଜୀବନରୂପୀ ନମୋ ନମଃ ।
ନମସ୍ତେ କମଳାକାନ୍ତ କମଳ ଆନନ
ନମଃ କମଳ ପତ୍ରାକ୍ଷ ହେ ପୁରୁଷୋତ୍ତମ ।

Digitized by srujanika@gmail.com

ଆପଣଙ୍କୁ ପୁନଃ ପୁନଃ କରୁଛି ପ୍ରଣାମ
ଭବ ବନ୍ଧନରୁ ମୋତେ କର ପରିତ୍ରାଣ ।
ଅସାର ସଂସାରେ ଘୁରୁଅଛି ଜଗନ୍ନାଥ
ରୋଗ ଶୋକ ବିପଦରେହୋଇଛି ପୀଡ଼ିତ ।
ଦେବ ତୁମ୍ଭ ପାଦପଦ୍ମେ ପଶିଲି ଶରଣ
ଭବ ବନ୍ଧନରୁ ମୋତେ କର ପରିତ୍ରାଣ ।
ଜୈମିନି କହନ୍ତି ଦ୍ୱିଜ ଶ୍ରେଷ୍ଠ ବିଦ୍ୟାପତି
ସୁରେଶ୍ୱର ପ୍ରଣବ ରୂପୀଙ୍କୁ କରି ସ୍ତୁତି ।
ଶ୍ରୀହରିଙ୍କ ସମୀପରେ ଆସନେ ବସିଲେ
ପ୍ରଣତ ହୋଇ ପ୍ରଣବ ମନ୍ତ୍ର ଜପ କଲେ ।
ଜପ ସମାପତ ହେଲା ଚିତ୍ତ ହେଲା ଶାନ୍ତି
କରଯୋଡ଼ି ମନେ ମନେ ପ୍ରଭୁଙ୍କୁ ଚିନ୍ତନ୍ତି ।
ଆଜି ଏ ଜୀବନ ଧନ୍ୟ ହେଲି କୃତ କୃତ୍ୟ
ଦ୍ୱିଜଙ୍କୁ ଚାହିଁ ଶବର ବୋଲଇ ଏମନ୍ତ ।
ହେ ଦ୍ୱିଜପୁଙ୍ଗବ ତୁମ୍ଭେ ପ୍ରଭୁଙ୍କ ଦର୍ଶନ
କରି କୃତାର୍ଥ ହୋଇଛି ତୁମ୍ଭର ଜୀବନ ।
ଦିନ ଅବସାନ ହେଲା ଶ୍ରମେ ବିଭୂଷିତ
ଆସ ଗୃହକୁ ଗମନ କରିବା ତୁରିତ ।
ଅରଣ୍ୟରେ ହିଂସ୍ରଜନ୍ତୁ ଅଛନ୍ତି ବହୁତ
ଏ ସ୍ଥାନେ ରହିବା ତେଣୁ ନୁହଇ ଉଚିତ ।
ସୂର୍ଯ୍ୟଦେବ ଅସ୍ତାଚଳେ ଗମନ ନ କରୁ
ଗୃହକୁ ଚଳିବା ଆମ୍ଭେ ଅରଣ୍ୟ ମଧ୍ୟରୁ ।
ସର୍ବ ରକ୍ଷିଗଣ ଶୁଣ ଶବର ପ୍ରଧାନ
ବିଦ୍ୟାପତିଙ୍କର ହସ୍ତ କରିଲା ଧାରଣ ।
ଅତି ବେଗେ ନିଜ ଗୃହେ କରନ୍ତେ ଗମନ
ବିଦ୍ୟାପତି ଶ୍ରୀହରିଙ୍କୁ ମନେ କଲେ ଧ୍ୟାନ ।
ଆନନ୍ଦ ସାଗରେ ମଗ୍ନ ହେଲେ ତତକ୍ଷଣ
ଭୁଲିଗଲେ କ୍ଷୁଧା ତୃଷା ଦୂର ହେଲା ଶ୍ରମ ।
ପ୍ରସ୍ତର କଣ୍ଟକାକୀର୍ଣ୍ଣ ଦୁର୍ଗମ ପଥରେ
ଗମନ କରନ୍ତେ ଶ୍ରମ ନ ହେଲା ଦେହରେ ।
ଶରୀର ଅସ୍ଥାୟୀ ବୋଲି ବିଚାର କରିଲେ
କିଛି ମାତ୍ର ଦୁଃଖ ବୋଧ କରି ନ ପାରିଲେ ।
ବୈଷ୍ଣବ ଅଗ୍ରଣୀ ବିପ୍ରବର ଯେ ଶବର
ଉଭୟେ ଗମନ କଲେ ଏହି ପରକାର ।
ସାୟାହ୍ନ କାଳ ହୋଇଲା ଶବର ଗୃହରେ
ଉପସ୍ଥିତ ହେଲେ ମୁନିଗଣ ଶୁଣ ଧୀରେ ।
ବ୍ରାହ୍ମଣ ଅତିଥି ପାଇଁ ଧନ୍ୟ ସେ ଶବର
ଆଣିଲେ ଭୋଜ୍ୟ ପଦାର୍ଥ ବିବିଧ ପ୍ରକାର ।
ସେହି ବିପ୍ରଙ୍କୁ ସୁନ୍ଦର ରୂପେ ଅରପିଲେ
ତାହା ଦେଖି ବିଦ୍ୟାପତି ମନରେ ଭାଳିଲେ ।
ଶବର ନିକଟେ ଆଉ ଶବର ଗୃହରେ
ଯାହା ଅସମ୍ଭବ ତାହା ଦେଖିଲି ଏଠାରେ ।
ନିତି ପ୍ରତି ରାଜାମାନେ ଯେ ଦ୍ରବ୍ୟ ଭୁଞ୍ଜନ୍ତି
ସେ ଦ୍ରବ୍ୟ ଦେଖି ବିସ୍ମୟ ହେଲେ ବିଦ୍ୟାପତି ।
ଦୁର୍ଗମ ବନରେ ଏ ଶବର ବାସ କରେ
କାହୁଁ ମିଳିବ ଏ ଦ୍ରବ୍ୟ ପଡ଼ିଶା ଘରରେ ।
ଏହି ଚିନ୍ତାରେ ଆକୁଳ ହୁଅନ୍ତେ ବ୍ରାହ୍ମଣ
ବିନୟରେ ବିଶ୍ୱାବସୁ କହିଲେ ବଚନ ।
ହେ ବିପ୍ର ତୁମ୍ଭର ଶ୍ରମ ହୋଉଅଛି ଦୂର
କ୍ଷୁଧା ତୃଷା ଲାଘବ କି ହୋଇଛି ତୁମ୍ଭର ।
ବନବାସୀମାନଙ୍କର ଗୃହରେ କିପରି
ନଗର ବାସୀଏ ଆଉ ସୁଖ ଭୋଗ କରି ।
ନଗର ବାସୀ କରନ୍ତି ଯେଉଁ ବ୍ୟବହାର
କିପରି ଜାଣିବି ତାହା ଜାତିରେ ଶବର ।
ଯେତେ ଜନ ରାଜାଙ୍କର ଆଶ୍ରୟରେ ଥାନ୍ତି
ପୁରୋହିତ ମନ୍ତ୍ରୀ ଦୁଇ ପ୍ରଧାନ ଅଟନ୍ତି ।
ପୁରୋହିତ ପାଇଥାନ୍ତି ପ୍ରଥମ ସମ୍ମାନ
ଶାସ୍ତ୍ରମାନଙ୍କରେ ଏହା ହୋଇଛି ଲିଖନ ।
ଉତ୍ତମ ପ୍ରତାପଶାଳୀ ରାଜା ଇନ୍ଦ୍ରଦ୍ୟୁମ୍ନ
ସନ୍ତୋଷ ହୋଇବେ ତୁଷ୍ଟ ହୋଇଲେ ଆପଣ ।
ଅରଣ୍ୟବାସୀ ଶବର ଏ କଥା କହିଲେ
ବିସ୍ମୟରେ ବିଦ୍ୟାପତି ବଚନ ଭାଷିଲେ ।
ଆହେ ସାଧୁ କରିଅଛ ଯେତେ ଆୟୋଜନ
ଏ ସକଳ ଦ୍ରବ୍ୟ ନୁହେଁ ମନୁଷ୍ୟ ଘଟନ ।
ଯେଉଁମାନେ କରୁଛନ୍ତି ସୁଖେ ରାଜପଣ
ସେମାନଙ୍କୁ ନ ମିଳିବ ଏ ଦ୍ରବ୍ୟ ଭୋଜନ ।
ହେ ମିତ୍ର ଶବର ଗୃହେ ଏ ଦ୍ରବ୍ୟ ସଞ୍ଚିତ
କିପରି ହୋଇଛି ତାହା ଜାଣିବାକୁ ବ୍ୟସ୍ତ ।
କହିଲେ ଶବର ଶୁଣି ବ୍ରାହ୍ମଣ ବଚନ
ଏହିଠାରେ ଯେତେ ଦ୍ରବ୍ୟ ଦେଖୁଛ ଆପଣ ।
ଏ ଦ୍ରବ୍ୟ ପାଇବା କଥା ଯଦିତ ଗୁପତ
ତଥାପି ମୁଁ କହୁଅଛି ଶୁଣ ରାଜଦୂତ ।
ଆପଣ ଅଟନ୍ତି ଯେଣୁ ବ୍ରାହ୍ମଣ ଅତିଥି
ଆପଣଙ୍କ ପ୍ରତି ଅଛି ମୋର ଶ୍ରଦ୍ଧା ଭକ୍ତି ।
ତାହା କହୁଅଛି ସାବଧାନ ହୋଇ ଶୁଣ
ଇନ୍ଦ୍ରାଦି ଦେବତାଗଣ ଆସି ପ୍ରତିଦିନ ।
ଜଗତ୍‌ପତିଙ୍କର ପୂଜା ହୋଇବା ନିମିତ୍ତ
ଦେବଭୋଗ୍ୟ ଦିବ୍ୟବସ୍ତୁ ଆଣନ୍ତି ସତତ ।
ପ୍ରଭୁ ଜଗନ୍ନାଥଙ୍କୁ ଯେ କରନ୍ତି ପୂଜନ
ସ୍ତବ ସ୍ତୋତ୍ର ନୃତ୍ୟ ଗୀତ ବାଦ୍ୟ ବଜାଇଣ ।

Digitized by srujanika@gmail.com

ପ୍ରଭୁଙ୍କୁ ପ୍ରଣାମ ଆଉ କରି ଦରଶନ
ପୁନର୍ବାର ସ୍ୱର୍ଗଲୋକ କରନ୍ତି ଗମନ ।
ଏ ସକଳ ଦିବ୍ୟବସ୍ତୁ ଜଗତ୍‌ପତିଙ୍କର
ନିର୍ମାଲ୍ୟ ଅଟଇ ମନେ ସଂଶୟ ନ କର ।
ଆପଣଙ୍କ ସେବା ଅର୍ଥ କରିଛି ଅର୍ପଣ
ସନ୍ଦେହ ନ କରି ମନେ କରନ୍ତୁ ଭୋଜନ ।
ବିଷ୍ଣୁଙ୍କର ଏ ନିର୍ମାଲ୍ୟ କରି ମୁଁ ଭକ୍ଷଣ
ରୋଗ ବୃଦ୍ଧାବସ୍ଥା ତେଜି ଚିର ଯଉବନ ।
ପୁତ୍ର ବନ୍ଧୁବର୍ଗ ସହ ଅୟୁତେ ବରଷ
ପରମାୟୁ ପ୍ରାପ୍ତହୋଇ ସୁଖ କରେ ବାସ ।
ପ୍ରସାଦ ଭକ୍ଷଣ କଲେ ମୁକ୍ତି ହୁଏ ପ୍ରାପ୍ତି
ପାପରାଶି ନଷ୍ଟ ହୁଏ ମିଳେ ସଦଗତି ।
ବିଶ୍ୱାବସୁଙ୍କର ଏହି ଦୁର୍ଲ୍ଲଭ କରମ
ଶ୍ରବଣ କରି ରୋମାଞ୍ଚ ହୋଇଲେ ବ୍ରାହ୍ମଣ ।
ଆନନ୍ଦ ଜନିତ ଅଶ୍ରୁଜଳେ ଚକ୍ଷୁପୂର୍ଣ୍ଣ
ବିଚାରିଲେ ମୋର ହେଲା କୃତାର୍ଥ ଜୀବନ ।
ଆଶ୍ଚର୍ଯ୍ୟ ଶବର ବଂଶେ ଏହାର ଜନମ
ଭଗବାନଙ୍କୁ ପ୍ରତ୍ୟହ କରନ୍ତି ଦର୍ଶନ ।
ଦିବ୍ୟ ନିର୍ମାଲ୍ୟ ସକଳ ସେହି ପ୍ରଭୁଙ୍କର
ଦିବାରାତ୍ରି ଭୋଗ କରେ ଜାତିରେ ଶବର ।
ବିଷ୍ଣୁଭକ୍ତ ଏହି ନୀଳାଚଳ ବାସୀଗଣ
ଏମାନଙ୍କ ସମ ଭକ୍ତ ନାହିଁ ତ୍ରିଭୁବନ ।
କି ନିମିତ୍ତ ନିଜ ଗୃହେ କରିବି ଗମନ
କୁଟୁମ୍ବ ପୋଷଣ ଦୁଃଖେ ନାହିଁ ପ୍ରୟୋଜନ ।
ଏହି ଶବର ସଙ୍ଗରେ ମଇତ୍ର ହୋଇବି
ଗୃହ ନିର୍ମାଣ କରି ମୁଁ ଏ ସ୍ଥାନେ ରହିବି ।
କେତେକ୍ଷଣ ଚିନ୍ତାକଲେ ଶ୍ରୀକୃଷ୍ଣ ଚରଣ
ପୁନର୍ବାର ଶବରଙ୍କୁ କହିଲେ ବଚନ ।
ହେ ସାଧୁ ତୁମ୍ଭର ସ୍ନେହ ଯଦି ଆମ୍ଭଠାରେ
ମିତ୍ରତା ସ୍ଥାପନ କର ରହିବା ଏଠାରେ ।
ଏହି କଥା ନିଶ୍ଚୟ ମୁଁ ମନରେ କରୁଛି
ରାଜସେବା ସୁଖରେ କି ପ୍ରୟୋଜନ ଅଛି ।
ତୁମ୍ଭସଙ୍ଗେ ଏ ସ୍ଥାନରେ ବାସ ମୁଁ କରିବି
ମଧୁସୂଦନଙ୍କ ଉପାସନା ଆଚରିବି ।
ନ କରିବି ସେହିପରି କରିବି ଯତନ
ଯେଉଁପରି ପୁନର୍ବାର ଏ ଦେହ ଧାରଣ ।
ମିତ୍ର ତୁମ୍ଭେ ଅଟ ସାଧୁ ସୌଭାଗ୍ୟ କ୍ରମରେ
ତୁମ୍ଭ ସଙ୍ଗତେ ମିଳନ ହୋଇଛି ଏଠାରେ ।
ତୁମ୍ଭ ଅନୁଗ୍ରହେ ଏହି ସଂସାର ସାଗର
ମୁଁ ତ ପାରି ହୋଇଯିବି ହେଲେହେଁ ଦୁସ୍ତର ।
ବିଷ୍ଣୁଭକ୍ତ ସଙ୍ଗେ କଲେ ମିତ୍ରତା ସ୍ଥାପନ
ତାହାର ସଂସାର ଦୁଃଖ ହୁଏ ଅବସାନ ।
ଏ ସଂସାରେ ବିଷ୍ଣୁଭକ୍ତ ସଙ୍ଗେ ମିତ୍ରପଣ
ଶ୍ରେଷ୍ଠ ଧର୍ମ ବୋଲି କହିଛନ୍ତି ସାଧୁଜନ ।
ବିଷ୍ଣୁଭକ୍ତ ବନ୍ଧୁ ସଙ୍ଗେ ସହବାସ କଲେ
ପୁଣ୍ଡରୀକାକ୍ଷଙ୍କ ସଙ୍ଗେ ସାକ୍ଷାତ୍‌କାର ମିଳେ ।
ହେ ସଖେ ଦେଶକୁ ପ୍ରତ୍ୟାଗମନ ମୁଁ କଲେ
ଇନ୍ଦ୍ରଦ୍ୟୁମ୍ନ ନରପତି ଆସିବେ ତତ୍‌କାଳେ ।
ଉପାସନା କରିବାକୁ ଭଗବାନାଙ୍କର
ଏହିସ୍ଥାନେ ଆସି ବାସ କରିବେ ସତ୍ୱର ।
ଭଗବାନଙ୍କ ପ୍ରୀତ୍ୟାର୍ଥେ ବୃହତ ମନ୍ଦିର
ପୂଜା ପାଇଁ ସଜାଇବେ ବହୁ ଉପଚାର ।
ଏହି ଇଚ୍ଛା କରିଛନ୍ତି ରାଜା ଇନ୍ଦ୍ରଦ୍ୟୁମ୍ନ
ଅଟଳ ରାଜ ପ୍ରତିଜ୍ଞା ସାବଧାନେ ଶୁଣ ।
ମନର ଏ ଅଭିଳାଷ ସାଧନ ନିମିତ୍ତ
ରାଜାଙ୍କ ପକ୍ଷରେ ଏହି ସ୍ଥାନ ଉପଯୁକ୍ତ ।
ଏ ସ୍ଥାନ ବାରତା ବେଗେ ଜଣାଇବି ଯାଇଁ
ଅଙ୍ଗୀକାର କରିଅଛି ପୂର୍ବରୁ ଯେ ମୁହିଁ ।
ମିତ୍ର ତୁମ୍ଭେ ମୋତେ ବେଗେ ମେଲାଣି ଯେ ଦିଅ
ମୋର ନିଜ ଦେଶକୁ ମୁଁ ଯିବି ତ ନିଶ୍ଚୟ ।
କହନ୍ତି ଶବର ଶୁଣ ହେ ମିତ୍ର ବ୍ରାହ୍ମଣ
ଯେଉଁରୂପେ ଇନ୍ଦ୍ରଦ୍ୟୁମ୍ନ ଆସିବେ ଏ ସ୍ଥାନ ।
ବିଷ୍ଣୁଙ୍କ ଦର୍ଶନ ନ ପାଇବେ ମହୀପତି
ପୂର୍ବକାଳୁଁ ଏ ସ୍ଥାନରେ ଅଛି ଜନଶ୍ରୁତି ।
ଅଳ୍ପ କାଳେ ଅନ୍ତର୍ହିତ ହେବେ ଭଗବାନ
ସ୍ୱର୍ଣ୍ଣ ବାଲୁକାରେ ପୂର୍ଣ୍ଣ ହେବ ଏହିସ୍ଥାନ ।
ଯମ ନିକଟରେ ଅନ୍ତର୍ହିତ ହେବ ବୋଲି
ପୂର୍ବରୁ ପ୍ରତିଜ୍ଞା କରି ଅଛନ୍ତି ଶ୍ରୀହରି ।
କିନ୍ତୁ ମିତ୍ର ତୁମ୍ଭେ ଧନ୍ୟ ମହା ଭାଗ୍ୟବନ୍ତ
ପ୍ରଭୁଙ୍କୁ ଦର୍ଶନ କରି ହୋଇଛ କୃତାର୍ଥ ।
ବିପ୍ରବର ଏହି କଥା ମନେ ରଖିଥିବ
ଇନ୍ଦ୍ରଦ୍ୟୁମନ ରାଜାଙ୍କୁ ଯାଇ ନ କହିବ ।
ଏହିସ୍ଥାନେ ଅନ୍ତର୍ହିତ ହେବେ ନାରାୟଣ
ଏକଥା ପ୍ରକାଶ ନୁହେ ଅଛଇ ଗୋପନ ।
ଇନ୍ଦ୍ରଦ୍ୟୁମ୍ନ ଏହିସ୍ଥାନେ କରି ଆଗମନ
ନ ପାଇବେ ମହାପ୍ରଭୁଙ୍କର ଦରଶନ ।
ପ୍ରାୟୋପବେଶ ବ୍ରତରେ ବ୍ରତୀ ସେ ହୋଇଲେ
ଗଦାଧରଙ୍କୁ ସ୍ୱପ୍ନରେ ଦର୍ଶନ କରିଲେ ।
ସ୍ୱପ୍ନରେ ଆଦେଶ ପାଇ ରାଜା ଇନ୍ଦ୍ରଦ୍ୟୁମ୍ନ
ପ୍ରଭୁଙ୍କର ଚାରିରୂପ କରିବେ ନିର୍ମାଣ ।

Digitized by srujanika@gmail.com

ପ୍ରତିଷ୍ଠାବିଧି ବ୍ରହ୍ମଙ୍କୁ ଆଣି କରାଇବେ
ଭକ୍ତି ସହକାରେ ନିତ୍ୟ ପୂଜା ଖଞ୍ଜିଦେବେ ।
ଏହି କ୍ଷେତ୍ରେ ଜଗନ୍ନାଥ ଥିବେ ଯେତେକାଳ
ତାହାଙ୍କର ଅନୁଗ୍ରହ ପାଇବେ ସକଳ ।
ଆମ୍ଭ ଦୁହିଁଙ୍କର ବଂଶ ରହିବ ନିଶ୍ଚୟ
ବିପ୍ରବର ଏକଥାରେ ନ କର ସଂଶୟ ।
ହେ ମିତ୍ର କିମ୍ପାଇ ଦୁଃଖ କରୁଛ ମନରେ
ଇନ୍ଦ୍ରଦ୍ୟୁମ୍ନ ରାଜା ବାସ କରିବେ ଏଠାରେ ।
ଆଜି ସୁଖେ ଏ ସ୍ଥାନରେ କରନ୍ତୁ ଶୟନ
ପ୍ରାତଃକାଳ ହେଲେ ସମୁଦ୍ରରେ କରି ସ୍ନାନ ।
ନୀଳକାନ୍ତ ମଣିମୟ ପ୍ରଭୁଙ୍କୁ ଦର୍ଶନ
କରିବି ନିର୍ଣ୍ଣୟ ରାଜାଙ୍କର ବାସସ୍ଥାନ ।
ବିଦ୍ୟାପତି ବିଶ୍ୱାବସୁ ଦୁହେଁ ଏ ପ୍ରକାର
ବହୁବିଧ କଥାବାର୍ତ୍ତା ହେଲେ ପରସ୍ପର ।
ଉତ୍ତମ ସ୍ଥାନରେ ଶଯ୍ୟା କରିଲେ ରଚନ
କୋମଳ ପତ୍ର ବିଛାଇ ଶୋଇଲେ ତକ୍ଷଣ ।
ପ୍ରାତଃକାଳେ ସମୁଦ୍ରରେ ସାରିଲେ ସ୍ନାହାନ
ନୀଳମାଧବଙ୍କୁ କଲେ ଦର୍ଶନ ପ୍ରଣାମ ।
ରାଜାଙ୍କର ବାସଯୋଗ୍ୟ ସ୍ଥାନ ନିରୂପଣ
କରିସାରି ସ୍ୱଗୃହକୁ କରିଲେ ପ୍ରସ୍ଥାନ ।
ମିତ୍ର ବିଶ୍ୱାବସୁ ସଙ୍ଗେ ବିଚାର କରିଲେ
ସମ୍ବାଦ ଦେବେ ଯେ ରୂପେ ନୃପତି ଛାମୁରେ ।
ରଥ ଆରୋହଣ କରି ଅବନ୍ତୀ ନଗରେ
ଚଳିଗଲେ ବିଦ୍ୟାପତି ଆନନ୍ଦ ମନରେ ।
ଉତ୍କଳ ଖଣ୍ଡେ ଅଷ୍ଟମ ଛାନ୍ଦ ହେଲା ଶେଷ
ବିପଦ ସାଗରୁ ଉଦ୍ଧରିବେ ନୀଳାଦ୍ରୀଶ ।
ଜୟ ଜୟ ଜଗନ୍ନାଥ କରୁଣା ସାଗର
ଭକ୍ତ ବାଞ୍ଛା କଳ୍ପତରୁ ଜଗତ ଆଧାର ।
ଚଉରାଶୀ ଲକ୍ଷ ଯୋନି ଭ୍ରମଣ ଶେଷରେ
ଜନମ ହୋଇଛି ଜୀବ ମାନବ ବଂଶରେ ।
ଅତୀତ କାଳରେ କେତେ ହୋଇଛି ଜନମ
କେତେ ପିତା କେତେ ମାତା ପତ୍ନୀ ଅଗଣନ ।
କେତେ ସୁତା ସୁତ ବନ୍ଧୁ ବାନ୍ଧବ ସଙ୍ଗରେ
ଅଭିନେତା ହେଲି ଭବରଙ୍ଗ ମଞ୍ଚପରେ ।
ଅଭିନୟ ଶେଷେ ମୃତ୍ୟୁ ପୁଣି ହୁଏ ଜନ୍ମ
ତନ୍ତଯୋଗେ ଜ୍ଞାନ ଭକ୍ତି ନ କରେ ସାଧନ ।
ସାଧନ ବିହୀନ ପଶୁ ସଙ୍ଗତେ ସମାନ
ସଦାଚାର ବିବର୍ଜିତ ବିବେକ ବିହୀନ ।
କିପରି ତରିବି ଏହି ସଂସାର ସାଗର
କରଯୋଡ଼ି ମାଗୁଅଛି ଦ୍ୱିଜ ହରିହର ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳଖଣ୍ଡେ
ବିଦ୍ୟାପତି ନୀଳମାଧବ ଦର୍ଶନ ବର୍ଣ୍ଣନେ
ନାମ ଅଷ୍ଟମୋଽଧ୍ୟାୟଃ ।

□□

## ନବମ ଅଧ୍ୟାୟ

କହନ୍ତି ଜୈମିନି ମୁନି ଶୁଣ ଋଷିଗଣ
ସ୍ୱଦେଶକୁ ବିଦ୍ୟାପତି କରନ୍ତେ ଗମନ ।
ସାୟଂକାଳ ହେଲା ଦେବେ ଆସିଲେ ତୁରିତ
ସ୍ୱର୍ଗ ଭୁବନରୁ ନୀଳାଚଳେ ଉପସ୍ଥିତ ।
ଏ ସମୟେ ଅତି ବେଗେ ବହିଲା ପବନ
ସମୁଦ୍ର ବାଲିରେ ପୂର୍ଣ୍ଣ ହେଲା ସେହି ସ୍ଥାନ ।
ତହିଁ ହେଲା ବୃଷ୍ଟିରୋଧ ଦେବଗଣଙ୍କର
ପୁରୁଷୋତ୍ତମଙ୍କୁ ଧ୍ୟାନ କରିଲେ ସତ୍ୱର ।
ମୁହୂର୍ତ୍ତ ପର୍ଯ୍ୟନ୍ତ ଦେବଗଣ କଲେ ଧ୍ୟାନ
ଧ୍ୟାନ ଶେଷରେ ଦେଖିଲେ ବାଲି ପୂର୍ଣ୍ଣ ସ୍ଥାନ ।
ଇନ୍ଦ୍ରିୟଗଣ ବିକୃତ ହୁଅନ୍ତେ ସେ କାଳେ
ନୀଳମାଧବ ରୋହିଣୀ କୁଣ୍ଡ ନ ଦେଖିଲେ ।
ଚିନ୍ତାରେ ଆକୁଳ ହୋଇ ସର୍ବ ଦେବଗଣ
କି ହେଲା କି ହେଲା କହି କରିଲେ ରୋଦନ ।
ଆଜି କି ଦୁର୍ଦ୍ଦିନ ଆସି ହେଲା ଉପସ୍ଥିତ
କ୍ଷଣ କାଳରେ ମାଧବ ହେଲେ ଅନ୍ତର୍ହିତ ।
ହେ ପୁରୁଷୋତ୍ତମ ଆମ୍ଭେ କଲୁ କେଉଁ ଦୋଷ
ସେବକଗଣଙ୍କୁ ଛାଡ଼ି ହୋଇଲ ଅଦୃଶ୍ୟ ।
ଯାହାଙ୍କ ନିମିତ୍ତ ଦେହଧାରୀ ହୋଇଥିଲ
ତାହାଙ୍କୁ ଅନ୍ୟଥା କରି ଅଦୃଷ୍ଟ ହୋଇଲ ।
କମଳ ନୟନୀ ତୁମ୍ଭ ଶରୀରୁ ଉତ୍ପନ୍ନ
ଆମ୍ଭମାନଙ୍କୁ ଛାଡ଼ିଣ କରିଲେ ଅକର୍ମ ।
ହେଉଛୁ ନାମକୁ ମାତ୍ର ସ୍ୱର୍ଗର ଦେବତା
ଅନ୍ତର୍ହିତ ହୋଇ ରଖିଗଲେ ଏହି କଥା ।
ହେ ଯଜ୍ଞ ପୁରୁଷ ଯଜ୍ଞକାରୀ ଦ୍ୱିଜଗଣ
ତୁମ୍ଭର ପ୍ରୀତି ସାଧନ କରିବା କାରଣ ।
ଆମ୍ଭମାନଙ୍କୁ ଆପଣଙ୍କ ଅଂଶରୁ ଉତ୍ପନ୍ନ
ଯାଗରେ କରନ୍ତି ହରି ଆମ୍ଭଙ୍କୁ ଆପଣ ।
ଆମ୍ଭମାନେ ଆପଣଙ୍କ ଆଦେଶାନୁସାରେ
ଯାଗର ଫଳକୁ ଦେଉ ଯଜମାନ କରେ ।
ଆମ୍ଭର ଦେହ ତୁମ୍ଭରି ଅଂଶୁ ଉତପନ୍ନ
ଏହି ଅହଂକାର ରୂପ କବଚେ ଆଛନ୍ନ ।

Digitized by srujanika@gmail.com

ତୁମ୍ଭ ଅନୁଗ୍ରହ ପାଇଁ ଜୀବନ ଧାରଣ
କରିଅଛୁ କି କରିବୁ ଆମ୍ଭେ ଏହିକ୍ଷଣ ।
ଛାଡ଼ିକରି କେଣେ ଗଲ ଆମ୍ଭଙ୍କୁ ଆପଣ
କେଉଁ ଦିଗକୁ କରିବୁ ଭୟେ ପଳାୟନ ।
ହେ ମାଧବ ନ ପାଇବୁ ଯଦି ଦରଶନ
ସ୍ୱର୍ଗେ ବା ମର୍ତ୍ତ୍ୟ ଭୁବନେ କେଉଁ ପ୍ରୟୋଜନ ।
ହେ ଦେବ ଆପଣ ଏବେ ପରିତ୍ୟାଗ କଲ
ଆମ୍ଭମାନଙ୍କର ବ୍ୟର୍ଥ ହୋଇଲା ସକଳ ।
ନିଷ୍କଳଙ୍କ ଶଶଧର ପରି ଶୋଭମାନ
ଆପଣଙ୍କ ମୁଖପଦ୍ମ ନ କଲୁ ଦର୍ଶନ ।
ସ୍ୱର୍ଗକୁ କିମ୍ପାଇ ଆଉ କରିବୁ ଗମନ
ଘୋର ତପସ୍ୟା କରିବୁ ରହି ଏହିସ୍ଥାନ ।
ଯଦ୍ୟପି ପୁଣ୍ଡରୀକାକ୍ଷ ନ ପାଉ ଦର୍ଶନ
ସକଳେ କରିବୁ ଜଟା ବଲ୍‌କଳ ଧାରଣ ।
ଆମ୍ଭେ ବନବାସୀ ହୋଇ କରିବୁ ଭ୍ରମଣ
ଦୟା ସାଗରୁ ବିନ୍ଦୁଏ ଦୟା କର ଦାନ ।
ଆମ୍ଭେ ହୋଇଲୁ ଅନାଥ ଆଉ ଅତି ଦୀନ
ଶରଣ ଗଲୁ ଆମ୍ଭଙ୍କୁ କର ପରିତ୍ରାଣ ।
ଆହେ ପ୍ରଭୁ ନ କରିଣ ତୁମ୍ଭଙ୍କୁ ଦର୍ଶନ
ଏକାନ୍ତ ଶୋକ ସାଗରେ ହୋଇଗଲୁ ମଗ୍ନ ।
ସାକ୍ଷାତ୍‌କାର-ଦାନ ରୂପ ନୌକାରେ ଆପଣ
ଏ ଶୋକ ସାଗରୁ ବେଗେ କର ପରିତ୍ରାଣ ।
ବିଳାପ କରନ୍ତେ ଏହି-ରୂପେ ଦେବଗଣ
ସହସା ଆକାଶ ବାଣୀ କରିଲେ ଶ୍ରବଣ ।
ଭଗବାନ ପୁନର୍ବାର ହେବେ ପ୍ରାଦୁର୍ଭୂତ
ଶୋକରେ ଦେବତାଗଣ ନୁହ ଅଭିଭୂତ ।
ଆଜିଠାରୁ ଭଗବାନଙ୍କର ଦରଶନ
ଦୁର୍ଲ୍ଲଭ ହୋଇବ ଶୁଣିଥାଅ ଦେବଗଣ ।
ଏହିକ୍ଷେତ୍ରେ ଆସି ଭଗବାନଙ୍କୁ ପ୍ରଣାମ
କରିଲେ ଦର୍ଶନ ଫଳ ପାଇବ ତତ୍‌କ୍ଷଣ ।
ବ୍ରହ୍ମାଙ୍କର ନିକଟକୁ ଯାଅ ଦେବଗଣ
ବୁଝିବ କାହିଁକି ଆମ୍ଭେ ହେଲୁ ଅନ୍ତର୍ଦ୍ଧାନ ।
ଦେବଗଣ ଏହି ବାଣୀ କରନ୍ତେ ଶ୍ରବଣ
ବ୍ରହ୍ମାଙ୍କର ସମୀପକୁ ଗଲେ ତତ୍‌କ୍ଷଣ ।
ପୂର୍ବେ ଯମରାଜଙ୍କୁ ଯେ କଲେ ଅନୁଗ୍ରହ
ତେଣୁ ପ୍ରଭୁ ଦାରୁରୂପ ଧରିବେ ନିଶ୍ଚୟ ।
ଏମନ୍ତ ବ୍ରହ୍ମାଙ୍କଠାରୁ ଶୁଣି ଦେବଗଣ
ସନ୍ତୁଷ୍ଟ ହୋଇ ସ୍ୱର୍ଗକୁ କରିଲେ ଗମନ ।
ବିଦ୍ୟାପତିଙ୍କ ବାରତା ଶୁଣି ମୁନିଗଣ
ଅତି ସତ୍ୱର କରିଲେ ରଥ ଆରୋହଣ ।
ମନେ ମନେ ବିଚାରିଲେ କାର୍ଯ୍ୟ-ସିଦ୍ଧି ହେଲା
ଶ୍ରୀ ନୀଳ-ମାଧବଙ୍କର ଦର୍ଶନ ମିଳିଲା ।
ଏ କ୍ଷେତ୍ରର ଚତୁର୍ଦ୍ଦିଗ କରିଲି ଭ୍ରମଣ
କ୍ଷେତ୍ରମଧ୍ୟେ ସର୍ବସ୍ଥାନ କଲି ଦରଶନ ।
ଯେ ନାମ କୀର୍ତ୍ତନ କଲେ ହୁଏ ପାପ କ୍ଷୟ
ସେହି ପ୍ରଭୁଙ୍କ କ୍ଷେତ୍ରକୁ ଆସିଛି ନିଶ୍ଚୟ ।
ଏ ମହାକ୍ଷେତ୍ରକୁ ବେଗେ କରି ପ୍ରଦକ୍ଷିଣ
ଅବିଳମ୍ବେ ସ୍ୱଦେଶକୁ କରିବି ଗମନ ।
ପାପ ନାଶକାରୀ ନୀଳ-ସୁନ୍ଦର ପର୍ବତ
ସମୁଦ୍ର ତଟରେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ।
ଶତେବାର କଲେ ପୃଥିବୀକୁ ପ୍ରଦକ୍ଷିଣ
ଥରେ କ୍ଷେତ୍ର ପରିକ୍ରମା ସଙ୍ଗରେ ସମାନ ।
ଏକଥା ମିତ୍ର ମୁଖରୁ ଶୁଣିଅଛି ମୁହିଁ
ବ୍ରାହ୍ମଣ ଏ ରୂପ ଚିନ୍ତା ମନରେ କରଇ ।
ନାନାତରୁ ସୁଶୋଭିତ କାନନରେ ପୂର୍ଣ୍ଣ
ପୁରୁଷୋତ୍ତମ କ୍ଷେତ୍ରକୁ କଲେ ପ୍ରଦକ୍ଷିଣ ।
ମନୋହର ବନେ ପକ୍ଷୀ କୂଜନ ଦେଖିଲେ
ପୁଷ୍ପୋଦ୍ୟାନରେ ଭ୍ରମର ଗୁଞ୍ଜନ ଶୁଣିଲେ ।
ଛାୟାପ୍ରଦ ବହୁ ବୃକ୍ଷମାନଙ୍କରେ ପୂର୍ଣ୍ଣ
ପ୍ରବେଶ ନ କରେ ତହିଁ ସୂର୍ଯ୍ୟର କିରଣ ।
ସକଳ ଋତୁ କୁସୁମ ତହିଁ ବିକଶିତ
ସେ ସ୍ଥାନ ବିବିଧ ଲତା ଗୁଳ୍ମେ ସୁଶୋଭିତ ।
ପ୍ରତି ସରୋବର ଆଉ ଲତା ମାନଙ୍କରେ
ପ୍ରସ୍ଫୁଟିତ ହୋଇ ପୁଷ୍ପଜନ ମନହରେ ।
ପ୍ରଦକ୍ଷିଣ କରିସାରି କ୍ଷେତ୍ର ତ୍ୟାଗ କଲେ
ଉପବାସେ ରହି ଜଗନ୍ନାଥଙ୍କୁ ଚିନ୍ତିଲେ ।
ସାୟଂକାଳେ ପ୍ରବେଶିଲେ ଅବନ୍ତୀ ନଗରେ
ଦ୍ୱିଜ ଆଗମନ ଦୂତଗଣ ଦେଖି ଦୂର ।
ରାଜାଙ୍କ ନିକଟେ ଯାଇଁ ପ୍ରବେଶ ହୋଇଲେ
ବିଦ୍ୟାପତିଙ୍କର ଆଗମନ ଜଣାଇଲେ ।
ଶୁଣନ୍ତେ ଇନ୍ଦ୍ରଦ୍ୟୁମ୍ନ ହୋଇଲେ ସନ୍ତୋଷ
ଯଥାବିଧି ନାରାୟଣ ପୂଜା କଲେ ଶେଷ ।
ପଣ୍ଡିତମାନଙ୍କ ସହ ଆନନ୍ଦ ଚିତ୍ତରେ
ବିଦ୍ୟାପତିଙ୍କୁ ପ୍ରତୀକ୍ଷା କରିଣ ରହିଲେ ।
ବିଦ୍ୟାପତି ରାଜଦ୍ୱାରେ ପ୍ରବେଶ ହୋଇଲେ
ଦ୍ୱାରପାଳ ବେତ ଧରି ଆଗରେ ଚଳିଲେ ।
ପୁରବାସୀ ଆନନ୍ଦରେ ପଛରେ ଧାମନ୍ତି
ରାଜାଙ୍କ ଆଗରେ ଯାଇ ହେଲେ ଉପସ୍ଥିତି ।
ଶ୍ରୀ ନୀଳ ମାଧବଙ୍କର ନିର୍ମାଲ୍ୟ ଯେ ମାଳା
ରାଜାଙ୍କ ହସ୍ତରେ ନେଇ ବିପ୍ର ଅରପିଲା ।

Digitized by srujanika@gmail.com

ବିଦ୍ୟାପତିଙ୍କୁ ଦର୍ଶନ କରନ୍ତେ ରାଜନ
ସିଂହାସନ ପରିତ୍ୟାଗ କଲେ ତତକ୍ଷଣ ।
ଜଗଦୀଶ ସୁପ୍ରସନ୍ନ ହୁଅନ୍ତୁ ବୋଇଲେ
ବିଦ୍ୟାପତିଙ୍କ ନିକଟେ ଉପସ୍ଥିତ ହେଲେ ।
ଆଜି ତ ମୋର ଜୀବନ ହୋଇଅଛି ଧନ୍ୟ
କର୍ମ ସଫଳ ଆବର ସଫଳ ଜୀବନ ।
ପ୍ରଭୁଙ୍କ ଭୂଷିତ ମାଳା ନିର୍ମାଲ୍ୟ ଉତ୍ତମ
ସ୍ୱଗୃହେ ରହି ଭାଗ୍ୟକୁ କରିଲି ଦର୍ଶନ ।
ନୀଳମାଧବଙ୍କ ମସ୍ତକରେ ଥିଲା ମାଳା
ଗନ୍ଧ ନିରୂପମ ପୂର୍ଣ୍ଣ ସୌରଭରେ ଭରା ।
କଳ୍ପବୃକ୍ଷ କୁସୁମର ଅତି ନ୍ୟୁନ ଗନ୍ଧ
ପାପରାଶି ଦୂରେ ଯାଏ ପାଇ ମାଳା ଗନ୍ଧ ।
ଗନ୍ଧ ଆକୃଷ୍ଟେ ଭ୍ରମର ଦଳ ନ ତେଜନ୍ତି
ତେଣୁ ଏ ମାଳାକୁ ତହିଁ କରୁଛି ପ୍ରଣତି ।
ଯାର ପଦରଜ ପାଇ ସର୍ବ ଦେବଗଣ
ପରମ ସମ୍ପଦ ଲଭି ହୋଇଛନ୍ତି ଧନ୍ୟ ।
ବିଷ୍ଣୁଙ୍କର କଳେବର ସ୍ପର୍ଶରୁ ପବିତ୍ର
ପ୍ରଭୁଙ୍କ ଅଙ୍ଗରାଗରେ ହୋଇଛି ରଞ୍ଜିତ ।
ଏହି ମନୋହର ମାଳା ପାଇ ହେଲି ଧନ୍ୟ
ଏ ମାଳାକୁ ବାରମ୍ବାର କରୁଛି ପ୍ରଣାମ ।
ଲକ୍ଷ୍ମୀଦେବୀ ବିଷ୍ଣୁ ହୃଦ ପଦ୍ମ ବିହାରିଣୀ
ବିଷ୍ଣୁଙ୍କର ସଙ୍ଗେ ରହି ସେ ଅତି ମାନିନୀ ।
ଲକ୍ଷ୍ମୀଙ୍କର ଗର୍ବ ମାଳା କରିଅଛି ଦୂର
ଯେହେତୁ ଏ ମାଳା ଥିଲା ବିଷ୍ଣୁ ବକ୍ଷସ୍ଥଳ ।
କୁସୁମ ସୌନ୍ଦର୍ଯ୍ୟ ଲକ୍ଷ୍ମୀଠାରୁ ନ୍ୟୁନ ନୁହେ
ଲକ୍ଷ୍ମୀ ସପତଣୀ ରୂପେ ମାଳା ହୃଦେ ଥାଏ ।
ଲକ୍ଷ୍ମୀକାନ୍ତଙ୍କର ଦେହେ କରି ଅବସ୍ଥିତି
ତେଣୁ ଏ ମାଳା ଲଭନ୍ତି ସୌଭାଗ୍ୟ ସୁଖ୍ୟାତି ।
ସୌନ୍ଦର୍ଯ୍ୟେ ଅଧିକ ଆଉ ସୌରଭେ ମଣ୍ଡିତ
ହୋଇଛି ଏ ମାଳା ରକ୍ଷା କର ଲକ୍ଷ୍ମୀକାନ୍ତ ।
ପ୍ରଭୋ ଦେବ ନୀଳାଚଳ ଶିଖର ଭୂଷଣ
ହେ ପ୍ରଣତୀଜନ ଦୁଃଖ ହାରି ଜନାର୍ଦ୍ଦନ ।
ତୁମ୍ଭର ପାଦପଦ୍ମରେ ଗଲି ମୁଁ ଶରଣ
ଏ ଭବସାଗରୁ ନାଥ କର ପରିତ୍ରାଣ ।
ମାଳାକୁ ଦର୍ଶନ କରି ସେହି କ୍ଷିତିପତି
ବାଷ୍ପ ଗଦ୍‌ଗଦ ବଚନେ କଲେ ବହୁ ସ୍ତୁତି ।
ଦେହରେ ରୋମାଞ୍ଚ ଜାତ ହେଲା ତତକ୍ଷଣ
ଭୂତଳେ ମସ୍ତକ ରଖି କରିଲେ ପ୍ରଣାମ ।
ବିଦ୍ୟାପତି ନୀଳାଚଳେ କରନ୍ତେ ଦର୍ଶନ
ଦିବ୍ୟ ଦେହ ଧରି ପାପ ହୋଇଅଛି ଶୂନ୍ୟ ।
ସେହି ମାଧବଙ୍କୁ ହୃଦପଦ୍ମେ କରି ଧ୍ୟାନ
ଉପସ୍ଥିତ ହେଲେ ଯାଇଁ ରାଜା ସନ୍ନିଧାନ ।
ମାଳା ରାଜା ହସ୍ତେ ଦେଇ କହିଲେ ଏସନ
ଯାର ତେଜେ ଜୀବଲୋକ କଳ୍ମଷ ଦହନ ।
ସେହି ନୀଳାଚଳ ବାସୀ ଦେବ ଜଗନ୍ନାଥ
ଦୟାକରି ଆପଣଙ୍କୁ କରିବେ କୃତାର୍ଥ ।
ଶ୍ରୀପୁରୁଷୋତ୍ତମ ମୁକ୍ତିଦାତା ଭଗବାନ
ଭକ୍ତର ନିମିତ୍ତ କରିଛନ୍ତି ଅବସ୍ଥାନ ।
କରିବେ କୃତାର୍ଥ ନିଜ ସ୍ୱରୂପ ଦେଖାଇ
ଏ ଆଦେଶ ମାଳା ଛଳେ ହେଲା ନରସାଇଁ ।
ଏହାକହି ବିଦ୍ୟାପତି ରାଜାଙ୍କ ଗଳାରେ
ଲମ୍ବାଇଣ ଦେଲେ ମାଳା ଅତି ହରଷରେ ।
ଇନ୍ଦ୍ରଦ୍ୟୁମ୍ନ ନିଜ ହୃଦୟରେ ବିଳମ୍ବିତ
ମାଳା ଦେଖି ମନେ କଲେ ଯେହ୍ନେ ଲକ୍ଷ୍ମୀକାନ୍ତ ।
ଆଲିଙ୍ଗନ କରୁଛନ୍ତି ହୃଦୟ ଦେଶରେ
ଲୋତକେପୂର୍ଣ୍ଣ ନୟନ ହସ୍ତ ମସ୍ତକରେ ।
ଚକ୍ଷୁ ନିମୀଳନ କରି ଶ୍ରୀ ଜଗନ୍ନାଥଙ୍କୁ
ସ୍ତୁତି କଲେ ସ୍ୱଚକ୍ଷୁରେ ଦେଖିବେ ପ୍ରଭୁଙ୍କୁ ।
ପ୍ରଭୋ ଜଗନ୍ନାଥ ଦୟା ହେଉ ଯେ ତୁମ୍ଭର
ସୃଷ୍ଟି ସ୍ଥିତି ପ୍ରଳୟ କରତା ଜଗତର ।
ଆପଣଙ୍କ ଲୋମ କୂପେ ଲୀଳାର ନିମିତ୍ତ
ଏ ବିଶ୍ୱ ବ୍ରହ୍ମାଣ୍ଡ ରହିଅଛି ଅବସ୍ଥିତ ।
ସେ ବ୍ରହ୍ମାଣ୍ଡ ଭାର ନିଜେ କରିଛ ବହନ
ନିଖିଳ ଲୋକର ଅନ୍ତର୍ଯ୍ୟାମୀ ନାରାୟଣ ।
ପ୍ରଣତ ଜନର ଆର୍ତ୍ତ କରିଛ ହରଣ
ତେଣୁ ତୁମ୍ଭ ନାମ ଆର୍ତ୍ତତ୍ରାଣ ପରାୟଣ ।
ବ୍ରହ୍ମା ଇନ୍ଦ୍ରରୁଦ୍ର ଆଦି ସର୍ବ ଦେବଗଣ
ମୁକୁଟ ପ୍ରଭାରେ ପାଦ କରନ୍ତି ବନ୍ଦନ ।
ଜଣାଅଛି ଆହେ ଦେବ ତୁମ୍ଭେ ପରାତ୍ପର
ତୁମ୍ଭେ ଅଟ ଅକପଟ ଦୟାର ସାଗର ।
ଦୀନ ଅନାଥ ବିପନ୍ନ ବ୍ୟକ୍ତିମାନଙ୍କର
ରକ୍ଷଣେ ସର୍ବଦା ହୋଇଥାଅ ତତପର ।
ଜଗନ୍ନାଥ ମୁଁ ତ ଅଟେ ଏକ ଦୀନଜନ
ଚିରକାଳରୁ ମୋହର ଆଚ୍ଛନ୍ନ ଜୀବନ ।
ଆପଣଙ୍କ ବ୍ୟତିରେକ ନାହିଁ ଅନ୍ୟଗତି
ହେ ଭକ୍ତବତ୍ସଳ ଦୟା କରନ୍ତୁ ସମ୍ପ୍ରତି ।
ନରପତି ଏହିରୂପେ ବହୁସ୍ତୁତି କଲେ
ସଭାସଦ୍‌ଗଣ ସହ ଆସନେ ବସିଲେ ।
ସେ ସମୟେ ଅଷ୍ଟାଦଶ ବିଦ୍ୟାରେ ପଣ୍ଡିତ
ଯାଗକାରୀ ବିପ୍ରଗଣ ଥିଲେ ଉପସ୍ଥିତ ।

Digitized by srujanika@gmail.com

ମୁନି ବିପ୍ର ମନ୍ତ୍ରୀ-ଭୃତ୍ୟ ବୃଦ୍ଧ ପରିଜନ
ଉପବେଶନ କରିଲେ ସର୍ବେ ଯାଗଜନ ।
ବିଦ୍ୟାପତିଙ୍କୁ ଯେ ବହୁ ସସମ୍ମାନ କଲେ
ରାଜ-ସମ୍ମୁଖ ଆସନେ ନେଇ ବସାଇଲେ ।
କୁଶଳ ପ୍ରଶ୍ନ ପଚାରି ଅତି ଆନନ୍ଦରେ
ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ପୁଚ୍ଛିଲେ ।
ମଣିମୟ ନୀଳ ମାଧବଙ୍କର ସ୍ୱରୂପ
ଏକାଗ୍ର ଚିତ୍ତେ ଜିଜ୍ଞାସା କଲେ ତହିଁ ଭୂପ ।
ମହାରାଜା ପଚାରନ୍ତେ କହିଲା ବ୍ରାହ୍ମଣ
ଯେଉଁରୂପେ ଯାଇଥିଲେ କଲେ ଦରଶନ ।
ଯେପରି ନୀଳ ପର୍ବତ କଲେ ଆରୋହଣ
ଯେ ବିଧିରେ କଲେ ନୀଳମାଧବ ଦର୍ଶନ ।
ରୋହିଣୀ-କୁଣ୍ଡରେ ସ୍ନାନ କରିଲେ ବିସ୍ତାରି
ଅକ୍ଷୟ ବଟ ମହିମା କହିଲେ ବିସ୍ତାରି ।
ନୃସିଂହଙ୍କୁ ଆଦିକରି ଅଷ୍ଟଶମ୍ଭୁ କଥା
ଅଷ୍ଟଶକ୍ତିଙ୍କର ସ୍ଥିତି କହିଲେ ସର୍ବଥା ।
ଯେତେ ଦୀର୍ଘ ପ୍ରତି କଲେ ତାହାର ବର୍ଣ୍ଣନା
ରଥେ ଆରୋହଣ କରି କ୍ଷେତ୍ର ପରିକ୍ରମା ।
କ୍ଷେତ୍ରେ ପ୍ରବେଶି ସମୁଦ୍ର ସ୍ନାନ ପରିଯନ୍ତେ
ବୁଝାଇ କହିଲେ ବିପ୍ର ରାଜାଙ୍କ ଅଗ୍ରତେ ।
ତୀର୍ଥଯାତ୍ରୀଙ୍କର ମୁଖୁ ପୂର୍ବେ ଶୁଣିଥିଲେ
ବ୍ରାହ୍ମଣ କହନ୍ତେ ରାଜା ବିଶ୍ୱାସ କରିଲେ ।
ପବିତ୍ର କ୍ଷେତ୍ର ମାହାତ୍ମ୍ୟ ଶ୍ରବଣ କରିଲେ
ହୃଷ୍ଟଚିତ୍ତେ ବ୍ରାହ୍ମଣଙ୍କୁ ରାଜନ କହିଲେ ।
ଆହେ ଦ୍ୱିଜ ମୋର ଆଶା ହେଉନାହିଁ ପୂର୍ଣ୍ଣ
ଆଉଥରେ କ୍ଷେତ୍ରକଥା କରନ୍ତୁ ବର୍ଣ୍ଣନ ।
ଇନ୍ଦ୍ର ନୀଳମଣିମୟ ମାଧବ ମୂରତି
ବର୍ଣ୍ଣନ ଯଥାର୍ଥ ରୂପେ କରନ୍ତୁ ସଂପ୍ରତି ।
ବିଦ୍ୟାପତି କହୁଛନ୍ତି ଶୁଣନ୍ତୁ ରାଜନ
ପ୍ରଭୁଙ୍କର ଦିବ୍ୟମୂର୍ତ୍ତି କରୁଛି ବର୍ଣ୍ଣନ ।
ଚର୍ମ୍ମ ଚକ୍ଷୁରେ ଦର୍ଶନ କଲେ ଜୀବନ୍ମୁକ୍ତ
ଇନ୍ଦ୍ର ନୀଳମଣି ଦ୍ୱାରା ସେ ମୂର୍ତ୍ତି ନିର୍ମିତ ।
ପୁରାତନମୂର୍ତ୍ତି, ବ୍ରହ୍ମା ଆଦି ଦେବଗଣ
ପ୍ରତ୍ୟହ ସ୍ୱର୍ଗରୁ ଆସି କରନ୍ତି ପୂଜନ ।
ଏ ଯେଉଁ ନିର୍ମାଲ୍ୟ ମାଳା କରିଛ ଧାରଣ
ସ୍ୱର୍ଗ ଭୁବନରୁ ଆଣିଥିଲେ ଦେବଗଣ ।
ଗନ୍ଧହୀନ ନ ହୁଅଇ ନ ହୁଅଇ ମ୍ଳାନ
ପୂଜା କଲେ ମାଧବଙ୍କୁ କରିଲେ ଅର୍ପଣ ।
ଅନେକ ଦିନ ହେଲାଣି ଏ ମାଳା ନରେଶ
ସୌରଭ ସୌନ୍ଦର୍ଯ୍ୟ କିଛି ହୋଇନାହିଁ ହ୍ରାସ ।
ହେ ରାଜନ ମୋର ଦେହ କରୁଛ ଦର୍ଶନ
ନିର୍ମାଲ୍ୟ ଭକ୍ଷଣ କରି ହେଲା ପାପଶୂନ୍ୟ ।
ମନୁଷ୍ୟ ଅତିରିକ୍ତ ତେଜ ଲଭିଅଛି
ନୃପବର ନିର୍ମାଲ୍ୟର ଏ ମହିମା ଅଛି ।
ନିର୍ମାଲ୍ୟ ଭକ୍ଷଣେ ବଳ କ୍ଷୟ ନ ହୁଅଇ
କ୍ଷୁଧା ତୃଷା ଆଦି ବୃତ୍ତି ଦୂରେ ଚାଲିଯାଇ ।
ଦର୍ଶନରେ ଭାଗ୍ୟୋଦୟ ହୁଅଇ ରାଜନ
ଏ ନିର୍ମାଲ୍ୟ ଭୋଗ ମୋକ୍ଷ କରଇ ପ୍ରଦାନ ।
ଜରାବସ୍ଥା ରୋଗ ଶୋକ ଆଦି ଯେତେ ଦୁଃଖ
ଏ ନିର୍ମାଲ୍ୟ ନାଶ କରେ ଦିଏ ବହୁ ସୁଖ ।
ମୁକ୍ତିଦାତା ଭଗବାନ ପ୍ରସନ୍ନ ବଦନ
ପ୍ରସ୍ଫୁଟିତ ପଦ୍ମପତ୍ର ସମାନ ଲୋଚନ ।
ଶରଣାଗତ ଜନଙ୍କୁ ଦିଅନ୍ତି ଅମୃତ
ଜଗନ୍ନାଥ କରିଛନ୍ତି ସେ କ୍ଷେତ୍ରେ ପ୍ରଭୁତ୍ୱ ।
ନବମାଧ୍ୟାୟ ଭାଷାରେ ହେଲା ସମାପତ
ବିପଦ ସାଗରୁ ଉଦ୍ଧାରିବେ ଲକ୍ଷ୍ମୀକାନ୍ତ ।
ଭାଷାବିତ୍ ପଣ୍ଡିତଗଣ ନ କରିବ ରୋଷ
ନିଜ ଗୁଣେ କ୍ଷମା ଦେବ ହରି ହର ଦୋଷ ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳ ଖଣ୍ଡେ
ଇନ୍ଦ୍ରଦ୍ୟୁମ୍ନ ନିର୍ମାଲ୍ୟ ମାଳା ଗ୍ରହଣେ ନାମ
ନବମୋଽଧ୍ୟାୟଃ ।



## ଦଶମ ଅଧ୍ୟାୟ

ଇନ୍ଦ୍ରଦ୍ୟୁମ୍ନ କହୁଛନ୍ତି ବିପ୍ରମଣି ଶୁଣ
କିପରି ସେହି-କ୍ଷେତ୍ରକୁ କରିଲ ଗମନ ।
ଜନ୍ମାବଧି ସେ କ୍ଷେତ୍ରକୁ ଯାଇ ତ ନ ଥିଲ
ଦିବ୍ୟ ଅଦ୍‌ଭୂତ ବୃତ୍ତାନ୍ତ କିପରି ଶୁଣିଲ ।
ସେ କଥା ଆମ୍ଭ ନିକଟେ କରନ୍ତୁ ପ୍ରକାଶ
ଶୁଣି ବିଦ୍ୟାପତି ମନେ ହୋଇଲେ ହରଷ ।
ବିଦ୍ୟାପତି କହୁଛନ୍ତି ଶୁଣ ମହାରାଜ
ଥରେ ଯାଇଁ ବୁଝିଅଛି ସେ କଥା ଆଶ୍ଚର୍ଯ୍ୟ ।
ସେ କ୍ଷେତ୍ରରେ ସନ୍ଧ୍ୟାକାଳେ ହେଲି ଉପସ୍ଥିତ
ଭଗବାନଙ୍କ ନିକଟେ ଚଳିଲି ତ୍ୱରିତ ।
ଯାଅ ଯାଅ ଏହି ଧ୍ୱନି ଆକାଶ ପଥରେ
ହେଉଥିଲା ଶୁଣିଲି ମୁଁ କର୍ଣ୍ଣ ଯୁଗଳରେ ।
ମହୀପତି ସେ କାଳରେ ମିଳି ଦେବଗଣ
ଆକାଶରୁ ପୁଷ୍ପ ବୃଷ୍ଟି କଲେ ବରଷଣ ।
ନୀଳାଚଳକୁ ପୁଷ୍ପରେ ଆଚ୍ଛାଦିତ କଲେ
ବୈକୁଣ୍ଠନାଥ ସମୀପେ ଉପସ୍ଥିତ ହେଲେ ।

Digitized by srujanika@gmail.com

ସ୍ୱର୍ଗୀୟ ସଙ୍ଗୀତ ଗାନ କରିଲେ ସେ କାଳେ
ବୀଣା ବେଣୁ ମୃଦଙ୍ଗାଦି ବାଦ୍ୟ ବଜାଇଲେ ।
ଦେବଗଣ ପ୍ରଭୁଙ୍କର ପ୍ରୀତି ସାଧନାର୍ଥ
ଉପଚାର ଦ୍ରବ୍ୟମାନ ଆଣିଲେ ବହୁତ ।
ମୋର ମନେ ହେଉଅଛି ସେହି ଉପଚାର
ନ ହୁଏ ଦୃଷ୍ଟିଗୋଚର କେବେ ମନୁଷ୍ୟର ।
ତପ୍ପରେ ଦେବତାଗଣ ଜଗନ୍ନାଥଙ୍କର
ପୂଜା କଲେ ସ୍ତବ ସ୍ତୋତ୍ର ପଢ଼ିଲେ ସତ୍ୱର ।
ଭଗବାନଙ୍କର ପ୍ରୀତି କରି ସମ୍ପାଦନ
ସ୍ୱର୍ଗ ଧାମକୁ ଆନନ୍ଦେ କରିଲେ ଗମନ ।
ଦେବଗଣ ଚଳିଯାନ୍ତେ ମୋର ମିତ୍ରବର
ବିଶ୍ୱାବସୁ ନାମ ତାର ଜାତିରେ ଶବର ।
ପ୍ରଭୁଙ୍କର ଭୋଗ୍ୟ ଖାଦ୍ୟ ଦ୍ରବ୍ୟ ପୁଷ୍ପମାଳା
ଉପହାର ଅର୍ଥେ ଆଣି ମୋତେ ସମର୍ପିଲା ।
ଏ ମାଳା ନୁହଇ ମ୍ଳାନ ମୂଲ୍ୟ ନିରୂପଣ
ହୋଇପାରି ନାହିଁ ଶୁଣ ଅବନ୍ତୀ ରାଜନ ।
ଏ ମାଳା ସ୍ପର୍ଶରେ ଦେହେ ଅଲକ୍ଷ୍ମୀ ନ ରହେ
ଆବର ପାପ ରାକ୍ଷସ ଭୟରେ ପଳାଏ ।
ଯେଉଁ କ୍ଷେତ୍ରେ ବାସ କରିଛନ୍ତି ଭଗବାନ
ତାର ପରିଚୟ କହୁଅଛି ରାଜା ଶୁଣ ।
ଅପୂର୍ବ ଶିଳ୍ପ ଚାତୁରୀ ରୂପ ମନୋହର
ତାହା ବର୍ଣ୍ଣିବାକୁ ଶକ୍ତି ନାହିଁ ମନୁଷ୍ୟର ।
ମହାରାଜା ଆପଣଙ୍କ ଭାଗ୍ୟବଳୁ କରି
ଦର୍ଶନେ ସମର୍ଥ ହେଲି ଯାଇ ନୀଳଗିରି ।
ଯାହା ଦେଖିଅଛି ତାହା କରୁଛି ବର୍ଣ୍ଣନ
ସେ କ୍ଷେତ୍ରର ଚାରିଦିଗ ଗହନ କାନନ ।
ମଧ୍ୟସ୍ଥାନେ ଅଛି ନୀଳ ସୁନ୍ଦର ପର୍ବତ
କ୍ଷେତ୍ରର ନାଭି ରୂପରେ ହୁଏ ବିରାଜିତ ।
ଏ କ୍ଷେତ୍ରର ଦୀର୍ଘ ପ୍ରତି ପାଞ୍ଚକ୍ରୋଶ ଅଟେ
ସ୍ୱର୍ଣ୍ଣ ବାଲୁକାରେ ପୂର୍ଣ୍ଣ ସମୁଦ୍ରର ତଟେ ।
ନୀଳଗିରି ଶୃଙ୍ଗ ଦେଶେ କଳ୍ପ କାଳ ସ୍ଥାୟୀ
ଅତିବଡ଼ ବଟବୃକ୍ଷ ଗୋଟିଏ ଅଛଇ ।
ସେ ବୃକ୍ଷର ପରିମାଣ କ୍ରୋଶ ପରିମିତ
ଫଳ ପୁଷ୍ପ କିଛି ନାହିଁ ପଲ୍ଲବେ ମଣ୍ଡିତ ।
ସୂର୍ଯ୍ୟ ଗତି ଅନୁସାରେ ସେ ବୃକ୍ଷର ଛାଇ
ପରିବର୍ତ୍ତନ ନହୋଇ ଏକାରୂପେ ଥାଇ ।
ରୋହିଣୀ କୁଣ୍ଡ ସେ ବୃକ୍ଷ ପଶ୍ଚିମେ ଶୋଭିତ
ନୀଳକାନ୍ତ ମଣିରେ ତା ସୋପାନ ନିର୍ମିତ ।
ସୋପାନ ରହିଛି କୁଣ୍ଡ ନିମ୍ନଦେଶ ଯାଏ
ଚାରିଦିଗେ ସ୍ଫଟିକର ବେଦୀ ଶୋଭାପାଏ ।
ପାପହାରୀ ଜଳ ସେହି କୁଣ୍ଡେ ଅଛି ପୂର୍ଣ୍ଣ
ଦର୍ଶକ ମନ ନୟନ କରଇ ହରଣ ।
କୁଣ୍ଡ ପାର୍ଶ୍ୱ ବଟ ଛାୟା ଅତି ସୁଶୀତଳ
ସେହି କୁଣ୍ଡ ପୂର୍ବଦିଗ ବେଦୀ ମଧ୍ୟସ୍ଥଳ ।
ତହିଁ ଚକ୍ର ଗଦାଧର ଦେବ ବିରାଜିତ
ଇନ୍ଦ୍ର ନୀଳମଣିମୟ ମୂର୍ତ୍ତି ପ୍ରତିଷ୍ଠିତ ।
ଏକାଶୀତି ଅଙ୍ଗୁଳ ସେ ମୂର୍ତ୍ତି ପରିମାଣ
ସ୍ୱର୍ଣ୍ଣ ପଦୋପରି କରିଛନ୍ତି ଅବସ୍ଥାନ ।
ଲଲାଟ ଶୋଭାରେ ଅର୍ଦ୍ଧଚନ୍ଦ୍ର ପରାଜିତ
ନେତ୍ର ନୀଳ କୁମୁଦକୁ କରଇ ଧିକୃତ ।
ମୁଖ ଚନ୍ଦ୍ର ଦର୍ଶନରେ ତାପତ୍ରୟ ଶାନ୍ତ
ନାସାଦ୍ୱୟ ତିଳ ପୁଷ୍ପ ପରି ସୁଶୋଭିତ ।
ଶରୀର ହୋଇଛି ସିନା ପାଷାଣେ ନିର୍ମିତ
ସର୍ବଦା ଅଧର ଦେଶେ ହାସ୍ୟ ବିକସିତ ।
ଗଣ୍ଡ ଯୁଗଳ ଆନନ୍ଦେ ଉତ୍ଫୁଲ ଦିଶଇ
ଚିବୁକ ଆବର ହନୁ ଶୋଭା ବିରାଜଇ ।
ଓଷ୍ଠଦ୍ୱୟ ପ୍ରାନ୍ତଭାଗ ଅପୂର୍ବ ଗଠନ
ଗଣ୍ଡଦ୍ୱୟ ନିମ୍ନଭାଗ ଅତି ସୁଶୋଭନ ।
ବିଶ୍ୱକର୍ମାଙ୍କର ଶେଷ ଶିଳ୍ପ ନିଦର୍ଶନ
କର୍ଣ୍ଣ ଯୁଗଳେ ମକର କୁଣ୍ଡଳ ଭୂଷଣ ।
ବୃହସ୍ପତି ଶୁକ୍ର ଦୁଇଙ୍କର ମଧ୍ୟସ୍ଥିତ
ପୂର୍ଣ୍ଣଚନ୍ଦ୍ର ଶୋଭା ହେଉଅଛି ପରାଜିତ ।
କଣ୍ଠଦେଶ ସୁଶୋଭନ ମାଳାରେ ଭୂଷିତ
ଦକ୍ଷିଣାବର୍ତ୍ତକ ଶଙ୍ଖ ହସ୍ତେ ସୁଶୋଭିତ ।
ପ୍ରଭୁଙ୍କର ଚାରିବାହୁ ଆଜାନୁ ଲମ୍ବିତ
ସ୍କନ୍ଧ ଯୁଗଳ ପୃଥୁଳ ଅତ୍ୟନ୍ତ ବିସ୍ତୃତ ।
ଅତି ମନୋହର ବକ୍ଷସ୍ଥଳ ବିରାଜଇ
ଅତି ସୁନିର୍ମଳ ହାର ଶୋଭା ପାଏ ତହିଁ ।
ଦିବ୍ୟ କଉସ୍ତୁଭ ମଣି ଗଳାରେ ଶୋଭଇ
ଚତୁର୍ଦ୍ଦଶ ଭୁବନର ପ୍ରତିବିମ୍ବ ତହିଁ ।
ଗଭୀର ନାଭି ହ୍ରଦରେ ସୂକ୍ଷ୍ମ ରୋଗାବଳୀ
କଣ୍ଠରୁ ଲମ୍ବିଣ ହାର ପାଇଛି ତ୍ରିବଳୀ ।
ଅଚଳ ଭାବରେ ପ୍ରଭୁ ହୋଇ ଅବସ୍ଥିତ
ସ୍ଥାଣୁ ବୃକ୍ଷ ପରି ଶୋଭା ପାନ୍ତି ଜଗନ୍ନାଥ ।
କଟୀଦେଶ ତ୍ରିଜଗତ ଲାବଣ୍ୟର ଖଣି
ଶୋଭା ପାଏ କାଞ୍ଚି ଦାମ ମୁକ୍ତାର କିଙ୍କିଣୀ ।
ତାହାଙ୍କର ପରିଧାନ ପୀତ ଯେ ଦୁକୂଳ
ଜଘନେ ମଞ୍ଜୁଳ ବିଳମ୍ବିତ ମୁକ୍ତାମାଳ ।
ମନୋହର ଜାନୁଦ୍ୱୟ ସ୍ତମ୍ଭଯୁଗ ପରି
ଶୋଭା ପାଏ ମୋକ୍ଷଦ୍ୱାର ତୋରଣା ଯେପରି ।

Digitized by srujanika@gmail.com

ମହାପ୍ରଭୁଙ୍କର ଜାନୁଦ୍ୱୟ ଗୋଲାକାର
ତା ପରେ ଲମ୍ବିଛି ମାଳା ଅତି ମନୋହର ।
କଣ୍ଠ ଦେଶୁଁ ପଦଯାଏ ମାଳା ଲମ୍ବମାନ
ଅତି ମନୋହର ଶୋଭା କରିଛ ଧାରଣ ।
କଙ୍କଣ କେୟୁର ମୁକୁଟାଦି ଅଳଙ୍କାର
ବିଭୂଷିତ ହୋଇ ଶୋଭା ପାଏ କଳେବର ।
ଶଙ୍ଖ ଚକ୍ର ଗଦା ପଦ୍ମ ବିରାଜେ ହସ୍ତରେ
ବୈରାଗ୍ୟ ଐଶ୍ୱର୍ଯ୍ୟ ଧର୍ମ ଜ୍ଞାନ ରୂପ ଧରେ ।
ନିଜ ତେଜେ ଚତୁର୍ଦ୍ଦିଗ କରି ଆଲୋକିତ
ନୀଳ ପର୍ବତ ଶିଖରେ ବିଜେ ଜଗନ୍ନାଥ ।
ତାହାଙ୍କୁ ଦର୍ଶନ କରି ଭକ୍ତିରେ ପ୍ରଣାମ
କଲେ ଜୀବନ୍ମୁକ୍ତ ହୁଏ ଫିଟଇ ବନ୍ଧନ ।
ପ୍ରଭୁଙ୍କର ବାମପାର୍ଶ୍ୱେ ଲକ୍ଷ୍ମୀଦେବୀ ବିଜେ
ପଦ୍ମ-ହସ୍ତେ ଆଲିଙ୍ଗନ କରିବାକୁ ନିଜେ ।
ଲାବଣ୍ୟ ଆଧାର ଦେବୀ କ୍ଷିରୋଦ ନନ୍ଦିନୀ
ଦିବ୍ୟାଳଙ୍କାର ଭୂଷିତା ବୀଣା ହସ୍ତେ ଘେନି ।
ବୀଣା ବାଦନ କରନ୍ତି ଅତି ଆନନ୍ଦରେ
ଭଗବାନଙ୍କର ମୁଖ ନିରେଖି ନେତ୍ରରେ ।
ଜଗତର ପିତା ମାତା ଲକ୍ଷ୍ମୀ ନାରାୟଣ
ନୀଳାଚଳେ ମୌନ ଭାବେ କରି ଅବସ୍ଥାନ ।
ସ୍ମିତହାସେ ପୂର୍ଣ୍ଣ ମୁଖେ କରି ନିରୀକ୍ଷଣ
ଦର୍ଶନ କାରୀଗଣଙ୍କୁ କରୁଛନ୍ତି ଧନ୍ୟ ।
ଅନନ୍ତ ନାଗ ତାଙ୍କର ପଶ୍ଚିମ ଭାଗରେ
ସହସ୍ର ଫଣାକୁ ଟେକିଛନ୍ତି ଛତ୍ରାକାରେ ।
ସମ୍ମୁଖରେ କରଯୋଡ଼ି ବିନତା ନନ୍ଦନ
ଦର୍ଶନାର୍ଥେ ତହିଁ କରିଛନ୍ତି ଅବସ୍ଥାନ ।
ଇଦୃଶ ଅଦ୍ଭୁତ ରୂପେ ସଂପନ୍ନ ଶ୍ରୀପତି
ଦର୍ଶନ କରି ଦର୍ଶକେ କୃତାର୍ଥ ଲଭନ୍ତି ।
ଚିତ୍ତ ଯେପରି ରଜ୍ଜୁରେ ହୋଇ ଆକର୍ଷିତ
ପ୍ରଭୁଙ୍କୁ ପାଇବା ଅର୍ଥେ ହୁଅଇ ଧାବିତ ।
ଯେ ଜନ ବହୁ ସହସ୍ର ଜନ୍ମରୁ ସଞ୍ଚୟ
କରିଛି ପୁଣ୍ୟ ନିଶ୍ଚୟ କର୍ମ ସତ୍ୟମୟ ।
ସେ ପୁଣ୍ୟ କର୍ମର ଫଳ ହୋଇଲେ ଉଦୟ
ପ୍ରଭୁଙ୍କୁ ଦର୍ଶନ କରି ପାରିବ ନିଶ୍ଚୟ ।
ତୀର୍ଥସ୍ଥାନ ତପ ହୋମ ବେଦପାଠ ଦାନ
ବ୍ରତ ଆଦି ପୁଣ୍ୟ କାର୍ଯ୍ୟ କରେ କେଉଁ ଜନ ।
ଏ ସକଳ ପୁଣ୍ୟ ଫଳେ ମର୍ତ୍ତ୍ୟବାସୀଗଣ
ଜଗନ୍ନାଥଙ୍କ ଦର୍ଶନେ ନୁହନ୍ତି ଭାଜନ ।
ଯେ ଜନ ପୁରୁଷୋତ୍ତମେ କରି ଅବସ୍ଥାନ
ନିର୍ମଳ ନୀଳମାଧବ ଚିତ୍ତେ କରେ ଧ୍ୟାନ ।
ଶିଥିଳ ହୁଅଇ ତାର ସଂସାର ବନ୍ଧନ
ଆନନ୍ଦରେ ବୈକୁଣ୍ଠରେ କରେ ଅବସ୍ଥାନ ।
ବିବିଧ ଶାସ୍ତ୍ରରେ ମନୁଷ୍ୟର କର୍ମ ଫଳ
ଉକ୍ତ ହୋଇଅଛି ଯେତେ ତାହା କଲେ ତୁଳ ।
ବିଷ୍ଣୁ ଦର୍ଶନ ଫଳକୁ ଶତଭାଗ କଲେ
ଏକଭାଗ ସଙ୍ଗେ ତୁଲ ନୁହେଁ କେଉଁକାଳେ ।
ଆଉ ଅଧିକ କହିବା ନାହିଁ ପ୍ରୟୋଜନ
ପୁରୁଷୋତ୍ତମ କ୍ଷେତ୍ରର ମହିମା ଏସନ ।
ନୀଳାଦ୍ରିନାଥଙ୍କୁ ଯେ ବା କରଇ ପ୍ରଣାମ
ଇଚ୍ଛାଧିକ ଫଳ ଲାଭ ମିଳେ ତତକ୍ଷଣ ।
ଯେ ଜନ ନୀଳାଦ୍ରିଶଙ୍କୁ କରିଛି ଦର୍ଶନ
ନାନାବିଧ ଯାଗ କର୍ତ୍ତା ଦାତା ସେହି ଜନ ।
ସତ୍ୟବାଦୀ ଧର୍ମାଚାରୀ ରୂପେ ପରିଚିତ
ସର୍ବଗୁଣେ ଗୁଣବାନ ଲୋକରେ ବିଖ୍ୟାତ ।
ହେ ରାଜନ ପ୍ରଭୁଙ୍କର ସେବାକରୀ ଦଳ
କହୁଥିଲେ ତାଙ୍କ ମୁଖେ ଶୁଣିଛି ସକଳ ।
ସେ କ୍ଷେତ୍ରରେ ପରମ୍ପରା ଗତ ପୁରାତନ
ଉପାଖ୍ୟାନ ଶୁଣିବାକୁ କଲି ମୁଁ ଗମନ ।
ହେ ରାଜନ୍ଦ୍ରେ ଆପଣଙ୍କ ଆଦେଶ ପାଳିଲି
ପୁରୁଷୋତ୍ତମ କ୍ଷେତ୍ରକୁ ଦର୍ଶନ କରିଲି ।
ସକଳ ବାର୍ତ୍ତା ଛାମୁରେ କଲି ନିବେଦନ
ଯାହା ଇଚ୍ଛା ଅଛି ତାହା କରନ୍ତୁ ଆପଣ ।
ଇନ୍ଦ୍ରଦ୍ୟୁମ୍ନ କହୁଛନ୍ତି ଭଗବାନଙ୍କର
ରୂପ ଗୁଣ ଆମ୍ଭ ମୁଖୁ ଶୁଣିଲି ସତ୍ୱର ।
ଦିବ୍ୟ ନିର୍ମାଲ୍ୟ ଧାରଣେ ହେଲି କୃତକୃତ୍ୟ
ପାପରାଶି ନଷ୍ଟ ହେଲା ବହୁ ଜନ୍ମାର୍ଜିତ ।
ନୀଳମାଧବଙ୍କୁ କରିବାକୁ ଦରଶନ
ଅଧିକାର ଜାତ ହେଲା ମୋର ଏହିକ୍ଷଣ ।
ରାଜ୍ୟ ସମ୍ପଦ ଘେନି ମୁଁ ଯିବି ସେହିସ୍ଥାନ
ବାସ ଯୋଗ୍ୟ ଗୃହ ଦୁର୍ଗ କରିବି ନିର୍ମାଣ ।
ତହିଁ ବାସ କରି ନିତ୍ୟ ପୂଜା ପ୍ରଭୁଙ୍କର
ପ୍ରତ୍ୟହ କରିବି ଦେଇ ଶସ ଉପଚାର ।
ସେହି କ୍ଷେତ୍ରେ ଅଶ୍ୱମେଧ ଯାଗ ମୁଁ କରିବି
ପ୍ରଭୁ ଭଗବାନଙ୍କର ପ୍ରୀତି ସମ୍ପାଦିବି ।
ଜଗଦ୍‌ଗୁରୁଙ୍କର ପ୍ରୀତି ସାଧନ ନିମିତ୍ତ
ବ୍ରତୋପବାସ ନିୟମ ପାଳିବି ସତତ ।
ସଂସାର ତାପରେ ହେଉଅଛି ମୁଁ ସନ୍ତପ୍ତ
ଶୀତଳ କରିବେ ଦେଇ ବଚନ ଅମୃତ ।
ଇନ୍ଦ୍ରଦ୍ୟୁମ୍ନ ଏହିପରି ଶ୍ରଦ୍ଧା ଭକତିରେ
ଜଗତ୍ ପିତାଙ୍କର ସ୍ତବ କଲେ ହରଷରେ ।

Digitized by srujanika@gmail.com

ଏହି ସମୟେ ନାରଦ ହେଲେ ଉପସ୍ଥିତ
ତ୍ରିଭୁବନ ଭ୍ରମଣରେ ହୋଇ ପୁଲକିତ ।
ନାରଦଙ୍କୁ ଦେଖି ନରପତି ତୋଷ ହେଲେ
ଅଭିଳାଷ ପୂର୍ଣ୍ଣ ହେବ ମନରେ ଚିନ୍ତିଲେ ।
ଆସନରୁ ଉଠି ପାଦ୍ୟ ଅର୍ଘ୍ୟ ଆଚମନ
ଇତ୍ୟାଦି ଦ୍ରବ୍ୟେ ମୁନିଙ୍କୁ କରିଲେ ପୂଜନ ।
ଆଦର କରିଣ ସିଂହାସନେ ବସାଇଲେ
କୃତାଞ୍ଜଳି ହୋଇ ପାଦପଦ୍ମ ପ୍ରଣମିଲେ ।
ରାଜନ କହନ୍ତି ଆଜି ହୋଇଛି ସଫଳ
ଯଜ୍ଞ ଦାନ ଅଧ୍ୟୟନ ତପସ୍ୟା ସକଳ ।
ଯେ ହେତୁ ମୋର ଗୃହରେ ଆସି ଉପସ୍ଥିତ
ଦ୍ୱିତୀୟ ବ୍ରହ୍ମା ମୂରତି କରିଲି ସାକ୍ଷାତ ।
ମୁନିବର ଅନୁଗ୍ରହ କରିଲେ ଆପଣ
କୃତାର୍ଥ ହୋଇଲି ଦେଖି ତବ ଆଗମନ ।
କି ନିମନ୍ତେ ହୋଇଛନ୍ତି ଆପଣ ପ୍ରସନ
ସେ ଆଜ୍ଞା ଦିଅନ୍ତୁ ତାହା କରିବି ସମ୍ପନ୍ନ ।
କେଉଁ ପ୍ରୟୋଜନ ହେତୁ ମୋର ଏ ଭବନ
ପବିତ୍ର କରି ଅଛନ୍ତି କହନ୍ତୁ ଆପଣ ।
ରାଜାଙ୍କ ବିନୟ ଭକ୍ତି ମଧୁର ବଚନ
ଶୁଣି ମୃଦୁ ହାସ୍ୟ କଲେ ବ୍ରହ୍ମାଙ୍କ ନନ୍ଦନ ।
ମହାରାଜା ଆପଣଙ୍କ ବିମଳ ସଦ୍‌ଗୁଣ
ଶୁଣି ସିଦ୍ଧମୁନି ବ୍ରହ୍ମା ଆଦି ଦେବଗଣ ।
ପ୍ରୀତ ହୋଇଛନ୍ତି ଯେଉଁ ଗୁଣ ପ୍ରତିଷ୍ଠିତ
ହେଲେ ବ୍ରହ୍ମଲୋକେ ବାସ ମିଳଇ ନିଶ୍ଚିତ ।
ବଦରିକାଶ୍ରମେ ନରରୂପୀ ନାରାୟଣ
ଦର୍ଶନ କରିବା ଅର୍ଥେ ଗଲି ଏକଦିନ ।
ଯେତେବେଳେ ତାହାଙ୍କର ଧ୍ୟାନ ମୁଁ କରିଲି
ତୁମ୍ଭର ଏ ବ୍ୟବସାୟ ବୃତ୍ତାନ୍ତ ବୁଝିଲି ।
ହେ ରାଜନ ! ତୁମ୍ଭ ଯତ୍ନ ଅତୀବ ଉତ୍ତମ
ଏହିପରି ଶୁଭ ବୁଦ୍ଧି ତୁମ୍ଭର ଉତ୍ପନ୍ନ ।
ସହସ୍ର ଜନ୍ମ ଅଭ୍ୟାସେ ଜାତ ବିଷ୍ଣୁଭକ୍ତି
ନୀଳାଚଳ ଗୃହବାସୀ ମାଧବଙ୍କ ପ୍ରତି ।
ଯାହାଙ୍କର ଆରାଧନା କରି ପିତାମହ
ଜଗତେ ପ୍ରଭୁତ୍ୱ ଲାଭ କରିଲେ ନିଶ୍ଚୟ ।
ସୃଷ୍ଟି ବିରଚିଲେ ହେଲା ବ୍ରହ୍ମ ପଦ ପ୍ରାପ୍ତ
ହେ ରାଜନ ତୁମ୍ଭେ ସେହି ବ୍ରହ୍ମା ବଂଶେ ଜାତ ।
ତେଣୁ ତୁମ୍ଭର ଏ ଉପଯୁକ୍ତ ଶୁଭ ବୁଦ୍ଧି
ବିଷ୍ଣୁଭକ୍ତି ଜାତ ହେଲେ ଚତୁର୍ବର୍ଗ ସିଦ୍ଧି ।
ଅନାଦି ଅବିଦ୍ୟା ଅତି ସୁଦୃଢ଼ ଅଟଇ
କେବଳ ପଞ୍ଚକ୍ଳେଶକୁ ବର୍ଦ୍ଧିତ କରଇ ।
ଅବିଦ୍ୟା ବିନାଶେ ଏକମାସ ବିଷ୍ଣୁଭକ୍ତି
ସଂସାର କାନନେ ନରେ ଦୁଃଖ ଭୋଗୁଛନ୍ତି ।
ଏକମାତ୍ର ବିଷ୍ଣୁଭକ୍ତି ହୋଇଲେ ଉଦୟ
ତାହାଙ୍କର ସୁଖ ଜାତ ହୁଅଇ ନିଶ୍ଚୟ ।
ଶୀତୋଷ୍ଣାଦି ଦ୍ୱନ୍ଦ୍ୱ ଦୁଃଖ ତରଙ୍ଗେ ଦୁସ୍ତର
ଭବସାଗର ନିମଗ୍ନ ବ୍ୟକ୍ତି ମାନଙ୍କର ।
ଉତ୍ତୀର୍ଣ୍ଣ ହେବାକୁ ଏକମାତ୍ର ଯେ ତରଣୀ
ରୂପେ ରହିଅଛି ବିଷ୍ଣୁ ଭକତି ରୂପିଣୀ ।
ମାତୃରୂପେ ନିତ୍ୟ ଭଗବତୀ ବିଷ୍ଣୁଭକ୍ତି
ସାଧୁଗଣ ଏକମାତ୍ର ଆଶ୍ରୟ କରନ୍ତି ।
ସନ୍ତୁଷ୍ଟ ଚିତ୍ତେ ସଂସାରେ କରି ଅବସ୍ଥାନ
କେତେବେଳେ ନ ହୁଅନ୍ତି ସେ ଦୁଃଖ ଭାଜନ ।
ନିତ୍ୟ ବିଷ୍ଣୁଭକ୍ତି ରୂପ ସୁଧାପାନ କରି
ସାଧୁଗଣ ଆନନ୍ଦରେ ସଂସାରେ ବିହରି ।
ମୁକ୍ତିପଥେ ଅଗ୍ରସର ହୁଅନ୍ତି ସେ ନିତି
ବ୍ରାହ୍ମ୍ୟପଦ ଅତି ତୁଚ୍ଛ ମନରେ କରନ୍ତି ।
ବିଷ୍ଣୁଭକ୍ତି ରୂପ ଦୀପ ଅନଳରେ ପଡ଼ି
ପତଙ୍ଗ ରୂପେ ତ୍ରିବିଧ ପାପ ଯାଏ ପୋଡ଼ି ।
ପ୍ରୟାଗାଦି ତୀର୍ଥେ ବହୁ ତପ କରିଥିବ
ଅଶ୍ୱମେଧ ଯଜ୍ଞେ ବହୁ ଦାନ ବିପ୍ରେ ଦେବ ।
ସହସ୍ର ସହସ୍ର ବ୍ରତୋପବାସାଦି କର୍ମ
ଏ ସକଳ କୋଟି ଗୁଣେ କରି ଆଚରଣ ।
ଏକା ବିଷ୍ଣୁ ଭକତିକୁ ସସ୍ରଭାଗ କର
ଏକ ଭାଗ ସଙ୍ଗେ କୋଟି ଗୁଣ ନୁହେ ତୁଲ ।
ବିଷ୍ଣୁ ଭକ୍ତିର ମହିମା ଏପରି ଅଟଇ
କହି ନୁହେ ବଚନରେ ତୁଳନା ନୁହଇ ।
ଜୈମିନି କହନ୍ତି ଶୁଣ ସର୍ବ ଋଷିଗଣ
ନାରଦଙ୍କ ବାକ୍ୟ ଶୁଣି ତୋଷ ଇନ୍ଦ୍ରଦ୍ୟୁମ୍ନ ।
ବିଷ୍ଣୁଭକ୍ତିର ମାହାତ୍ମ୍ୟ କରିଲେ ଶ୍ରବଣ
ଭକ୍ତିର ସ୍ୱରୂପ ଜାଣିବାକୁ କଲେ ମନ ।
ପୁନର୍ବାର ନାରଦଙ୍କୁ କହିଲେ ବଚନ
ହେ ମୁନି ! ଭକ୍ତି ସ୍ୱରୂପ କରନ୍ତୁ ବର୍ଣ୍ଣନ ।
ଭକ୍ତି ସ୍ୱରୂପ କିପରି ଜାଣିବାକୁ ଇଚ୍ଛା
ଚିରକାଳୁ ରହିଅଛି ପୂରାଅ ମୋ ବାଞ୍ଛା ।
ହେ ବୈଷ୍ଣବାଗ୍ରଣୀ ଭକ୍ତି ଲକ୍ଷଣ ବର୍ଣ୍ଣନେ
ଭବାଦୃଶ ସମ ବକ୍ତା ନାହିଁ ତ୍ରିଭୁବନେ ।
ନାରଦ କହନ୍ତି ଶୁଣ ରାଜା ଇନ୍ଦ୍ରଦ୍ୟୁମ୍ନ
ତୁମ୍ଭେ ଭକ୍ତ ତେଣୁ ପୁଛ ଭକ୍ତିର ଲକ୍ଷଣ ।
ଅତି ଆନନ୍ଦରେ ବିଷ୍ଣୁ ଭକ୍ତିର ଲକ୍ଷଣ
ଶୁଣ ଯଥାର୍ଥ ରୂପରେ କରୁଛି ବର୍ଣ୍ଣନ ।

Digitized by srujanika@gmail.com

ହେ ରାଜନ ! ତୁମ୍ଭେ ଅଟ ସତ୍‌ପାତ୍ର ଉତ୍ତମ
ଭକ୍ତି ସ୍ୱରୂପ କହୁଛି କରନ୍ତୁ ଶ୍ରବଣ ।
ପାପାଚାରୀ ଦୁଷ୍ଟବୁଦ୍ଧି ଅଟେ ଯେଉଁ ଜନ
ତାକୁ ଭକ୍ତି କଥା ନ କହିବ କଦାଚନ ।
ହେ ନିଷ୍ପାପ ରାଜା ସନାତନୀ ବିଷ୍ଣୁ ଭକ୍ତି
ସାମାନ୍ୟ ଆଉ ବିଶେଷ ରୂପେ ତାର ସ୍ଥିତି ।
କହୁଅଛି ଏକଚିତ୍ତେ କରନ୍ତୁ ଶ୍ରବଣ
ଯାର ଆଶ୍ରୟରେ ଦୁଃଖ ହୁଅଇ ଦହନ ।
ତିନି ପ୍ରକାର ସେ ଭକ୍ତି ତ୍ରିଗୁଣ ଭେଦରେ
ଅପରା ତୁରୀୟା ଭକ୍ତି ନିର୍ଗୁଣ ରୂପରେ ।
ପ୍ରଥମ ଯେ ଜନ କାମ-କ୍ରୋଧେ ଅବିଭୂତ
ଦୃଷ୍ଟିରେ ଯେ ଦ୍ରବ୍ୟ ଦେଖେ ତାକୁ ମଣେ ସତ୍ୟ ।
ସେ ଜନ ନିଜର ଲାଭ ଆଉ ଅବିଚାର
କରିବାକୁ ସଦାକାଳେ ହୋଇ ତତପର ।
ପରମେଶ୍ୱରଙ୍କ ପ୍ରତି କରଇ ଯେ ଭକ୍ତି
ତା ନାମ ତପସ୍ୟା ଭକ୍ତି ବୁଧେ କହିଛନ୍ତି ।
ଦ୍ୱିତୀୟା ରାଜସୀ ଭକ୍ତି କରନ୍ତୁ ଶ୍ରବଣ
ଅତିରିକ୍ତ ଯଶ ଲାଭ ହେବ ଦିନୁ ଦିନ ।
ଲୋକ ସମାଜେ ମିଳିବ ବହୁ ପରଶଂସା
ପରଲୋକେ ସୁଖ ଲାଭ ହେବ କରେ ଆଶା ।
ଏ ନିମନ୍ତେ ଯେଉଁ ଭକ୍ତି ଜନେ କରିଥାନ୍ତି
ତାହାର ନାମ ଅଟଇ ରାଜସୀ ଭକତି ।
ତୃତୀୟରେ ଏକ ବସ୍ତୁ ରହିଅଛି ସ୍ଥିର
ବିନାଶ ହୁଅଇ ଦୁଷ୍ଟ ପଦାର୍ଥ ସକଳ ।
ଏହିରୂପେ ସ୍ଥିରବୁଦ୍ଧି ଜାତ ଯାହାଙ୍କର
ବର୍ଣ୍ଣାଶ୍ରମ ଧର୍ମ ପାଳନରେ ତତପର ।
ଆତ୍ମଜ୍ଞାନ ଲାଭ ଅର୍ଥେ କରେ ନିତି ଭକ୍ତି
ତା ନାମ ସାତ୍ତ୍ୱିକୀ ଭକ୍ତି ବୁଧେ କହିଛନ୍ତି ।
ଚତୁର୍ଥେ ଏହି ଜଗତ ସ୍ୱୟଂ ଜଗନ୍ନାଥ
ଏ ଭିନ୍ନ ଅନ୍ୟ କାରଣ ନାହିଁ ତ ଯଥାର୍ଥେ ।
ଆମ୍ଭେ ତାହାଠାରୁ ଭିନ୍ନ ନୋହୁ କେତେବେଳେ
ସେତ ନୁହେଁ ଭିନ୍ନ ଆମ୍ଭଠାରୁ କେଉଁ କାଳେ ।
ବାହାରେ ତ ଦେଖାଯାଏ ଏ ସ୍ଥୁଳ ଶରୀର
ସୁଖକର ଗନ୍ଧମାଲ୍ୟ ବିଷୟ ସକଳ ।
ଜୀବର ପ୍ରୀତି ବଢ଼ାଏ ବେଳୁଁ ବେଳ ନିତି
କିନ୍ତୁ ଏଥିରେ ଜୀବର ନ ହୁଏ ସଦ୍‌ଗତି ।
ମୋକ୍ଷ ନିମିତ୍ତ ଯେ ଭକ୍ତି ହୁଏ ପ୍ରକାଶିତ
ସେ ଭକ୍ତି ଅତି ଦୁର୍ଲ୍ଲଭ ତା ନାମ ଅଦ୍ୱୈତ ।
ସାତ୍ତ୍ୱିକ ଭକ୍ତିରେ ବ୍ରହ୍ମଲୋକ ହୁଏ ପ୍ରାପ୍ତି
ସ୍ୱର୍ଗଲୋକେ ବାସ ଦିଏ ରାଜସୀ ଭକତି ।
ତାମସୀ ଭକ୍ତିରେ ପିତୃ ଲୋକ ହୁଏ ପ୍ରାପ୍ତ
ପୁନର୍ବାର ଭୂଲୋକରେ ଜନ୍ମ ହୁଏ ସେତ ।
ଜନ୍ମିଲେ ତାମସ କଲେ ରାଜସିକ ଭକ୍ତି
ରାଜସିକ ଭକ୍ତ କରେ ସାତ୍ତ୍ୱିକ ଭକତି ।
ସାତ୍ତ୍ୱିକ ଭକ୍ତ ଅଦ୍ୱୈତ୍ୟ ଭାବନା ବଳରେ
ଜୀବବଦ୍ଧ ରୂପ ବନ୍ଧନମୁକ୍ତି ଲାଭ କରେ ।
ଅତଏବ ଯେ କୌଣସି ଗୋଟିଏ ଭକତି
ଆଶ୍ରୟରେ କ୍ରମେ ମୁକ୍ତି ପଥ ହୁଏ ପ୍ରାପ୍ତି ।
ଆଉର ଯେ ବ୍ୟକ୍ତି ବିଷ୍ଣୁ ଭକତି ବିହୀନ
ତାର ବେଦୋକ୍ତ ସ୍ମୃତ୍ୟକ୍ତ ଆଦି କ୍ରିୟାମାନ ।
ପ୍ରାୟଶ୍ଚିତ ତୀର୍ଥଯାତ୍ରା ତପ କୃଚ୍ଛବ୍ରତ
ସତ୍‌କୁଳେ ଜନମ ଶିଳ୍ପ ବିଦ୍ୟାରେ ପଣ୍ଡିତ ।
ଲୌକିକ ଭୂଷଣ ମାତ୍ରେଅଟେ ଏ ସକଳ
ଅସତୀ ନାରୀର ବ୍ୟଭିଚାର ସଙ୍ଗେ ତୁଲ ।
ଭକ୍ତିହୀନ ଅନୁଷ୍ଠାନ ଯେ କରେ ତାହାର
ଶରୀରରେ ଲଭେ କ୍ଳେଶମାତ୍ର ସେ କେବଳ
କୁଳାଚାର ହୀନ ବ୍ୟକ୍ତି ଈଶ୍ୱରଙ୍କ ପ୍ରତି
ଜିତେନ୍ଦ୍ରିୟ ହୋଇ କରେ ଯଦି ବିଷ୍ଣୁଭକ୍ତି ।
ସକଳ ଲୋକ ମଧ୍ୟରେ ସେ ବ୍ୟକ୍ତି ପ୍ରଧାନ
କହୁଅଛି ମନଦେଇ ଶୁଣ ହେ ରାଜନ ।
ଅଷ୍ଟାଦଶ ବିଦ୍ୟା ବିଶାରଦ ଯେଉଁ ଜନ
ସତ୍‌କୁଳେ ଜନମି କରେ ଧର୍ମ ଆଚରଣ ।
ଯଦିଚ ସେ ଜନ ହୋଇଥାଏ ଭକ୍ତି ହୀନ
ଏ ସକଳ ଗୁଣ ତାର ହୁଏ ଅକାରଣ ।
ଅଳ୍ପ ଭାଗ୍ୟ ପୁରୁଷର ବିଷ୍ଣୁଭକ୍ତି ଲାଭ
ନ ହୁଅଇ ଜାଣିରଖ ଆହେ ନରଦେବ ।
ବହୁ ପରିଶ୍ରମେ ବିଷ୍ଣୁଭକ୍ତି ଲାଭ ହେଲେ
ମାନବ ଜୀବନ ହୁଏ ସାର୍ଥକ ସେ କାଳେ ।
ଜଗନ୍ନାଥଙ୍କୁ ସେ ବିଦ୍ୟା ବଳେ ଜାଣିହୁଏ
ତାହାକୁ ଉତ୍ତମ ବିଦ୍ୟା ବୋଲି କୁହାଯାଏ ।
ଏ ଉତ୍ତମ ବିଦ୍ୟା ଭକ୍ତି ଆଉ ଦୃଢ଼ବ୍ରତ
ଏ ତିନି ଲକ୍ଷଣ ଥିଲେ ହୁଏ ବିଷ୍ଣୁଭକ୍ତ ।
ତାଦୃଶ ବିଷ୍ଣୁ ଭକତ ଜନ ଇଚ୍ଛା କଲେ
ସୃଷ୍ଟି ପାଳନ ସଂହାର କରିପାରେ ଭଲେ ।
ସ୍ୱର୍ଗାଦି କାମନା ପୃଥିବୀର ଆଧିପତ୍ୟ
ଅତି ତୁଚ୍ଛ ମନ କରେ ହେଲେ ବିଷ୍ଣୁଭକ୍ତ ।
ତୁମ୍ଭ ନିକଟେ କହିବି ଆଉ କି ଅଧିକ
ବିଷ୍ଣୁଭକ୍ତ ଆଉ ବିଷ୍ଣୁ ଦୁଇ ଦୁହେଁ ଏକ ।
ଏ ଦୁଇ ମଧ୍ୟରେ କିଛି ପାର୍ଥକ୍ୟ ଯେ ନାହିଁ
ଭକ୍ତସେବା କଲେ ବିଷ୍ଣୁ ସେବା ଫଳ ପାଇ ।

Digitized by srujanika@gmail.com

ବାସୁଦେବଙ୍କର ଭକ୍ତ ଯେଉଁ ଜନଗଣ
କହୁଛି ତାଙ୍କ ଲକ୍ଷଣ କରନ୍ତୁ ଶ୍ରବଣ ।
ବାସୁଦେବ ଭକ୍ତ ଚିତ୍ତ ସର୍ବଦା ପ୍ରଶାନ୍ତ
ସୁନ୍ଦର ଇନ୍ଦ୍ରିୟଗଣ କାମନା ବର୍ଜିତ ।
କାୟମନ ବାକ୍ୟରେ ସେ ପରର ଅନିଷ୍ଟ
ଚିନ୍ତା ନ କରଇ ଥାଏ ସର୍ବଦା ସନ୍ତୁଷ୍ଟ ।
ଅନ୍ତଃକରଣ କରୁଣା ରସେ ସଦା ଆର୍ଦ୍ର
ପରହିଂସା କାର୍ଯ୍ୟରେ ତ ଅଟଇ ଦରିଦ୍ର ।
ପରଦ୍ରବ୍ୟାପହରଣେ ନୁହଇ ପ୍ରବୃତ୍ତି
ପର ଗୁଣ ଦେଖି ନ ହୁଅଇ ପକ୍ଷପାତୀ ।
ସଦା ସଦାଚରେ ଅନ୍ତଃକରଣ ନିର୍ମଳ
ପର ଉତ୍କର୍ଷ ସାଧନ କରେ ସଦାକାଳ ।
ସର୍ବଦା ମାତ୍ସର୍ଯ୍ୟ ଶୂନ୍ୟ ହୁଅଇ ତା ମନ
ଭୌତିକ ଦ୍ରବ୍ୟକୁ ବିଷ୍ଣୁରୂପେ କରେ ଜ୍ଞାନ ।
ଦୀନଜନ ପ୍ରତି ହୁଏ ସର୍ବଦା ସଦୟ
ଅତ୍ୟନ୍ତ ପରହିତୈଷୀ ସର୍ବଦା ନିର୍ଭୟ ।
ଦିବ୍ୟ ଉପଚାର ଦେଇ ଦେବ ପୂଜା କରେ
ପୁତ୍ରପରି ଦେବତାଙ୍କୁ ଲାଳନ ସେ କରେ ।
ସ୍ତ୍ରୀ ପୁତ୍ର ସଂସାର ଆଉ ବାହ୍ୟ ବିଷୟରେ
କୃଷ୍ଣ ସର୍ପ ପରି ଭୟ କରଇ ମନରେ ।
ପୁତ୍ର କଳତ୍ର ଆଦିରେ ହୁଏ ଅନାସକ୍ତ
ଦେବ ପୂଜା ବିଷୟରେ ହୁଏ ପ୍ରୀତିଜାତ ।
ବୈଷ୍ଣବଗଣ ପ୍ରୀତିକୁ ବିଷ୍ଣୁ ବିଷୟରେ
ବିସ୍ତାର କରନ୍ତି ଶତ କୋଟି ଯେ ଗୁଣରେ ।
ବିଷ୍ଣୁଭକ୍ତ ଜନ ନିତି କର୍ତ୍ତବ୍ୟ ଜ୍ଞାନରେ
ଶଙ୍କରାଦି ଦେବଗଣ ଅର୍ଚ୍ଚନା ଯେ କରେ ।
ପିତୃଗଣଙ୍କର ପିତୃଯଜ୍ଞେ କରେ ତୃପ୍ତି
ବିଷ୍ଣୁରୂପେ ସମସ୍ତଙ୍କୁ ନିଜ ମନେ ଚିନ୍ତି ।
ସକଳ ଜଗତ ବିଷ୍ଣୁରୂପେ ଦରଶନ
ବାସୁଦେବ ଭକ୍ତଙ୍କର ଏମନ୍ତ ଲକ୍ଷଣ ।
ବିଷ୍ଣୁ-ରୂପେ ସମବାୟୀ କାରଣରୁ ଜାତ
ଘଟପଟୁ ଆଦି କାର୍ଯ୍ୟ ରୂପେ ଏ ଜଗତ ।
ବିଷ୍ଣୁ-ରୂପେ ଜଗତକୁ ନ କରି ଦର୍ଶନ
ଅସମ୍ଭବ ପାର୍ଥକ୍ୟ ଯେ କରନ୍ତି ବିଧାନ ।
ସେ କିନ୍ତୁ ପୃଥକ କେଉଁକାଳେ ହୁଏ ନାହିଁ
ସ୍ଥୂଳ ଦୃଷ୍ଟିରେ ପୃଥକ ରୂପେ ପ୍ରକାଶଇ ।
ତଥାପି ଏ ରୂପ ଭେଦ ରହିଥିବା ସ୍ଥଳେ
ଏକବିଷ୍ଣୁ ବ୍ୟଷ୍ଟି ରୂପେ ସମଷ୍ଟି ରୂପରେ ।
ରାଜାର ପୁରୁଷ ରାଜା ପୁରୁଷ ଯେସନ
ଭିନ୍ନ ନୁହେଁ ଏକବସ୍ତୁ ରୂପେ ବିଦ୍ୟମାନ ।
ତେସନ ଜଗତ କାର୍ଯ୍ୟ କାରଣ ରୂପରେ
ପାର୍ଥକ୍ୟ ଦେଖା ହୁଅଇ ବିଚାର ମନରେ ।
ହେ ଜଗନ୍ନାଥ ଆପଣ ଆମ୍ଭର କାରଣ
ଆମ୍ଭେ କରୁଅଛୁ କାର୍ଯ୍ୟରୂପେ ବିବରଣ ।
ଏ ନିମନ୍ତେ ଆମ୍ଭେ ତୁମ୍ଭର ତ ନୋହୁ ଦାସ
ସେବ୍ୟ ସେବକ ଭାବଟି କାର୍ଯ୍ୟେ ପରକାଶ ।
ଆହେ ଦେବ ମୁଁ ସେବକ ସେବ୍ୟ ଯେ ଆପଣ
ତୁମ୍ଭ ଆମ୍ଭଠାରେ ଏହି ଭେଦ୍ୟ ବିଦ୍ୟମାନ ।
ଅନ୍ତର୍ଯ୍ୟାମୀ ଅନ୍ତରରେ କରି ଅବସ୍ଥାନ
ସେବ୍ୟ ବା ସେବକରୂପେ ତୁମ୍ଭେ ବିଦ୍ୟମାନ ।
ଏ ରୂପ ଭାବନା କରି ଏକାଗ୍ର ଚିତ୍ତରେ
ବ୍ରହ୍ମାଙ୍କର ସେବ୍ୟ ପାଦପଦ୍ମେ ଯୁଗଳରେ ।
ପ୍ରଣାମ କରନ୍ତି କେହି କରନ୍ତି କୀର୍ତ୍ତନ
ସେ ନର ଚୌଦ ଭୁବନ କରେ ତୁଚ୍ଛଜ୍ଞାନ ।
ଯେ ଜନ କରନ୍ତି ସଦା ପର ଉପକାର
ପର ସୁଖକୁ ମଣନ୍ତି ଯେହ୍ନେ ଆପଣାର ।
ପର ଦୁଃଖରେ ସର୍ବଦା ହୁଅନ୍ତି କାତର
ବୈଷ୍ଣବ ବୋଲି ବିଖ୍ୟାତ ହୁଅନ୍ତି ସେ ନର ।
ପର ସମ୍ପତ୍ତିକୁ କରେ ଯେ ପାଷାଣ ଜ୍ଞାନ
ପର ସ୍ତ୍ରୀ କଣ୍ଟକାକୀର୍ଣ୍ଣ ଶାଳ୍ମଳୀ ସମାନ ।
ରିପୁ ମିତ୍ର ଉଭୟକୁ କରେ ସମଜ୍ଞାନ
ପ୍ରସିଦ୍ଧ ବୈଷ୍ଣବ ରୂପେ ଯେ ହୁଏ ଗଣନ ।
ଏକାଗ୍ର ଚିତ୍ତେ ଈଶ୍ୱରେ ଚିତ୍ତ ସମର୍ପଣ
କରେ ଗୁଣୀ ବ୍ୟକ୍ତିକୁ ଯେ ସାଦରେ ସମ୍ମାନ ।
ଅନ୍ୟ ବ୍ୟକ୍ତି ମର୍ମକଥା କରଇ ଗୋପନ
ସର୍ବଦା ଯେ ପ୍ରିୟ ବାକ୍ୟ କରେ ଉଚ୍ଚାରଣ ।
ଯେ ଜନ ସଂସାରେ ଅଟେ ବୈଷ୍ଣବ ପ୍ରଧାନ
ଆବର କହୁଛି ଶୁଣ ବୈଷ୍ଣବ ଲକ୍ଷଣ ।
କଂସହନ୍ତା ପାପ ନାଶକାରୀ କୃଷ୍ଣ ନାମ
ସଦା ମନେ ଚିନ୍ତି ଉଚ୍ଚେ କରଇ କୀର୍ତ୍ତନ ।
ସଦାକାଳେ ଜଗନ୍ନାଥ ନାମ କରେ ଗାନ
ଏ ସଂସାରେ ସେହି ଜନ ବୈଷ୍ଣବ ପ୍ରଧାନ ।
କାୟ ମନୋବାକ୍ୟେ କରେ ଆତ୍ମ ସମର୍ପଣ
ସଦା ଏକଚିତ୍ତେ କରେ ପାଦପଦ୍ମ ଧ୍ୟାନ ।
ଶ୍ରୀକୃଷ୍ଣ ଚିନ୍ତାରେ ସଦା ହୋଇଥାଏ ଭୋଳ
ସୁଖ ଦୁଃଖ ସମଜ୍ଞାନ ତାହାର କେବଳ ।
ବିନୟ ବଚନେ ହରି ସ୍ତବଗାନ କଲେ
ବ୍ୟଗ୍ର ରହିଥାଏ ସଦା ହରିଙ୍କ ପୂଜାରେ ।
ଏହି ଲକ୍ଷଣେ ଲକ୍ଷିତ ହୁଏ ଯେଉଁ ଜନ
ସେ ଜନ ଏହି ଜଗତେ ବୈଷ୍ଣବ ପ୍ରଧାନ ।

Digitized by srujanika@gmail.com

ଶଙ୍ଖ ଚକ୍ର ଗଦା ପଦ୍ମ ଆଦି ଚିହ୍ନମାନ
ବାହୁମୂଳେ କରିଥାଏ ତିଳକ ଧାରଣ ।
ଶ୍ରୀକୃଷ୍ଣ ଚରଣ ଧୂଳି ସର୍ବାଙ୍ଗେ ଭୂଷିତ
ବୈଷ୍ଣବ ମଣ୍ଡଳୀ ହୁଅନ୍ତି ଯେ ଜୟଯୁକ୍ତ ।
ଶ୍ରୀକୃଷ୍ଣ ଅଙ୍ଗ ତୁଳସୀ ସୁଗନ୍ଧ ଚନ୍ଦନ
ପୁଷ୍ପ ମାଲ୍ୟାଦିରେ ଅଙ୍ଗ କରି ବିଭୂଷଣ ।
ଭକ୍ତିଭରେ କୃଷ୍ଣଙ୍କର କରନ୍ତି ପୂଜନ
ଜୟ ଲାଭ କରିଥାନ୍ତି ବୈଷ୍ଣବ ପ୍ରଧାନ ।
ଦର୍ପ ଅଭିମାନ ଅହଂକାର ଯାହାଙ୍କର
ଦୂର ହୋଇଅଛି ଚିତ୍ତ ସର୍ବଦା ନିର୍ମଳ ।
ଦେବଗଣଙ୍କର ବନ୍ଧୁ ଶ୍ରୀକୃଷ୍ଣ ଚରଣ
ସେବା କରି ଶୋକ ଶୂନ୍ୟ ହୁଅନ୍ତି ଯେ ଜନ ।
ସେମାନେ ତ ଏ ସଂସାରେ ବୈଷ୍ଣବ ନିଶ୍ଚୟ
ସର୍ବତୋ ଭାବରେ ତାହାଙ୍କର ହେଉ ଜୟ ।
ହେ ରାଜନ ଶୁଣିଲ ତ ଭକତି ଲକ୍ଷଣ
କଲି କୃଷ୍ଣଙ୍କର ଶୁଭ ଚରିତ କୀର୍ତ୍ତନ ।
ଯେଉଁ ନର ଶ୍ରୀକୃଷ୍ଣଙ୍କୁ କରନ୍ତି ଭକତି
ଶ୍ରୀକୃଷ୍ଣ ଚରିତ ନିତି କର୍ଣ୍ଣରେ ଶୁଣନ୍ତି ।
ତାହାଙ୍କର ଜନ୍ମ ଜନ୍ମାର୍ଜିତ ପାପ ତାପ
ଝଟତି ଦୂର ହୁଅଇ ଶୁଣିଥାଅ ଭୂପ ।
ନାରଦଙ୍କ ଚିତ୍ତ କୃଷ୍ଣ ପ୍ରେମେ ହୋଇ ଭୋଳ
ଶ୍ରୀକୃଷ୍ଣ ଗୁଣ କୀର୍ତ୍ତନେ ହୋଇଲେ ଆକୁଳ ।
ଆହେ ପ୍ରଭୁ ମାଗୁନାହିଁ ମୁହିଁ କିଛି ଧନ
ଶରୀର କ୍ଳେଶକୁ ଦୁଃଖ ନ ମଣିବ ମନ ।
ମଧୁର ବଚନେ ନାମ କରିବି କୀର୍ତ୍ତନ
ଭଜନ ଉତ୍ସବ ଚିନ୍ତା କରି ଯିବ ଦିନ ।
ବୈଷ୍ଣବ ନୁହଇ ଯେଉଁ ଜନ ଏ ସଂସାରେ
ଅନ୍ୟର ଉତ୍ତମ ଚରିତ୍ରକୁ ନିନ୍ଦା କରେ ।
ଅସାଧୁ ଚରିତ୍ର ଚିନ୍ତା କରେ ଅବିରତ
ଅମଙ୍ଗଳ କାର୍ଯ୍ୟାଦିରେ ଚିତ୍ତ ରହେ ସୁସ୍ଥ ।
ଭଗବାନଙ୍କର ଚିନ୍ତା ନ କରେ ମନରେ
ଚିତ୍ତ ତାର ଲୟ ହୁଏ ବିଷୟ ଚିନ୍ତାରେ ।
ପରମ ସୁଖର ସ୍ଥାନ ଜଗନ୍ନାଥ ପଦ
କ୍ଷଣମାତ୍ର ସ୍ଥାନ ପାଏ ନାହିଁ ତାର ହୃଦ ।
ବିଷୟ ଚିନ୍ତାରେ ସଦା ଚିତ୍ତ ଥାଏ ମତ
ହରିନାମ ମିଥ୍ୟା ବୋଲି କରେ ପ୍ରଚାରିତ ।
ବୈଷ୍ଣବ ନୁହନ୍ତି ଏହି ଗୁଣଶାଳୀ ଜନ
ପର ସ୍ତ୍ରୀ ପରଧନରେ ଲୋଭ ଯାର ମନ ।
ନିଜ ଉଦର ପୂରଣେ ଉତ୍ସୁକ ଯେ ଅତି
ତା ବୁଦ୍ଧି ଅତି କଦର୍ଯ୍ୟ ନ ବୁଝେ ଉନ୍ନତି ।
ନିଜ କପାଳକୁ ମାନି କରେ କାଳ କ୍ଷେପ
ଏମାନେ ତ ନରପଶୁ ଅଟନ୍ତି ହେ ଭୂପ ।
ନରହରିଙ୍କର ପାଦ ସ୍ମରଣେ ବିରକ୍ତ
ହୁଏ ସଦା କୁସଂସର୍ଗୀ ସଙ୍ଗରେ ଆସକ୍ତ ।
ପରକୁ ଯେ ପରାଭବ ଦେବାରେ ତତ୍ପର
ହିଂସା ପରାୟଣ ଜନ ଅତି ଭୟଙ୍କର ।
ଈଦୃଶ ଯେ ନରାଧମ ତାହାର ସଙ୍ଗତ
ପରିତ୍ୟାଗ କରିବଟି ଆହେ ନରନାଥ ।
ଉତ୍କଳ ଖଣ୍ଡ ଦଶମ ଛାନ୍ଦ ହେଲା ଶେଷ
ସଂସାର ସାଗରୁ ଉଦ୍ଧାରିବେ ହୃଷୀକେଶ ।
ଆହେ ଜଗନ୍ନାଥ ତୁମ୍ଭେ ପତିତପାବନ
ପତିତକୁ ଉଦ୍ଧାରିବା ଅଟେ ତୁମ୍ଭ କାମ ।
କର୍ତ୍ତବ୍ୟରେ ଅବହେଳା ନ କର ଗୋସ୍ୱାମୀ
ଲୋକ ସମାଜେ ପତିତ ଆହେ ଅନ୍ତର୍ଯ୍ୟାମୀ ।
ବନ୍ଧୁଗଣ ନିତି କରୁ ନାହାନ୍ତି ଆଦର
ମନେ କରୁଛନ୍ତି ଏତ ଦୁରାଚାରୀ ନର ।
ଦୁରାଚାରୀ ହେଲେ ନର ହୁଅଇ ପତିତ
ପାବନ ହୋଇବ ତୁମ୍ଭସଙ୍ଗେ ହେଲେ ଯୁକ୍ତ ।
ଯୋଗସୂତ୍ର ରକ୍ଷାକର ଆହେ ଜଗନ୍ନାଥ
ପତିତପାବନ ବ୍ରତ କର ଉଦ୍‌ଯାପିତ ।
ଉଚ୍ଚୈଃସ୍ୱରେ ବାଜିଉଠୁ କାୟ ମନୋବାକ୍ୟ
ପତିତପାବନ ନାମ ହୋଇବ ସାର୍ଥକ ।
ଦୟା ସିନ୍ଧୁରୁ ବିନ୍ଦୁଏ ଦୟା କର ଦାନ
ଶୁଷ୍କ ହେବ ନାହିଁ ସିନ୍ଧୁ ବିନ୍ଦୁ କଲେ ଦାନ ।
ଆହେ ଜଗନ୍ନାଥ ଏକଥାକୁ ମନେ ହେଜ
କିନ୍ତୁ ମନେ ଭାବୁଅଛି ହରିହର ଦ୍ୱିଜ ।
ଶୁଣୁଛ କି ନ ଶୁଣୁଛ ତାହା ତୁମ୍ଭେ ଜାଣ
ସର୍ବରୂପେ ସଦାକାଳେ ତୁମ୍ଭେ ବିଦ୍ୟମାନ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ ଇନ୍ଦ୍ରଦ୍ୟୁମ୍ନ
ନାରଦ ସମ୍ବାଦେ ଭକ୍ତି ଲକ୍ଷଣ ମାହାତ୍ମ୍ୟ
ବର୍ଣ୍ଣନେ ନାମ ଦ୍ୱାଦଶୋଽଧ୍ୟାୟଃ ।

## ଏକାଦଶ ଅଧ୍ୟାୟ

ଜୈମିନି କହନ୍ତି ଇନ୍ଦ୍ରଦ୍ୟୁମ୍ନ ମହୀପତି
ନାରଦଙ୍କର ମୁଖରୁ ଶୁଣି ବିଷ୍ଣୁ ଭକ୍ତି ।
ଭକ୍ତି କଥା ଆନନ୍ଦରେ ହୋଇ ପୁଲକିତ
ପୁନରପି ନାରଦଙ୍କୁ କହିଲେ ଏମନ୍ତ ।
ସୁଧୀଗଣଠାରୁ ପାଇଅଛି ଉପଦେଶ
ସାଧୁ ସଙ୍ଗ କଲେ ହୁଏ ତ୍ରିତାପ ବିନାଶ ।

Digitized by srujanika@gmail.com

ଆପଣ ବିଷ୍ଣୁଙ୍କୁ କରି ଅଛନ୍ତି ସାକ୍ଷାତ
ତେଣୁ ଅଟନ୍ତି ଆପଣ ଉତ୍ତମ ସାଧୁତ ।
ସୌଭାଗ୍ୟକୁ ଆପଣଙ୍କୁ କରିଲି ଦର୍ଶନ
ପବିତ୍ର କରିଅଛନ୍ତି ମୋର ଏ ଭୁବନ ।
ହେ ମହର୍ଷେ ଆପଣଙ୍କ ସନ୍ନିଧିରେ ମୋର
ଅନ୍ତରରୁ ଅନ୍ଧକାର ହୋଇଛି ଅନ୍ତର ।
ଏହି ନୀଳମାଧବଙ୍କୁ କରିବି ଅର୍ଚ୍ଚନ
ଏଥିପାଇଁ ଅତିଶୟ ବ୍ୟଗ୍ର ମୋର ମନ ।
ଆପଣ ଅଟନ୍ତି ସର୍ବ ଲୋକରେ ବିଦିତ
ଭ୍ରମଣରେ ଜାଣିଛନ୍ତି ବ୍ରହ୍ମାଣ୍ଡ ବୃତ୍ତାନ୍ତ ।
ଆପଣଙ୍କ ସଙ୍ଗେ ରଥ କରି ଆରୋହଣ
ନୀଳ ସୁନ୍ଦର ଗିରିକୁ କରିବା ଗମନ ।
ପୁରୁଷୋତ୍ତମ କ୍ଷେତ୍ରର ମହିମା ଅନନ୍ତ
ପୂର୍ବେ ଶୁଣିଅଛି ତହିଁ ବହୁ ପୁଣ୍ୟ ତୀର୍ଥ ।
ସେ ସକଳ ପୁଣ୍ୟତୀର୍ଥ କରିଲେ ସାକ୍ଷାତ
ଜନମ ସଫଳ ହେବ ପାଇବ ମୋକ୍ଷ ତ ।
ନାରଦ କହନ୍ତି ଶୁଣ ରାଜା ଇନ୍ଦ୍ରଦ୍ୟୁମ୍ନ
ଶ୍ରୀପୁରୁଷୋତ୍ତମ କ୍ଷେତ୍ର କରିବି ଦର୍ଶନ ।
କ୍ଷେତ୍ର ସ୍ଥିତି ଶମ୍ଭୁ ଅଷ୍ଟଶକ୍ତି ସର୍ବ ତୀର୍ଥ
କ୍ଷେତ୍ର ମାହାତ୍ମ୍ୟ ସକଳ ହେବ ଅବଗତ ।
ସେହି ଦେବ ଦେବ ଜଗନ୍ନାଥ ଭକ୍ତାଧିନ
ତାହାଙ୍କୁ ଯେ ସ୍ୱଚକ୍ଷୁରେ କରିବି ଦର୍ଶନ ।
ତାହାଙ୍କୁ ଯେ ଅନୁଗ୍ରହ କରିବା ନିମିତ୍ତ
ଚତୁର୍ଦ୍ଧାରୂପେ ବିଜୟ ତହିଁ ଜଗନ୍ନାଥ ।
ତାହାଙ୍କୁ ଦର୍ଶନ କଲେ ମାନବେ ମୁକତି
ଲାଭ କରିବେ ନିଶ୍ଚୟ ଆହେ ନରପତି ।
ଏ ରୂପ କଥା ଶେଷରେ ନାରଦ ନୃପତି
ଦିବସ କୃତ୍ୟ ସମ୍ପନ୍ନ କରିଲେ ଝଟତି ।
ଯାତ୍ରା ଅନୁକୂଳ ଦିନ ତହିଁ ସ୍ଥିର କଲେ
ଜ୍ୟେଷ୍ଠମାସ ଶୁକ୍ଲପକ୍ଷ ପଞ୍ଚମୀ ତିଥିରେ ।
ପୁଷ୍ୟା ନକ୍ଷତ୍ରରେ ଶୁଭ ଲଗନ ବେଳାରେ
ଶୟନ କରିଲେ ଦୁହେଁ ରାତ୍ରି କଟାଇଲେ ।
ରାତ୍ର ପ୍ରଭାତ ହୁଅନ୍ତେ ରାଜା ଇନ୍ଦ୍ରଦ୍ୟୁମ୍ନ
ଘୋଷଣା ଦେଲେ ରାଜ୍ୟରେ ବଜାଇ ଡିଣ୍ଡିମ ।
ବିଭବ ସହିତ ରାଜ୍ୟବାସୀ ବନ୍ଧୁଗଣ
ସୈନ୍ୟ ସାମନ୍ତ ସହିତେ କରିବେ ଗମନ ।
ନୀଳ ପର୍ବତେ ରହିବେ ଯାବତ ଚନ୍ଦ୍ରାର୍କେ
ଏହି କଥା ତ ନିଶ୍ଚୟ ଶୁଣ ରାଜ୍ୟ ଲୋକେ ।
ଯାହାର ଯେ ରୂପ ବୃତ୍ତି କୌଳିତ ଅଟଇ
ତାହାଦ୍ୱାରା ଜୀବିକା ନିର୍ବାହ କର ତହିଁ ।

ଅନ୍ତଃପୁର ପରିବାର ସହିତ ଅମାତ୍ୟ
ଆମ୍ଭ ଅଧିକାରେ ଛନ୍ତି ଯେତେ ରାଜଭୃତ୍ୟ ।
ରଥ ଗଜ ଅଶ୍ୱ ଧନକୋଷ ସଙ୍ଗେ ଘେନି
ଯାହାର ଯେ ବେଶଭୂଷା ସଜ କର ଆଣି ।
ବ୍ରାହ୍ମଣ ପଣ୍ଡିତ ଅଗ୍ନିହୋତ୍ରୀ ଯେ ସକଳ
ବସତି କରିବେ ଯାଇଁ ସର୍ବେ ନୀଳାଚଳ ।
ପଣ୍ୟଜୀବୀ ବ୍ୟବସାୟୀ ପସରା ସହିତ
ଶ୍ରୀକ୍ଷେତ୍ର ଗମନପାଇଁ ହୁଅନ୍ତୁ ପ୍ରସ୍ତୁତ ।
ରାଜନୀତି ବିଶାରଦ ରାଜ୍ୟକାର୍ଯ୍ୟେ ଦକ୍ଷ
ଜ୍ୟୋତିର୍ବିଦ ଯେ ଗ୍ରହଣ କରନ୍ତି ପ୍ରତ୍ୟକ୍ଷ ।
ଦଣ୍ଡନୀତିରେ ପ୍ରବଣ କର୍ମଚାରୀଗଣ
ନୃତ୍ୟଗୀତ ବାଦ୍ୟାଦିରେ ଅଭିଜ୍ଞ ଯେ ଜନ ।
ମନୁଷ୍ୟ ଅଶ୍ୱ ହସ୍ତୀର ଚିକିତ୍ସା ନିପୁଣ
ଆୟୁର୍ବେଦ ବିଶାରଦ ଚିକିତ୍ସକଗଣ ।
ଅଷ୍ଟାଦଶ ବିଦ୍ୟାରେ ଯେ ପ୍ରବୀଣ ଅଟନ୍ତି
ଆମ୍ଭ ଆଦେଶରେ ତହିଁ କରନ୍ତୁ ବସତି ।
ସାହାସୀ ତସ୍କର ଆଉ ଯେତେ ସ୍ୱର୍ଣ୍ଣକାର
ଭାଣ୍ଡ ବୈତାଳିକ ଆଦି ଯେତେ ଚାଟୁକାର ।
ଏ ସକଳ ନୀଳାଚଳେ କରନ୍ତୁ ଗମନ
ପବିତ୍ର ହୋଇବେ କରି ମାଧବ ଦର୍ଶନ ।
ଯେ ଜନ ସର୍ବଦା ଶାସ୍ତ୍ର ଚର୍ଚ୍ଚାରେ ନିରତ
ପରଦ୍ରବ୍ୟ ଚୋରୀ କରିବାରେ ସିଦ୍ଧହସ୍ତ ।
ଏ ସକଳ ଜନ ପାପ ମୁକ୍ତିର ନିମିତ୍ତ
ଶ୍ରୀକ୍ଷେତ୍ରେ ଗମନ କରି ହୁଅନ୍ତୁ ପବିତ୍ର ।
ଦ୍ୟୁତକର ବେଶ୍ୟା ବିଟ ପୁରୁଷ ଯେ ଜନ
କୃଷକ ଗୋମେଷ ଆଦି ପଶୁପାଳଗଣ ।
ପକ୍ଷୀ ପାଳକ ବାନର ବ୍ୟାଘ୍ରାଦି ରକ୍ଷକ
ବିଷ ବୈଦ୍ୟ ଶବର ଯେ ମ୍ଳେଚ୍ଛଜାତିଲୋକ ।
ମାଳବ ଦେଶରେ ବାସ କରନ୍ତି ଯେ ଜନ
ସର୍ବଦା ଆମ୍ଭ ଆଦେଶ କରନ୍ତି ପାଳନ ।
ଆଉ ଯେତେଛନ୍ତି ପ୍ରଜାଗଣ ଯେ ସକଳେ
ଗମନ କରନ୍ତୁ ନୀଳାଚଳକୁ ସତ୍ୱରେ ।
ସେ ସ୍ଥାନେ ନିଜ ଜୀବିକା କରନ୍ତୁ ଅର୍ଜନ
ନରପତି ଏହି ଆଜ୍ଞା କରିଲେ ପ୍ରଦାନ ।
ଯାତ୍ରାକାଳର ନିର୍ଣ୍ଣୟ କରିଲେ ନୃପତି
ନାରଦଙ୍କ ସଙ୍ଗେ ଦୈବଜ୍ଞଙ୍କୁ ସେ କହନ୍ତି ।
ହେ ଦେବଜ୍ଞ ତୁମ୍ଭେ ଯାତ୍ରାକାଳ କରିଅଛ
ସେ ମୁହୂର୍ତ୍ତ କେବେ ହେବ ତୁମ୍ଭେ ଜାଣିଅଛ ।
ମଙ୍ଗଳାରୋପଣ ବିଧି କର ଆୟୋଜନ
ପୁରୋହିତଙ୍କ ମତରେ ହେବ ସମ୍ପାଦନ ।

Digitized by srujanika@gmail.com

ସେ ଦେବଙ୍କ ରାଜାଙ୍କର ପାଇ ଅନୁମତି
ମଙ୍ଗଳାରୋପଣ ଦ୍ରବ୍ୟ ସ୍ଥାପିଲେ ଝଟତି ।
ରାଜାଙ୍କୁ ସେ ଡାକି ସିଂହାସନେ ବସାଇଲେ
ଦ୍ୱିଜଗଣ ମାଙ୍ଗଳିକ ମନ୍ତ୍ର ପାଠ କଲେ ।
ବହ୍ନି ସୂକ୍ତଅପ୍ ଦୈବତ ସୂକ୍ତ ଶିରୀ ସୂକ୍ତ
ଉଚ୍ଚୈଃସ୍ୱରେ ପାଠ କଲେ ପାବମାନୀ ସୂକ୍ତ ।
ସର୍ବୌଷଧି ଗନ୍ଧୋଦକ ଆଦି ତୀର୍ଥଜଳ
ପୃଥକ୍ ରୂପେ ଅଭିଷେକ କରିଲେ ସକଳ ।
ସୂକ୍ଷ୍ମ ବସନରେ ଗାତ୍ର କରିଲେ ମାର୍ଜନ
ରାଜାଙ୍କ ତେଜ ଦିଶିଲା ଯେହ୍ନେ ହୁତାଶନ ।
ଅନନ୍ତର ସୂକ୍ଷ୍ମବସ୍ତ୍ର କରି ପରିଧାନ
ଯଥାବିଧିରେ କରିଲେ ମନ୍ତ୍ରେ ଆଚମନ ।
କୁଶବଟୁ ହସ୍ତେ ଘେନି ବୃଦ୍ଧି ଶ୍ରାଦ୍ଧ କଲେ
ଗଣ ଦେବତାମାନଙ୍କୁ ହୋମରେ ତୋଷିଲେ ।
ଦକ୍ଷିଣ ଆବର୍ତ୍ତେ ପ୍ରଦକ୍ଷିଣ କଲେ ବହ୍ନି
ଜୟ ଲାଭାର୍ଥ ମଙ୍ଗଳ ଶଙ୍ଖ ହେଲା ଧ୍ୱନି ।
ଅନନ୍ତର ସେ ନୃପତି କଲେ ଗ୍ରହଶାନ୍ତି
ନବଗ୍ରହଯାଗ ଶେଷ କରିଲେ ଝଟତି ।
ଗ୍ରହ କୁମ୍ଭ ଜଳଦ୍ୱାରା ହେଲେ ଅଭିଷିକ୍ତ
ଜ୍ୟୋତିଃ ଶାସ୍ତ୍ର ମତେ କଲେ ମାଙ୍ଗଳିକ କୃତ୍ୟ ।
ନିଜ ଦେହେ ଚୀନାଂଶୁକ କଲେ ଆଚ୍ଛାଦିତ
ତଦୁପରି କବଚ ଯେ ହେଲେ ପରିହିତ ।
ମସ୍ତକରେ ଶୁକ୍ଳବର୍ଣ୍ଣ ଉଷ୍ଣୀଶ ବାନ୍ଧିଲେ
ତଦୃରେ ରତ୍ନ ମୁକୁଟ ପରିଧାନ କଲେ ।
କର୍ଣ୍ଣରେ ଯତ୍ନ କୁଣ୍ଡଳ ନାନା ଅଳଙ୍କାର
କଣ୍ଠେ ଶୋହେ ଗୈବେୟକ ଆଉ ରତ୍ନହାର ।
କେୟୁର ଅଙ୍ଗଦ ଅଙ୍ଗୁରୀୟକ ହସ୍ତରେ
ତ୍ରିଗୁଣ ସୁବର୍ଣ୍ଣ ସୂତ୍ର ଶୋଭଇ କଟୀରେ ।
ଆଉ ମନୋହର ରତ୍ନମୟ କାଞ୍ଚୀଦାମ
ପଦେ ପାଦ କଟକ ଯେ କଲେ ପରିଧାନ ।
ଏହିରୂପେ ଅଳଂକୃତ ହୋଇଲେ ରାଜନ
ନିଜ ଦେହ ଦରପଣେ କଲେ ଦରଶନ ।
ଯାତ୍ରା ଶୁଭ ଅର୍ଥେ ସ୍ୱର୍ଣ୍ଣ ପୀଠରେ ବସିଲେ
ମଧୁସୂଦନ ଶ୍ରୀଧର ନାମ ଜପ କଲେ ।
ଯେହେତୁ ବିଷ୍ଣୁ ଅଟନ୍ତି ମଙ୍ଗଳ ଆଧାର
ଏକମାତ୍ର କାରଣ ସେ ସର୍ବ ମଙ୍ଗଳର ।
ସେ ବିଷ୍ଣୁ ସ୍ମରଣ କଲେ ନରମାନଙ୍କର
ବହୁତର ପାତକ ଯେ ହୋଇଥାଏ ଦୂର ।
ସୁଗନ୍ଧ କୁସୁମ ମାଳା କରି ମନ୍ତ୍ର ପୂତ
ଗଳାରେ ଲମ୍ବାଇ ଦେଲେ ଆଣି ପୁରୋହିତ ।

ମନ୍ତ୍ରପୂତ କରିଦେଲେ ମୃତ୍ତିକା ପ୍ରଦୀପ
ଦୁର୍ବାଫଳ ଦଧି ଗୋରଚନା ଆଦି ପୁଷ୍ପ ।
ଶ୍ୱେତ ସର୍ଷପରେ ଦେହ କଲେ ସଂରକ୍ଷଣ
ଘୃତ କୁମ୍ଭେ ଆତ୍ମ ମୁଖୁଁ କଲେ ଦରଶନ ।
ଶେଷେ ମନ୍ତ୍ରିତ ଦର୍ପଣ ଆଣି ପୁନର୍ବାର
ମୁଖ ଅବଲୋକନ ଯେ କଲେ ନୃପବର ।
ଶୁଭମନ୍ତ୍ର ପାଠ କଲେ ମଙ୍ଗଳ ପାଠକ
ତାହା ଶୁଣି ଧୈର୍ଯ୍ୟ ବୀର୍ଯ୍ୟ ହୋଇଲା ଅଧିକ ।
ଗୁଣଗାନ କଲେ ତହିଁ ସ୍ତାବକ ଯେ ଥିଲେ
ରାଜାଙ୍କର ପରାକ୍ରମ ଉତ୍ତେଜିତ କଲେ ।
ବହୁତ ସକଳ ଆସି କଲେ ଶାନ୍ତି ପାଠ
ଭବିଷ୍ୟତେ ସିଦ୍ଧ ହେବ ସକଳ ଅଭୀଷ୍ଟ ।
ଆୟୁ ବୃଦ୍ଧି କର ମନ୍ତ୍ର ଆଉ ପଥିସୂକ୍ତ
ଗମନ ପଥେ ହୋଇବ ବିଘ୍ନ ଦୂରୀଭୂତ ।
ଏସନକ ମନ୍ତ୍ରେ ଅଭିରକ୍ଷିତ ରାଜନ
କୃତ୍‌ପଦ୍ମେ ଚିନ୍ତା କରିଲେ ଲକ୍ଷ୍ମୀ ନାରାୟଣ ।
ଆଗରେ ନାରଦ ମୁନି ପଛେ ନରନାଥ
ଦକ୍ଷିଣ ପାଦ କରିଲେ ଗମନ ଉଦ୍ୟତ ।
ସେବକଗଣ ହାତରେ ଧରି ସୁନା ବେତ
ରାଜାଙ୍କର ଚଉପାଶେ ଚଳିଲେ ତୁରିତ ।
ମଧ୍ୟ କକ୍ଷେ ରାଜା ଆସି ହେଲେ ଉପସ୍ଥିତ
ସମ୍ମୁଖରେ ଯାଉଅଛି ସଙ୍ଗେ ଅଗ୍ନି ହୋତ୍ର ।
ଖୁର୍ଣ୍ଣିଆଗଣ କରନ୍ତି ପଥ ପ୍ରଦର୍ଶନ
ସେହି ପଥେ ରାଜା କରୁଅଛନ୍ତି ଗମନ ।
ଗମନ କାଳେ ଦକ୍ଷିଣ ଭାଗରେ ଦେଖିଲେ
ଶ୍ୱେତ ବସ୍ତ୍ରଧାରୀ ଶ୍ୱେତବର୍ଣ୍ଣ ବିପ୍ରଦଳେ ।
ରାଜାଙ୍କର ଅଗ୍ରଭାଗେ ପୁଷ୍ପ ବରଷଣ
କରୁଛନ୍ତି ଶ୍ୱେତ ବସ୍ତ୍ରଧାରୀ ବିପ୍ରଗଣ ।
ଉତ୍ତରେ ମଙ୍ଗଳ ସୂକ୍ତ ପଠନ କରନ୍ତି
ଆଶୀର୍ବାଦ କରି ପଥ ମଧ୍ୟରେ ଗମନ୍ତି ।
ପଥେ ଗଲାବେଳେ ରାଜା ବ୍ରାହ୍ମଣମାନଙ୍କୁ
ଭଗବାନ ଜ୍ଞାନ କରି ପୂଜିଲେ ସଭିଙ୍କୁ ।
ବସ୍ତ୍ର ଅଳଙ୍କାର ମାଲ୍ୟ କରିଲେ ପ୍ରଦାନ
ଦାନେ ସନ୍ତୁଷ୍ଟ କରିଲେ ବ୍ରାହ୍ମଣଙ୍କ ମନ ।
ମନ୍ତ୍ରୀ ମହାରାଜାଙ୍କର ପାଇଁ ଅନୁମତି
ବେଶ୍ୟା ସ୍ତୁତି ପାଠକାଦି ଦୀନନାଥ ବ୍ୟକ୍ତି ।
ଯେତେ ଥିଲେ ସେମାନଙ୍କୁ ଧନ କଲେ ଦାନ
ସନ୍ତୁଷ୍ଟ ହୋଇଲେ ପାଇ ରାଜ ସନମାନ ।
ଶ୍ୱେତବର୍ଣ୍ଣ ପାରାବତ ରାଜହଂସ ଶ୍ୱେତ
ଚୂତପତ୍ର ଶ୍ୱେତ ପୁଷ୍ପ ମାଳାରେ ଭୂଷିତ ।

Digitized by srujanika@gmail.com

ଶ୍ୱେତାଶ୍ୱ ହସ୍ତୀ କଦଳୀ ବୃକ୍ଷରେ ଶୋଭିତ
ମନୋହର ତୋରଣାରେ ଶୋଭା ଆଲୋକିତ ।
ଅଧୋଭାଗେ ପୂର୍ଣ୍ଣକୁମ୍ଭ ହୋଇଛି ସ୍ଥାପିତ
ମଙ୍ଗଳ ଦ୍ରବ୍ୟ ଦର୍ଶନେ ବୃଷ୍ଟି ହେବ ପୂତ ।
ଶିରୋପରି ଶ୍ୱେତ ଛତ୍ର ଧରି ଭୃତ୍ୟଗଣ
ରାଜାଙ୍କର କରୁଛନ୍ତି ଆତପ ବାରଣ ।
ଏକକାଳେ ଶତେ ଶଙ୍ଖ ଧ୍ୱନି ତହିଁ ହେଲା
ବାଦ୍ୟ ବାଜଣା ବିବିଧ ପ୍ରକାରେ ବାଜିଲା ।
ରାଜା ସିଂହଦ୍ୱାରେ ଆସି ହେଲେ ଉପସ୍ଥିତ
ମଙ୍ଗଳ ଗୀତିକା ଜୟ ଧ୍ୱନି ଉଚ୍ଛୁଳିତ ।
ଅନନ୍ତର ରାଜା ତହିଁ କରିଲେ ସ୍ମରଣ
ଯାକୁ ସ୍ମରିଲେ ହୁଅଇ ଲାଭ ସୁକଲ୍ୟାଣ ।
ସେହି ନୃସିଂହ ଦେବଙ୍କୁ ଦର୍ଶନ ନିମିତ୍ତ
ମନ୍ଦିର ମଧ୍ୟକୁ ରାଜା ହେଲେ ଉପଗତ ।
ସିଂହାସନେ ନୃସିଂହଙ୍କୁ କରନ୍ତେ ଦର୍ଶନ
ଦୂରରୁ ରାଜନ କଲେ ସାଷ୍ଟାଙ୍ଗେ ପ୍ରଣାମ ।
ବେଦ ମନ୍ତ୍ର ସ୍ତବ ସ୍ତୋତ୍ର କଲେ ଉଚ୍ଚାରଣ
ଦୁର୍ଗତି ହାରିଣୀ ଦୁର୍ଗା ଦେବୀ ଦରଶନ ।
ନୃସିଂହଙ୍କ ଦକ୍ଷପାର୍ଶ୍ୱେ ଦେବୀ ଦୟାକରି
ଦର୍ଶକମାନଙ୍କୁ ସଂକଟରୁ କରେ ପାରି ।
ତାହାଙ୍କ ଚରଣେ ବେଗେ ପ୍ରଣାମ କରିଲେ
ତହୁଁ ପୂଜକ ପ୍ରଭୁଙ୍କ ଗଳାରୁ ଆଣିଲେ ।
ମାଳା ରାଜାଙ୍କ ଗଳାରେ ଲମ୍ବାଇଣ ଦେଲେ
ସୁଗନ୍ଧ ଚନ୍ଦନେ ଦେହ ମଣ୍ଡଣି ଯେ କଲେ ।
ପରମ ଆନନ୍ଦେ ବନ୍ଦାପନା ସେ କରିଲେ
ନୃସିଂହ ଦୁର୍ଗାଦେବୀଙ୍କୁ ପ୍ରଦକ୍ଷିଣ କଲେ ।
ଠାକୁର ଠାକୁରାଣୀଙ୍କୁ ରାଜା ଇନ୍ଦ୍ରଦ୍ୟୁମ୍ନ
ଶିବିକାରେ ବେଗେ କରାଇଲେ ଆରୋହଣ ।
ଠାକୁର ଆଗେ ଚଳନ୍ତି ପଛେ ରାଜା ବିଜେ
ନଗର ଘାଟରେ ଯାଇଁ ପ୍ରବେଶ ହେଲେ ଯେ ।
ଦେଖିଲେ ସଜ୍ଜିତ ରଥ ରହିଅଛି ତହିଁ
ଲୋକଙ୍କର ଯେ ଆନନ୍ଦ କେ ପାରିବ କହି ।
ଦଶଗୋଟି ବାୟୁବେଗ ଘୋଟକ ଯୋଜିତ
ରଥକୁ ଯେ ପ୍ରଦକ୍ଷିଣ କଲେ ନରନାଥ ।
ନାରଦଙ୍କ ସହ ରଥ ଆରୋହଣ କଲେ
ନୀଳାଚଳ ଅଭିମୁଖେ ଯାତ୍ରା ଆରମ୍ଭିଲେ ।
ଢକ୍କା ମୃଦଙ୍ଗ ଗୋମୁଖ ପଣବ ଚର୍ଚ୍ଚରୀ
ଭେରୀ ଶଙ୍ଖ ଆଦି ବାଦ୍ୟ ବାଜଇ ମହୁରୀ ।
ସହସ୍ର ସଂଖ୍ୟକ ବାଦ୍ୟ ହୁଏ ନିନାଦିତ
ରାଜରଥ ଚତୁଃପାର୍ଶ୍ୱେ ଧାଡ଼ି ଧାଡ଼ି ରଥ ।
ତହିଁରେ ରାଜନ୍ୟ ବର୍ଗ କରନ୍ତି ଗମନ
ବିବିଧ ଅସ୍ତ୍ର ଶସ୍ତ୍ରରେ ହୋଇଅଛି ପୂର୍ଣ୍ଣ ।
ସୁବର୍ଣ୍ଣ ରୌପୀ କିଙ୍କିଣୀ ପତାକା ଦର୍ପଣ
ଭୂଷିତ ହୋଇ ଶୋଭଇ ସକଳ ସ୍ୟନ୍ଦନ ।
ବିବିଧ ଯନ୍ତ୍ର ସକଳ ରଥେ ଖଞ୍ଜା ଅଛି
ଅତି ମଧୁର ଘର୍ଘର ଧ୍ୱନି ଶୁଭୁଅଛି ।
ହସ୍ତୀର ବୃଂହିତ ଧ୍ୱନି ଅଶ୍ୱ ହ୍ରେଷାରବ
ସଙ୍ଗରେ ମିଶିଲା ତହିଁ ବାଦ୍ୟ ଧ୍ୱନି ସର୍ବ ।
ପ୍ରଳୟ କାଳୀନ ଘୋର ଗର୍ଜ୍ଜନର ତୁଲ୍ୟ
ଶୁଣାଗଲା ଯାତ୍ରା କାଳ ଜନ କୋଳାହଳ ।
ସୁସଜ୍ଜିତ ହୋଇ ସର୍ବପୁରବାସୀଗଣ
ଅଶ୍ୱ ଉଷ୍ଟ୍ର ଗର୍ଦ୍ଦଭ ଯେ କରି ଆରୋହଣ ।
ଗମନ କଲେ ଯେ ପଥେ ଚଳନ୍ତି ରାଜନ
ସେହି ପଥ ପୁରବାସୀ ଗଣେ ହେଲା ପୂର୍ଣ୍ଣ ।
ଅଶ୍ୱ ପାଲିଙ୍କି ଶିବିକା ପାଦଚାରୀ ଜନ
ଭାର ବାହୀ ଧାଡ଼ି କରି କରନ୍ତି ଗମନ ।
ଅନ୍ତଃପୁରେ ଯେତେ ଦାସୀ ଥିଲେ ରାଜାଙ୍କର
ନାନା ଯାନ ଆରୋହଣ କରିଲେ ସତ୍ୱର ।
ନପୁଂସକ ଭୃତ୍ୟଗଣ ହୋଇଣ ବେଷ୍ଟିତ
ଚଳନ୍ତି ରକ୍ଷକ ଗଣେ ହୋଇ ସୁରକ୍ଷିତ ।
ସେ ଦେଶରେ ଯେତେ ଥିଲେ ଯାଜ୍ଞିକ ବ୍ରାହ୍ମଣ
ନିଜ ନିଜ ପତ୍ନୀ ଘେନି କରିଲେ ଗମନ ।
ସକଳ ଯଜ୍ଞୀୟ ପାତ୍ର ଶକଟେ ଭରିଲେ
ରାଜାଙ୍କର ସୈନ୍ୟଗଣ ପଥେ ରକ୍ଷାକଲେ ।
ବ୍ରାହ୍ମଣ ଆଉ ଉତ୍ତମ ଜାତି ଥିଲେ ଯେତେ
ପୁସ୍ତକାଦି ଦେବାପୂଜା ପାତ୍ର ଘେନି ସାଥେ ।
କିଏ ହୋମ ଯୋଗ୍ୟ କାଷ୍ଠ କିଏ କୁଶ ଘୃତ
କିଏ ଅନ୍ୟ ଦ୍ରବ୍ୟ ଘେନି ଚଳନ୍ତି ତ୍ୱରିତ ।
ବ୍ରାହ୍ମଣ ଅମାତ୍ୟ ପୁରୋହିତ ଭୃତ୍ୟଗଣ
ଋତ୍ୱିକ୍‌ଗଣ ଆଉ ରାଜ ସେବକ ଯେ ଜନ ।
ନିଜ ନିଜ ଦ୍ରବ୍ୟ ଧରି କରିଲେ ଗମନ
କୋଷାଗାର ଘେନି ଗଲେ କୋଷାଧ୍ୟକ୍ଷ ଗଣ ।
ଅଙ୍ଗ ସେବାକାରୀଗଣ ଘେନି ସେବା ଦ୍ରବ୍ୟ
ମାଳାକାର ସଙ୍ଗତରେ ଗଲେ ଅତିଜବ ।
ବ୍ୟବସାୟୀ ଗଣ ନିଜ ବେଉସାକୁ ଘେନି
ରାଜାଙ୍କ ସଙ୍ଗେ ଗମନ କଲେ ତତକ୍ଷଣି ।
ନଗରବାସୀ ଯେ ଉଚ୍ଚଶ୍ରେଣୀ ଲୋକ ଥିଲେ
ନିଜର ବେଶ ଭୂଷାରେ ସଜ୍ଜିତ ହୋଇଲେ ।
ପଲ୍ଲୀ ବାସୀଗଣ ସଙ୍ଗେ ମିଳିଲେ ତ୍ୱରିତ
ଗମନ କରିଲେ ମହାରାଜାଙ୍କ ସହିତ ।

Digitized by srujanika@gmail.com

ଭେରୀ ପଟହାଦି ବାଦ୍ୟ ବାଜେ ଅବିରତ
ସେହି ଶବ୍ଦ ଚତୁର୍ଦ୍ଦିଗେ ବ୍ୟାପିଲା ତୁରିତ ।
ଜନପଦ ବାସୀ ଜନେ ଶୁଣି ବାଦ୍ୟ ଧ୍ୱନି
ଗମନ କରିଲେ ରାଜା ଆଦେଶକୁ ମାନି ।
ଯେ ପଥ ଯାହା ପକ୍ଷରେ ଅଟଇ ସରଳ
ସେ ପଥେ ଗମନ କଲେ ହୋଇଣ ଚଞ୍ଚଳ ।
ଜନପଦ ବାସୀଗଣ ରାଜା ଆଦେଶରେ
ରାଜପଥ ଛାଡ଼ିଗଲେ ଦୁର୍ଗମ ପଥରେ ।
ପୁରବାସୀ ଚତୁରଙ୍ଗ ସୈନ୍ୟ ସଙ୍ଗତରେ
ରାଜା ଇନ୍ଦ୍ରଦ୍ୟୁମ୍ନ ଶୀଘ୍ର ଗମନ କରିଲେ ।
ସାମନ୍ତ ରାଜାଙ୍କ ରଥ ଶ୍ରେଣୀ ମନୋହର
ଦେଖାଯାଏ ରାଜପଥ ଅତୀବ ସୁନ୍ଦର ।
ଅତ୍ୟୁତ୍ତମ ପରିଚ୍ଛଦେ ହୋଇ ବିଭୂଷଣ
ସାମନ୍ତ ରାଜା ଦିଶନ୍ତି ଇନ୍ଦ୍ରର ସମାନ ।
ମଙ୍ଗଳ ଆଚାର କରି ପୁରନାରୀ ଗଣ
ଗୀତ ଗାଇ ଲାଜା ପୁଷ୍ପ କରିଲେ ବର୍ଷଣ ।
ମଙ୍ଗଳାଚାରେ ପ୍ରଫୁଲ୍ଲ ଚିତ୍ତ ରାଜା ହେଲେ
ଶୁଭ ଚିନ୍ତା କରି ରଥେ ଗମନ କରିଲେ ।
ସକଳ ଦେଶର ପଥ ଜାଣନ୍ତି ଯେ ଜନ
କେଉଁଠାରେ ନଦୀ ଆଉ ଦୁର୍ଗମ କାନନ ।
ନୀଳଚଳେ ଯିବାପାଇଁ ଅଟେ କେଉଁ ପଥ
ଦେଖାଇବେ ସେହି ଜନେ ଚଳିଲେ ଅଗ୍ରତ ।
ଘନ ଛାୟା ସୁଶୀତଳ ସମତଳ ପଥ
ଧୂଳି ଶୂନ୍ୟ ପଥେ ଗଲେ ସୁଖେ ନରନାଥ ।
ଅନୁକୂଳ ଦିଗରୁ ଯେ ବହିଲା ପବନ
ଅତି ଆନନ୍ଦେ ସରବେ କରିଲେ ଗମନ ।
ପଥମଧ୍ୟେ ନାନା ଦେଶ ବିବିଧ କାନନ
ଦର୍ଶନ କରି ଆନନ୍ଦ ହୋଇଲେ ରାଜନ ।
କେତେଦୂରେ ବନମଧ୍ୟେ ଦେଖିଲେ ରାଜନ
ଉତ୍କଳ ଦେଶର ସୀମା ଆରମ୍ଭ ଯେ ସ୍ଥାନ ।
ପଥେ ଅବସ୍ଥିତା ମୁଣ୍ଡ ମାଳା ବିଭୂଷିତା
ଚଣ୍ଡିକା ଦେବୀ ବିପଦ ନାଶନେ ସମର୍ଥା ।
ନାରଦଙ୍କ ଅନୁମତି ନେଇ ନରନାଥ
ରଥରୁ ଯେ ଅବତୀର୍ଣ୍ଣ ହୋଇଲେ ତୁରିତ ।
ସାଷ୍ଟାଙ୍ଗ ପ୍ରଣାମ କଲେ ଚଣ୍ଡିକା ଆଗରେ
ସ୍ତୁତିଗାନ କଲେ ଇନ୍ଦ୍ରଦ୍ୟୁମ୍ନ ଆନନ୍ଦରେ ।
ହେ ତ୍ରିଦଶେଶ୍ୱର ବିଘ୍ନରାଶି ନିବାରଣୀ
ହେ ପରମେଶ୍ୱରୀ ତବ ଚରଣେ ପ୍ରଣମି ।
ତୁମ୍ଭ କଳ୍ପନାରୁ ଜାତ ସକଳ ଦୈବତ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ହୁଅନ୍ତି ପ୍ରଣତ ।
ତୁମ୍ଭେ ଜଗତ କାରଣ ଅଟ ଆଦ୍ୟାଶକ୍ତି
ପ୍ରସନ୍ନ ହୁଅନ୍ତୁ ମାତଃ ବେଗେ ଆମ୍ଭପ୍ରତି ।
ବ୍ରହ୍ମାଣ୍ଡ ପତି ଶ୍ରୀବିଷ୍ଣୁ ଯେଉଁ ଶକ୍ତି ବଳେ
ସୃଷ୍ଟି ପାଳନ ସଂହାର କରନ୍ତି ସଂସାରେ ।
ତୁମ୍ଭେ ସେହି ବିଷ୍ଣୁଙ୍କର ବୈଷ୍ଣବୀ ଶକତି
ହେ ପରମେଶ୍ୱରୀ ! ପାଦ ପଦ୍ମକୁ ପ୍ରଣତି ।
ହେ ମଙ୍ଗଳମୟୀ ! ତୁମ୍ଭ ବିନା ଏ ଜଗତ
କ୍ଷଣକାଳ ରହିବାକୁ ନ ହୁଏ ସମର୍ଥ ।
ହେ ଶାଶ୍ୱତ ସ୍ୱରୂପିଣୀ ? ଏ ମର୍ତ୍ତ୍ୟ ଲୋକରେ
କାର୍ଯ୍ୟସିଦ୍ଧ ମଙ୍ଗଳ ଯେ ଜନ ଲାଭ କରେ ।
ଏ ସକଳ ତୁମ୍ଭ ପାଦ ପଦ୍ମ ସେବା ଫଳ
ପାଦ ଆରାଧନା ବିନା ଘଟେ ଅମଙ୍ଗଳ ।
ହେ ଦେବୀ ସେ ନୀଳାଚଳ ବାସୀ ଦେହ ଦେବ
ଚରାଚର ଗୁରୁଙ୍କର ଦର୍ଶନ ମିଳିବ ।
ଯେଉଁପରି ସ୍ୱନୟନେ ଦର୍ଶନ କରିବି
ସେହିପରି ଅନୁଗ୍ରହ କର ମାଗୋ ଦେବୀ ।
ଜୈମିନି କହନ୍ତି ଶୁଣ ସର୍ବ ଦ୍ୱିଜଗଣ
ଚଣ୍ଡିକା ଦେବୀଙ୍କୁ ରାଜା କରିଣ ପ୍ରଣାମ ।
ସୂର୍ଯ୍ୟଦେବ ଯେଉଁପରି ଉଦୟ ହୁଅନ୍ତି
ରଥ ଆରୋହଣ କଲେ କରି ସେହିଗତି ।
ଅବିଳମ୍ବେ ରଥେ ବିଜେ ହେଲେ ନରପତି
ପୁନରପି ଯାତ୍ରାରମ୍ଭ କରିଲେ ଝଟତି ।
ରଥ ଆରୋହଣ କରି ପ୍ରସ୍ଥାନ କରିଲେ
ଚିତ୍ରୋତ୍ପଳା ମହାନଦୀ ତଟରେ ମିଳିଲେ ।
ଯାତ୍ରୁ କନ୍ଦର ନାମକ ବନେ ପ୍ରବେଶିଲେ
ସେହି ସ୍ଥାନେ ରାଜା ସୈନ୍ୟ ସମାବେଶ କଲେ ।
ରାଜା ପୁରୋହିତ ଦୁହେଁ ଅପରାହ୍ନ କାଳ
କୃତ୍ୟ ସମାପନ ଅର୍ଥେ ହୋଇଲେ ଚଞ୍ଚଳ ।
ଅତି ଯତ୍ନେ ନଦୀଘାଟେ ହେଲେ ଅବତୀର୍ଣ୍ଣ
ଜଳମଧ୍ୟେ କୁମ୍ଭୀରାଦି କରି ଅନ୍ୱେଷଣ ।
ବିଷ କଣ୍ଟକାଦି ଦୂରୀକୃତ କରାଇଲେ
ସ୍ନାନ ସନ୍ଧ୍ୟା ତର୍ପଣାଦି ସମାପନ କଲେ ।
ଦେବ ପୂଜା ଯଥାବିଧି ବିଷ୍ଣୁଙ୍କୁ ତୋଷିଲେ
ଅନନ୍ତର ସହଚର ରାଜାଙ୍କୁ ଡାକିଲେ ।
ଯଥାଯୋଗ୍ୟ ଆସନ ଯେ କରିଲେ ପ୍ରଦାନ
ଅମାତ୍ୟ ସ୍ୱଜନଗଣ ପାଇଲେ ସମ୍ମାନ ।
ଏ ସମୟେ ନାରଦଙ୍କ ସହିତ ନୃପତି
ଅନ୍ତଃପୁରେ ପ୍ରବେଶିଲେ ମନେ ବହି ପ୍ରୀତି ।
ସୁଧାରସ ତୁଲ୍ୟ ଅନ୍ନ ଭୋଜନ କରିଲେ
ଦିନମଣି ଅସ୍ତାଚଳ ଆରୋହଣ କଲେ ।

Digitized by srujanika@gmail.com

ଆକାଶରେ ଶଶିପତି ଉଦୟ ହୋଇଲେ
ସାୟଂକୃତ୍ୟ ନରପତି ସମାପନ କଲେ ।
ମନ୍ତ୍ରୀମାନଙ୍କୁ ରାଜନ ସଙ୍ଗତରେ ନେଇ
ଉପବେଶନ କରିଲେ ସଭାମଧ୍ୟେ ଯାଇ ।
ରାଜଲକ୍ଷଣରେ ଯୁକ୍ତ ସେହି ନରପତି
ଶରତ୍କାଳ ଚନ୍ଦ୍ରପରି ଶୋଭା ପାଉଛନ୍ତି ।
କବିଗଣ ସୁଧାସମ ନିର୍ମଳ କୀରତି
ବର୍ଣ୍ଣନା କରିଲେ ସଭା ମଧ୍ୟରେ ଝଟତି ।
ତହିଁ ଗାୟକ ସକଳ ଉପସ୍ଥିତ ହେଲେ
କଳସ୍ୱରେ କୀର୍ତ୍ତି ଗାଥା ଗାୟନ କରିଲେ ।
ରୂପ ଯୌବନ ଗର୍ବିତା ସୁନ୍ଦରୀ ଗଣିକା
ତାଳ ଲୟ ସ୍ୱରେ ଗୀତ ଗାୟନରେ ଦକ୍ଷା ।
ମହାରାଜାଙ୍କ ସମ୍ମୁଖେ ବିବିଧ ପ୍ରକାରେ
ଅଙ୍ଗଭଙ୍ଗୀ କରି ନୃତ୍ୟ ଆରମ୍ଭ କରିଲେ ।
ସ୍ତୁତି ପାଠକେ ରାଜାଙ୍କ ସ୍ତୁତି ଆରମ୍ଭିଲେ
ଗଦ୍ୟ ପଦ୍ୟ ମୟବାକ୍ୟ ରଚନା କରିଲେ ।
ପ୍ରଧାନ ବୈଷ୍ଣବଗଣ ସଭାକୁ ଆସିଲେ
ରାଜା ତାହାଙ୍କୁ ଆଦର ଅଭ୍ୟର୍ଥନା କଲେ ।
ମାଳ ଚନ୍ଦନ ତାମ୍ବୁଳ କରିଲେ ପ୍ରଦାନ
ଆସନରେ ଉପବିଷ୍ଟ ହେଲେ ସର୍ବଜନ ।
ସର୍ବ ପାପ ବିନାଶକ ଶ୍ରୀବିଷ୍ଣୁ ଚରିତ
ଶୁଣିବାକୁ ରାଜାଙ୍କର ହେଲା ଇଚ୍ଛା ଜାତ ।
ନାରଦଙ୍କୁ ଶ୍ରେଷ୍ଠ ଆସନରେ ବସାଇଲେ
ବହୁ ସମ୍ମାନନା କରି ଜିଜ୍ଞାସା କରିଲେ ।
ଇନ୍ଦ୍ରଦ୍ୟୁମ୍ନ କହୁଛନ୍ତି ହେ ମହର୍ଷି ଶୁଣ
ବେଦ ବେଦାଙ୍ଗ ସକଳ ଜାଣନ୍ତି ଆପଣ ।
ଭଗବାନଙ୍କର ପ୍ରିୟପାତ୍ର ତ ଅଟନ୍ତି
ଜ୍ଞାନ ଚକ୍ଷୁଦ୍ୱାରା ବିଷ୍ଣୁ ଦର୍ଶନ କରନ୍ତି ।
ଏଣୁ ତୁମ୍ଭେ ଭଗବାନ ହୋଇଲେ ସଦୟ
ବର୍ଣ୍ଣନା କରନ୍ତୁହରି କଥା ସୁଧାମୟ ।
ପାପପଙ୍କେ କଳୁଷିତ ମୋ ଅନ୍ତକରଣ
ନିର୍ମଳ କରି ଦିଅନ୍ତୁ ବ୍ରହ୍ମାଙ୍କ ନନ୍ଦନ ।
ରାଜା ନାରଦଙ୍କ କଥା ନ ହୁଅନ୍ତେ ଶେଷ
ଏ ସମୟେ ଦ୍ୱାରପାଳ ହୋଇଲା ପ୍ରବେଶ ।
ହେ ଦେବ ବୃଦ୍ଧ ଅମାତ୍ୟଗଣ ସଙ୍ଗେ ଘେନି
ଦ୍ୱାରେ ଉପସ୍ଥିତ ଉତ୍କଳର ନୃପମଣି ।
ଆପଣଙ୍କ ପାଦ ପଦ୍ମ କରିବେ ଦର୍ଶନ
ନାନା ଉପହାର ଦ୍ରବ୍ୟ କରିବେ ଅର୍ପଣ ।
ଆହେ ଦ୍ୱିଜଗଣ ଇନ୍ଦ୍ରଦ୍ୟୁମ୍ନ ମହୀପାଳ
ଦ୍ୱାରପାଳ ମୁଖରୁ ଯେ ଶୁଣିଲେ ସକଳ ।
ଉତ୍କଳ ଦେଶ ଏ ଶବ୍ଦ ଶୁଣିଲା ମାତ୍ରରେ
ଦ୍ୱାରପାଳକୁ କହିଲେ ବଚନ ମଧୁରେ ।
ଏ ପୁରୁଷୋତ୍ତମ କ୍ଷେତ୍ର ସେ ତ ନରବର
କ୍ଷେତ୍ର ବାର୍ତ୍ତା ଜାଣିବାକୁ ଇଚ୍ଛେ ମୋ ଅନ୍ତର ।
ଉଡ୍ରଦେଶ ନାଥଙ୍କୁ ହେ ବିଳମ୍ବ ନ କରି
ଆସିବାକୁ କହ ଯାଇ ସମାଦର କରି ।
ନୀଳ ଶିଖରରେ ପୂଜା କରି ବିଷ୍ଣୁଙ୍କର
ଦେହ ନିଷ୍ପାପ ହୋଇଛି ଉଡ୍ର ରାଜାଙ୍କର ।
ତାହାଙ୍କୁ ଦର୍ଶନ କଲେ ହେବା ପାପ ଶୂନ୍ୟ
ରାଜାଙ୍କ ବଚନ ଦ୍ୱାରୀ କରିଣ ଶ୍ରବଣ ।
ଉଡ୍ର ପତିଙ୍କୁ ସଭାକୁ କଲା ଆନୟନ
ମନ୍ତ୍ରୀ ବୈଷ୍ଣବଙ୍କ ସହ ଉତ୍କଳ ରାଜନ ।
ଇନ୍ଦ୍ରଦ୍ୟୁମ୍ନଙ୍କ ଚରଣେ କଲେକ ପ୍ରଣାମ
ଭୂମିରୁ ଟେକି ଘେନିଲେ ଅବନ୍ତୀ ରାଜନ ।
ଯଥାଯୋଗ୍ୟ ଆସନ ଯେ ପ୍ରଦାନ କରିଲେ
ନିଜ ଆସନ ସମୀପେ ବସାଇ କହିଲେ ।
ନୀଳାଚଳ ଶିଖର ନିବାସୀ ଜଗନ୍ନାଥ
ପ୍ରସାଦରୁ ହେ ରାଜନ କୁଶଳେ ଅଛ ତ ।
ଜୟଯୁକ୍ତ ହୋଇ ମିତ୍ର ଅମାତ୍ୟ ସହିତେ
ପ୍ରାଣୀକୁ ଯେ ବିଷ୍ଣୁତୁଲ୍ୟ ଜ୍ଞାନ କର ଚିତ୍ତେ ।
ସଦା ଆପଣଙ୍କ ଚିତ୍ତ ହୋଇ ନିରିମଳ
ମାଧବଙ୍କ ପାଦ ପଦ୍ମ ରହିଛି ନିଶ୍ଚଳ ।
ଇନ୍ଦ୍ରଦ୍ୟୁମ୍ନଙ୍କର ବାକ୍ୟ ଶୁଣି ଉଡ୍ରପତି
ଶିରେ କୃତାଞ୍ଜଳି ହୋଇ ବଚନ କହନ୍ତି ।
ହେ ସ୍ୱାମୀ ଆପଣଙ୍କର ଅନୁଗ୍ରହେ ମୋର
ପୁର ରାଷ୍ଟ୍ର ଜନପଦେ ସର୍ବତ୍ର କୁଶଳ ।
ସୂର୍ଯ୍ୟଦେବ ନିଜରଶ୍ମୀ କରନ୍ତେ ବିକୀର୍ଣ୍ଣ
ଅନ୍ଧାର ଯେସନେ କରେ ଦୂରେ ପଳାୟନ ।
ଆପଣଙ୍କ ରାଜନୀତି ଗୁଣେ ରାଜାଗଣ
ଆପଣଙ୍କ ପରି ରାଜ୍ୟ କରନ୍ତି ପାଳନ ।
ମହାରାଜା ଏ ସାମ୍ରାଜ୍ୟ ତୁଚ୍ଛ କଥା ଅତି
ବ୍ରହ୍ମାଣ୍ଡ ପାଳନେ ଯୋଗ୍ୟ ଆପଣ ଅଟନ୍ତି ।
ବ୍ରହ୍ମା ଯଦି ଭବାଦୃଶ ବ୍ୟକ୍ତିଙ୍କୁ ସୃଜନ
ନ କରନ୍ତେ ଶୋକାକୁଳେ ଥାନ୍ତେ ଜନଗଣ ।
ସାଧାରଣ ରାଜା ବିଷ୍ଣୁ ଅଂଶ ଯେ ଅଟନ୍ତି
ନିଃସଂଶୟ ଭଗବାନ ଆପଣ ଅଟନ୍ତି ।
ହେ ରାଜନ ଭବାଦୃଶ ସର୍ବ ଗୁଣାକାର
ଏ କ୍ଷିତିରେ ତ ନାହାନ୍ତି ଅନ୍ୟ ନୃପବର ।
ନୃପ ଶିରୋମଣି ନୀଳସୁନ୍ଦର ପର୍ବତ
ସମୁଦ୍ର ଦକ୍ଷିଣତୀର ଦେଶ ଅବସ୍ଥିତ ।

Digitized by srujanika@gmail.com

କାନନରେ ପରିପୂର୍ଣ୍ଣ ଆଉ ଜନଶୂନ୍ୟ
ଦେବତାଙ୍କର ଅଗମ୍ୟ ଅଟେ ସେହି ସ୍ଥାନ ।
ଶୁଣିଛି ପ୍ରଚଣ୍ଡ ବେଗେ ପବନ ବହିଲା
ବାଲି ଉଡ଼ି ପର୍ବତକୁ ଘୋଡ଼ାଇଣ ଦେଲା ।
ସେ ହେତୁ ଆମ୍ଭ ଏ ରାଜ୍ୟେ ଦୁର୍ଭିକ୍ଷ ମଡ଼କ
ପୀଡ଼ାରେ ଦୁଃଖ ଭୋଗନ୍ତି ରାଜ୍ୟବାସୀ ଲୋକେ ।
ଆପଣ ତ ଏ ସ୍ଥାନରେ କଲେ ଆଗମନ
ଏହି ରାଜ୍ୟରେ କୁଶଳ ହେବ ବିଦ୍ୟମାନ ।
ଉତ୍କଳାଧିପତି ଏହି ବୃତ୍ତାନ୍ତ ବର୍ଣ୍ଣନ
କରିଲେ ଉପବେଶନ ରାଜ ସନ୍ନିଧାନ ।
ଅନନ୍ତର ନାରଦଙ୍କୁ ଚାହିଁ ନରପତି
ମନରେ ବ୍ୟାକୁଳ ହୋଇ ବଚନ କହନ୍ତି ।
ହେ ମୁନି ଶୁଣିଲ ଏହି ଘଟନା ସକଳ
ଯେ ନିମନ୍ତେ ଆସିଅଛି ହେବ କି ବିଫଳ ।
ଏ ରୂପେ ଆଶାଙ୍କା ଚିତ୍ତ ହୁଅନ୍ତେ ରାଜନ
ହସି କହନ୍ତି ବଚନ ବ୍ରହ୍ମାଙ୍କ ନନ୍ଦନ ।
ହେ ରାଜା ମନେ ବିସ୍ମୟ ହୁଅ କି କାରଣ
ତୁମ୍ଭେ ଭାଗ୍ୟବାନ ବିଷ୍ଣୁଭକ୍ତି ପରାୟଣ ।
ବୈଷ୍ଣବମାନଙ୍କ ବାଞ୍ଛା ନୁହଇ ବିଫଳ
ଯେଉଁ ପ୍ରଭୁ ଧରିଥିଲେ ପାର୍ଥିବ ଶରୀର ।
ସେ ପ୍ରଭୁ ଆଦି କାରଣ ଏଥି ଜଗତର
ଅବଶ୍ୟ ଦର୍ଶନ ପାଇବ ତ ତାହାଙ୍କର ।
ସେହି ପ୍ରଭୁ ଅନୁଗ୍ରହ ନିଶ୍ଚୟ କରିବେ
ପୁନରାୟ ଏହି ସ୍ଥାନେ ଅବତୀର୍ଣ୍ଣ ହେବେ ।
ଚରାଚର ଏ ଜଗତ ବିଷ୍ଣୁଙ୍କ ଅଧୀନ
ବିଷ୍ଣୁ ନୁହନ୍ତି ଜଗତେ କାହାରି ଅଧୀନ ।
କିନ୍ତୁ ଭଗବାନ ଭକ୍ତ ବତ୍ସଳ ଅଟନ୍ତି
ଭକ୍ତମାନଙ୍କର ବଶୀଭୂତ ସେ ହୁଅନ୍ତି ।
ବ୍ରହ୍ମାଦି କୀଟ ପର୍ଯ୍ୟନ୍ତ ଯାହାର ମାୟାରେ
ଉତପନ୍ନ ହୋଇଛନ୍ତି ଏହି ସଂସାରରେ ।
ଭକ୍ତି ନ କରିଲେ ତାକୁ ପରମ ପୁରୁଷ
କେଉଁ ନିମନ୍ତେ ହୋଇବେ ସେ କାହାର ବଶ୍ୟ ।
ନାରାୟଣଙ୍କର ପ୍ରତି କରିଲେ ଭକତି
ଧର୍ମ ଅର୍ଥ କାମ ମୋକ୍ଷ ଫଳ ହୁଏ ପ୍ରାପ୍ତି ।
ସେ ପ୍ରଭୁଙ୍କୁ ବଶୀଭୂତ କରିବା ଉପାୟ
ଏକମାତ୍ର ଭକ୍ତି ଅଟେ ଏକଥା ନିଶ୍ଚୟ ।
ଭକ୍ତି ହୀନ ଜନକୁ ସେ ନ ଦେବେ ଦର୍ଶନ
ଏହି କଥା ସଦା ମନେ ରଖନ୍ତୁ ରାଜନ ।
ନିଜର ମାୟା ବଳରେ ବହୁରୂପ ଧରି
ଏ ଜଗତେ ଲୀଳା କରୁଅଛନ୍ତି ଶ୍ରୀହରି ।।

ପରମାତ୍ମା ସୁଖ ବିନା ଅନ୍ୟେ ନାହିଁ ସୁଖ
ଆହେ ନରନାଥ ଏହି କଥା ମନେ ରଖ ।
ଶିବ ସୂର୍ଯ୍ୟ ଗଣେଶାଦି ସର୍ବଦେବଗଣ
ପୂଜନୀୟ ହୋଇଛନ୍ତି କରି ନିଜ କର୍ମ ।
ଅର୍ଚ୍ଚନାରେ ତୋଷ ହେଲେ ଅଭିଳାଷ ଦାନ
କରନ୍ତି ସେମାନେ ବିଷ୍ଣୁଭକ୍ତି ପରାୟଣ ।
ଭଗବାନ ଅନ୍ତର୍ଯ୍ୟାମୀ ଦେବଗଣଙ୍କର
ହୃଦପଦ୍ମେ ରହି ପୂଜା କର ପୂଜାଫଳ ।
ଦେବାପାଇଁ ଅନୁମତି ଦିଅନ୍ତି ଯେ କ୍ଷଣ
ସେହି ଫଳ ଦାନ କରିଥାନ୍ତି ଦେବଗଣ ।
ହେ ବୈଷ୍ଣବ ଚୂଡ଼ାମଣି ରାଜା ଇନ୍ଦ୍ରଦ୍ୟୁମ୍ନ
ବ୍ରହ୍ମାଙ୍କ ପାଞ୍ଚ ପୁରୁଷ ପରେ ତୁମ୍ଭେ ଜନ୍ମ ।
ଅଷ୍ଟାଦଶ ବିଦ୍ୟାରେ ଯେ ହୋଇଛ ପଣ୍ଡିତ
ଅତି ବିଶୁଦ୍ଧ ଚରିତ୍ର ଆଉ ଭାଗ୍ୟବନ୍ତ ।
ରାଜନୀତି ଶାସ୍ତ୍ର ଜାଣି ପୃଥିବୀ ପାଳନ
ସର୍ବଦା କରୁଛ ଦେବ ବ୍ରାହ୍ମଣ ପୂଜନ ।
ତୁମ୍ଭେ ଏହି ଚର୍ମ୍ମ ଚକ୍ଷୁ କରିଣ ଧାରଣ
ଶ୍ରୀକ୍ଷେତ୍ରେ ବୈକୁଣ୍ଠନାଥ କରିବ ଦର୍ଶନ ।
ତବ ପିତାମହ ବ୍ରହ୍ମା ତୁମ୍ଭର ଏ କାର୍ଯ୍ୟ
ସାଧନରେ କରିବାକୁ ତୁମ୍ଭଙ୍କୁ ସାହାଯ୍ୟ ।
ନିଯୁକ୍ତି ଯେ କରିଛନ୍ତି ମୋତେ ନୃପରାଣ
କ୍ଷେତ୍ର ମଧ୍ୟରେ କହିବି କରିବ ଶ୍ରବଣ ।
ରାତ୍ରି ହୋଇଲାଣି ଆସି ତୃତୀୟ ପ୍ରହର
ସଭା ଶେଷ କରି ଯାନ୍ତୁ ଯେ ଯାହାର ଘର ।
ଅନ୍ତପୁରେ ଯାଇଁ ରାଜା କରନ୍ତୁ ଶୟନ
ଏକାଦଶ ଅଧ୍ୟାୟ ଯେ ହୋଇଲା ସମ୍ପୂର୍ଣ୍ଣ ।
ମୋ ନାଥ ଅଟନ୍ତି ଏହି ଜଗତର ନାଥ
ମୋ ଗୁରୁ ଜଗତଗୁରୁ ରୂପରେ ବିଖ୍ୟାତ ।
ମୋ ଆତ୍ମା ସକଳ ଭୂତ ମଧ୍ୟରେ ବିରାଜେ
ସର୍ବଭୂତ ଆତ୍ମା ଜଗନ୍ନାଥ ରୂପେ ବିଜେ ।
ମୂର୍ତ୍ତିମନ୍ତ ହୋଇ ନୀଳ ପର୍ବତ ଶିଖରେ
ସ୍ୱର୍ଗୁ ଆସି ଦେବଗଣ ପୂଜନ୍ତି ବିଧିରେ ।
ପତିତଜନ ଉଦ୍ଧାର କରିବା ନିମିତ୍ତ
ଅନ୍ତର୍ଦ୍ଧାନ ହେଲେ ତହିଁ ପୂର୍ଣ୍ଣ ବାଲିବନ୍ତ ।
ଦାରୁମୟ ଦେହେ ପ୍ରଭୁ ହେବେ ଅବତୀର୍ଣ୍ଣ
ପାପୀ ତାପୀ ଜନଙ୍କର ହେବ ବାଞ୍ଛା ପୂର୍ଣ୍ଣ ।
ଦୁର୍ଭିକ୍ଷ ମଡ଼କ ପୀଡ଼ା ଦେଶୁଁ ହେବ ଦୂର
କୃତାଞ୍ଜଳି ପୁଟେ ମାଗେ ଦୀନ ହରିହର ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳ ଖଣ୍ଡେ ଇନ୍ଦ୍ରଦ୍ୟୁମ୍ନ ରାଜା ଉତ୍କଳ ଦେଶ ପ୍ରବେଶେ ନାମ ଏକାଦଶୋଽଧ୍ୟାୟଃ ।



Digitized by srujanika@gmail.com

## ଦ୍ୱାଦଶ ଅଧ୍ୟାୟ

ଜୈମିନି ମୁନି କହନ୍ତି ଶୁଣ ଦ୍ୱିଜଗଣ
ବ୍ରହ୍ମାନନ୍ଦନଙ୍କ ବାକ୍ୟ ଶୁଣି ଇନ୍ଦ୍ରଦ୍ୟୁମ୍ନ ।
ଅତି ଆନନ୍ଦରେ ମନେ ବିଚାର କରିଲେ
ଏ ପରିଶ୍ରମ ସଫଳ ହେବ ସ୍ଥିର କଲେ ।
ମୋର ତ ସୌଭାଗ୍ୟ ପୂର୍ବ ଜନ୍ମ ମାନଙ୍କରେ
କରିଅଛି କେତେ ପୁଣ୍ୟ ମିଳେ ନ ସୁମରେ ।
ସର୍ବଲୋକ ପିତାମହ ବ୍ରହ୍ମାଙ୍କର ସୁତ
ମୋ କାର୍ଯ୍ୟେ ସାହାଯ୍ୟ ହେବାପାଇଁ ଉପସ୍ଥିତ ।
ବ୍ରହ୍ମାଙ୍କ ନନ୍ଦନ ଅଟନ୍ତି ତ ଜୀବନ୍ମୁକ୍ତ
ସେ ମୋର ସହାୟ ହେବେ ହେବି ମୁଁ କୃତାର୍ଥ ।
ବୃଦ୍ଧ ବ୍ୟକ୍ତିଙ୍କ ମୁଖରୁ ଶିଣିଛି ସଭାରେ
ସାହାଯ୍ୟ ବଳରେ କାର୍ଯ୍ୟ ସିଦ୍ଧି ହୁଏ ଲଭେ ।
ଏହିରୂପ ଚିନ୍ତାକରି ରାଜା ଇନ୍ଦ୍ରଦ୍ୟୁମ୍ନ
ସଭାସଦଗଣ ଗଲେ ଯେ ଯାହାର ସ୍ଥାନ ।
ରାଜା ମୁନିଙ୍କର ହସ୍ତ କରିଲେ ଧାରଣ
ଅନ୍ତଃପୁରେ ପ୍ରବେଶିଲେ ଯାଇଁ ତତକ୍ଷଣ ।
ମୁନିଙ୍କୁ ଯେ ଯାଥାବିଧି କଲେ ସନମାନ
ଏକ ପଲଙ୍କରେ ଦୁହେଁ କରିଲେ ଶୟନ ।
ରାତ୍ରି ପ୍ରଭାତେ ସାରିଲେ ନିଜ ନିତ୍ୟକର୍ମ
ମାଧବଙ୍କୁ ପୂଜା ସାରି କରିଲେ ଗମନ ।
ମହାନଦୀ ପାର ହେଲେ ଉତ୍କଳର ପତି
ପଥ ଦେଖାଇବା ଅର୍ଥେ ଆଗରେ ଚଳନ୍ତି ।
ସୈନ୍ୟସହ ଏକାମ୍ର କାନନେ ଉପସ୍ଥିତ
ଗନ୍ଧବହା ନଦୀ ପାର ହେଲେ ନରନାଥ ।
ଶୀତତୋୟା ନଦୀ ଆଉ ନଦୀ ବେଗବତୀ
ସୈନ୍ୟସହ ପାରିହୋଇ ଗମନ କରନ୍ତି ।
ଦୂରରୁ ଶୁଣିଲେ ଶଙ୍ଖ ଚର୍ଚ୍ଚରୀ କାହାଳୀ
ମୃଦଙ୍ଗ ମୁରଜ ବାଦ୍ୟ ପଡ଼ୁଛି ଉଚ୍ଛୁଳି ।
କୋଟି ଲିଙ୍ଗେଶ୍ୱରଙ୍କର ପୂର୍ବାହ୍ନିକ ପୂଜା
ହେଉଥିବାର ଜାଣିଲେ ତହିଁ ମହାରାଜା ।
ସେ ଧ୍ୱନି ଶ୍ରବଣେ ପ୍ରୀତ ହୋଇଲେ ରାଜନ
ନାରଦଙ୍କୁ କହିଲେ ସେ ମଧୁର ବଚନ ।
ଏ ଧ୍ୱନି ଶ୍ରବଣେ ମନେ ଜାତ ହୁଏ ପ୍ରୀତି
ନୀଳାଦ୍ରିଶଙ୍କ ସମୀପ ହେଲୁ ଉପସ୍ଥିତି ।
ଯେ ହେତୁ ପୂଜା ସମୟେ ଏ ବାଦ୍ୟ ସକଳ
ଶ୍ରୁତି ଗୋଚର ହେଉଛି ଅତି ସୁମଧୁର ।
ନିକଟରେ ଅବା ଅନ୍ୟ ଦେବ ବିଦ୍ୟମାନ
ଏହା ଶୁଣି କହନ୍ତି ଯେ ବ୍ରହ୍ମାଙ୍କ ନନ୍ଦନ ।
ସେ କ୍ଷେତ୍ରେ ଅତି ଦୁର୍ଲ୍ଲଭ ଶୁଣ ହେ ରାଜନ
ଗୁପ୍ତକରି ରଖିଅଛନ୍ତି ଯେ ଭଗବାନ ।
ସେ ସ୍ଥାନେ ନୀଳମାଧବ ବିଜେ କରିଛନ୍ତି
ଏକଥା ଯେ ଅନ୍ୟଜନ କେହି ନ ଜାଣନ୍ତି ।
ତୁମ୍ଭେ ଭାଗ୍ୟବାନ ଜନ ମଧ୍ୟରେ ଗଣନ
ତେଣୁ ତୁମ୍ଭ ପୁରୋହିତ କରିଲେ ଦର୍ଶନ ।
ହେ ନୃପତି ତୁମ୍ଭେ ସଙ୍ଗେ ଘେନି ସୈନ୍ୟଗଣ
ସାହସପଣେ ଅରଣ୍ୟେ କରୁଛ ଭ୍ରମଣ ।
ଏଣୁ ଆମ୍ଭମନେ ଜାତ ହେଉଛି ସଂଶୟ
କହୁଅଛି ସ୍ଥିରମନେ ଜାତ ମହାଶୟ ।
ତିନି ଯୋଜନ ଯେ ବାଟ ନୀଳଗିରି ଅଛି
ଏ ଯେଉଁ ବାଦ୍ୟ ବାଜଣା ମାନ ଶୁଭୁଅଛି ।
ଅନତିଦୂରେ ଭାବନୀ ପତି ଅବସ୍ଥିତ
ଶରଣ ଇଚ୍ଛା କରନ୍ତି ହୋଇ ଅତିଭୀତ ।
ଏହି କ୍ଷେତ୍ର ଯେ ଏକାମ୍ର କାନନ ନାମକ
ଏହା ଶୁଣି କହନ୍ତି ଯେ ଅବନ୍ତୀ ନାୟକ ।
ଦୁର୍ଦ୍ଦାନ୍ତ ତ୍ରିପୁରାସୁର ଥିଲା ପୂର୍ବକାଳେ
ଶରଦ୍ୱାରା ହର ତାକୁ ଦହନ କରିଲେ ।
କି ନିମନ୍ତେ ଭୀତ ସେହି କାହାର ଶରଣ
ନେଇଛନ୍ତି ସନ୍ଦେହ ତ ହୁଏ ମୋର ମନ ।
ଭୀତ ବ୍ୟକ୍ତିକୁ ଯେ ରକ୍ଷା କରୁଛନ୍ତି ନିତି
ପରମ ପବିତ୍ର ଯତି ପାର୍ବତୀର ପତି ।
ଭୂତପତିଙ୍କର ଭୟ ସଂସାରେ ହେଉଛି
ତାଙ୍କୁ ପରାଜିତ କରିବାକୁ କିଏ ଅଛି ।
ଏ କଥାକୁ ମହାମୁନି କରନ୍ତୁ ବ୍ୟକତ
ଯଥାର୍ଥରେ ଶୁଣିବାକୁ ବଳେ ମୋର ଚିତ୍ତ ।
ନାରଦ କହନ୍ତି ମହୀପାଳ ଏ ସ୍ଥାନରେ
ପୂର୍ବକାଳ କଥା କହୁଅଛି ଶୁଣ ଧୀରେ ।
ପୂର୍ବକାଳେ ନୀଳକଣ୍ଠ ତପସ୍ୟା କରିଲେ
ବ୍ରହ୍ମଚାରୀ ବେଶେ ହିମଗିରି ଶିଖରରେ ।
ସେ ସମୟେ କାମ ବାଣେ ପ୍ରପୀଡ଼ିତ ହେଲେ
ବ୍ରହ୍ମଚର୍ଯ୍ୟ ବ୍ରତକୁ ସେ ପରିତ୍ୟାଗ କଲେ ।
ଯୌବନ ମଦ ଗର୍ବିତା ପରମା ସୁନ୍ଦରୀ
ଗୌରୀଙ୍କର ବିବାହ କରିଲେ କର ଧରି ।
ଗୌରୀଙ୍କର ପିତୃଦତ୍ତ ବିଷୟ ଭୋଗିଲେ
ଯେ ଭାଗ ଇଚ୍ଛନ୍ତି ସଦା ଦେବତା ସକଳେ ।
ଗୌରୀ ଏକଦିନେ ସ୍ୱଗୃହକୁ ଯାଇଥିଲେ
ନାରୀଗଣ ସହ ମାତା ପଥରେ ଭେଟିଲେ ।
ବାତ୍ସଲ୍ୟ ସ୍ନେହେ କହିଲେ ସ୍ମିତହାସ୍ୟ କରି
ଉତ୍ତମ ପତି ଲଭିଛ ତୁମ୍ଭେ ତପ କରି ।

Digitized by srujanika@gmail.com

ଗହନ ବନେ ତପସ୍ୟା କରିବାକୁ ଗଲ
ବରାନନେ କେଉଁ ବର ତୁମ୍ଭେ ଲାଭ କଲ ।
ଧନହୀନ କୁଳହୀନ ଏକ ବୃଦ୍ଧ ବର
ତାର ସଙ୍ଗ ପରିତ୍ୟାଗ ତୁମ୍ଭେ ତ ନ କର ।
ବତ୍ସେ ତୁମ୍ଭ ପତିଙ୍କର ଅଛି କେଉଁ ଗୁଣ
ତୁମ୍ଭଙ୍କୁ ସେ କେତେ ଦେଲେ ବସ୍ତ୍ରାଦି ଭୂଷଣ ।
ଦେଖୁଛି ଆମ୍ଭରି ଗୃହେ ଅଛି ଚିରକାଳ
ପିତୃଦତ୍ତେ ବିଷୟାଦି ଭୋଗୁଛ କେବଳ ।
ତ୍ରିଲୋକେ ଅଛନ୍ତି ବିବାହିତା କନ୍ୟାଯେତେ
ପତିଦତ୍ତ ଅଳଙ୍କାର ଭୂଷିତା ସମସ୍ତେ ।
ପିତୃ ଭବନରୁ ସ୍ୱାମୀ ଭବନକୁ ଯାନ୍ତି
ପିତୃଗଣଙ୍କ ମନରୁ ହେଲି ଉତପତି ।
ଗିରିରାଜ ହିମାଳୟ ମୋତେ ବିଭା ହେଲେ
ପିତୃଲୋକରୁ ସେ ମୋତେ ଗୃହକୁ ଆଣିଲେ ।
ହେ ବତ୍ସେ ଏକଥା ପରିହାସେ କହୁଅଛି
କ୍ରୋଧ ଅବା ଲୋଭ ମୋର ମନେ ନାହିଁ କିଛି ।
ବିଷ୍ଣୁଙ୍କ ସମାନ ମୋର ଜାମାତାଙ୍କୁ ତୁମ୍ଭେ
ନ କହିବ ଏହି କଥା ମନେ ରଖ ଏବେ ।
ନାରଦ କହନ୍ତି ଗୌରୀ ମାତାଙ୍କର ଉକ୍ତି
ସ୍ୱାମୀଙ୍କର ନିନ୍ଦା ଶୁଣି ହୋଇଲେ ବିରକ୍ତି ।
କ୍ରୋଧରେ କମ୍ପିଲା ଓଷ୍ଠ କିଛି ନ କହିଲେ
ସ୍ୱାମୀଙ୍କର ନିକଟକୁ ବେଗେ ଚଳିଗଲେ ।
ମାତାଙ୍କର ନିନ୍ଦାକଥା ଗୋପନ କରିଲେ
ସ୍ନେହ ପୂର୍ଣ୍ଣ କିଛି କଟୁକଥା ସେ କହିଲେ ।
ହେ ସ୍ୱାମୀ ମୁଁ କହୁଅଛି କରନ୍ତୁ ଶ୍ରବଣ
ଶ୍ୱଶୁରାଳୟକୁ ଶୀଘ୍ର କରନ୍ତୁ ବର୍ଜନ ।
ଆପଣ ତ୍ରୈଲୋକ୍ୟ ବାସୀ ନୀଚ ବ୍ୟକ୍ତିଙ୍କର
ପୂଜନୀୟ ଏହି ନିନ୍ଦା ଅଛି ତ ତୁମ୍ଭର ।
ତେଣୁ ଆମ୍ଭେ ଦୁହେଁ ଏହି ସ୍ଥାନକୁ ବର୍ଜିଣ
ଚଳିବା ଭୂମଣ୍ଡଳେ କି ନାହିଁ ଅନ୍ୟ ସ୍ଥାନ ।
ବୃଷଭଧ୍ୱଜ ଶୁଣିଣ ଉମାଙ୍କ ବଚନ
ବୃଷ ଚଢ଼ି ମଧ୍ୟଦେଶେ କଲେ ଆଗମନ ।
ସର୍ବ ତୀର୍ଥମୟ ଶ୍ରେଷ୍ଠ ପ୍ରୟାଗ ତୀର୍ଥକୁ
ତ୍ୟାଗ କରି ଗଲେ ଗଙ୍ଗା ଉତ୍ତର ତଟକୁ ।
ବାରାଣସୀ ନାମେ ପୁରୀ ନିର୍ମାଣ କରିଲେ
ପଞ୍ଚକ୍ରୋଶ ପରିମିତ ସୁନ୍ଦର ସ୍ଥାନରେ ।
ଶତ ଶତ ଅଟ୍ଟାଳିକା ଉତ୍ତମ ମନ୍ଦିର
ଅସଂଖ୍ୟ ଉପବନରେ ରରମଣୀୟ ପୁର ।
ବହୁବିଧ ତୀର୍ଥ ବହୁ ମାନବରେ ପୂର୍ଣ୍ଣ
ବିଶ୍ୱକର୍ମା ଅତି ବେଗେ କରିଲେ ନିର୍ମାଣ ।

ସୁଶୀତଳ ଗଙ୍ଗାଜଳେ କରିଲେ ଧଉତ
ପଶୁପତି ଗିରିରାଜ ତନୟ ସହିତ ।
ବାରାଣସୀ ଧାମେ ସ୍ୱର୍ଣ୍ଣ ନିର୍ମିତ ପ୍ରାଚୀର
ଅଟ୍ଟାଳିକା ସୁଶୋଭିତ ରତ୍ନମୟ ପୁର ।
ରତ୍ନସ୍ତମ୍ଭେ ଚାରିଦିଗ ହୋଇଅଛି ପୂର୍ଣ୍ଣ
ପୁର ମଧ୍ୟେ ହର ଉମା କରିଲେ ରମଣ ।
ହର ବାରାଣସୀ ପୁରୀ ତ୍ୟାଗ ନ କରନ୍ତି
ସେ ପୁର ମୋକ୍ଷଦାୟିନୀ ବୋଲି ଅଛି ଖ୍ୟାତି ।
ହେ ରାଜନ ପୂର୍ବକାଳୁଁ ଭବଭୀତ ଜନ
ବାରାଣସୀ ପୁରେ କରିଛନ୍ତି ଅବସ୍ଥାନ ।
ସେହିକାଳୁଁ ଉମା ଦେବୀପତି ସଙ୍ଗତରେ
ଅଳଂକୃତା ହୋଇ ବାସ କରିଲେ ସେଠାରେ
ମାତା ପିତାଙ୍କୁ ସେ ଆଉ ନ କଲେ ସ୍ମରଣ
ଅତୀତ ହୋଇଲା ସେ ସ୍ଥାନରେ କେତେଦିନ ।
ବହୁଦିନ ପରେ ଶିବ ବାରାଣସୀ ପୁରେ
କୋଟିଲିଙ୍ଗ ସ୍ଥାପି ଶିବ କୈଳାସକୁ ଗଲେ ।
ସେ ପୁର ବହୁ ନୃପତି ପାଳନ କରିଲେ
କାଶୀରାଜ ତହିଁ ରାଜା ଦ୍ୱାପର ଯୁଗରେ ।
ଅତି ଉଗ୍ର ତପସ୍ୟା କଲେ ସେ ଧାତିକାରେ
ମହାଦେବଙ୍କୁ ସନ୍ତୋଷ କଲେ ସେ ସ୍ଥାନରେ ।
ତହିଁ କାଶୀରାଜାଙ୍କୁ ଯେ ବର ଦେଲେ ଶିବ
ଯୁଦ୍ଧେ କୃଷ୍ଣ ବଳରାମ ନିଶ୍ଚୟ ଜିଣିବ ।
ହସ୍ତରେ ପିନାକ ଧନୁ କରିଣ ଧାରଣ
ବୃଷଭ ବାହନେ ଯିବ କରିବାକୁ ରଣ ।
ମୋ ସୈନ୍ୟ ପ୍ରମଥ ଗଣ ସଙ୍ଗରେ ଘେନିଣ
ବତ୍ସ ତାର ସଙ୍ଗେ ଯୁଦ୍ଧେ କରିବ ଗମନ ।
ଏହି ରୂପେ ବର ପାଇ ସେହି କାଶୀରାଜ
ଅଧିକ ହୋଇଲା ତାର ବଳ ବୀର୍ଯ୍ୟ ତେଜ ।
ଶ୍ରୀକୃଷ୍ଣଙ୍କୁ ଯୁଦ୍ଧଅର୍ଥେ କରିଲା ଆହ୍ୱାନ
ଏ କଥା ଜାଣିଲେ ଅନ୍ତର୍ଯ୍ୟାମୀ ନାରାୟଣ ।
କାଶୀ ରାଜାକୁ ବିନାଶ କରିବା ନିମିତ୍ତ
ସୁଦର୍ଶନ ଚକ୍ରକୁ ଯେ ପେଶିଲେ ତୁରିତ ।
ସହସ୍ର ସୂର୍ଯ୍ୟର ତେଜପରି ତେଜୀୟାନ
ଅତି ଉଗ୍ର ତାହିଁ ନୁହେଁ ସେ ତେଜର ବର୍ଣ୍ଣ ।
କୃଷ୍ଣଙ୍କ ଇଚ୍ଛାରେ ଚକ୍ର ହୋଇଲା କୁପତି
କାଶୀରାଜର ମସ୍ତକ ଛେଦିଲା ତୁରିତ ।
ସୈନ୍ୟସହ ସେ ରାଜାର ସୁନ୍ଦର ଭବନ
କ୍ଷଣକାଳ ମଧ୍ୟେ ସର୍ବ ହୋଇଲା ଦହନ ।
ଏହା ଦେଖି ପଶୁପତି ହେଲେ କ୍ରୋଧ ଅତି
ପ୍ରଥମ ଗଣଙ୍କ ସହ ଚଳିଲେ ଝଟତି ।

Digitized by srujanika@gmail.com

ପିନାକ ଧନୁକୁ ଧରି ବୃଷ ଆରୋହିଣ
କରିଲେ ଯୁଦ୍ଧ ଭୂମିକୁ ସତ୍ୱର ଗମନ ।
ପାଶୁପତ ଅସ୍ତ୍ରସହ ସେ ପ୍ରମଥଗଣ
ସୁଦର୍ଶନ ଚକ୍ର ତେଜେ ହୋଇଲେ ଦହନ ।
ବିଷ୍ଣୁ ଶିବଙ୍କୁ ଯେ ପୂର୍ବେ କଲେ ବର ଦାନ
ଯେତେବେଳେ ତୁମ୍ଭେ ମୋତେ କରିବ ସ୍ମରଣ ।
ପାଶୁପତ ଅସ୍ତ୍ର ତେଜୁ ଅଧିକ ବଢ଼ିବ
ପ୍ରତିକୂଳ କାର୍ଯ୍ୟ ଅସ୍ତ୍ରତେଜ ହୀନ ହେବ ।
ପାଶୁପତ ଅସ୍ତ୍ର ଯହୁଁ ହୋଇଲା ନିଷ୍ଫଳ
ଆବର ଦହନ ହେଲା ବାରାଣସୀ ପୁର ।
ଏହା ଦେଖି ମହାଦେବ ଭୟଭୀତ ହେଲେ
ପୁରୁଷୋତ୍ତମଙ୍କୁ ତହୁଁ ସ୍ତୁତି ଆରମ୍ଭିଲେ ।
ନାରାୟଣ ତୁମ୍ଭେ ଅଟ ପରମ ଆଶ୍ରୟ
ପରମାତ୍ମା ପରାତ୍ପର ନିତ୍ୟ ଜ୍ଞାନମୟ ।
ସଚ୍ଚିଦାନନ୍ଦ ସ୍ୱରୂପ ପ୍ରଭୁ ନିରଞ୍ଜନ
ତୁମ୍ଭ ପାଦ ପଦ୍ମକୁ ମୁଁ କରୁଛି ପ୍ରଣାମ ।
ଜଗତ କାରଣ ତୁମ୍ଭେ ତ୍ରିଗୁଣ ପ୍ରକାଶ
ହେଲେ ଜଗତର ହୁଏ ସୃଷ୍ଟି ସ୍ଥିତି ନାଶ ।
ମାୟାଚ୍ଛନ୍ନ ହେଲେ ମଧ୍ୟ ସ୍ୱୟଂ ପ୍ରକାଶିତ
ତୁମ୍ଭଙ୍କୁ ଯେ ନମସ୍କାର ମୋର ଅବିରତ ।
ତୁମ୍ଭର ପ୍ରକାଶ ଅନ୍ତରରେ ନ ହୁଅଇ
ସେହିପରି ବାହାରରେ ପ୍ରବେଶ ହୁଅଇ ।
କିନ୍ତୁ ବାହାର ଅନ୍ତର ଦୂର ନିକଟରେ
ଗୁରୁଲଘୁ ସ୍ଥୂଳ ସୂକ୍ଷ୍ମ ଆଦି ପଦାର୍ଥରେ ।
ଏ ସକଳ ସ୍ଥାନେ ତୁମ୍ଭେ ରହିଅଛ ପୂର୍ଣ୍ଣ
ହେ ପ୍ରଭୁ ତୁମ୍ଭ ଚରଣେ କରୁଛି ପ୍ରଣାମ ।
ଯାହାର କଟାକ୍ଷପାତେ ବ୍ରହ୍ମା କୋଟି କୋଟି
ପରାର୍ଦ୍ଧ ସଂଖ୍ୟକ ଶିବ ହୋଇଥାଏ ସୃଷ୍ଟି ।
ତୁମ୍ଭେ କାଳ ସ୍ୱରୂପରେ କର ବିଚରଣ
କୋଟି ସଂଖ୍ୟାରେ ପ୍ରଣାମ କରନ୍ତୁ ଗ୍ରହଣ ।
ସକଳ ବ୍ରହ୍ମାଣ୍ଡ ଦେହେ ଲୋମ କୂପେ ଯାର
ଅବସ୍ଥିତ ପରିମାଣ ନାହିଁ ସେ ଦେହର ।
ବିଶ୍ୱାତ୍ମା ବିଶ୍ୱ ରୂପରେ ଯାର ଅବସ୍ଥାନ
ସେ ପ୍ରଭୁଙ୍କୁ ବାରମ୍ବାର କରୁଛି ପ୍ରଣାମ ।
ବ୍ରହ୍ମାର ସ୍ୱକୀୟ କାଳ ପରିପୂର୍ଣ୍ଣ ଯୋଗେ
ପ୍ରଳୟ ଉତ୍ପତ୍ତି ମନ୍ୱନ୍ତର ଘଟେ ବେଗେ ।
ବ୍ରହ୍ମାଙ୍କ କାଳ ସ୍ୱରୂପେ ତୁମ୍ଭ ଅବସ୍ଥାନ
ତୁମ୍ଭଙ୍କୁ ଯେ ବାରମ୍ବାର କରୁଛି ପ୍ରଣାମ ।
ହେ ନାଥ ଉତ୍ପତ୍ତି ହୋଇ ତପ ଆଚରିଲି
ତୁମ୍ଭର ପ୍ରଭାବ କେତେ ବୁଝି ନ ପାରିଲି ।
ଏଣୁ ଶ୍ରୀଚରଣ ତଳେ ଗଲି ମୁଁ ଶରଣ
ବାରେ କୃପାକରି କ୍ଷମା କରନ୍ତୁ ପ୍ରଦାନ ।
ଏ ପ୍ରକାର ସ୍ତବ ଯହୁଁ କଲେ ମହାଦେବ
ଶଙ୍ଖ ଚକ୍ରଧାରୀ ବିଷ୍ଣୁ ହେଲେ ଆବିର୍ଭାବ ।
ଚକ୍ରରୂପ ପରିତ୍ୟାଗ କଲେ ତତକ୍ଷଣ
ତାହାଙ୍କ ମୁଖ ମଣ୍ଡଳ ଦିଶଇ ପ୍ରସନ୍ନ ।
ସ୍କନ୍ଧେ ବର୍ଣ୍ଣମାଳା କର୍ଣ୍ଣେ କୁଣ୍ଡଳ ଶୋଭଇ
ଦେହେ ନାନା ଅଳଙ୍କାର ଉଜ୍ଜ୍ୱଳ ଦିଶଇ ।
ତାହାଙ୍କ ବାମ କ୍ରୋଡ଼ରେ ଲକ୍ଷ୍ମୀଦେବୀ ନିଜେ
ଦକ୍ଷପାର୍ଶ୍ୱେ ସତ୍ୟଭାମା କରିଛନ୍ତି ବିଜେ ।
ନୀଳମେଘ ବର୍ଣ୍ଣ ସମ ଦେହ କାନ୍ତି ଜାଣ
କରୁଣା ସାଗର ଅଧୋକ୍ଷଜ ଭଗବାନ ।
କ୍ରୋଧେ ଭୟଭୀତେ ମହାଦେବଙ୍କୁ କହିଲେ
ଶମ୍ଭୋ ତୁମ୍ଭର ଦୁର୍ବୁଦ୍ଧି ଜାତ ଏତେକାଳେ ।
ସାମାନ୍ୟ କୀଟ ସମାନ ଏ ରାଜା ନିମିତ୍ତ
ତୁମ୍ଭେ ଆମ୍ଭସଙ୍ଗେ ଯୁଦ୍ଧ ଅର୍ଥେ ଉପସ୍ଥିତ ।
ହେ ଧୂର୍ଜଟି ଜାଣିଛ ତ ପ୍ରଭାବ ଆମ୍ଭର
ତୁମ୍ଭେ ପାଶୁପତ ଅସ୍ତ୍ରେ ଜଗତ୍ ଜିଣିପାର ।
ଆମ୍ଭ କ୍ରୋଧ ଚକ୍ରରୂପ କରଇ ଧାରଣ
ଏହା ଜାଣି ଯୁଦ୍ଧ ଅର୍ଥେ କଲେ ଆଗମନ ।
ଆମ୍ଭଙ୍କୁ ଅବଜ୍ଞା କରି ଏହି ଜଗତରେ
ତୁମ୍ଭ ବିନା ଅନ୍ୟ ପ୍ରାଣ ଧରି ତ ନ ପାରେ ।
ବହୁତ ତପସ୍ୟା ପୂର୍ବକାଳେ କରିଅଛ
ଆମ୍ଭ ଶରୀର ରୂପରେ ଉତ୍ପନ୍ନ ହୋଇଛ ।
ପାର୍ବତୀ ସହିତେ ଯଦି ଚିରକାଳ ବସା
ବାରାଣସୀ ପୁରେ କରିବାକୁ ମନେ ଆଶା ।
ଜଗତେ ପ୍ରସିଦ୍ଧ ଆମ୍ଭ ନାମରେ ବିଖ୍ୟାତ
ପୁରୁଷୋତ୍ତମ କ୍ଷେତ୍ରକୁ ଚଳନ୍ତି ତ୍ୱରିତ ।
ଦକ୍ଷିଣ ସମୁଦ୍ର ତୀର ଦେଶେ ଅବସ୍ଥିତ
ନୀଳ ସୁନ୍ଦର ପର୍ବତ ଅତି ସୁଶୋଭିତ ।
ବିରଜା ମଣ୍ଡଳୁ ଦଶ ଯୋଜନ ବିସ୍ତୀର୍ଣ୍ଣ
କ୍ରମେ ଚିତ୍ରୋତ୍ପଳା ନଦୀଯାଏ ପୁଣ୍ୟସ୍ଥାନ ।
ଚିତ୍ରୋତ୍ପଳା ନଦୀଠାରୁ ଦକ୍ଷିଣ ସାଗର
ଯାଏ ସ୍ଥାନ ପଦେ ପଦେ ଅତି ପୁଣ୍ୟତର ।
ଏକପାଦରୁ ଅପର ପାଦ ନ୍ୟାସ ସ୍ଥାନ
ଅଧିକ ପବିତ୍ର ନୀଳଗିରି ମୋକ୍ଷ ଧାମ ।
ସେ ସ୍ଥାନେ ଧରିଛୁ ଆମ୍ଭେ ଦେହ ଚତୁଷ୍ଟୟ
ସେ ଦେହ ନିର୍ମିତ ନୀଳକାନ୍ତ ମଣିମୟ ।
ସେ ଗିରି ଉତ୍ତର ଦିଗେ ସୁପ୍ରସିଦ୍ଧ ସ୍ଥାନ
ବିଦ୍ୟମାନ ତାର ନାମ ଏକାମ୍ର କାନନ ।

Digitized by srujanika@gmail.com

ଆହେ ତ୍ରିପୁର ଅନ୍ତକ ଯାଅ ସେହି ସ୍ଥାନ
ନିର୍ଭୟେ ପାର୍ବତୀସହ କର ଅବସ୍ଥାନ ।
ଆମ୍ଭ ଆଦେଶରେ ସୃଷ୍ଟିକର୍ତ୍ତା ବ୍ରହ୍ମା ଯିବେ
ଲିଙ୍ଗରାଜ ପଣେ ଅଭିଷେକ ସେ କରିବେ ।
ସର୍ବତୀର୍ଥମୟ ମଣିକର୍ଣ୍ଣିକା ଯେ ତୀର୍ଥ
କାଶୀଧାମେ ଅଛି ବୋଲି ହେଉଛ ଗର୍ବିତ ।
ସେହି ଅହଂକାର ତୁମ୍ଭେ ପରିତ୍ୟାଗ କର
ଗମନ କର ଏକାମ୍ର କାନନେ ସତ୍ୱର ।
କହନ୍ତି ନାରଦ ବାସୁଦେବଙ୍କର କଥା
ଶିବ କୃତାଞ୍ଜଳି ପୁଟେ ନତ କଲେ ମଥା ।
ପ୍ରଣାମ କରି ସକଳ କରିଲେ ଶ୍ରବଣ
ବାସୁଦେବଙ୍କୁ କହିଲେ ମଧୁର ବଚନ ।
ହେ ଦେବ ! ହେ ଜଗନ୍ନାଥ ! ଆଶ୍ରିତ ବ୍ୟକ୍ତିର
ତ୍ରିବିଧ କ୍ଳେଶକୁ ତୁମ୍ଭେ ଦୂର କରି ପାର ।
ହେ ଜଗତ ପ୍ରଭୁ ତୁମ୍ଭେ ଆମ୍ଭ ମୂଳାଧାର
ତବ ମଙ୍ଗଳ ଆଦେଶ ପାଳିବି ସତ୍ୱର ।
ହେ ଦେବ ନିର୍ବୁଦ୍ଧି ପଣେ କଲି ଅହଂକାର
ତବ ଦୟା ନିଦର୍ଶନ କାରଣ ଏହାର ।
ପୂର୍ବକାଳେ ତୁମ୍ଭ ଅନୁଗ୍ରହ ପାଇଅଛି
ତୁଣେ ମୋର ମନରେ ତ ଚାଞ୍ଚଲ୍ୟ ବଳିଛି ।
ହେ ଦେବ ତବ ଆଦେଶ କରିବି ପାଳନ
ପୁରୁଷୋତ୍ତମ କ୍ଷେତ୍ରକୁ ଯିବି ଏହିକ୍ଷଣ ।
ହେ ପ୍ରଭୁ ! ଆମ୍ଭଙ୍କୁ ଅନୁଗ୍ରହ କରିବଟି
ପୁରୁଷୋତ୍ତମ କ୍ଷେତ୍ରରେ ବିରଜା କ୍ଷେତ୍ରଟି ।
ତାହାକୁ ପ୍ରତି ପାଳନ କରିବ ଆପଣ
ଚକ୍ରେ ସେ ପୁର ନୋହିବ ଏପରି ଦହନ ।
କହନ୍ତି ନାରଦ ପୂର୍ବକାଳେ ମହାଦେବ
ଲକ୍ଷ୍ମୀ ଶ୍ରୀପୁରୁଷୋତ୍ତମ ସହ ବଳଦେବ ।
ଏ ତିନିଙ୍କୁ ପୂଜା କରି ସନ୍ତୋଷ କରିଲେ
ବିରଜା କ୍ଷେତ୍ରକୁ ନିର୍ମାଣ ଯେ କରିଥିଲେ ।
ପିତାମହ ବ୍ରହ୍ମା ଏହି ସ୍ଥାନକୁ ତୁରିତ
ଆସି ଉମାକାନ୍ତଙ୍କୁ ଯେ କରିଲେ ସ୍ଥାପିତ ।
ଆମ୍ଭେମାନେ ସେହିସ୍ଥାନେ କରିବା ଗମନ
ପୁରରିପୁ ବିଷ୍ଣୁଙ୍କର ପାଇବ ଦର୍ଶନ ।
ଏହି ଶେଷକ୍ଷେତ୍ର ତମଃ ରଜୋଗୁଣେ ମୁକ୍ତ
ବିରଜା ମଣ୍ଡଳ ନାମେ ହୋଇଛି ବିଖ୍ୟାତ ।
ସତ୍ୱଗୁଣରୁ ଅଧିକ ଶ୍ରୀପୁରୁଷୋତ୍ତମ
ମୁକ୍ତି ଦାନ କରେ ତାର ନାମ ମୋକ୍ଷଧାମ ।
ଯେତେ ଅନ୍ୟ କ୍ଷେତ୍ର ମୁକ୍ତି କରନ୍ତି ପ୍ରଦାନ
ଏସ୍ଥାନେ କରନ୍ତି ସେ ସକଳେ ମୁକ୍ତି ଦାନ ।

ହେ ରାଜେନ୍ଦ୍ର ! ଏ କ୍ଷେତ୍ରରେ ପାପ କଳୁଷିତ
ବ୍ୟକ୍ତିମାନେ ନ କରନ୍ତି ବିଶ୍ୱାସ ସ୍ଥାପିତ ।
ତେଣୁ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଗୋପନୀୟ
ରଖିଛନ୍ତି ଚକ୍ରପାଣି ଏ କଥା ନିଶ୍ଚୟ ।
ଇନ୍ଦ୍ରଦ୍ୟୁମ୍ନ କହୁଛନ୍ତି ହେ ବ୍ରତୀର୍ଷି ଶୁଣ
ଅତ୍ୟନ୍ତ ପବିତ୍ର କଥା କହିଲେ ଆପଣ ।
ସେ କ୍ଷେତ୍ର କରେ ପରମ ପବିତ୍ରତା ଜାତ
ଲକ୍ଷ୍ମୀକାନ୍ତ ଉମାକାନ୍ତ ଯହିଁ ଅବସ୍ଥିତ ।
କୁଟିଳ ପଥରେ ଆମ୍ଭେ ଗତି କରିଯିବା
ଅବଶ୍ୟ ସେହି ସ୍ଥାନରେ ପ୍ରବେଶ ହୋଇବା ।
ମୋକ୍ଷ ପାଇବା ଅଟଇ ଆମ୍ଭର ଉଦ୍ଦେଶ୍ୟ
ଶ୍ରୀକ୍ଷେତ୍ରକୁ ଗଲେ ତାହା ମିଳିବ ଅବଶ୍ୟ ।
କହନ୍ତି ଜୈମିନି ଅନନ୍ତର ସେହି ମୁନି
ସୈନ୍ୟ ସହିତେ ରାଜାଙ୍କୁ ସଙ୍ଗତରେ ଘେନି ।
ମଧ୍ୟାହ୍ନେ ଏକାମ୍ର ବନେ ପ୍ରବେଶ ହୋଇଲେ
ମାହାରାଜା ବିନ୍ଦୁତୀର୍ଥେ ବେଗେ ସ୍ନାନ କଲେ ।
ତୀର୍ଥକୂଳେ ବାସୁଦେବ କଲେ ଦରଶନ
କୋଟିଶ୍ୱର ଶିବାଳୟେ ଗଲେ ତତକ୍ଷଣ ।
ମନ୍ଦିର ଦ୍ୱାର ଦେଶରେ କଲେ ଆଚମନ
ଶିବଙ୍କ ପ୍ରୀତି ଉଦ୍ଦେଶ୍ୟେ ଦେଲେ ନାନା ଦାନ ।
ବହୁତର ରଥ ଗଜ ରତ୍ନବସ୍ତ୍ର ଧନ
ଅଳଙ୍କାର ବ୍ରାହ୍ମଣଙ୍କୁ କରିଲେ ପ୍ରଦାନ ।
ଅଭେଦ ଦର୍ଶନେ ଶିବ ବିଷ୍ଣୁ ପୂଜା କଲେ
ତିନି ଭୁବନରେ ମହାସ୍ନାନ କରାଇଲେ ।
ରାଜା ବିଷ୍ଣୁ ଶିବଙ୍କୁ ଯେ ଅଭେଦ ମଣିଲେ
ସ୍ତବପାଠ ସ୍ତୁତି ଗାନ ପ୍ରଣାମାଦି କଲେ ।
ଅତୁଳ ଆନନ୍ଦ ମନେ ଶିବଙ୍କୁ ଚିନ୍ତିଲେ
କୃତାଞ୍ଜଳିପୁଟେ ତହିଁ ଅବସ୍ଥାନ କଲେ ।
ତତ୍ପରେ ତ୍ର୍ୟମ୍ବକ ଶିବ ପ୍ରସ୍ଥାନ ହୋଇଲେ
ମହାରାଜଙ୍କୁ ସୁସ୍ପଷ୍ଟ ବଚନ କହିଲେ ।
ଇନ୍ଦ୍ରଦ୍ୟୁମ୍ନ ମହାରାଜା ପୃଥିବୀ ମଧ୍ୟରେ
ତୁମ୍ଭ ପରି ବିଷ୍ଣୁ ଭକ୍ତ ନାହିଁ ଅନ୍ୟଠାରେ ।
ଯେଉଁ ମନୋବାଞ୍ଛା ତାହା ହେବ ବେଗେ ପୂର୍ଣ୍ଣ
ଏହାକହି ଶିବ ତହିଁ ହେଲେ ଅନ୍ତର୍ଦ୍ଧାନ ।
ପୁନର୍ବାର ନାରଦଙ୍କୁ କହିଲେ ସତ୍ୱର
ଆମ୍ଭ ଆଦେଶ ପାଳନ କର ମୁନିବର ।
ଶୀଘ୍ର ଅଶ୍ୱମେଧ ଯଜ୍ଞ କରି ଆୟୋଜନ
ବିଷ୍ଣୁଙ୍କର ଦେହ କ୍ଷେତ୍ର ଶ୍ରୀପୁରୁଷୋତ୍ତମ ।
ହୃଦୟ ସ୍ୱରୂପ ଅନ୍ତର୍ବେଦୀ ଅବସ୍ଥିତ
ତାଙ୍କୁ ରକ୍ଷା କରିବାକୁ ହେଲି ମୁଁ ନିଯୁକ୍ତ ।

Digitized by srujanika@gmail.com

ବିଷ୍ଣୁ ମୋତେ ଅଷ୍ଟଭୋଗ କରିଲେ ସ୍ଥାପନ
ବେଦୀର ଆକୃତି ଅଟେ ଶଙ୍ଖର ସମାନ ।
ଶଙ୍ଖ ଅଗ୍ରଦେଶେ ମୁହିଁ ଦୁର୍ଗାଙ୍କ ସହିତ
ନୀଳକଣ୍ଠ ନାମରେ ଯେ ହୋଇଛି ବିଖ୍ୟାତ ।
ହେ ନାରଦ ଯହିଁ ନୀଳଗିରି ବିଦ୍ୟମାନ
ସେହିସ୍ଥାନେ ଯାଅ ସଙ୍ଗେ ଘେନି ଇନ୍ଦ୍ରଦ୍ୟୁମ୍ନ ।
ନୀଳକାନ୍ତ ମଣିମୟ ହରି ତହିଁ ଥିଲେ
ଅନ୍ତର୍ହିତ ହୋଇଗଲେ ଏବେ ଏତେକାଳେ ।
ଆମ୍ଭ ଆଦେଶରେ ଯାଇଁ ତୁମ୍ଭେ ସେ କ୍ଷେତ୍ରରେ
ନୃସିଂହ ଦେବ ପ୍ରତିଷ୍ଠା କର ଧାତିକାରେ ।
ଆମ୍ଭ ସନ୍ନିଧିରେ ସେହିସ୍ଥାନେ ନରପତି
ସହସ୍ର ସଂଖ୍ୟାରେ ଯାଗ କରିବେ ସଂପ୍ରତି ।
ଅତଃପର ବ୍ରହ୍ମ ବୃକ୍ଷ ଅତି ସୁନିର୍ମ୍ମଳ
ଆଶ୍ଚର୍ଯ୍ୟ ବୃକ୍ଷ ଦର୍ଶନ କରିବେ ଭୂପାଳ ।
ଏ ବୃକ୍ଷ କାଷ୍ଠରେ ବିଶ୍ୱକର୍ମା ପ୍ରତିମୂର୍ତ୍ତି
ଚାରିଗୋଟି ଗଠନ ହେ କରିବେ ଝଟତି ।
ସେହି ପ୍ରତିମା ପ୍ରତିଷ୍ଠା କରିବା ନିମିତ୍ତ
ବ୍ରହ୍ମଲୋକୁ ବ୍ରହ୍ମା ଆସି ହେବେ ଉପସ୍ଥିତ ।
ସହସ୍ର ବର୍ଷେ ସହସ୍ର ଯଜ୍ଞ ସମାପତି
କରିବେ ସେହି ସ୍ଥାନରେ ଏହି ନରପତି ।
ତଦନନ୍ତର ନିଖିଳ ଜଗତ ଆଶ୍ରୟ
ପାପରାଶି ନାଶି ଜୀବେ ଦିଅନ୍ତି ଅଭୟ ।
ମୋକ୍ଷଦାତା ସେହି ବିଷ୍ଣୁ ଦାରୁମୟୀ ମୂର୍ତ୍ତି
ଅବଲୋକନ କରିବେ ତହିଁ ନରପତି ।
ସେ ହରିଙ୍କର ଚରିତ୍ର ବ୍ରହ୍ମା ନ ଜାଣନ୍ତି
ମୁଁ ତ ଜାଣେନାହିଁ ତୁମ୍ଭେ ନ ପାରିବ ଚିନ୍ତି ।
ଭକ୍ତିଯୋଗେ ଆଜ୍ଞା ପ୍ରତିପାଳନ କରିଲେ
ସେ ପ୍ରଭୁ ପ୍ରସନ୍ନ ହୁଏ ଏହି ଧରାତଳେ ।
ଜଗଦ୍‌ଗୁରୁ ଶିବପାଦେ ସେ କାଳେ ନାରଦ
ପ୍ରଣତ ହୋଇ କହନ୍ତି ବାକ୍ୟ ଗଦଗଦ ।
ହେ ପ୍ରଭୁ ଏ ସ୍ଥାନେ ଯାହା ଆପଣ କହିଲେ
ଏହି କଥା ପିତାମହ ବ୍ରହ୍ମା କହିଥିଲେ ।
ହେ ନାଥ ଆପଣ କିବା ଚତୁର ବଦନ
ତ୍ରିଲୋକ ଗୁରୁ ବିଷ୍ଣୁଙ୍କଠାରୁ ନୁହ ଭିନ୍ନ ।
ମାଳବ ଦେଶରେ ଜନ୍ମ ଏହି ନରପତି
ଏହାର ବଢ଼ିଛି କେତେ ସୌଭାଗ୍ୟ ସମ୍ପତ୍ତି ।
ଏକାକାଳେ ବ୍ରହ୍ମା ବିଷ୍ଣୁ ଶିବ ତିନିଙ୍କର
ଅନୁଗ୍ରହ ପାଉଅଛି ମନେ ଆଗୋଚର ।
ଯାର ପ୍ରସଙ୍ଗେ ଦୁଷ୍କୃତକାରୀ ଜନଗଣ
ଏହି ଭବ ସାଗରରୁ ହୁଅନ୍ତି ଉତ୍ତୀର୍ଣ୍ଣ ।
ଜୀବ ଜଗତ ପାଳନକାରୀ ବିଷ୍ଣୁଙ୍କର
ଅଚିନ୍ତନୀୟ ମହିମା ବାକ୍ୟେ ଆଗୋଚର ।
ଯେପରି ଭକ୍ତିରେ ବିଷ୍ଣୁ ହୁଅନ୍ତି ସନ୍ତୋଷ
ତାହା ମାନବ ବୁଦ୍ଧିରେ ନୁହଇ ପ୍ରକାଶ ।
ଆଶ୍ଚର୍ଯ୍ୟ କଥା ଦେଖନ୍ତୁ କେତେ ଦେବଗଣ
ଭୂତଳେ ଅଛନ୍ତି କେତେ ଶ୍ରେଷ୍ଠ ନରଗଣ ।
କିନ୍ତୁ କ୍ଷୁଦ୍ର ବ୍ୟକ୍ତି ଅନାୟାସେ କରି କର୍ମ
ବିଷ୍ଣୁଙ୍କୁ ସନ୍ତୋଷ କରି ଯାନ୍ତି ମୋକ୍ଷଧାମ ।
ଗୋରସ ବିକ୍ରୟ କରୁଥିଲେ ଗୋପୀଗଣ
ପୂର୍ଣ୍ଣ କୁଟୀରରେ କରୁଥିଲେ ଅବସ୍ଥାନ ।
ଅରଣ୍ୟେରେ ଫଳମୂଳ ଖାଇ ରହୁଥିଲେ
କୃଷ୍ଣସଙ୍ଗ କାମନାରେ ମୁକତି ଲଭିଲେ ।
ଅତି ଦୁଷ୍ଟ ଶିଶୁପାଳ ନାମେ ରାଜା ଥିଲା
ସଭାମଧ୍ୟେ ନିନ୍ଦାକରି ମୁକତି ଲଭିଲା ।
ବ୍ୟାଧ ହୃଦୟକୁ ବିନ୍ଧ ଶରରେ କରିଲା
ଅତ୍ୟନ୍ତ ଦୁର୍ଲ୍ଲଭ ଗତି ମୁକତି ପାଇଲା ।
ପୂର୍ବକାଳେ କୁବ୍‌ଜୀ ନାରୀ ଧରି ବସ୍ତ୍ରାଞ୍ଚଳ
ଗୃହେ ନେଇ ଉପଭୋଗ କଲା ତତ୍‌କାଳ ।
କିନ୍ତୁ ଦେବନାରୀଗଣ ଯାବତ ଜୀବନ
ଧ୍ୟାନ କରି ଶ୍ରୀଚରଣେ ନ କଲେ ଦର୍ଶନ ।
ପୂର୍ବେ ଦୂରେ ଥିବା ଚଣ୍ଡାଳକୁ ମୋକ୍ଷ କଲେ
ନିକଟରେ ଭକ୍ତ ବିପ୍ରମାନଙ୍କୁ ଠକିଲେ ।
ତାଙ୍କ ମାୟାରେ ଆପଣ ହୋଇଲେ ଲାଞ୍ଛିତ
ପିତାମହ ବ୍ରହ୍ମାଙ୍କୁ ସେ କରିଲେ ବଞ୍ଚିତ ।
ବ୍ରହ୍ମଚର୍ଯ୍ୟ ସାଧି ବହୁ ଦୁଃଖେ ମୁନିଗଣ
ତପ କରି ଲଭିଥିଲେ କଳ୍ପାନ୍ତ ଜୀବନ ।
ଆଉ ବି ଅଧିକ ବୁଦ୍ଧିଶାଳୀ ବ୍ୟକ୍ତିଗଣ
ଅତିଯତ୍ନେ ଶ୍ରୀଚରଣ ନ ପାନ୍ତି ଦର୍ଶନ ।
ଜ୍ଞାନୀମାନଙ୍କର ମୁକ୍ତି ନିମିତ୍ତ ଶାସ୍ତ୍ରରେ
ରହିଅଛି ଉପାୟତ ବହୁ ପରକାରେ ।
ତାଦ୍ୱାରା କରନ୍ତି ମୋକ୍ଷ ପଥରେ ଗମନ
ଶ୍ରୀକ୍ଷେତ୍ର ବାସ ସଙ୍ଗରେ ନୁହେ ତ ସମାନ ।
ପୁରୁଷୋତ୍ତମ କ୍ଷେତ୍ରରେ କରେ ସେହି ବାସ
ସାଯୁଜ୍ୟ ମୁକତି ଲାଭ କରେ ସେ ଅବଶ୍ୟ ।
ମାୟାବୀ ପ୍ରଭୁଙ୍କୁ ଲାଭ କରିବା ନିମିତ୍ତ
ଏକମାତ୍ର ଉପାୟ ତ ରହିଛି ନିଶ୍ଚିତ ।
ଶ୍ରୀପୁରୁଷୋତ୍ତମ କ୍ଷେତ୍ରବରେ କଲେ ବାସ
ଦେହାନ୍ତେ ସାଯୁଜ୍ୟ ମୁକ୍ତି ଲଭିବ ଅବଶ୍ୟ ।
ସ୍ୱୟଂ ହରି ଏହି କ୍ଷେତ୍ର ରୂପ ବାସସ୍ଥାନ
ରକ୍ଷା କରୁଛନ୍ତି ଯତ୍ନେ କରି ନିରିମାଣ ।

Digitized by srujanika@gmail.com

ଇନ୍ଦ୍ରଦ୍ୟୁମ୍ନ ମହୀପାଳ ଯୋଗେ ଏ କ୍ଷେତ୍ରଟି
ସକଳ ଲୋକେ ବିଦିତ ହେବେ ନିଶ୍ଚୟଟି ।
ଆହେ ପ୍ରଭୁ ବୃଷଧ୍ୱଜ ! ଦିଅନ୍ତୁ ଆଦେଶ
ସସୈନ୍ୟେ ନୀଳପର୍ବତେ ହୋଇବୁଁ ପ୍ରବେଶ ।
ରାଜାଙ୍କୁ ମହାଯଜ୍ଞରେ କରିଣ ଦୀକ୍ଷିତ
ପୁନର୍ବାର ଆସି ହେବି ପଦେ ପ୍ରଣିପାତ ।
କହନ୍ତି ଜୈମିନି ସେହି ବୃଷଭ ବାହନ
ନାରଦଙ୍କୁ ଅନୁମତି କରିଲେ ପ୍ରଦାନ ।
ନାରଦ ଦେଖନ୍ତେ ଶିବ ହେଲେ ଅନ୍ତର୍ଦ୍ଧାନ
ଋଷି ରାଜା ଦୁହେଁ ରଥ କଲେ ଆରୋହଣ ।
ପୁରୁଷୋତ୍ତମ କ୍ଷେତ୍ରକୁ କରିଲେ ପ୍ରୟାଣ
କପୋତେଶ୍ୱର ସମୀପେ ଗଲେ ପରଦିନ ।
ସେ ସ୍ଥାନରେ ବହୁବିଧ ବୃକ୍ଷ ବିରାଜିତ
ଜଳାଶୟମାନଙ୍କରେ ଅତି ସୁଶୋଭିତ ।
ପୂର୍ବଦିଗେ ସମୁଦ୍ରତଟରେ ବିଲ୍ୱେଶ୍ୱର
ସମୀପରେ ସକଳ ସୈନ୍ୟ ରଖିଲେ ନବର ।
ଯଥାଯୋଗ୍ୟ ବାସସ୍ଥାନ କଲେ ନିରୂପଣ
କପୋତେଶ୍ୱର ଶିବଙ୍କୁ ପୂଜିଲେ ତକ୍ଷଣ ।
ନାରଦଙ୍କ ସହିତରେ ରଥେ ଚଳିଗଲେ
ନୀଳାଚଳନାଥଙ୍କୁ ସେ ମନରେ ଚିନ୍ତିଲେ ।
ନାମ କରିଣ କୀର୍ତ୍ତନ ବିଷ୍ଣୁ ସନ୍ନିଧ୍ୟାନ
ରାଜାଙ୍କ ସଙ୍ଗେ ନାରଦ କରିଲେ ଗମନ ।
ଦ୍ୱାଦଶ ଛନ୍ଦ ଉତ୍କଳ ଭାଷାରେ ସମାପ୍ତ
ରକ୍ଷା କରନ୍ତୁ ନୀଳଦ୍ରିନାଥ ଏ ଜଗତ ।
ଏକ ଆତ୍ମା ହରି ହର ନୁହନ୍ତି ପୃଥକ
କହନ୍ତି ପୃଥକ ବୋଲି ମୂଢ଼ମତି ଲୋକ ।
କୋଟି ଲିଙ୍ଗେଶ୍ୱର ରୂପେ ତୁମ୍ଭେ ପୂଜା ପାଅ
ଏକାମ୍ର କାନନେ ପ୍ରଭୁ ଆହେ ଦୟାମୟ ।
ହରିହର ରୂପେ ତୁମ୍ଭେ କରିଅଛ ବିଜେ
ଦୀନ ହରିହର ନମେ ଚରଣ ସରୋଜେ ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳଖଣ୍ଡେ ଇନ୍ଦ୍ରଦ୍ୟୁମ୍ନ ରାଜା ନାରଦ ମହର୍ଷି ସହ ଏକାମ୍ର କାନନେ ପ୍ରବେଶ ନାମ ଦ୍ୱାଦଶୋଽଧ୍ୟାୟଃ ।



## ତ୍ରୟୋଦଶ ଅଧ୍ୟାୟ

କହୁଛନ୍ତି ଦ୍ୱିଜଗଣ ଶୁଣ ମୁନିବର
କାହିଁକି ପ୍ରସିଦ୍ଧ ସ୍ଥାନ ସେ କପୋତଶ୍ୱର ।
ସେ ସ୍ଥାନର କେଉଁ ଖ୍ୟାତି କିଏ ବା କପୋତ
କପୋତର ଅଟେ କିଏ ଈଶ୍ୱର ଉଚିତ ।
ଏ ସକଳ ବିଷୟକୁ କରନ୍ତୁ ବଖାଣ
ନୀଳାଦ୍ରୀନାଥଙ୍କୁ ମନେ କରିବୁ ସ୍ମରଣ ।
କହନ୍ତି ଜୈମିନି ମୁନି ଶୁଣ ଦ୍ୱିଜଗଣ
ପୂର୍ବକାଳେ ସେହି ସ୍ଥାନ ଥିଲା କୁଶ ବଣ ।
ତୀକ୍ଷ୍ଣ ଅଗ୍ର କୁଶକଣ୍ଟା ଚାରିଦିଗେ ପୂର୍ଣ୍ଣ
ବୃକ୍ଷ ତହିଁ କିଛି ନାହିଁ ଜଳାଶୟ ଶୂନ୍ୟ ।
ପିଶାଚଗଣର ବାସ ରୂପ ସେହି ସ୍ଥାନ
ଏକଦା ଧୂର୍ଜ୍ଜଟି ତହିଁ କରିଲେ ଗମନ ।
ମନରେ ବିଚାର କଲେ ଭଗବାନଙ୍କର
ସବୁସ୍ଥାନେ ପୂଜା ହୁଏ ନ ହୁଏ ମୋହର ।
ଭଗବାନଙ୍କର ହୁଏ ଯେ ପ୍ରକାରେ ପୂଜା
ସବୁସ୍ଥାନେ ସେହିପରି ହେବ ମୋର ପୂଜା ।
ଏହିପରି ଚିନ୍ତାକଲେ ତହିଁ ମହାଦେବ
ବିଷ୍ଣୁଭକ୍ତି ବିଷୟରେ ଜାତ ମନୋଭାବ ।
ସକଳ ବିଷୟ ଆଶା ତ୍ୟାଗ ମୁଁ କରିବି
ବିଷୟ ଶୂନ୍ୟ ପ୍ରଦେଶେ ସର୍ବଦା ରହିବି ।
ମହତୀ ତପସ୍ୟା ଅନୁଷ୍ଠାନେ ଯିବ ଦିନ
ସନ୍ତୁଷ୍ଟ ହୋଇବେ ମୋତେ ପ୍ରଭୁ ନାରାୟଣ ।
ସେ ପ୍ରଭୁ ଅଟନ୍ତି ସ୍ୱୟଂ ଲକ୍ଷ୍ମୀଙ୍କର ପତି
ତାହାଙ୍କୁ ଦେବା ପଦାର୍ଥ କିଛି ନାହିଁ କ୍ଷିତି ।
ଆଉ ମଧ୍ୟ ସେହି ପ୍ରଭୁ ବାକ୍ୟ ଦେବୀ ପତି
କେଉଁ ପ୍ରକାରେ ତାଙ୍କର କରିବି ମୁଁ ସ୍ତୁତି ।
ସେ ତ ଅଟନ୍ତି ନିଖିଳ ବ୍ରହ୍ମାଣ୍ଡ ଈଶ୍ୱର
ତାଙ୍କର ସନ୍ତୋଷ ଚିତ୍ତ କିମ୍ୱା ଦରକାର ।
ଭଗବାନଙ୍କୁ ଯଦ୍ୟପି କରିବି ସନ୍ତୋଷ
ଅନ୍ତର୍ଯାଗ ବିଧାନରେ ପୂଜିବି ଅବଶ୍ୟ ।
ଯିବି ଏକଟିତ୍ତେ ଭକ୍ତଗଣ ସମୀପକୁ
ଆତ୍ମ ସମର୍ପଣ କରି ଦେବି ମୁଁ ତାହାଙ୍କୁ ।
ଚରାଚର ଗୁରୁ ହରିଙ୍କର ଆରାଧନା
କଲେ ସକଳେ ମୋ ପୂଜା କରିବେଟି ସିନା ।
ତପସ୍ୟା କଲେ ତାଙ୍କର ପ୍ରସାଦ ପାଇବି
ସକଳ ଲୋକରେ ପୂଜନୀୟ ମୁଁ ହୋଇବି ।
ଏହିରୂପେ ମନେ ଚିନ୍ତାକରି ବିଶ୍ୱନାଥ
ନୀଳସୁନ୍ଦର ପର୍ବତେ ହେଲେ ଉପସ୍ଥିତ ।

Digitized by srujanika@gmail.com

ହିଂସା ଶୂନ୍ୟ ପୁଣି ଭୂମି କୁଶବନ ଯହିଁ
ହର ତପ ସାଧିବାକୁ ମନ କଲେ ତହିଁ ।
ମହେଶ୍ୱର ବାୟୁ ମାତ୍ର କରିଲେ ଭୋଜନ
ଅତି କଠୋର ତପରେ କଟାଇଲେ ଦିନ ।
ସର୍ବଭୂତ ପତିଙ୍କର ଯେଉଁ ସ୍ଥୁଳକାୟ
ତପସ୍ୟାରେ ସୂକ୍ଷ୍ମ ହେଲା କପୋତର ନ୍ୟାୟ ।
ସେହିକାଳେ ଭଗବାନ ହୋଇଲେ ପ୍ରସନ୍ନ
ଶିବଙ୍କୁ ଐଶ୍ୱର୍ଯ୍ୟ ଦାନ କରିଲେ ବହନ ।
ଭଗବାନଙ୍କର ପୂଜା ହେଉଛି ଯେପରି
ସକଳେ ପୂଜା କରିବେ ତୁମ୍ଭଙ୍କୁ ସେପରି ।
ଶିବ ତପ ପ୍ରଭାବରେ ସେହି କୁଶବନେ
ବୃନ୍ଦାବନର ଯେ ଶୋଭା ଫୁଟିଲା ତକ୍ଷଣେ ।
ମନୋହର ସରୋବର ତଡ଼ାଗେ ଶୋଭିତ
ସଦା ନୀରା ନଦୀଦ୍ୱାରା ହେଲା ସୁଶୋଭିତ ।
ନାନାବିଧ ତରୁଲତା ସକଳ ଋତୁର
ଫଳ ପୁଷ୍ପ ଗର୍ଭ ମଧୁ ପିଅନ୍ତି ଭ୍ରମର ।
ଭ୍ରମର ଝଂକୃତ ଧ୍ୱନି ହୁଏ କର୍ଣ୍ଣ ତୃପ୍ତି
ନାନାବିଧ ପକ୍ଷୀ କୂଜନରେ ଚକ୍ଷୁ ପ୍ରୀତି ।
ସର୍ବ ପ୍ରାଣୀ ସୁଖକର ହେଲା ସେହି ସ୍ଥାନ
ଶିବ ତପସ୍ୟାରେ ହେଲେ କପୋତ ସମାନ ।
ଦେହର ସ୍ଥୁଳତା ଗଲା ଦେହ ଶୁଷ୍କ ହେଲା
କପୋତଶ୍ୱର ଏ ନାମ ପ୍ରସିଦ୍ଧି ଲଭିଲା ।
ଭଗବାନଙ୍କର ଆଜ୍ଞା କେ ପାରିବ ମେଣ୍ଟି
ତହିଁ ମୁର୍ଦ୍ଧନୀ ସହିତ ବିଜୟ ଧୂର୍ଜ୍ଜଟି ।
କପୋତେଶ୍ୱର ଶିବଙ୍କୁ ଅର୍ଚ୍ଚନ ବନ୍ଦନ
ସ୍ତବ ପାଠ ପ୍ରଣାମାଦି କରିବ ଯେ ଜନ ।
ନିଷ୍ପାପ ହୋଇଣ ପୁରୁଷୋତ୍ତମ ଦର୍ଶନ
କରିବାକୁ ସମର୍ଥ ଯେ ଅଟେ ସେହି ଜନ ।
ବିଲେଶ୍ୱର ଶିବଙ୍କର ମହିମା ବର୍ଣ୍ଣନ
କହୁଅଛି ଦ୍ୱିଜଗଣ ମନ ଦେଇ ଶୁଣ ।
ପୂର୍ବକାଳେ ପାତାଳରେ ଥିଲେ ଦୈତ୍ୟଗଣ
ପୃଥିବୀକୁ ଏକଦ୍ୱାର କଲେ ନିରିମାଣ ।
ନାନା ଉପଦ୍ରବ କଲେ ଭୂଲୋକରେ ଆସି
ମନୁଷ୍ୟ ଭକ୍ଷଣ କଲେ ଘରେ ଘରେ ପଶି ।
ସେକାଳେ ଭୂଭାର ନାଶ କରିବା ନିମିତ୍ତ
ଦେବକୀ ଗର୍ଭେ ଜନମ ହେଲେ ଲକ୍ଷ୍ମୀକାନ୍ତ ।
ପୃଥିବୀ ପାଳନ କରୁଥିଲେ ଯେ କାଳରେ
ଦିନେ ପାଣ୍ଡବ ଯାଦବଗଣ ସଙ୍ଗତରେ ।
ଶ୍ରୀକୃଷ୍ଣ ଏହି କ୍ଷେତ୍ରକୁ କଲେ ଆଗମନ
ତୀର୍ଥରାଜ ସମୁଦ୍ରରେ କରିଲେ ସ୍ନାହାନ ।

ନୀଳମାଧବଙ୍କୁ ମନମଧ୍ୟେ ପ୍ରଣମିଲେ
ଦୈତ୍ୟଗଣଙ୍କର ଦ୍ୱାରା ଅନ୍ୱେଷଣ କଲେ ।
ଦେଖିଲେ ଏକ ବିବର ଅତି ଭୟଙ୍କର
ସେ ବାଟେ ଯିବାକୁ ନାହିଁ ସାଧ୍ୟ ମନୁଷ୍ୟର ।
ଶ୍ରୀକୃଷ୍ଣ ଛଳନା କରି କହିଲେ ସେ ସ୍ଥାନେ
ସର୍ବେମିଳି ଶିବପୂଜା କର ଏହି ସ୍ଥାନେ ।
ଏକଗୋଟି ବିଲ୍ୱଫଳ ଥିଲା ଯେ ସ୍ଥାନରେ
ସେ ଫଳରେ ଶିବଙ୍କୁ ଯେ ଆବାହନ କଲେ ।
ଯଥାବିଧିରେ ଶିବଙ୍କୁ ପୂଜିଲେ ତକ୍ଷଣ
ପୂଜାଶେଷେ ସ୍ତବ ସ୍ତୋତ୍ର କଲେ ଉଚ୍ଚାରଣ ।
ସଦାଶିବ ! ଆପଣ ତ ତ୍ରିଗୁଣ ରହିତ
ପୁନଃ ତ୍ରିଗୁଣେ ହୋଇଛ ତୁମ୍ଭେ ପ୍ରକାଶିତ ।
ବେଦତ୍ରୟ ରୂପେ ତୁମ୍ଭେ କରାଉଛ କର୍ମ
ବେଦବାହ୍ୟ ଅଟେ ଯେଉଁ ନୈଷ୍କର୍ମ୍ମ ସାଧନ ।
ଭୂତ ଭବିଷ୍ୟତ ବର୍ତ୍ତମାନ ତିନିକାଳ
ଜାଣନ୍ତି ପ୍ରଣାମ କରୁଅଛୁ ପାଦତଳ ।
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ତିନି ନୟନ ତୁମ୍ଭର
ବ୍ରହ୍ମସ୍ୱରୂପୀ ପରମ ଆତ୍ମା ତୁମ୍ଭେ ହର ।
ଅଣିମାଦି ଅଷ୍ଟ ଐଶ୍ୱର୍ଯ୍ୟର ଅଧୀଶ୍ୱର
କ୍ଷିତ୍ୟପ୍ ତେଜମରୁତ୍ ବ୍ୟୋମସୂର୍ଯ୍ୟ ନିଶାକର ।
ହୋତା ଏହି ଅଷ୍ଟମୂର୍ତ୍ତି ରୂପେ କର ବିଜେ
ପ୍ରଣାମ କରୁଛୁ ତବ ଚରଣ ସରୋଜେ ।
ଶିବ ଅବ୍ୟୟ ସ୍ୱରୂପ ତୁମ୍ଭେ ଅବ୍ୟକତ
ତମୋଗୁଣ ପରପାରେ ସଦା ଅବସ୍ଥିତ ।
ତମୋଗୁଣ ନାଶକରୀ ଅଜ୍ଞାନ ଜନର
ତମ ଛେଦନରେ ଦକ୍ଷ ପ୍ରଭୁ ମହେଶ୍ୱର ।
ତମୋଗୁଣ ବିରହିତ ଅଟନ୍ତି ଆପଣ
ବାରମ୍ବାର ଶ୍ରୀଚରଣେ କରୁଛୁ ପ୍ରଣାମ ।
ଏହି ପ୍ରକାରେ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ
ଆପଣଙ୍କୁ ଆପଣେ ତ କରିଲେ ପ୍ରଣାମ ।
ଶିବରୂପୀ ବ୍ରହ୍ମାଙ୍କର ଦୟାରେ ତତ୍କାଳ
ବିବର ମଧ୍ୟରେ ପଥ ଦିଶିଲା ନିର୍ମଳ ।
ସେ ପରେ ଶ୍ରୀକୃଷ୍ଣ ସୈନ୍ୟସହ ଚଳିଗଲେ
ପାତାଳ ଭୁବନେ ଯାଇଁ ପ୍ରବେଶ ହୋଇଲେ ।
ଦୈତ୍ୟଗଣଙ୍କୁ ପାତାଳେ କରିଲେ ବିନାଶ
ପୃଥିବୀର ଭାର ତହୁଁ ହୋଇଲା ଉଶ୍ୱାସ ।
ପ୍ରତ୍ୟାଗମନ ବେଳରେ ପୁଣି ସେହିସ୍ଥାନେ
ଯଥାବିଧିରେ ଶିବଙ୍କୁ ପୂଜିଲେ ଯତନେ ।
ସେ ବିବର ଅପରାଧ କରିବା ନିମିତ୍ତ
ପ୍ରସାଦ ନିର୍ମାଣ କଲେ ସେ ସ୍ଥାନେ ତୁରିତ ।

Digitized by srujanika@gmail.com

ଶିବଲିଙ୍ଗ ପ୍ରସାଦରେ କରି ସଂସ୍ଥାପନ
ମହାବୁଦ୍ଧିଶାଳୀ କୃଷ୍ଣ କହିଲେ ବଚନ ।
ହେ ଶିବ ଅସୁର ବଳ ବିନାଶେ ସମର୍ଥ
ତୁମ୍ଭବିନା ଆଉ କେହି ନାହିଁ ତ୍ରିଲୋକେ ତ ।
ସ୍ଥାପନ କରିଲେ ତହିଁ ଭାବନୀ ପତିଙ୍କୁ
ଶ୍ରୀକୃଷ୍ଣ ଯେ ଚଳିଗଲେ ଦ୍ୱାରିକା ପୁରକୁ ।
ସେହିକାଳଠାରୁ ଏହି ସ୍ଥାନେ ଅବସ୍ଥିତ
ବିଲ୍ୱେଶ୍ୱର ମହାଦେବ ଲୋକରେ ବିଖ୍ୟାତ ।
ବିଲେଶ୍ୱର ଦେବ ଶ୍ରୀକ୍ଷେତ୍ରର ପୂର୍ବ ସୀମା
ଅଳଂକୃତ କରୁଛନ୍ତି ପ୍ରକାଶି ମହିମା ।
ଯେ ଜନ ବିଲେଶ୍ୱରଙ୍କୁ କରେ ଦରଶନ
ବିପଦ ସମୂହ ତାର ହୁଅଇ ଦହନ ।
ସମୁଦାୟ ଅଭିଳାଷ ତାର ହୁଏ ପୂର୍ଣ୍ଣ
କହିଲେ ସକଳ କଥା କରିଲି ଶ୍ରବଣ ।
କପୋତେଶ୍ୱର ଶ୍ରୀ ବିଲ୍ୱେଶରଙ୍କ ଚରିତ
କୀର୍ତ୍ତନ କଲେ ଶୁଣିଲେ ଶୁଦ୍ଧ ହେବ ଚିତ୍ତ ।
ସ୍କନ୍ଦ ପୁରାଣେ ଉତ୍କଳଖଣ୍ଡ ତ୍ରୟୋଦଶ
ଅଧ୍ୟାୟର ଅନୁବାଦ ଏହିଠାରେ ଶେଷ ।
ପ୍ରଭୁ ଶ୍ରୀ କପୋତେଶ୍ୱର ପ୍ରଭୁ ବିଲ୍ୱେଶ୍ୱର
କୃପାଭିକ୍ଷା ମାଗୁଅଛି ଦ୍ୱିଜ ହରିହର ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ପୁରୁଷୋତ୍ତମ କ୍ଷେତ୍ର ପ୍ରସଙ୍ଗେ ଶ୍ରୀ
କପୋତେଶ୍ୱର, ବିଲ୍ୱେଶ୍ୱର ଚରିତ୍ର ବର୍ଣ୍ଣନେ
ନାମ ତ୍ରୟୋଦଶଽଧ୍ୟାୟଃ ।



## ଚତୁର୍ଦ୍ଦଶ ଅଧ୍ୟାୟ

ଜୈମିନି ମୁନିଙ୍କୁ ପଚାରନ୍ତି ମୁନିଗଣ
ନାରଦ ମହର୍ଷି ଆଉ ରାଜା ଇନ୍ଦ୍ରଦ୍ୟୁମ୍ନ ।
ରଥ ଆରୋହଣ କରି କେଉଁସ୍ଥାନେ ଗଲେ
ତହିଁ ଯାଇଁ କେଉଁ କାର୍ଯ୍ୟ ସମ୍ପାଦନ କଲେ ।
ସେ କଥା ବିସ୍ତୃତ ରୂପେ କହ ମୁନିବର
ଜୈମିନି ଦ୍ୱିଜଗଣଙ୍କୁ କହିଲେ ଉତ୍ତର ।
ମହର୍ଷି ରାଜା ଏ ଦୁହେଁ ରଥୁଁ ଓହ୍ଲାରିଲେ
ବିଦ୍ୟାପତିଙ୍କ ସଙ୍ଗତେ କ୍ଷେତ୍ରମଧ୍ୟେ ଗଲେ ।
ନୀଳକଣ୍ଠେଶ୍ୱର ସମୀପରେ ଉପସ୍ଥିତ
ରାଜା ସୂଚନା ପାଇଲେ ବିଘ୍ନ ହେବ ଜାତ ।
ବାମ ଚକ୍ଷୁ ବାମ ବାହୁ ହୁଅନ୍ତେ ସ୍ଫୁରଣ
ରାଜାଙ୍କ ମନେ ବିଷାଦ ଜାତ ତତକ୍ଷଣ ।
ସର୍ବଜ୍ଞ ମୁନିଙ୍କୁ ରାଜା ପୁଛିଲେ ଏମନ୍ତ
ଏ ମନ୍ଦ ସୂଚକ କିମ୍ପା କହ ତପୋବନ୍ତ ।
ଆମ୍ଭର ସାମ୍ରାଜ୍ୟ ଅବ୍ୟାହତ ରହିଅଛି
ଏହିକ୍ଷେତ୍ର ମଧ୍ୟରେ ତ ଶାନ୍ତି ବିରାଜୁଛି ।
ନୀଳମାଧବ ଦର୍ଶନ ଅର୍ଥେ ଆସିଅଛି
ଯାତ୍ରାପଥରେ ଉତ୍ତମ କଲ୍ୟାଣ ଲଭିଛି ।
ଏକ୍ଷଣି ମନ୍ଦ ସୂଚକ କରୁଛି ଦର୍ଶନ
ମୋର ବାମ ଅଙ୍ଗ କିମ୍ପା ହେଉଛି ସ୍ଫୁରଣ ।
କେଉଁ ଅନିଷ୍ଟ ଘଟିବ ତାହା ନ ଜାଣଇଁ
ଯଥାର୍ଥ ରୂପେ ବର୍ଣ୍ଣନା କରନ୍ତୁ ଗୋସାଇଁ ।
ରାଜାଙ୍କ ବଚନ ଶୁଣି ନାରଦ କହିଲେ
ବ୍ରହ୍ମା ଏକଥା ପ୍ରଥମେ ମୋତେ କହିଥିଲେ ।
ସେହି କଥା ଏହିସ୍ଥାନେ କହୁଛି ଫିଟାଇ
ମନରେ ବିଷାଦ କିମ୍ପା ହୁଅ ନରସାଇଁ ।
ଏ ଜଗତେ ଶୁଭକାର୍ଯ୍ୟ ଯେତେ ଦେଖାଯାଏ
ପ୍ରାୟ ସେ କାର୍ଯ୍ୟରେ ବହୁ ବିଘ୍ନ ରହିଥାଏ ।
ଯେଉଁମାନେ ଏ ଜଗତେ ଅତି ଭାଗ୍ୟବାନ
ତାହାଙ୍କ ସମ୍ମୁଖେ ମଧ୍ୟ ରହିଥାଏ ବିଘ୍ନ ।
କିନ୍ତୁ ସେହି ବିଘ୍ନ ହୁଏ ଶୁଭେ ପରିଣତ
ଆପଣ ସାମ୍ରାଜ୍ୟ ସୁଖ ଭୁଞ୍ଜନ୍ତି ଏ ସତ୍ୟ ।
ମଙ୍ଗଳମୟ ଏ କ୍ଷେତ୍ର ବିଷ୍ଣୁଙ୍କ ଶରୀର
ଯେ ନିମନ୍ତେ ଆଗମନ କର ନୃପବର ।
ସେହି ପ୍ରଭୁଙ୍କର ହୋଇଅଛି ଅନ୍ତର୍ଦ୍ଧାନ
ବିଦ୍ୟାପତି ଯେଉଁଦିନ କରିଲେ ଦର୍ଶନ ।
ତା ପରଦିନ ସନ୍ଧ୍ୟାରେ ସ୍ୱର୍ଣ୍ଣ ବାଲୁକାରେ
ଆଚ୍ଛାଦିତ ହୋଇ ପ୍ରଭୁ ପାତାଳକୁ ଗଲେ ।
ବର୍ତ୍ତମାନ କାଳେ ଏହି ମର୍ତ୍ତ୍ୟ ଭୁବନରେ
ତାଙ୍କ ଦର୍ଶନ ଦୁର୍ଲ୍ଲଭ ହେବ ଏ ସ୍ଥାନରେ ।
ଜୈମିନି ମୁନି କହନ୍ତି ଆହେ ଦ୍ୱିଜଗଣ
ବଜ୍ରାଘାତ ସମ ବାକ୍ୟ ଶୁଣି ନୃପରାଣ ।
ଚୈତନ୍ୟ ଶୂନ୍ୟ ହୋଇଣ ପଡ଼ିଲେ ଭୂତଳେ
ଆତ୍ମୀୟ ସ୍ୱଜନଗଣ ହା ହା କାର କଲେ ।
କର୍ପୂର ଚନ୍ଦନ ଜଳ ମୁଖରେ ସିଞ୍ଚିଲେ
ଅଗୁରୁ କସ୍ତୁରୀ ଆଦି ଦେହରେ ଲେପିଲେ ।
ଅତି ସତ୍ୱରେ ଚାମର ତାଳବୃନ୍ତ ଆଣି
ବ୍ୟଜନ କଲେ ସରବେ ମିଳି ତତକ୍ଷଣି ।
ନାରଦ ସମ୍ଭ୍ରମେ ଯୋଗ ଧାରଣା କରିଲେ
ଭବିଷ୍ୟତ କାଳେ ଶୁଭ ହେବାରେ ଜାଣିଲେ ।
ନୃପତିଙ୍କର ପ୍ରାଣାଦି ଇନ୍ଦ୍ରିୟମାନଙ୍କୁ
ରକ୍ଷାକରି ଦେଲେ ଯୋଗ ବଳେ ଶରୀରକୁ ।

Digitized by srujanika@gmail.com

କେତେକାଳ ଯାଏ କଲେ ବହୁବିଧ ଯତ୍ନ
ରାଜାଙ୍କ ଦେହେ ଚୈତନ୍ୟ ହେଲା ସମ୍ପାଦନ ।
ଚେତନା ପାଆନ୍ତେ ରାଜା ଭୂତଳୁ ଉଠିଲେ
ନାରଦ ମୁନିଙ୍କ ପାଦତଳରେ ପଡ଼ିଲେ ।
ଉଚ୍ଚରେ ବିଳାପ କରି ମୁନିଙ୍କୁ କହିଲେ
ଘୋରତପ ପାପ କରିଥିଲି ଜନ୍ମାନ୍ତରେ ।
ସେ ପାପର ଫଳ ଭୋଗ ମୋ ଭାଗ୍ୟେ ଘଟିଛି
ଈଦୃଶ ଦାରୁଣ ମନସ୍ତାପ ଭୋଗୁଅଛି ।
ଗୋରୁ ବ୍ରାହ୍ମଣ ଅଟନ୍ତି ସ୍ୱପ୍ନରେ ଅବଧ୍ୟ
କାୟ ମନୋବାକ୍ୟେ କରିନାହିଁ ଅପରାଧ ।
ମୁନିବର ନିତ୍ୟ ନୈମିତ୍ତିକ କାମ୍ୟ କର୍ମ୍ମ
ଶାସ୍ତ୍ରୋକ୍ତ ମତେ କରଇ ନ କରେ ବର୍ଜ୍ଜନ ।
ଦେବତା ପିତୃ ଅତିଥି ବୃଦ୍ଧ ବନ୍ଧୁଗଣ
ମୋର ଆଶ୍ରୟରେ ରହିଛନ୍ତି ଯେତେ ଜନ ।
ଏହାଙ୍କୁ ଅବମାନନା କେବେ କରିନାହିଁ
ମାଧବ ଯେ ଅନ୍ତର୍ଦ୍ଧାନ ହେଲେ କାହିଁପାଇଁ ।
ବିଷ୍ଣୁସେବା ଅପରାଧ ଶାସ୍ତ୍ରେ ଅଛି ଯେତେ
ଆଚରଣ କରିନାହିଁ ତାହା କଦାଚିତେ ।
କ୍ରୁଦ୍ଧସର୍ପ ପରି ଅପରାଧ ଦୂରେ ଅଛି
ଭାଗ୍ୟବଳେ ବିଦ୍ୟାପତି ଦର୍ଶନ ପାଇଛି ।
ମୁନିବର ଆପଣ ତ ଜାଣି ଶୁଣି କରି
କିମ୍ପା ଏ ସ୍ଥାନେ ଆଣିଲେ ରାଜ୍ୟ ଭ୍ରଷ୍ଟକରି ।
କି ନିମିତ୍ତ ଏହି ପ୍ରଜାମାନେ ତ ମୋହର
ପୈତୃକ ସମ୍ପତ୍ତି ଛାଡ଼ି ଆସିଲେ ସତ୍ୱର ।
ବଂଶ ପରମ୍ପରା ଭୋଗୁଥିଲେ ଯେ ସମ୍ପତ୍ତି
କିପରି ବଞ୍ଚିବେ ଏଥିକରି କେଉଁ ବୃତ୍ତି ।
ହେ ମୁନି ନ ହେଲା ଯେବେ ମାଧବ ଦର୍ଶନ
କିମ୍ପାଇଁ କରିବି ଆଉ ଜୀବନ ଧାରଣ ।
ଏହିକଥା ଯେତେବେଳେ କଲି ମୁଁ ନିଶ୍ଚୟ
ପ୍ରଜାମାନେ କି କରିବେ କହ ମହାଶୟ ।
ହେ ମୁନି ସର୍ବଦା ମୋତେ କର ଅନୁଗ୍ରହ
ଶୁଭାଶୁଭ ଉପଦେଶ ମୋତେ ଦେଇଥାଅ ।
ବେଗେ ମୋ ପୁତ୍ରକୁ ଘେନିଯାଅ ସଙ୍ଗତରେ
ଅଭିଷେକ କର ନେଇ ଅବନ୍ତୀ ନଗରେ ।
ଏ ପୁତ୍ର ପାଳିବ ରାଜ୍ୟ ମୋହରି ସମାନ
ଦୁଃଖେ ଆକୁଳ ନ ହେବେ ମୋର ପ୍ରଜାଗଣ ।
ଆଉ ଯେତେ ରାଜାଗଣ ସଙ୍ଗେ ଆସିଛନ୍ତି
ସେମାନେ ଫେରନ୍ତୁ ପାଇ ମୋର ଅନୁମତି ।
ମୋ ପୁତ୍ର ମାନବେଶରେ ହୋଇ ଅନୁଗତ
ନିଜ ରାଜ୍ୟକୁ ଗମନ କରନ୍ତୁ ତୁରିତ ।

ଏହି କ୍ଷେତ୍ରବରେ ମୁଁ କରିବି ଅବସ୍ଥାନ
ପୟୋପବେଶନ ବ୍ରତେ ଯାପିବି ଜୀବନ ।
ନୀଳମାଧବଙ୍କୁ ମନ ମଧ୍ୟେ କରି ଧ୍ୟାନ
ଆୟୁଷ ଶେଷ କାମନା ମୋର ହେବ ପୂର୍ଣ୍ଣ ।
ଜୈମିନି କହନ୍ତି ଇନ୍ଦ୍ରଦ୍ୟୁମ୍ନ ମହୀପତି
ନାରଦଙ୍କ ପଦେ ଶିର ଲୁଟାଇ କାନ୍ଦନ୍ତି ।
ଅତି ଉଚ୍ଚରେ ବିଳାପ କରିଲେ ରାଜନ
ସାନ୍ତ୍ୱନା ବାକ୍ୟେ ନାରଦ କହିଲେ ତକ୍ଷଣ ।
ମହାରାଜ ! ଜାଣେ ତୁମ୍ଭେ ପଣ୍ଡିତ ପ୍ରଧାନ
ସେହିପରି ତୁମ୍ଭେ ବିଷ୍ଣୁଭକ୍ତି ପରାୟଣ ।
ଧୈର୍ଯ୍ୟଗୁଣର ସାଗର ରୂପେ ବିଦ୍ୟମାନ
ଜାଣିଛ ତ ଯେତେ ଶ୍ରେୟଃ ତାହା ବିଘ୍ନପୂର୍ଣ୍ଣ ।
ଚର୍ମନେତ୍ରେ ଭଗବାନ ଯେ କରେ ଦର୍ଶନ
ତାର ସତେ ଜନ୍ମ ପୁଣ୍ୟ ଥାଏ ବିଦ୍ୟମାନ ।
ଜୀବନ୍ମୁକ୍ତ ହୋଇ ଆମ୍ଭେ କରୁ ଅବସ୍ଥାନ
ବିଷ୍ଣୁଲୀଳା ଅତିକ୍ରମେ ନ ହେଲୁ ସକ୍ଷମ ।
ଆମ୍ଭର କୌଣସି ବିଷୟରେ ନାହିଁ ଇଚ୍ଛା
ତାଙ୍କସଙ୍ଗେ ଭକ୍ତି କରି ରହିବାକୁ ବାଞ୍ଛା ।
ଏପରି କି ଶତ ଶତ ଜନ୍ମ ଲାଭ କଲେ
ବିଷ୍ଣୁ ମାୟା ଅତିକ୍ରମ କିଏ କରିପାରେ ।
ଯେହେତୁ ସ୍ନେହ ମାୟାର ନାହିଁ ଆଦି ଅନ୍ତ
ବିଷ୍ଣୁ ନାଭି ପଦ୍ମେ ବ୍ରହ୍ମା ନିତ୍ୟ ଅବସ୍ଥିତ ।
ବିଷ୍ଣୁଙ୍କ ମାୟାର ସ୍ତବ ଗାନ କରୁଛନ୍ତି
ସେ ମାୟାର ଅଦିଅନ୍ତ ବୁଝି ନ ପାରନ୍ତି ।
ସେ ମାୟାବୀ ମାଧବଙ୍କ ମାୟାର ସ୍ୱରୂପ
ସାମାନ୍ୟ ବର୍ଣ୍ଣନା କଲି ଶୁଣିଲ ତ ଭୂପ ।
ବିଶେଷ ରୂପେ କହୁଛି କରନ୍ତୁ ଶ୍ରବଣ
ଯେଣୁ ଭାଗ୍ୟବନ୍ତ ଶ୍ରେଷ୍ଠ ଅଟନ୍ତି ରାଜନ ।
ଇନ୍ଦ୍ରଦ୍ୟୁମ୍ନ ହରିଙ୍କର ଚତୁର୍ବିଧ ମୂର୍ତ୍ତି
ସେହି ଚାରି ମୂର୍ତ୍ତିଙ୍କର ଦୟା ତୁମ୍ଭପ୍ରତି ।
ସେ ଚାରି ମୂର୍ତ୍ତି ମଧ୍ୟରେ ଏହି ଚରାଚର
ସୃଷ୍ଟିକର୍ତ୍ତା ଯେ ଅଟନ୍ତି ଆଦେଶ ତାଙ୍କର ।
ହେ ନାରଦ ! ଅତିଶୀଘ୍ର ତୁମ୍ଭେ ଚଳିଯାଅ
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କୁ ମୋ ବାର୍ତ୍ତା ବେଗେ କହ ।
ସେ ରାଜା ନୀଳ ପର୍ବତେ ଗମନ କରୁଛି
ନୀଳମାଧବ ଦର୍ଶନ ଅର୍ଥେ ଯାଉଅଛି ।
ପୂର୍ବେ ଯମଙ୍କ ପ୍ରାର୍ଥନା କରିଲେ ସ୍ୱୀକାର
ସେ ପ୍ରଭୁ ନୀଳମାଧବ ହେଲେଣି ଅନ୍ତର ।
ଆମ୍ଭ କୁଳର ପଞ୍ଚମ ସନ୍ତାନ ଯେ ସେହି
ଏକଥା ସେହି ରାଜାଙ୍କୁ ତୁମ୍ଭେ କହ ଯାଇଁ ।

Digitized by srujanika@gmail.com

ପ୍ରଭୁଙ୍କୁ ନ ଦେଖି ରାଜା ଶୋକ ନ କରିବ
ଏହି କଥାକୁ ଅନ୍ୟଥା କେ କରିପାରିବ ।
ସହସ୍ରାଶ୍ୱମେଧ ଯାଗ କରନ୍ତୁ ସେ ସ୍ଥାନ
ତାହାଙ୍କ କାର୍ଯ୍ୟେ କରିବି ମୁଁ ସାହାଯ୍ୟ ଦାନ ।
ପରମାତ୍ମା ମାଧବଙ୍କୁ କରାଇ ପ୍ରସନ୍ନ
ଶ୍ୱେତ ଦ୍ୱୀପରୁ ଆଣିବି ନୀଳାଚଳ ସ୍ଥାନ ।
ଏକ୍ଷଣି ପୁରୁଷୋତ୍ତମ କ୍ଷେତ୍ରରେ ରାଜନ
ଯଜ୍ଞେ ବିଷ୍ଣୁ ପୂଜା କରି କରୁ ଅବସ୍ଥାନ ।
ବିଷ୍ଣୁ ଦାରୁମୟ ମୂର୍ତ୍ତି କରିବେ ଧାରଣ
ଚର୍ମ ଚକ୍ଷୁରେ ଦର୍ଶନ କରିବେ ରାଜନ ।
ଦାରୁ ବ୍ରହ୍ମରୂପେ ବିଷ୍ଣୁଙ୍କର ଅବତାର
ଇନ୍ଦ୍ରଦ୍ୟୁମ୍ନ ଦ୍ୱାରା ହେବ ଲୋକରେ ପ୍ରଚାର ।
ଆମ୍ଭେ ନିଜେ ନୀଳାଚଳେ ଉପସ୍ଥିତ ହେବୁ
ଦାରୁମର୍ତ୍ତି ଚତୁଷ୍ଟୟ ପ୍ରତିଷ୍ଠା କରିବୁ ।
ପୂର୍ବକାଳେ ମଣିମୟ ଦେହଧାରୀ ହରି
ସେ ସ୍ଥାନରେ ପୂଜା ପାଉଥିଲେ ମୂର୍ତ୍ତିଚାରି ।
ପୁରୋହିତ ବିଦ୍ୟାପତି କରିଲେ ଦର୍ଶନ
ରାଜାଙ୍କ ନିକଟେ ଆସି କଲେ ନିବେଦନ ।
ଭବିଷ୍ୟତେ ଦାରୁମୟ ରୂପଧରି ହରି
ଅବତୀର୍ଣ୍ଣ ହେବେ ଏଥି ଚାରିରୂପ ଧରି ।
ହେ ରାଜେନ୍ଦ୍ର ଆପଣ ତ ନୁହନ୍ତି ବ୍ୟଥିତ
ନିଶ୍ଚୟ ପୂର୍ଣ୍ଣ ହୋଇବ ତୁମ୍ଭ ମନୋରଥ ।
ଏଥିରେ ସନ୍ଦେହ ନାହିଁ ଆନନ୍ଦ ଚିତ୍ତରେ
ଅବସ୍ଥାନ କର ଏହି ନୀଳ ପର୍ବତରେ ।
ଜୈମିନି କହିଲେ ଶୁଣ ଆହେ ଦ୍ୱିଜଗଣ
ଋଷି ଏମନ୍ତେ କହିଲେ ସାନ୍ତ୍ୱନା ପ୍ରଧାନ ।
ରାଜାଙ୍କ ଚିତ୍ତେ ବିଶ୍ୱାସ କରି ଉତ୍ପାଦନ
ପୁନର୍ବାର କହିଲେ ସେ ମଧୁର ବଚନ ।
ଏହି କ୍ଷେତ୍ର ଧାମ ଅଟେ ଶଙ୍ଖର ଆକୃତି
ଅଗ୍ରଭାଗେ ନୀଳକଣ୍ଠ ବିଜେ କରିଛନ୍ତି ।
ଅଶ୍ୱମେଧ ଯଜ୍ଞ ପାଇଁ ସେ ସ୍ଥାନ ଉତ୍ତମ
ସେହି ମନୋହର ସ୍ଥାନେ କରିବା ଗମନ ।
ସହସ୍ର ବରଷେ ଅଶ୍ୱମେଧ ଯାଗ ପୂର୍ଣ୍ଣ
ହେବାଯାଏ ତହିଁ କରିବା ଯେ ଅବସ୍ଥାନ ।
ନୀଳାଦ୍ରି ନାଥଙ୍କୁ ମନ ମଧ୍ୟରେ ଚିନ୍ତିବା
ନରସିଂହ ମୂର୍ତ୍ତି ତହିଁ ନିର୍ମାଣ କରିବା ।
ତାହାଙ୍କ ଦର୍ଶନେ ଜନ୍ମ ସାର୍ଥକ ହୋଇବ
ମାଧବଙ୍କ ଅଦର୍ଶନେ ଦୁଃଖ ଦୂର ହେବ ।
ନୃସିଂହ ମୂର୍ତ୍ତି ପ୍ରତିଷ୍ଠା ପ୍ରଥମରେ କଲେ
ସର୍ବବିଘ୍ନ ଦୂର ହେବ କାର୍ଯ୍ୟ ସିଦ୍ଧି ଭଲେ ।
ଏ ବିଷୟ ବିଳମ୍ବ ତ ଆଉ ନ କରିବା
ପିତାମହଙ୍କର ଆଜ୍ଞା ପାଳନ କରିବା ।
ଅଶ୍ୱମେଧ ଯଜ୍ଞ ସର୍ବ ଯଜ୍ଞରେ ପ୍ରଧାନ
ଆରମ୍ଭ କରିବା ଯଥା ଶାସ୍ତ୍ରର ବିଧାନ ।
ଉତ୍କଳ ଭାଷାରେ ଚତୁର୍ଦ୍ଦଶ ଅଧ୍ୟାଶେଷ
କହେ ହରିହର ପ୍ରଭୁ ନ ହୁଅ ଅଦୃଶ୍ୟ ।
ଇତି ଶ୍ରୀସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ଶ୍ରୀ ନୀଳମାଧବ ଅନ୍ତର୍ହିତେ ଇନ୍ଦ୍ରଦ୍ୟୁମ୍ନ
ଶୋକ ବର୍ଣ୍ଣନେ ନାମ
ଚତୁର୍ଦ୍ଦଶୋଽଧ୍ୟାୟଃ ।

□□

## ପଞ୍ଚଦଶ ଅଧ୍ୟାୟ

ଜୈମିନି ମୁନି କହନ୍ତି ଶୁଣ ଦ୍ୱିଜଗଣ
ନାରଦ ମହର୍ଷି ସଙ୍ଗେ ରାଜା ଇନ୍ଦ୍ରଦ୍ୟୁମ୍ନ ।
ନୀଳକଣ୍ଠେଶ୍ୱର ଶିବ ସମୀପକୁ ଗଲେ
ଶିବ ଦୁର୍ଗାଙ୍କର ପୂଜା ପ୍ରଣାମାଦି କଲେ ।
ରଥ ପରିତ୍ୟାଗ କରି ପାଦରେ ଗମନ
ସଙ୍ଗରେ ଅଛନ୍ତି ସର୍ବ ଅନୁଚରଗଣ ।
ନୀଳ ସୁନ୍ଦର ପର୍ବତେ ଆରୋହଣ କଲେ
ସଂଯତ ଇନ୍ଦ୍ରିୟ ହୋଇ ପ୍ରୟୋଗ କରିଲେ ।
ସେ ଗିରି ବିବିଧ ଦ୍ରୁମ ଲତାରେ ଆଚ୍ଛନ୍ନ
ବହୁପ୍ରକାରେ ବିହଙ୍ଗଗଣ ପରିପୂର୍ଣ୍ଣ ।
ଖଣ୍ଡ ଖଣ୍ଡ ପ୍ରସ୍ତରରେ ରୁଦ୍ଧ ଗତିପଥ
ଚାରିଦିଗର ପରିଧି ଅତି ସୁଶୋଭିତ ।
ମଧୁର ଗୁଞ୍ଜନକାରୀ ଭ୍ରମର ନିକର
ପଡ଼ିଛି ବିକ୍ଷିପ୍ତ ହୋଇ ସେ ସ୍ଥାନେ ନିକର ।
ଦକ୍ଷିଣ ସମୁଦ୍ର ତରଙ୍ଗରେ ବାରମ୍ବାର
ନିତମ୍ବ ଦେଶ ପ୍ଳାବିତ ହୁଏ ପର୍ବତର ।
ଏ ନୀଳ ସୁନ୍ଦର ଗିରି ସ୍ୱରୂପ ବର୍ଣ୍ଣନ
କରିବାକୁ ମନୁଷ୍ୟ ତ ନୋହିବେ ଭାଜନ ।
ଭୟାନକ ସର୍ପ ଇତଃସ୍ତତ ବିଚରଣ
କରନ୍ତି ମାତଙ୍ଗ ଗଣ ଭୀଷଣ ଗର୍ଜ୍ଜନ ।
ପର୍ବତର ମଧ୍ୟସ୍ଥଳ ଅତି ଭୟଙ୍କର
ହିଂସ୍ରଜନ୍ତୁ ଗଣ ତହିଁ କରନ୍ତି ବିହାର ।
କେହି ଶିକାରୀ ଶିକାର ତହିଁ ନ କରନ୍ତି
ବିବିଧ ପ୍ରକାର ବନ୍ୟଜନ୍ତୁ ରହିଛନ୍ତି ।
ମହାରାଜା ଅନୁଚର ଗଣଙ୍କ ସହିତ
ପର୍ବତରେ ଉଠିବାକୁ ନ ପାଇଲେ ପଥ ।
ନାରଦ ଯେ ଦିବ୍ୟଗତି ତହିଁ ପ୍ରକାଶିଲେ
ନୃପତି ସହିତ ଅନୁଚର ଯେତେ ଥିଲେ ।

Digitized by srujanika@gmail.com

ସକ୍ଳେ ପର୍ବତ ଶିଖେ ଆରୋହଣ କଲେ
ତହିଁ କୃଷ୍ଣାଗୁରୁ ଦ୍ରୁମ ଦରଶନ କଲେ ।
ସେ ବୃକ୍ଷ ତଳରେ ପ୍ରଭୁ ବିପଦ ଭଞ୍ଜନ
ନରସିଂହ ରୂପେ କରିଛନ୍ତି ଅବସ୍ଥାନ ।
ଯାହାଙ୍କର ଦରଶନ କଲେ ଜନଗଣ
କୋଟି ବ୍ରହ୍ମହତ୍ୟା ଦୋଷ ହୁଅଇ ଖଣ୍ଡନ ।
ସେହି ଦେବ ନରସିଂହ ରୂପୀ ଭଗବାନ
ସ୍ୱ-ମୁଖ ମେଲାଇ ବସିଛନ୍ତି ସେହିସ୍ଥାନ ।
ଦନ୍ତ ଭୟଙ୍କର ଜଟା ପିଙ୍ଗଳ ବରନ
ନେତ୍ର ତ୍ରୟ ଦେଖାଯାଏ ଯେହ୍ନେ ହୁତାସନ ।
ଉରୁଦ୍ୱୟ ଉପରେ ଯେ ରହିଅଛି ସ୍ଥିରେ
ହିରଣ୍ୟକଶିପୁ ଦୈତ୍ୟ ଉତ୍ତାନ ଭାବରେ ।
ଦୈତ୍ୟ ବକ୍ଷସ୍ଥଳ ନଖେ କରି ବିଦାରଣ
ଦେବ ପ୍ରଭା ଦିଶୁଅଛି ଅତି ରକ୍ତବର୍ଣ୍ଣ ।
ମୁଖେ ଅଟ୍ଟହାସ ଜିହ୍ୱା ହୁଏ ଲହ ଲହ
ଶଙ୍ଖ ଚକ୍ରାୟୁଧେ ଶୋଭା ପାଏ ବାହୁଦ୍ୱୟ ।
ଉଜ୍ଜ୍ୱଳ ମୁକୁଟ ଆଉ କିରୀଟ ଶିରରେ
ବିରାଜଇ ଅତିଶୟ ଉଜ୍ଜ୍ୱଳ ଦେହରେ ।
ମୁଖ ମଣ୍ଡଳରୁ ବହ୍ନି ଶିଖା ବାହାରୁଛି
ପାଦ ଆଘାତେ ବସୁଧା ବିଦୀର୍ଣ୍ଣ ହେଉଛି ।
ଅନୁଚରଗଣ ସହ ରାଜା ଇନ୍ଦ୍ରଦ୍ୟୁମ୍ନ
ଋଷିଙ୍କ ସଙ୍ଗେ ନୃସିଂହ କଲେ ଦରଶନ ।
ପ୍ରଣାମ କରି ମନରୁ କଷ୍ଟ ଦୂର କଲେ
ଋଷି ଯାହା କହିଥିଲେ ବିଶ୍ୱାସ ତା କଲେ ।
ଭବିଷ୍ୟତ କାର୍ଯ୍ୟ ସିଦ୍ଧି ଭାବିଲେ ମନରେ
ନାରଦ ମହାଋଷିଙ୍କୁ ବଚନ ଭାଷିଲେ ।
ହେ ମହର୍ଷି ଆପଣ ତ ଜ୍ଞାନର ସାଗର
ଦୟାକରି ମୋ ଜୀବନ କୃତାର୍ଥ କରିଲ ।
ଦୁରାରାଧ୍ୟ ଏ ନୃସିଂହ ଦେବତା ଅଟନ୍ତି
କିଏ ଦର୍ଶନ କରିବ ଭୟାନକ ଅତି ।
ଭବାଦୃଶ ଜନେ ସୁଖେ ସେବା କରିଥାନ୍ତି
ସାଦୃଶ ଜନ ପକ୍ଷରେ ଦୁର୍ଲ୍ଲଭ ଅଟନ୍ତି ।
କୃତାର୍ଥ ହେଲି ନୃସିଂହ କରି ଦରଶନ
ମୋ ପୂର୍ବ ପାତକ ରାଶି ହୋଇଲା ଦହନ ।
ହେ ମୁନି ତୁମ୍ଭ ସନ୍ନିଧି ହେତୁ ଆଜଦିନ
ଆମ୍ଭେ ନିର୍ଭୟରେ କରୁଅଛୁ ଅବସ୍ଥାନ ।
ତ୍ରୈଲୋକ୍ୟାଧିପତି ଦୈତ୍ୟରାଜ ବକ୍ଷସ୍ଥାନ
ଉଗ୍ରମୂର୍ତ୍ତି ନରସିଂହ କଲେ ବିଦାରଣ ।
ସେ ଦେବଙ୍କୁ ଆରାଧନା କରିବା ନିମିତ୍ତ
କ୍ଷୀଣ ବୀର୍ଯ୍ୟ ମନୁଷ୍ୟର ନାହିଁ ସାମରଥ ।

ମୁନିବର ଏ ସ୍ଥାନରେ କାହିଁ ଅବସ୍ଥିତ
ଥିଲେ ନୀଳକାନ୍ତ ମଣିମୟ ଜଗନ୍ନାଥ ।
ମୁକ୍ତିଲାଭ ହୋଇଥାଇ କଲେ ଦରଶନ
ଆମ୍ଭମାନଙ୍କୁ ଦେଖାଅ ନେଇ ସେହି ସ୍ଥାନ ।
ଜୈମିନି ମୁନି କହନ୍ତି ନାରଦ ତକ୍ଷଣ
ଇନ୍ଦ୍ରଦ୍ୟୁମ୍ନଙ୍କର ବାକ୍ୟ କରିଲେ ଶ୍ରବଣ ।
ଯେ ସ୍ଥାନେ ମାଧବ ସ୍ୱର୍ଣ୍ଣ ବାଲୁକା ଆଚ୍ଛନ୍ନ
ହୋଇଥିଲେ କରାଇଲେ ସେ ସ୍ଥାନ ଦର୍ଶନ ।
ନାରଦ କହନ୍ତି ଭୂପ ? ଶୁଣ ମୋ ବଚନ
ଏକ ଯୋଜନ ବିସ୍ତୃତ ଉଚ୍ଚ ଦ୍ୱିଯୋଜନ ।
ଏ ଯେଉଁ ବଟବୃକ୍ଷଟି ଦେଖା ଯାଉଅଛି
ମୁକ୍ତିଦାୟକ କଳ୍ପାନ୍ତ କାଳ ରହିଅଛି ।
ଏହାର ଛାୟାକୁ ସ୍ପର୍ଶ କରେ ଯେଉଁଜନ
ପାପ କଣ୍ଟକ ତା ଦେହେ ହୋଇଯାଏ ଲୀନ ।
ଏ ନିର୍ମଳ ବଟବୃକ୍ଷ ରୂପୀ ନାରାୟଣ
ଦର୍ଶନ କଲେ ନିଷ୍ପାପ ହୋନ୍ତି ଜନଗଣ ।
ଏ ବୃକ୍ଷର ପୂଜା ଆଉ ସ୍ତବ ପାଠ କଲେ
କେତେ ପୂଜା ଲାଭ ହୁଏ କିଏ କହିପାରେ ।
ଏ ବୃକ୍ଷର ମୂଳଦେଶ ପଶ୍ଚିମ ଭାଗରେ
ଶ୍ରୀ ନୃସିଂହ ଦେବଙ୍କର ଉତ୍ତର ଦିଗରେ ।
ସେ ପ୍ରଭୁ ମାଧବ ଦେହ ଚତୁଷ୍ଟୟ ଧରି
ଅବସ୍ଥାନ କରିଥିଲେ ଆହେ ଦଣ୍ଡଧାରୀ ।
ତୁମ୍ଭଙ୍କୁ ତ ଅନୁଗ୍ରହ କରିବା ନିମିତ୍ତ
ପୁନର୍ବାର ଏ ସ୍ଥାନରେ ହେବେ ଆବିର୍ଭୂତ ।
ଭୋଗଭୂମି ଶ୍ୱେତଦ୍ୱୀପେ ବିଷ୍ଣୁଙ୍କ ଆଳୟ
ଯେଉଁପରି ରହିଅଛି ଆହେ ମହାଶୟ ।
ସେହିପରି କର୍ମଭୂମି ଏ ଜମ୍ବୁ ଦ୍ୱୀପରେ
ବିଷ୍ଣୁଙ୍କ ନିଜ ଆଳୟ ଅଛି ଏ ସ୍ଥାନରେ ।
ଏ ସ୍ଥାନଟି ଅତି ଗୋପନୀୟ ବିଷ୍ଣୁଙ୍କର
ଆଜିଯାଏ ହୋଇନାହିଁ ଲୋକରେ ପ୍ରଚାର ।
ଆହେ ରାଜା ମୋକ୍ଷଭାଗୀ ଅଟନ୍ତି ଯେ ଜନ
ସେହିମାନେ ଜାଣିଛନ୍ତି କେବଳ ଏ ସ୍ଥାନ ।
ଏହିସ୍ଥାନେ ପାପ କାର୍ଯ୍ୟେ ରତ ଜନଗଣ
ବିଶ୍ୱାସ ସ୍ଥାପନ ନ କରନ୍ତି କଦାଚନ ।
ଏହିକ୍ଷେତ୍ରେ ଆଉ ଯେତେ ମୂର୍ତ୍ତି ପ୍ରତିଷ୍ଠିତ
ଅଛନ୍ତି ସେମାନେ ମୁକ୍ତି ଦାନରେ ସମର୍ଥ ।
ବ୍ରହ୍ମା କରିଥିଲେ ଯେଉଁ ମୂର୍ତ୍ତି ପ୍ରତିଷ୍ଠିତ
ସେ ମୂର୍ତ୍ତି ମହିମା କିଏ କହିପାରିବ ତ ।
ସେହି ପ୍ରଭୁଙ୍କର ଆବିର୍ଭାବ ତିରୋଭାବ
କୌଣସି କାରଣ ଯୋଗେ ହୁଅଇ ସମ୍ଭବ ।

Digitized by srujanika@gmail.com

ସେ ପ୍ରଭୁ ହୁଅନ୍ତି ପ୍ରତିଯୁଗେ ଆବିର୍ଭୂତ
ସାଧୁଜନେ ଅନୁଗ୍ରହ କରବା ନିମିତ୍ତ ।
ମତ୍ସ୍ୟ କୂର୍ମ ଆଦି ନାନାବିଧ ଅବତାରେ
ସେ ପ୍ରଭୁ ଜନ୍ମନ୍ତି ରହି ଅବନୀ ମଣ୍ଡଳେ ।
ଯେତେବେଳେ ସେ କାରଣ ହୁଅଇ ବିଲୟ
ଅନ୍ତର ହୋଇ ଚଳନ୍ତି ସ୍ୱକୀୟ ଆଳୟ ।
ସେହି କରୁଣା ସାଗର ପରମ ଈଶ୍ୱର
ବିନା କାରଣେ ଏ କ୍ଷେତ୍ରେ କରନ୍ତି ବିହାର ।
ଶ୍ୱେତଦ୍ୱୀପେ ରହି ସେହି ପ୍ରଭୁ ଭଗବାନ
ଅବତୀର୍ଣ୍ଣ ହୁଅନ୍ତି ଯେପରି ଅନ୍ୟସ୍ଥାନ ।
ସେହିପରି ଏହିକ୍ଷେତ୍ରେ ରହି ଭଗବାନ
ପୁଷ୍କରାଦି ତୀର୍ଥେ ହୋଇଛନ୍ତି ଅବତୀର୍ଣ୍ଣ ।
ବୃକ୍ଷ ମୂଳ ଚେର ଯେଉଁପରି ବିକଶିତ
ସେହିପରି ପ୍ରଭୁ ଅନ୍ୟସ୍ଥାନେ ପ୍ରକାଶିତ ।
ଭିନ୍ନ ଭିନ୍ନ ତୀର୍ଥଦେଶ ଆୟତନ କ୍ଷେତ୍ର
ସେହି ପ୍ରଭୁଙ୍କର ଅବତାର ଅଂଶମାତ୍ର ।
ଏହି ବିଷୟେ ସଂଶୟ ନ କର ନରେଶ
ଏହି କ୍ଷେତ୍ର ଧାମ ଭଗବାନଙ୍କ ସଦୃଶ ।
ସ୍ୱକୀୟ ଦେହ ସ୍ୱରୂପ ଏହି କ୍ଷେତ୍ର ଧାମ
ତ୍ୟାଗ ନ କରନ୍ତି କେଉଁକାଳେ ପଞ୍ଚାନନ ।
କେବଳ ଯେ ଏହିକଥା କହୁନାହିଁ ମୁହିଁ
ବିସ୍ତୃତ ଭାବେ ଶୁଣିବ ଆହେ ନରସାଇଁ ।
କ୍ଷେତ୍ରକୁ ଦେଖାଇ ଏହା ନାରଦ କହିଲେ
ତହୁଁ ସାଷ୍ଟାଙ୍ଗ ପ୍ରଣାମ ଇନ୍ଦ୍ରଦ୍ୟୁମ୍ନ କଲେ ।
ଦେବ ଜଗନ୍ନାଥ ଏହିସ୍ଥାନେ ଅବସ୍ଥିତ
ଏହା ମନେ କରି ସ୍ତୁତି କଲେ ନରନାଥ ।
ଦେବ ଦେବ ଜଗନ୍ନାଥ ବିପନ୍ନ ଜନର
ବିପତ୍ତି ନାଶନକାରୀ ପ୍ରଭୁ ଦାମୋଦର ।
ପୁଣ୍ଡରୀକାକ୍ଷ ମୁଁ ଭବ ସାଗରେ ନିମଗ୍ନ
ବେଗେ ମୋତେ ରକ୍ଷାକର କମଳଲୋଚନ ।
ତୁମ୍ଭେ ଏକା ଦୁଃଖ ରାଶି ବିନାଶ ତ କର
ତେଣୁ ପରା ତୁମ୍ଭ ନାମ ପରମ ଈଶ୍ୱର ।
କ୍ଷୁଦ୍ରଜନ ସ୍ୱଳ୍ପ ସୁଖ ମନେ ଚିନ୍ତା କରେ
ଆନନ୍ଦ ମନରେ କ୍ଷୁଦ୍ର ଉପାସନା କରେ ।
ଆପଣଙ୍କ ନାମ ମାତ୍ର କରିଲେ କୀର୍ତ୍ତନ
ତ୍ରିତାପ ବିନାଶ ହୋଇଥାଏ ତତକ୍ଷଣ ।
ଯେତେ ଥାଏ ମହାପାପ ବିନଷ୍ଟ ହୁଅଇ
ଯେ ଜନ ଭକ୍ତିରେ ନାମ କୀର୍ତ୍ତନ କରଇ ।
ସାକ୍ଷାତରେ ମୁକ୍ତିଲାଭ କରେ ସେହି ଜନ
ଏହି କଥାରେ ତ ନାହିଁ ସନ୍ଦେହ କାରଣ ।
ଆହେ ପ୍ରଭୁ ଆପଣ ତ କର୍ମର ଅଧୀନ
ଏହିକଥା ମୂଢ଼ଗଣ କରନ୍ତି ବର୍ଣ୍ଣନ ।
କର୍ମ ଆପଣଙ୍କଦ୍ୱାରା ହୁଅଇ ପ୍ରେରିତ
ଏହା ବୁଝିବାକୁ ମୂଢ଼ଜନ ଅସମର୍ଥ ।
ପୂର୍ବକାଳେ ବିପ୍ର ଅଜାମିଳ ନାମେ ଥିଲା
ବର୍ଣ୍ଣାଶ୍ରମ ଯୋଗ୍ୟ କ୍ରିୟା ପରିତ୍ୟାଗ କଲା ।
ଅନୁଦିନ କରେ ସେହି ପାପ ଆଚରଣ
ପାପେ ବୁଡ଼ି ଆପଣଙ୍କୁ କରିଲା ସ୍ମରଣ ।
ଅନ୍ତଃକାଳେ ଯମହସ୍ତେ ହୋଇ ବିମୋହିତ
ମୁକ୍ତିଲାଭ କଲା ସେହି ଏକଥା ତ ସତ୍ୟ ।
ତୁମ୍ଭଙ୍କୁ ଦର୍ଶନ ମାତ୍ରେ ଜୀବମାନଙ୍କର
ସକଳ କାମନା ସିଦ୍ଧି ହୁଏ ଦେବେଶ୍ୱର ।
ଯେଉଁଜନ ଆପଣଙ୍କୁ କରେ ଦରଶନ
ହୃଦୟ ସଂଶୟ ତାର ହୁଅଇ ବିଚ୍ଛିନ୍ନ ।
ଦର୍ଶନରେ ପାପ ପୁଣ୍ୟ ହୋଇଯାଏ କ୍ଷୟ
ଜୀବର ସନ୍ଦେହ ଗ୍ରନ୍ଥି ଫିଟଇ ନିଶ୍ଚୟ ।
ଆହେ ପ୍ରଭୁ ରକ୍ଷାକର୍ତ୍ତା ଅଟନ୍ତି ଆପଣ
ଏ ଦୀନଜନକୁ ବେଗେ କର ପରିତ୍ରାଣ ।
ହେ ଦେବ ମାତୃ ଜଠରେ ଅବସ୍ଥାନ କାଳେ
ଲିପିବଦ୍ଧ କରିଅଛ ଯାହା ମୋ କପାଳେ ।
ତାହା ଭୋଗ କରିବାକୁ ସର୍ବଦା ପ୍ରସ୍ତୁତ
ଏତିକି ମାତ୍ର ପ୍ରାର୍ଥନା ମୋର ଜଗନ୍ନାଥ ।
ଏ ସ୍ଥାନରେ ମନୋହାର ମୂର୍ତ୍ତିରେ ଆପଣ
କାକ ପକ୍ଷୀକୁ ଯେ କରିଦେଲ ମୁକ୍ତିଦାନ ।
ସେ ମୂର୍ତ୍ତି ଚର୍ମ ଚକ୍ଷୁରେ କରିବି ଦର୍ଶନ
ଏହାଭିନ୍ନ ଅନ୍ୟ କିଛି ନାହିଁ ପ୍ରୟୋଜନ ।
ରାଜା ମଧୁସୂଦନଙ୍କୁ କୃତାଞ୍ଜଳି ହୋଇ
ବିବିଧ ପ୍ରକାରେ ସ୍ତବ ଗାନ କଲେ ତହିଁ ।
ପୁନର୍ବାର ଅଶ୍ରୁନେତ୍ରେ କରିଲେ ପ୍ରଣାମ
ଆକାଶବାଣୀ ଶୁଣିଲେ ରାଜା ତତକ୍ଷଣ ।
ହେ ରାଜନ ଆଉ ତୁମ୍ଭେ ଚିନ୍ତା କର ନାହିଁ
ମୋତେ ଦର୍ଶନ କରିବ ଏହିସ୍ଥାନେ ରହି ।
ନାରଦ ମୁନି ତୁମ୍ଭଙ୍କୁ ଯାହା କହିଛନ୍ତି
ଏସ୍ଥାନେ ସେ ଅନୁଷ୍ଠାନ କରନ୍ତୁ ଝଟତି ।
ନାରଦ ମୁନି ପ୍ରଥମେ ଯାହା କହିଥିଲେ
ଆକାଶବାଣୀ ଶ୍ରବଣ ତାହା ହିଁ କରିଲେ ।
ଭଗବାନଙ୍କର ପ୍ରୀତି ସମ୍ପାଦନ ପାଇଁ
ଅଶ୍ୱମେଧ ଯଜ୍ଞେ ଶ୍ରଦ୍ଧା କଲେ ନୃପ ତହିଁ ।
ଆନନ୍ଦରେ ନାରଦଙ୍କୁ କହିଲେ ବଚନ
ଯାହା ପୂର୍ବେ କହିଥିଲେ ବ୍ରହ୍ମାଙ୍କ ନନ୍ଦନ ।

Digitized by srujanika@gmail.com

ଆକାଶବାଣୀରେ ତାହା କରିଲି ଶ୍ରବଣ
ବ୍ରହ୍ମା ବିଷ୍ଣୁଙ୍କ ମଧ୍ୟରେ ନାହିଁ ଭେଦଜ୍ଞାନ ।
ଆପଣ ଅଟନ୍ତି ସେହି ବ୍ରହ୍ମାଙ୍କ ନନ୍ଦନ
ଆପଣଙ୍କ କଥା ବିଷ୍ଣୁ ବଚନ ସମାନ ।
ମଙ୍ଗଳ ସାଧକ ଯେଉଁ ଉପଦେଶ ଦେଲ
ବିଳମ୍ବ ନ କରି ତାହା ପାଳିବି ସକଳ ।
ଉତ୍କଳ ଖଣ୍ଡର ପଞ୍ଚଦଶ ଅଧ୍ୟା ଶେଷ
ଉତ୍କଳ ଭାଷାରେ ଶୁଣି ନରେ ହୁଅ ତୋଷ ।
ଜୟ ମଧୁସୂଦନ ଶ୍ରୀକୃଷ୍ଣ ବାସୁଦେବ
ଜନାର୍ଦ୍ଦନ ଚାରି ନାମ ଜିହ୍ୱା ରଟୁଥିବ ।
ନୀଳାଦ୍ରୀଶ ପାଦପଦ୍ମ ମଧୁ କରି ପାନ
ଆନନ୍ଦେ ରସନା ନାମ କରିବ କୀର୍ତ୍ତନ ।
ଅନ୍ତିମ କାଳରେ ପ୍ରଭୁ ଦରଶନ ଦେବ
ଦ୍ୱିଜ ହରିହର ମନୋବାଞ୍ଛା ପୂର୍ଣ୍ଣ ହେବ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ଇନ୍ଦ୍ରଦ୍ୟୁମ୍ନ ରାଜା ନୀଳାଚଳ ଦର୍ଶନେ
ନାମ ପଞ୍ଚଦଶୋଽଧ୍ୟାୟଃ ।

❑❑

## ଷୋଡ଼ଶ ଅଧ୍ୟାୟ

ଜୈମିନି କହୁଅଛନ୍ତି ନାରଦ ମହର୍ଷି
ନରପତିଙ୍କୁ କହିଲେ ବହୁ ପରଶଂସି ।
ହେ ନୃପ ତୁମ୍ଭର ମନ ଯଜ୍ଞେ ଆସକତ
ଶ୍ରଦ୍ଧା ବଢ଼ିଅଛି ଯେଣୁ ତେଣୁ ଆମ୍ଭ ପ୍ରୀତ ।
ନରପାଳ କାର୍ଯ୍ୟେ ଧୂରନ୍ଧର ଯେଉଁ ବ୍ୟକ୍ତି
ସେ ବ୍ୟକ୍ତିକୁ ଦେବଗଣ ସାହାଯ୍ୟ କରନ୍ତି ।
ଏ ବିଷୟରେ ପ୍ରମାଣ ଅଟନ୍ତି ଆପଣ
ଯେଣୁ ତୁମ୍ଭର ସହାୟ ଚତୁର ବଦନ ।
ସକଳେ ଆସ ଏ ସ୍ଥାନୁ କରିବା ଗମନ
ଯିବା ନୀଳକଣ୍ଠେଶ୍ୱର ଦେବ ସନ୍ନିଧ୍ୟାନ ।
ସେ ସ୍ଥାନରେ ମହାଦେବଙ୍କର ସମ୍ମୁଖରେ
ଯେ ସର୍ବ ରାକ୍ଷସ ନାଶେ ବିଘ୍ନ ଦୂର କରେ ।
ସେହି ନୃସିଂହ ଦେବଙ୍କୁ ପଶ୍ଚିମ ମୁଖରେ
ସ୍ଥାପନ କରିବ ରାଜା ହରଷ ନମରେ ।
ଏସ୍ଥାନେ ମାଧବ ହୋଇଛନ୍ତି ଅନ୍ତର୍ଦ୍ଧାନ
ନରସିଂହ ମୂର୍ତ୍ତି ପ୍ରତ୍ୟକ୍ଷରେ ବିଦ୍ୟମାନ ।
ନୃସିଂହଙ୍କ ସମୀପରେ ଯାଗ ଅନୁଷ୍ଠାନ
କଲେ ତୁମ୍ଭ ମନୋରଥ ହୋଇଯିବ ପୂର୍ଣ୍ଣ ।
ଅତଏବ ତୁମ୍ଭେ ଆଗ ସେ ସ୍ଥାନକୁ ଯାଅ
ପ୍ରସ୍ତୁତ କରିବ ତହିଁ ଏକ ଦେବ ଗୃହ ।
ନୀଳକଣ୍ଠଙ୍କ ଦକ୍ଷିଣେ ଚାରିଶତ ହସ୍ତ
ଦୂରେ ରହିଛି ଚନ୍ଦନ ଦ୍ରୁମ ଅବସ୍ଥିତ ।
ସେ ବୃକ୍ଷ ପଶ୍ଚିମ ଦିଗେ ଏହି ଦେବଙ୍କର
କ୍ଷେତ୍ର ପ୍ରସ୍ତୁତ କରିବ ଆହେ ନରେଶ୍ୱର ।
ସହସ୍ରାଶ୍ୱମେଧ ଯଜ୍ଞ କର ଆୟୋଜନ
ଏହିସ୍ଥାନେ ରହିଅଛୁ ଆମ୍ଭେ ପାଞ୍ଚଦିନ ।
ଅନନ୍ତ ଜ୍ୟୋତିଃ ସ୍ୱରୂପୀ ନରସିଂହ ଦେବ
ତାହାଙ୍କୁ ସେ ସ୍ଥାନେ ଯାଇଁ ପୂଜା କରୁଥିବ ।
ଏକ ପ୍ରଦୀପରୁ ଅନ୍ୟ ଦୀପ ଲଗାଇଲେ
ଯେଉଁପରି ଶୋଭା ଦେଖାଯାଏ ସେ କାଳରେ ।
ସେପରି ପ୍ରାଣ ପ୍ରତିଷ୍ଠା ପ୍ରତିମାକୁ କଲେ
ଇନ୍ଦ୍ରୟାଦି ଶୋଭା ପାଏ ଜଡ଼ ପ୍ରତିମାରେ ।
ନରପତି ନାରଦଙ୍କ ବଚନ ଶୁଣିଲେ
ଚନ୍ଦନ ଦ୍ରୁମ ସମୀପେ ଉପସ୍ଥିତ ହେଲେ ।
ସେ ସ୍ଥାନେ ଦେଖିଲେ ଶିଳ୍ପବିଦ୍ୟାରେ ପଣ୍ଡିତ
ନାରଦଙ୍କ ଆଜ୍ଞାକ୍ରମେ ବିଶ୍ୱକର୍ମା ପୁତ୍ର ।
ମନୁଷ୍ୟ ରୂପରେ ହସ୍ତେ ଧରି ଶସ୍ତ୍ର ସୂତ୍ର
ଅବସ୍ଥାନ କରି ରହିଛନ୍ତି ସେ ସ୍ଥାନେ ତ ।
ବିଶ୍ୱକର୍ମାଙ୍କର ପୁତ୍ର ଯୋଡ଼ି ବେନି ହସ୍ତ
ରାଜନ ସମୀପେ ଆସି ହେଲେ ଉପସ୍ଥିତ ।
କହିଲେ ମୁଁ ଶିଳ୍ପ ଶାସ୍ତ୍ର ବିଦ୍ୟାରେ ନିପୁଣ
ନୃସିଂହ ଦେବ ମନ୍ଦିର କରିବି ନିର୍ମାଣ ।
ନରପତି ହସି ହସି କହିଲେ ବଚନ
ଆପଣ ନୁହନ୍ତି ଶିଳ୍ପ ବ୍ୟବସାୟୀ ଜନ ।
ଶିଳ୍ପ ଶାସ୍ତ୍ରକୁ ତ କରିଛନ୍ତି ପ୍ରଣୟନ
ନାରଦ ମୁନିଙ୍କ ବାକ୍ୟ ଅଟଇ ପ୍ରମାଣ ।
ଆପଣ ତ ବିଶ୍ୱାକର୍ମାଙ୍କର ଶ୍ରେଷ୍ଠ ପୁତ୍ର
ନିର୍ଜ୍ଜନ ଅରଣ୍ୟେ ଆମ୍ଭେ ଅଟୁ ଅଭ୍ୟାଗତ ।
ଦେବ ଶିଳ୍ପୀ ଆପଣଙ୍କ ସଙ୍ଗେ ଏ ସମ୍ବନ୍ଧ
ଘଟିଅଛି ନିଶ୍ଚୟ ତ କାର୍ଯ୍ୟ ଦେବ ସିଦ୍ଧ ।
ଅପରିମିତ ତେଜସ୍ୱୀ ବିଷ୍ଣୁ ଦେବଙ୍କର
ଉପାସକ ଅଟନ୍ତି ଯେ ସେହି ମୁନିବର ।
ସେ ନାରଦ ମୁନି କଲେ ମନରେ ସ୍ମରଣ
ତେଣୁ ଆପଣ ଏ ସ୍ଥାନେ କଲେ ଆଗମନ ।
ନୃସିଂହ ପ୍ରତିମା ମୁନି ଘେନିଣ ସଙ୍ଗରେ
ଉପସ୍ଥିତ ହେବ ଏଥି କେତେ ଦିନାନ୍ତରେ ।
ନରସିଂହ ଦେବଙ୍କର ପ୍ରାସାଦ ନିର୍ମାଣ
ପ୍ରାଚୀର ତୋରଣାସହ କରନ୍ତୁ ଆପଣ ।
ଉତ୍ତମ ରୂପରେ ପଶ୍ଚିମକୁ ଦ୍ୱାର କରି
ସତର ନିର୍ମାଣ କର ଅତି ଯତ୍ନ କରି ।

Digitized by srujanika@gmail.com

ଶିଳ୍ପୀର ସମ୍ମାନ ଯଥା ବିଧି ନରନାଥ
ଦେଇ ମନ୍ଦିର ନିର୍ମାଣେ କରିଲେ ନିଯୁକ୍ତ ।
ବହୁ ଧନ ବ୍ୟୟ କଲେ ଶିଳା ସଂଗ୍ରହରେ
ଭୃତ୍ୟଗଣଙ୍କୁ ସେ ସ୍ଥାନେ ନିଯୁକ୍ତ କରିଲେ ।
ସେହି ଦିବ୍ୟ ଶିଳ୍ପୀ କହେ ମହିମା ପ୍ରକାଶ
ମନ୍ଦିର ନିର୍ମାଣ କାର୍ଯ୍ୟ ଚାରିଦିନେ ଶେଷ ।
ପଞ୍ଚମ ଦିବସେ ଆସି ହେଲା ପ୍ରାତଃକାଳ
ନିତ୍ୟ କୃତ୍ୟ ସମାପନ କଲେ ନରପାଳ ।
ପ୍ରତିଷ୍ଠା ଦ୍ରବ୍ୟ ସକଳ କଲେ ଆୟୋଜନ
ପ୍ରତୀକ୍ଷା କଲେ ନାରଦଙ୍କର ଆଗମନ ।
ଏ ସମୟେ ଆକାଶରେ ବାଦ୍ୟ ଧ୍ୱନି ହେଲା
ଶଙ୍ଖ ମୃଦଙ୍ଗ ମୁରଜ ବାଦ୍ୟାଦି ବାଜିଲା ।
ମଙ୍ଗଳ ଗୀତିକା ଧ୍ୱନି ହସ୍ତୀଙ୍କ ଗର୍ଜନ
ପୁନଃ ପୁନଃ ଜୟ ଧ୍ୱନି କରିଲେ ଶ୍ରବଣ ।
ଇନ୍ଦ୍ରଦ୍ୟୁମ୍ନ ସଙ୍ଗେ ଯେତେ ଥିଲେ ରାଜାଗଣ
ବୈଷ୍ଣବ ସମୂହ ଆଉ ଶ୍ରୋତ୍ରିୟ ବ୍ରାହ୍ମଣ ।
ସକଳେ ବିସ୍ମୟାପନ୍ନ ହେଲେ ତତକ୍ଷଣ
କେଉଁ ସ୍ଥାନରୁ ଏ ଶବ୍ଦ ହୁଏ ଉତପନ୍ନ ।
ଆଶ୍ରୟ ଶୂନ୍ୟ ଏ ଶବ୍ଦ ଅଦ୍‌ଭୂତ ଅଟଇ
ତର୍କଦ୍ୱାରା ସ୍ଥିର କଲେ ଯେତେ ଥିଲେ ତହିଁ ।
ଏ ସମୟେ ଦକ୍ଷିଣରୁ ବହିଲା ପବନ
ଆକାଶରୁ ପୁଷ୍ପ ବୃଷ୍ଟି ହେଲା ବରଷଣ ।
ପୁଷ୍ପ ସୌରଭେ ଭ୍ରମର କରନ୍ତି ଗୁଞ୍ଜନ
ଭାଗୀରଥି ଜଳେ ସିକ୍ତ ହେଲା ସେହି ସ୍ଥାନ
ବ୍ରହ୍ମାଙ୍କ ପୁତ୍ର ନାରଦ ତପ ପ୍ରଭାବରେ
ଏକ ମନୋରମ ରଥ ଉତ୍ପନ୍ନ କରିଲେ ।
ନରସିଂହ ଦେବଙ୍କର ସୁନ୍ଦର ପ୍ରତିମା
ରଥେ ଆରୋହଣ କରାଇଲେ ମହାତମା ।
ପ୍ରତିମାର ବେନିପାର୍ଶ୍ୱେ ଦିବ୍ୟ ନାରୀଗଣ
ଆନନ୍ଦେ ଢାଳନ୍ତି ରତ୍ନ ଚାମର ବ୍ୟଞ୍ଜନ ।
ନରସିଂହ ମୂର୍ତ୍ତି ନାନାବିଧ ଅଳଂକାରେ
ବିଭୂଷିତ ଗଳେ ରତ୍ନମାଳା ଶୋଭା କରେ ।
କଟୀରେ ଦିବ୍ୟ ବସନ ଦିବ୍ୟ ଗନ୍ଧ ଦେହ
ତେଜଃ ପୁଞ୍ଜେ ପରିବ୍ୟାପ୍ତ ମୂର୍ତ୍ତି ନରସିଂହ ।
ଦୂର ଦେଶରୁ ମୂରତି କରିଲେ ଦର୍ଶନ
ଅତ୍ୟନ୍ତ ଆନନ୍ଦେ ହୃଦ ହୋଇଗଲା ପୂର୍ଣ୍ଣ ।
ବିଶ୍ୱକର୍ମା ବିନିର୍ମିତ ସୁନ୍ଦର ପ୍ରତିମା
ସଙ୍ଗେ ଘେନି ଉପସ୍ଥିତ ନାରଦ ମହାତ୍ମା ।
ଏହା ଦେଖି ତହିଁ ସର୍ବେ ଆନନ୍ଦିତ ହେଲେ
ରାଜା ରାଜ ଅନୁଗତ ଯେତେ ଜନ ଥିଲେ ।
ସକଳେ କହନ୍ତି ଭଗବାନ ଅନ୍ତର୍ଦ୍ଧାନ
ହୋଇଥିଲେ ନାରଦ ଯେ କଲେ ଆନୟନ ।
ଏହାକହି ଆପଣାଙ୍କୁ କୃତାର୍ଥ ମଣିଲେ
ନାରଦ ମୁନିଙ୍କୁ ବହୁ ପ୍ରଶଂସା କରିଲେ ।
ସେ ପ୍ରତିମା ନିକଟେ ହେଲେ ଉପସ୍ଥିତ
ନରସିଂହ ମୂର୍ତ୍ତି ବୋଲି କଲେ ନିରୂପିତ ।
ଆଦ୍ୟ ମୂର୍ତ୍ତି ନରସିଂହ ଦେବ ଏ ପ୍ରତିମା
ଆନନ୍ଦିତ ହେଲେ ଇନ୍ଦ୍ରଦ୍ୟୁମ୍ନ ମହାତମା ।
ନରସିଂହ ଦେବଙ୍କୁ ଯେ କଲେ ପ୍ରଦକ୍ଷିଣ
ଭୂମିରେ ମସ୍ତକ ରଖି କରିଲେ ପ୍ରଣାମ ।
ଅନନ୍ତର ରାଜାଙ୍କର ଅନୁମତି ନେଇ
ଅତିଶୟ ଶ୍ରଦ୍ଧାରେ ଯେ ନାରଦ ଗୋସାଇଁ ।
ଶୁଭ ଲକ୍ଷଣରେ ଯୁକ୍ତ ନରସିଂହ ମୂର୍ତ୍ତି
ରତ୍ନ ସିଂହାସନେ ନେଇ ସ୍ଥାପିଲେ ଝଟତି ।
ଦେବସେବା ଯୋଗ୍ୟ ଉପକରଣ ସହିତ
ସେବାରେ ଦୁଇ ବ୍ରାହ୍ମଣ କରିଲେ ନିଯୁକ୍ତ ।
ବୈଷ୍ଣବ ବ୍ରାହ୍ମଣଗଣ ରାଜା ଇନ୍ଦ୍ରଦ୍ୟୁମ୍ନ
ନାରଦ ମୁନି ସହିତ ସର୍ବେ ତତକ୍ଷଣ ।
ନୃସିଂହ ମୂର୍ତ୍ତି ସମ୍ମୁଖେ ପରମ ଆଦରେ
ବେଦୋପନିଷଦ ସ୍ତୋତ୍ର ସ୍ତବ ପାଠ କଲେ ।
ହେ ଦେବ ନୃସିଂହ ଆପଣ ତ ଏକରୂପ
ତଥାପି ତ ହୋଇଅଛ ବହୁବିଧ ରୂପ ।
ଯେଉଁପରି ସ୍ଥୂଳରୂପୀ ଆପଣ ଅଟନ୍ତି
ସେହିପରି ଅଣୁବତ ଅତି ସୂକ୍ଷ୍ମ ମୂର୍ତ୍ତି ।
ଆପଣ ଯେ ଆକାଶରୁ ଅଟନ୍ତି ଅତୀତ
ଆଉ ମଧ୍ୟ ଆକାଶ ରୂପରେ ଅବସ୍ଥିତ ।
ଆକାଶ ସଦୃଶ ସର୍ବବ୍ୟାପୀ ତ ଅଟନ୍ତି
ନିଜେ ଆକାଶକୁ ଉତପତ୍ତି କରିଛନ୍ତି ।
ଦିବ୍ୟ ସିଂହରୂପୀ କୋଟି ସୂର୍ଯ୍ୟ ତେଜସମ
ସର୍ବଦା ନିକଟେ କରିଛନ୍ତି ଅବସ୍ଥାନ ।
ଅପୁଣ୍ୟବନ୍ତ ଜନର ଦୂରେ ଅବସ୍ଥିତ
ଅଳ୍ପ ସାଧନାରେ ନୁହନ୍ତି ସେ ସନ୍ନିହିତ ।
ଆପଣ ଯେ ଜ୍ଞେୟ ଜ୍ଞାନ ସ୍ୱରୂପେ ଅଟନ୍ତି
ଏ ଦୁଃଖ ସାଗରୁ ପାରିକର ଲକ୍ଷ୍ମୀପତି ।
ଜ୍ଞେୟ ବସ୍ତୁଦ୍ୱାରା ଜ୍ଞେୟ ହୋଇ ଜ୍ଞାନ ଗମ୍ୟ
ତଥାପି ତ ଆପଣ ଯେ ଅଟନ୍ତି ଅଗମ୍ୟ ।
ଆପଣ ଯେ ମାୟାତୀତ ମାୟା ବିମୋହିତ
ଜନମାନଙ୍କର ଅନୁମାନ ଅନୁମିତ ।
ସକଳର ଆଦି ସ୍ରଷ୍ଟାରୂପେ ବିଦ୍ୟମାନ
ଅନୁମନ୍ତା ପାଳୟିତା ସଂହର୍ତ୍ତା ଅପାଣ ।

Digitized by srujanika@gmail.com

ବିଶ୍ୱସାକ୍ଷୀ ଆପଣଙ୍କୁ କରୁ ନମସ୍କାର
ଯେଣୁ ଏକମାତ୍ର ହେତୁ ଏ ଦୁଃଖ ଧ୍ୱଂସର ।
ସଂସାର ବନ୍ଧ ଛେଦନ କର୍ତ୍ତା ଯେ ଆପଣ
କାରଣାତୀତ ସନ୍ଦେହ କରନ୍ତି ମୋଚନ ।
ସକଳର ଅଗ୍ରଜାତ ଜ୍ୟୋତି ରୂପ ଧରି
ଜ୍ଞାନରୂପ ସ୍ୱପ୍ରକାଶ ରୂପ ଅଟ ହରି ।
ବ୍ୟୁହକାରେ ଏ ଜଗତ କରିଛ ନିର୍ମାଣ
ପ୍ରଭୋ ! ଆପଣଙ୍କ ଚରଣରେ ନମୋନମଃ ।
ଆପଣଙ୍କ ପାଦପଦ୍ମେ ଭକ୍ତି ଧର୍ମ ଅର୍ଥ
କାମମୋକ୍ଷ ଆଦି ରହିଅଛି ପୁଞ୍ଜିଭୂତ ।
ହେ ସ୍ୱାମି ! ଆମ୍ଭଙ୍କୁ ସେହି ପରମ ଭକତି
ପ୍ରଦାନ କରନ୍ତୁ ଦୟା କରିଣ ଝଟତି ।
ଯେଉଁମାନେ ଆପଣଙ୍କ ପ୍ରତି ଭକ୍ତିଶୂନ୍ୟ
ଶ୍ରୌତ ସ୍ମାର୍ତ୍ତ କର୍ମ କରିଥାନ୍ତି ଆଚରଣ ।
ସେ କର୍ମ ଯନ୍ତ୍ରଣା ରୂପ ଅଟେ ତାହାଙ୍କର
ପାରିହୋଇ ନ ପାରନ୍ତି ସଂସାର ସାଗର ।
ହେ ଦେବ ! ତୁମ୍ଭର ପାଦ ଅଟଇ ଅନନ୍ତ
ଅସଂଖ୍ୟ ବାହୁ ଅସଂଖ୍ୟ କର୍ଣ୍ଣ ଆଉ ନେତ୍ର ।
ହେ ପ୍ରଭୁ ଦିଗ ସମୂହ ଅଟଇ ବସନ
ଚନ୍ଦ୍ରସୂର୍ଯ୍ୟ ରୂପ କୁଣ୍ଡଳରେ ଶୋଭାକର୍ଣ୍ଣ ।
ନକ୍ଷତ୍ରମାଳା କଣ୍ଠରେ ଅତି ମନୋହର
ଅଦ୍ଭୁତ ନୃସିଂହ ମୂର୍ତ୍ତି ଦିଶଇ ସୁନ୍ଦର ।
ଭକ୍ତ ଗଣଙ୍କର ମନୋବାଞ୍ଛା ପୂର୍ଣ୍ଣ କର
ଶରଣ ଯାଉଛୁ ଆମ୍ଭେ ଏ ଦିବ୍ୟ ମୂର୍ତ୍ତିର ।
ପାଦପଦ୍ମ ବ୍ରହ୍ମାଙ୍କର କିରୀଟେ ଶୋଭଇ
ସକଳ ପ୍ରଣୀ ମସ୍ତକ ପାଦରେ ଲୋଟଇ ।
ସେ ପାଦପଦ୍ମକୁ ଆମ୍ଭେ କରୁଛୁ ପ୍ରଣାମ
ଏ ନୃସିଂହ ମୂର୍ତ୍ତି ପାପୀମାନଙ୍କୁ ଭୀଷଣ ।
ପାପ ସମୂହକୁ ତୁମ୍ଭେ ନିୟମିତ କର
ପଦାଶ୍ରିତ ଜନଙ୍କର ଦୟାର ସାଗର ।
ନୃସିଂହ ମୂର୍ତ୍ତିର ପାଦପଦ୍ମ ସଂଘଟନ
ହେବାକୁ ବ୍ରହ୍ମାଣ୍ଡ ଭାଣ୍ଡ ହୁଅଇ ଭଗନ ।
ଆପଣଙ୍କର ମୂର୍ତ୍ତିକୁ କରୁଛୁ ପ୍ରଣାମ
କ୍ଷମାକର ଯେତେ ଦୋଷ ଅଛି ବିଦ୍ୟାମନ ।
ଆପଣା ଜଟା ସମୂହ କମ୍ପନ କରିଲେ
ମେଘମାଳା ଅପସୃତ ହୋଇଯାଏ ଦୂରେ ।
କିନ୍ତୁ ପ୍ରକୃତରେ ପାପକାରୀ ଯେତେ ଜନ
ସେମାନଙ୍କ ପାପ ଦୂରେ କରେ ପଳାୟନ ।
ଅଟ୍ଟହାସ୍ୟ କଲେ ମେଘ ଧ୍ୱନି ପରାଭୂତ
ତ୍ରୈଲୋକ୍ୟ ଯାର ହୃଦୟ ମଧ୍ୟେ ଅବସ୍ଥିତ ।
ସେହି ନରସିଂହଙ୍କୁ ଯେ କରୁଛୁ ପ୍ରଣାମ
ହେ ଦେବ ! ଘେନନ୍ତୁ ବାରମ୍ବାର ମୋ ପ୍ରଣାମ ।
ହେ ଦୀନ ଦୟାଳୁ ଆମ୍ଭେ ଅଟୁ ହେ ଅନାଥ
ରକ୍ଷା କରିବାକୁ ଆଉ ହେବ କେ ସମର୍ଥ ।
ହେ ମୁରାରି ଆପଣଙ୍କୁ କରିଲି ସାକ୍ଷାତ
ଏ ସଂସାର କାରାଗାରୁ ହୋଇବୁ ମୁକତ ।
ହେ ପ୍ରଭୁ ! ସହସ୍ର ଅଶ୍ୱମେଧ ଯାଗ କରି
ଚର୍ମ ନେତ୍ରରେ ଦର୍ଶନ ପାଇବୁ ଯେପରି ।
ସେହିପରି ଅନୁଗ୍ରହ ତୁମ୍ଭ ବେଗେ କର
କୋଟିଜନ୍ମ ପାପରାଶି ହୋଇଯିବ ଦୂର ।
ଯେ ଜନ ଆପଣଙ୍କର ହୁଅଇ ଆଶ୍ରିତ
ତୁମ୍ଭ ଅଦ୍ଭୁତ ମୂର୍ତ୍ତିର ସ୍ତବ କରେ ନିତ୍ୟ ।
ଧର୍ମ ଅର୍ଥ କାମକୁ ସେ ତୁଚ୍ଛ ଜ୍ଞାନ କରେ
ମୁକତିର ଯୋଗ୍ୟ ପାତ୍ର ହୁଏ ଏ ସଂସାରେ ।
ନରପତି ଏହିରୂପେ ହୃଷ୍ଟଚିତ୍ତ ହେଲେ
ବାରମ୍ବାର ଦଣ୍ଡବତ ଭୂତଳରେ କଲେ ।
ଦିବ୍ୟ ନୃସିଂହ ମୂର୍ତ୍ତିର ସ୍ତବ ଗାନ କଲେ
ଜୈମିନି ମୁନି ଯେ ଦ୍ୱିଜଗଣଙ୍କୁ କହିଲେ ।
ଇନ୍ଦ୍ରଦ୍ୟୁମ୍ନଙ୍କୁ ଯେ ବ୍ରହ୍ମା ଅନୁଗ୍ରହ କଲେ
ନରସିଂହ କ୍ଷେତ୍ର ଲୋକ ହିତେ ନିର୍ମାଣିଲେ ।
ଆହେ ବିପ୍ରଗଣ ! ଶମ୍ଭୁସହ ଅବସ୍ଥିତ
ନୃସିଂହ ମୂର୍ତ୍ତି ଦର୍ଶନ କଲେ ପ୍ରଣିପାତ ।
ଦେବରୂପ ବନ୍ଧନରୁ ହୁଅଇ ମୁକତ
ସଂଶୟ ଏଥିରେ କରନାହିଁ କଦାଚିତ ।
ଯେ ଜନ ମନରେ ଯାହା ବାଞ୍ଛା କରିଥାଏ
ତାହାର ସେ ମନୋବାଞ୍ଛା ବେଗେ ପୂର୍ଣ୍ଣ ହୁଏ ।
ଯେଉଁଜନ ଏହି ସ୍ତବ ପଢ଼େ ପ୍ରତିଦିନ
ସର୍ବାଭୀଷ୍ଟ ପୂର୍ଣ୍ଣ ହୁଏ ଯାଏ ମୋକ୍ଷଧାମ ।
ମହର୍ଷି ନାରଦ ଜ୍ୟେଷ୍ଠ ଶୁକ୍ଳ ଦ୍ୱାଦଶୀରେ
ସ୍ୱାତୀ ନକ୍ଷତ୍ରରେ ଏହି ଶ୍ରୀକ୍ଷେତ୍ର ଧାମରେ ।
ଦିବ୍ୟ ନୃସିଂହଙ୍କୁ ଆଣି କଲେ ପ୍ରତିଷ୍ଠିତ
ଯେ ଜନ ଏ କ୍ଷେତ୍ର ଧାମେ ହୋଇ ଉପସ୍ଥିତ ।
ଚର୍ମ ନେତ୍ରେ ନୃସିଂହଙ୍କୁ କରଇ ସାକ୍ଷାତ
ସହସ୍ରାଶ୍ୱମେଧ ଯାଗଫଳ ହୁଏ ପ୍ରାପ୍ତ ।
ଯେଉଁଜନ ଗାଭୀ ଦୁଗ୍ଧ ଅବା ପଞ୍ଚାମୃତ
ନାରିକେଳୋଦକ ଗନ୍ଧବାରି କରି ଯୁକ୍ତ ।
ମହାସିଂହ ରୂପୀ ଦେବଙ୍କର କରେ ସ୍ନାନ
ପାୟସାଦି ଉପଚାରେ କରଇ ପୂଜନ ।
ସୁଶୋଭନ ଜବାପୁଷ୍ପ ମାଳା ଗନ୍ଧମାଲ୍ୟ
ଧୂପ ଦୀପ ସହିତରେ କର୍ପୂର ତାମ୍ବୂଳ ।

Digitized by srujanika@gmail.com

ମନୋହର ସ୍ୱରେ କରେ ସ୍ତୁତି ବାକ୍ୟ ଗାନ
ଅତି ଉଚ୍ଚେ ଶବ୍ଦ ଜୟ କରେ ଉଚ୍ଚାରଣ ।
ପ୍ରଦକ୍ଷିଣ ପ୍ରଣାମି ଯେ ଯଥାଶକ୍ତି ଦାନ
ବିପ୍ରଗଣଙ୍କର କରେ ସନ୍ତୋଷ ବିଧାନ ।
ବିପ୍ର ସନ୍ତୋଷ ହୋଇଲେ ଭଗବାନ ତୁଷ୍ଟ
ସର୍ବୋତ୍ତମ ବ୍ରହ୍ମ ଲୋକ ହୁଅଇ ନିକଟ ।
ନରସିଂହ ଦେବଙ୍କର ଆଦ୍ୟ ଅବତାର
ବୈଶାଖ ଶୁକ୍ଳପକ୍ଷ ସେଦିନ ଶନିବାର ।
ଚତୁର୍ଦ୍ଦଶୀ ତିଥି ସ୍ୱାତୀ ନକ୍ଷତ୍ର ଯୋଗରେ
ଆବିର୍ଭୂତ ହେଲେ ଦେବ ପ୍ରଦୋଷ କାଳରେ ।
ଏଦିନ ସଂଯତ ଚିତ୍ତେ ଯଥା ବିଧାନରେ
ଯେ ଜନ ନୃସିଂହ ଦେବଙ୍କର ପୂଜା କରେ ।
ସହସ୍ର କୋଟି ଜନ୍ମର ପାପ ଯେତେ ଥାଏ
ତତକାଳେ ତୁଳାରାଶି ତୁଲ୍ୟ ଭସ୍ମ ହୁଏ ।
ଯେ ଜନ ନୃସିଂହ ଦେବ କରଇ ଦର୍ଶନ
ସ୍ପର୍ଶ ଅବା ପ୍ରଦକ୍ଷିଣ ଅଥବା ପ୍ରଣାମ ।
ଭକ୍ତି ସହକାରେ ସ୍ତୋତ୍ର ପାଠ ଅବା କଲେ
ତା ଦେହୁ ପାପ ଆଚାର ମୁକ୍ତି ହୁଏ ଭଲେ ।
ଦେହେ ରୋଗପୀଡ଼ା ଶୋକ ଯେତେ ମନ କ୍ଳେଶ
ଦୂର ହୁଏ ଇଷ୍ଟସିଦ୍ଧି ଲଭଇ ଅବଶ୍ୟ ।
ଅଶ୍ୱମେଧ ଯାଗଫଳ ଲଭେ କିଞ୍ଚିତରେ
ଇଷ୍ଟସିଦ୍ଧି ଲଭେ ନୃସିଂହଙ୍କ ପ୍ରସାଦରେ ।
ଯାଗ ଯଜ୍ଞ ତପସ୍ୟାଦି ଯେତେ ପୁଣ୍ୟ କର୍ମ
କୋଟି କୋଟି ଗୁଣଫଳ କରଇ ପ୍ରଦାନ ।
ସ୍କନ୍ଦ ପୁରାଣ ଉତ୍କଳ ଖଣ୍ଡର ଷୋଡ଼ଶ
ଛାନ୍ଦ ଉତ୍କଳ ଭାଷାରେ ହୋଇଲା ପ୍ରକାଶ ।
ପ୍ରଭୋ ନରସିଂହ ଦେବ ଚରଣେ ଶରଣ
ଦୀନ ହରିହରକୁ ଯେ କର ପରିତ୍ରାଣ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ ନାରଦ
କର୍ତ୍ତୃତ ନୃସିଂହଦେବ ଆନୟନେ
ଇନ୍ଦ୍ରଦ୍ୟୁମ୍ନ ସ୍ତୁତି କରଣେ ନାମ
ଷୋଡ଼ଶୋଽଧ୍ୟାୟଃ ।



## ସପ୍ତଦଶ ଅଧ୍ୟାୟ

ପଚାରନ୍ତି ମୁନିଗଣ ଶୁଣ ତପୋଧନ
ନରସିଂହ ପ୍ରତିଷ୍ଠିତ ହେଲେ କ୍ଷେତ୍ରଧାମ ।
ତଦନ୍ତରେ କି କରିଲେ ରାଜା ଇନ୍ଦ୍ରଦ୍ୟୁମ୍ନ
ଶୁଣିବାକୁ କୌତୁହଳ କରନ୍ତୁ ବର୍ଣ୍ଣନ ।
ଜୈମିନି ମୁନି କହନ୍ତି ଶୁଣ ଋଷିଗଣ
ରାଜା ଦେବତାମାନଙ୍କୁ କଲେ ନିମନ୍ତ୍ରଣ ।
ଷଡ଼ାଙ୍ଗ ସହିତ ଚାରି ବେଦରେ ନିପୁଣ
ସହସ୍ର ସହସ୍ର ବିପ୍ର କରିଲେ ବରଣ ।
ବିଜ୍ଞ ବିଦ୍ୟା ପାରଦର୍ଶୀ ମୀମାଂସା ଶାସ୍ତ୍ରରେ
ନିପୁଣ ସଭାଷ୍ୟ କଳ୍ପ ସୂତ୍ରମାନଙ୍କରେ ।
କର୍ମନିଷ୍ଠ ଋଷିଗଣ ହେଲେ ନିମନ୍ତ୍ରିତ
ଅଷ୍ଟାଦଶ ବିଦ୍ୟା ବିଶାରଦ ଯେ ପଣ୍ଡିତ ।
ସଦାଚାର ପରାୟଣ ସତ୍‌କୁଳ ସମ୍ଭୁତ
ବୈଷ୍ଣବଗଣଙ୍କ ସହ ହେଲେ ନିମନ୍ତ୍ରିତ ।
ଆଉ ବା ଅଧିକ କିସ ତ୍ରୈଲୋକ୍ୟ ମଧ୍ୟରେ
ଯେତେ ରାଜା ଯେତେ ଋଷି ସିଦ୍ଧଗଣ ଥିଲେ ।
ସତ୍‌ଶୂଦ୍ର ବଣିକ ଯେତେ ଦ୍ୱୀପ ଅଧିପତି
ସେମାନଙ୍କୁ ନିମନ୍ତ୍ରଣ କରିଲେ ଝଟତି ।
ସଭାମଣ୍ଡପ ଯେ ସ୍ଥାନେ କରିଲେ ନିର୍ମାଣ
ପ୍ରଶସ୍ତରେ ଦୁଇକ୍ରୋଶ ଅଟେ ପରିମାଣ ।
ସେ ମଣ୍ଡପ ପାଷାଣରେ ହୋଇଛି ନିର୍ମିତ
ସୁଧା ଲିପା ହୋଇ ଦେଖାଯାଏ ଧବଳିତ ।
ସୁଶୋଭିତ ସଭାଗୃହ ରତ୍ନରେ ଭୂଷିତ
କେଉଁସ୍ଥାନେ ହୋଇଅଛି ସୁବର୍ଣ୍ଣ ନିର୍ମିତ ।
କେତେସ୍ଥାନ ସ୍ଫଟିକରେ ରୌପ୍ୟରେ ନିର୍ମିତ
ଇନ୍ଦ୍ରସଭାରୁ ଅଧିକ ଦିଶେ ସୁଶୋଭିତ ।
ସଭା ମଣ୍ଡପରେ ସ୍ତମ୍ଭ ରତ୍ନମୟ ଉଚ୍ଚ
ବସନେ ବେଷ୍ଟିତ ହୋଇ ଦିଶଇ ସୁସଜ୍ଞ ।
ମନୋହର ଚନ୍ଦ୍ରାତପ ଉପରେ ଶୋଭଇ
ଚାମର ବ୍ୟଞ୍ଜନ ଗନ୍ଧମାଲ୍ୟ ଶୋଭା ପାଇ ।
ଯେଉଁରୂପ ଯଜ୍ଞଶାଳା ମରୁତ ରାଜାର
ସେହିରୂପ ହେଲା ଶାଳ ଇନ୍ଦ୍ରଦ୍ୟୁମ୍ନଙ୍କର ।
ବିଶ୍ୱକର୍ମା ଅତିଯତ୍ନେ ନିର୍ମାଣ କରିଲେ
ନରପତି ଶୁଭଦିନ ଶୁଭ ନକ୍ଷତ୍ରରେ ।
ସଭାସଦଗଣଙ୍କର ମର୍ଯ୍ୟାଦାନୁସାରେ
ଯଥାଯୋଗ୍ୟ ଆସନ ଯେ କଳ୍ପନା କରିଲେ ।
ପ୍ରତ୍ୟେକ ରାଜାମାନଙ୍କୁ ଦେଲେ ସିଂହାସନ
ଋଷିମାନଙ୍କ ନିମିତ୍ତ ଅଜିନ ଆସନ ।
ସିଦ୍ଧ ବ୍ରହ୍ମର୍ଷିମାନଙ୍କୁ ଦେଲେ କୁଶାସନ
ସ୍ୱର୍ଣ୍ଣପୀଠ ଦେବଗଣେ କରିଲେ ଅର୍ପଣ ।
ସମ୍ଭ୍ରାନ୍ତ ଜନମାନଙ୍କୁ ଦେଲେ ବରାସନ
ଶଚୀପତିଙ୍କୁ ପ୍ରଥମେ କରିଲେ ପୂଜନ ।
ପୁରୋହିତଙ୍କୁ ବିଧିରେ କରିଲେ ଅର୍ଚ୍ଚନ
ଦିବ୍ୟମାଲ୍ୟ ଗନ୍ଧ ବସ୍ତ୍ର ବିଷ୍ଟର ଆସନ ।

Digitized by srujanika@gmail.com

ଦୀନ ଦୁଃଖୀଜନ ସେ ସ୍ଥାନରେ ଯେତେ ଥିଲେ
ବିନୟରେ ଧନ ଦେଇ ଅର୍ଚ୍ଚନା କରିଲେ ।
ସିଦ୍ଧ ଦେବର୍ଷିଗଣଙ୍କୁ ଇନ୍ଦ୍ରଙ୍କ ସମାନ
ଆସନାଦି ଦେଇ ପୂଜା କଲେ ଇନ୍ଦ୍ରଦ୍ୟୁମ୍ନ ।
ସେ ସଭାରେ ଦ୍ରବ୍ୟାଭାବ କେହି ନ ମଣିଲେ
ଧନାଧିପ କୁବେର ଯେ ବିସ୍ମୟ ହୋଇଲେ ।
ଅନନ୍ତର ଆସିଥିଲେ ଯେତେ ଦେବଗଣ
ବିଭବାନୁସାରେ ସର୍ବେ ହୋଇଲେ ଅର୍ଚ୍ଚିତ ।
ମୁନିଗଣ ବିପ୍ରଗଣ ତହିଁ ଯେତେ ଥିଲେ
ଯଥାବିଧି ପୂଜା ରାଜା ଇନ୍ଦ୍ରଦ୍ୟୁମ୍ନ କଲେ ।
କ୍ଷତ୍ରିୟ ବୈଶ୍ୟମାନଙ୍କୁ ନୀଥାଯୋଗ୍ୟାସନ
ସେ ସଭାରେ ନରପତି କରିଲେ ପ୍ରଦାନ ।
ଆଉ ଯେତେ ଆଗନ୍ତୁକ ଜନ ତହିଁ ଥିଲେ
ସଚିବଦ୍ୱାରା ତାଙ୍କର ପୂଜା କରାଇଲେ ।
ଆନନ୍ଦ ମନରେ ରାଜା କୃତାଞ୍ଜଳି ହୋଇ
ଇନ୍ଦ୍ରଙ୍କ ସମୀପେ ଗଲେ ନାରଦଙ୍କୁ ନେଇ ।
ଉଚ୍ଚସ୍ୱରରେ କହିଲେ ଆହେ ଦେବେଶ୍ୱର
ଆପଣଙ୍କ ପ୍ରସାଦରେ ଏ ଯଜ୍ଞ ମୋହର ।
ସହସ୍ରାଶ୍ୱମେଧ ଯଜ୍ଞ କରିବାକୁ ଇଚ୍ଛା
ପ୍ରସନ୍ନ ହୁଅନ୍ତୁ ପୂର୍ଣ୍ଣ ହେଉ ମନବାଞ୍ଛା ।
ହୟମେଧ ଯଜ୍ଞେ ଯଜ୍ଞ ପୁରୁଷର ପୂଜା
କରିବାକୁ ଇଚ୍ଛା ମୋର ଶୁଣ ଦେବରାଜା ।
ଆପଣ ଯଜ୍ଞ କାର୍ଯ୍ୟରେ ଈଶ୍ୱର ଅଟନ୍ତି
ସହସ୍ରାଶ୍ୱମେଧ ଯଜ୍ଞେ ଦିଅ ଅନୁମତି ।
ତ୍ରୈଲୋକ୍ୟ ମଧ୍ୟରେ ଯେତେ ବାସ କରିଛନ୍ତି
ସର୍ବେ ଆପଣଙ୍କ ଆଜ୍ଞା ପାଳନ କରନ୍ତି ।
ଯେ କାଳେ ସହସ୍ର କ୍ରତୁ ହୋଇବ ସମ୍ପୂର୍ଣ୍ଣ
ସେହି କାଳଯାଏ ସଙ୍ଗେ ଘେନି ଦେବଗଣ ।
ଏ ସଭାରେ ଅବସ୍ଥାନ କରନ୍ତୁ ଆପଣ
ଏ ଜଗତେ ଶତକ୍ରତୁ ଅଟେ ତୁମ୍ଭ ନାମ ।
ସେ ପଦ ନେବାକୁ ଇଚ୍ଛା ନାହିଁ ମନେ ମୋର
ଆପଣ ଜାଣନ୍ତି ମନ କଥା ଲୋକଙ୍କର ।
ଆପଣଙ୍କ ପ୍ରଭୁ ମାଧବ ଯେ ଏହି ସ୍ଥାନେ
ଦେହ ଧରିଥିଲେ ଦେଖି ଅଛନ୍ତି ନୟନେ ।
ଉପାସନା କାଳେ ପ୍ରଭୁ ବାଲୁକା ମଧ୍ୟରେ
ଅନ୍ତର୍ହିତ ହୋଇ ଯାଇଛନ୍ତି ଏ ସ୍ଥାନରେ ।
ପୁନର୍ବାର ପ୍ରଭୁଙ୍କର ହେବାକୁ ପ୍ରକାଶ
ତେଣୁ ଦେବବର ମୋତେ କରିଲେ ଆଦେଶ ।
ସହସ୍ରାଶ୍ୱମେଧ ଯଜ୍ଞ କର ଏହି ସ୍ଥାନ
ଏହିକଥା ନିବେଦନ କରନ୍ତେ ରାଜନ ।
ମହେନ୍ଦ୍ର ପ୍ରଭୃତି ଯେତେ ଥିଲେ ଦେବଗଣ
ଅନ୍ତର୍ଦ୍ଧାନ କାଳ ବାଣୀ କରିଲେ ସ୍ମରଣ ।
ଆନନ୍ଦରେ ରାଜାଙ୍କୁ ଯେ କହିଲେ ବଚନ
ଇନ୍ଦ୍ରଦ୍ୟୁମ୍ନ ପୃଥିବୀରେ ମହାତ୍ମା ଆପଣ ।
ଏକମାତ୍ର ସତ୍ୟବ୍ରତ କର ଆଚରଣ
ତୁମ୍ଭର ଉଦ୍ୟମ ଜାଣୁ ସର୍ବ ଦେବଗଣ ।
ତ୍ରୈଲୋକ୍ୟପାବନ କାର୍ଯ୍ୟେ ହୋଇଛ ସହାୟ
ତୁମ୍ଭଙ୍କୁ ଯେ ପିତାମହ ଅଛନ୍ତି ସଦୟ ।
ଭଗବାନ କହିଥିଲେ ଏ ସ୍ଥାନେ ଆମ୍ଭଙ୍କୁ
ଅନ୍ତର୍ଦ୍ଧାନ ହୋଇଯିବୁ ପାତାଳ ପୁରକୁ ।
ଇନ୍ଦ୍ରଦ୍ୟୁମ୍ନଙ୍କୁ ଯେ ଦୟା କରିବା ନିମିତ୍ତ
ଦାରୁମୟଦେହ ଧରି ହେବେ ପ୍ରକାଶିତ ।
ଆମ୍ଭେମାନେ ଜାଣିଅଛୁ ଏକଥା ନିଶ୍ଚୟ
ଅସନ୍ତୋଷ ନୋହୁ ଆମ୍ଭେ ଆହେ ମହାଶୟ ।
ଯାଗ ଅନୁଷ୍ଠାନ ଅଟେ ଆମ୍ଭର କାମନା
ତୁମ୍ଭର ଏଥିରେ ସ୍ୱାର୍ଥ ନାହିଁ ମହାତମା ।
ନିର୍ବିଘ୍ନରେ କର ତୁମ୍ଭେ ଯଜ୍ଞ ଅନୁଷ୍ଠାନ
ବୈକୁଣ୍ଠ ନାଥ ସନ୍ତୋଷ ହୋଇବେ ଯେସନ ।
ଭଗବାନଙ୍କୁ ପାଇବା ଅତୀବ କଠିନ
ତେଣୁ ଅଶ୍ୱମେଧ ଯାଗ କର ଆୟୋଜନ ।
ଏ କ୍ଷେତ୍ରରେ ଆମ୍ଭେମାନେ ଛାଡ଼ିଦେବୁ ଦେହ
ଆରାଧନା କରିବୁ ଯେ ଧରି ନରଦେହ ।
ଯେହେତୁ ଇହଲୋକରେ ଯଥା ବିଧାନରେ
କର୍ମ କଲେ ସିଦ୍ଧିଲାଭ ହୋଇଥାଏ ଭଲେ ।
ଜୈମିନି କହନ୍ତି ଇନ୍ଦ୍ର ଆଦି ଦେବଗଣ
ସନ୍ତୁଷ୍ଟ ହୋଇ କହିଲେ ନୃପତି ଏସନ ।
ନିରପତି ଯଥାବିଧି ଯଜ୍ଞ ଆରମ୍ଭିଲେ
ସହସ୍ର ଉପଚାରରେ ବିଷ୍ଣୁଙ୍କୁ ପୂଜିଲେ ।
ପିତୃଗଣଙ୍କର ପ୍ରୀତି ସମ୍ପାଦନ ଅର୍ଥେ
ପିତୃ ଶ୍ରାଦ୍ଧ କଲେ ତହିଁ ଅତି ଶ୍ରଦ୍ଧାଚିତ୍ତେ ।
ଅନନ୍ତର ସଭାଗୃହେ ଯେତେ ସମାଗତ
ଯାଜ୍ଞିକ ବ୍ରାହ୍ମଣଗଣ କରି ଅଳଂକୃତ ।
ଇଷ୍ଟଦେବ ବୈକୁଣ୍ଠନାଥଙ୍କ ସମ୍ମୁଖରେ
ନିର୍ଦ୍ଦିଷ୍ଟ ଶୁଭଲଗ୍ନକୁ ପ୍ରତିକ୍ଷା କରିଲେ ।
ସ୍ୱସ୍ତି ବାଚନରେ ଯୋଗ୍ୟକାଳ ଉପସ୍ଥିତ
ହୁଅନ୍ତେ ସସ୍ତ୍ରୀକ ହୋଇ ସେହି ନରନାଥ ।
ବିଶୁଦ୍ଧ ମାଙ୍ଗଳ୍ୟ ବେଶ ଧାରଣ କରିଲେ
ବିଶୁଦ୍ଧାଚାରୀ ବ୍ରାହ୍ମଣଗଣ ସହିତରେ ।
ପୁଣ୍ୟାହଋଦ୍ଧି ଯେ ସ୍ୱସ୍ତିବାଚନ ପଢ଼ିଲେ
ରାଜଯୋଗ୍ୟ ଦ୍ରବ୍ୟେ ଋତ୍ୱିକ୍ ବରଣ କରିଲେ ।

Digitized by srujanika@gmail.com

ସତ୍ୟବ୍ରତ ରାଜାଠାରୁ ପାଇଲେ ବରଣ
ଯଜ୍ଞ କାର୍ଯ୍ୟରେ ନିଯୁକ୍ତ ହେଲେ ଋତ୍ୱିକ୍‌ଗଣ ।
ସପତ୍ନୀକ ରାଜା ଯଜ୍ଞେ ଦୀକ୍ଷିତ କରିଲେ
ଅଗ୍ନି ସଂସ୍ଥାପନ କଲେ ବେଦୀର ଉପରେ ।
ତ୍ରୈଲୋକ୍ୟର ମଙ୍ଗଳକାରକ ସାକ୍ଷାତରେ
ଅଧିକ ତେଜ ଜ୍ୱଳନ୍ତ ବୈଷ୍ଣବ ଅଗ୍ନିରେ ।
ଆହବନୀୟ ବହ୍ନିର କଲେ ପ୍ରଣୟନ
ପ୍ରୋକ୍ଷଣ ଅନୁମନ୍ତ୍ରଣ କଲେ ତତକ୍ଷଣ ।
ଦିଗପାଳମାନଙ୍କର ଅନୁମତି ନେଲେ
ଅଶ୍ୱମେଧ ଯଜ୍ଞେ ଇଷ୍ଟଦେବଙ୍କୁ ତୋଷିଲେ ।
ଏହାପରେ ଅଶ୍ୱମେଧ ଯଜ୍ଞର କାରଣ
ଶୁଭ ଲକ୍ଷଣ ଯେ ଅଶ୍ୱ କରିଲେ ପ୍ରେରଣ ।
ନରପତି ଦୀକ୍ଷା ନେଇ ହୋଇଲେ ମଉନ
ଭୁରୁ ମୃଗ ଚର୍ମାସନେ କଲେ ଅବସ୍ଥାନ ।
ସାକ୍ଷାତରେ ମୃତ୍ୟୁଞ୍ଜୟ ଶିବଙ୍କ ସମାନ
ସଭାରେ ଶୋଭା ପାଇଲେ ରାଜା ତତକ୍ଷଣ ।
ନିମନ୍ତ୍ରିତ ବ୍ୟକ୍ତିଙ୍କର ଭୋଜନ ନିମିତ୍ତ
ଚକ୍ଷୁରେ ଇଙ୍ଗିତ ଦେଲେ ତହିଁ ନରନାଥ ।
ରାଜ ସଚିବ ଭୋଜନ ନିମିତ୍ତ ତକ୍ଷଣ
ଯଥାଯୋଗ୍ୟ ସ୍ଥାନ ପାତ୍ର କଲେ ନିରୂପଣ ।
ଦେବତାଙ୍କୁ ଦେଲେ ରତ୍ନପାତ୍ର ମୂଲ୍ୟବାନ
ମୁନି ବିପ୍ର ଆଉ ଯେତେ ଥିଲେ ରାଜାଗଣ ।
ଏମାନଙ୍କୁ ଦେଲେ ଶୁଦ୍ଧ ସୁବର୍ଣ୍ଣର ପାତ୍ର
କ୍ଷତ୍ରିୟ ବୈଶ୍ୟଙ୍କୁ ଆଣିଦେଲେ ରୌପ୍ୟପାତ୍ର ।
ଶୂଦ୍ରମାନଙ୍କୁ ଯେ କାଂସ୍ୟପାତ୍ରମାନ ଦେଲେ
ପ୍ରତିଦିନ ନୂଆପାତ୍ର ବ୍ୟବସ୍ଥା କରିଲେ ।
ପ୍ରତ୍ୟହ ଭୋଜନ ଶେଷେ ଏ ସକଳ ପାତ୍ର
ଉଚ୍ଛିଷ୍ଟ ପତ୍ର ସମାନ ହୁଏ ପରିତ୍ୟକ୍ତ ।
ଯେ ଯଜ୍ଞ ଉତ୍ସବେ ନିମନ୍ତ୍ରିତ ଯେତେଜନ
ହୋଇଥିଲେ ତାହାଙ୍କର ପୁତ୍ରପୌତ୍ରଗଣ ।
ପାଞ୍ଚଶତ ବର୍ଷଯାଏ ପ୍ରତ୍ୟହ ଭୋଜନ
କରୁଥିଲେ ରାଜାଙ୍କର ପାଇଣ ସମ୍ମାନ ।
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ଶାସନ ବଳରେ
ନିମନ୍ତ୍ରିତଗଣ ଯଜ୍ଞସମାପନ କଲେ ।
କୁଟୁମ୍ବ ବର୍ଗର ନ୍ୟାୟ କଲେ ଅବସ୍ଥାନ
ଆସିଥିଲେ ବହୁଦୂର ଦେଶରୁ ଯେ ଜନ ।
ବହୁବ୍ୟକ୍ତି ତତ୍ତ୍ୱାବଧାନରେ ନିର୍ବିଘ୍ନରେ
ଯାଗ ପୂର୍ଣ୍ଣ ହେବ ନିୟମ ଯେ କରିଥିଲେ ।
ଯେ ଯେଉଁ ଦେଶରୁ କରିଥିଲେ ଆଗମନ
ତାହାଙ୍କର ତତ୍ତ୍ୱ ନେବେ ସେ ଦେଶରାଜନ ।

ଏ ସକଳ ରାଜାଙ୍କର ତତ୍ତ୍ୱ ନେଉଥିଲେ
ନାରଦ ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରାର୍ଥନାନୁସାରେ ।
ଯଜ୍ଞ ସିଦ୍ଧ ଅର୍ଥେ ଇନ୍ଦ୍ର ଆଦି ଦେବଗଣ
ଦେବର୍ଷିଗଣଙ୍କୁ ସେବା କଲେ ଇନ୍ଦ୍ରଦ୍ୟୁମ୍ନ ।
ମର୍ତ୍ତ୍ୟଲୋକେ ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ମନ୍ଦିରେ
ଯେ ଖାଦ୍ୟ ତାହା ଦୁର୍ଲ୍ଲଭ ମନୁଷ୍ୟ ପକ୍ଷରେ ।
ଦେବରାଜ ଇନ୍ଦ୍ର ଆଉ ରାଜା ଇନ୍ଦ୍ରଦ୍ୟୁମ୍ନ
ଦୁହିଁଙ୍କ ମଧ୍ୟରେ ନାହିଁ କିଛି ବ୍ୟବଧାନ ।
କେବଳ ଯେ ଇନ୍ଦ୍ରଦ୍ୟୁମ୍ନ ମର୍ତ୍ତ୍ୟଲୋକେ ରାଜା
ପାର୍ଥକ୍ୟ ଇନ୍ଦ୍ର ଅମରଗଣଙ୍କର ରାଜା ।
ସେ କାଳରେ ରାଜାଙ୍କର ଗୃହେ ପ୍ରତିଦିନ
ଆଦର, ସମ୍ମାନ, ଭୋଜ୍ୟ ସକଳ ନୂତନ ।
ଏହା ଦେଖି ଲୋକେ ବଡ଼ ବିସ୍ମୟ ହୋଇଲେ
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ପ୍ରଶଂସା ଗାଇଲେ ।
ସୁଗନ୍ଧ ପୁଷ୍ପର ମାଳା ପୁଷ୍ପ ପାରିଜାତ
ବିଲେପନ ଦ୍ରବ୍ୟ ଚତୁଃସମେ ହୋଇଯୁକ୍ତ ।
ବିବିଧ ରଙ୍ଗର ଚିତ୍ର କୋମଳ ବସନ
ରତନ ପଲଙ୍କେ ଶଯ୍ୟାଯୁକ୍ତ ଉପାଧାନ ।
ରତନ ଚାମର ଜାତି ଲବଙ୍ଗ କର୍ପୂର
ତାମ୍ବୁଳ ପ୍ରଭୃତି ଯେତେ ଦ୍ରବ୍ୟ ମନୋହର ।
ମନୋହର ଗୀତ ନୃତ୍ୟ ବିବିଧ ପ୍ରକାର
ଏ ଦ୍ରବ୍ୟ ସକଳ ସ୍ପର୍ଦ୍ଧାକରି ପରସ୍ପର ।
ଦ୍ୱିଗୁଣ ଭାବେ ବର୍ଦ୍ଧିତ ହୋଇ ବିତରିତ
ହେଉଅଛି ଯଜ୍ଞ ଉତ୍ସବରେ ଅବିରତ ।
ସ୍ୱର୍ଗଲୋକେ ଯେଉଁ ଭୋଗ ଦୁର୍ଲ୍ଲଭ ଅଟଇ
ମର୍ତ୍ତ୍ୟବାସୀ ଇନ୍ଦ୍ରଦ୍ୟୁମ୍ନ ଗୃହେ ତା ମିଳଇ ।
ଅତ୍ୟନ୍ତ ଆଶ୍ଚର୍ଯ୍ୟ ଉପଚାର ଏକତ୍ରିତ
ଅନ୍ୟ କୌଣସି ସ୍ଥାନରେ ହୁଏ ନା ସମ୍ଭୂତ ।
ଧନ ବ୍ୟୟ ବିଷୟରେ କୃପଣତା ନାହିଁ
ଲୋକ ସମାଦର ବିଷୟରେ କୃପଣତା ନାହିଁ ।
ପାତାଳବାସୀଏ ତହିଁ ଯେତେ ଆସିଥିଲେ
ଅମୃତ ସମାନ ଦ୍ରବ୍ୟ ଭୋଜନ କରିଲେ ।
ଏପରି ଖାଦ୍ୟ ସାମଗ୍ରୀ କରିଲେ ଭୋଜନ
ଆଉ ପାତାଳେ ଯିବାକୁ କଲେ ନାହିଁ ମନ ।
ସେହିସ୍ଥାନେ ରହିବାକୁ ବଳିଲା ଯେ ଇଚ୍ଛା
ଯାଗସିଦ୍ଧ ହେବା ଅର୍ଥେ ମନେ କଲେ ବାଞ୍ଛା ।
ଏହିଯଜ୍ଞେ ଯଜ୍ଞ ଅନୁଷ୍ଠାନରେ କୁଶଳ
ସର୍ବେ ସଦାଚାର ପରାୟଣ ସତିକାର ।
କଳ୍ପନାର ଯେ କରନ୍ତି ଶାସ୍ତ୍ର ପ୍ରଣୟନ
ଏ ସକଳେ ନୃପଙ୍କର ସନ୍ତୋଷ କାରଣ ।

Digitized by srujanika@gmail.com

ଅଗ୍ନାଧ୍ୟନାଠାରୁ ଅବଭୃଥ ସ୍ନାନଯାଏ
ସଦସ୍ୟଙ୍କ ଆଦେଶରେ ସକଳ ଭିଆଏ ।
ଯଜ୍ଞେ ଯେ ସକଳ ମନ୍ତ୍ର ପଢ଼ିଲେ ବ୍ରାହ୍ମଣ
ଉଦାତ୍ତାଦି ସ୍ୱରବର୍ଣ୍ଣ କିଛି ନାହିଁ ହୀନ ।
କିପରି ହେବ ଯେ ମନ୍ତ୍ର ବିଧାନ ଜାଣନ୍ତି
ସେହିମାନେ ଯଜ୍ଞେ ପ୍ରଚାରକ ହୋଇଛନ୍ତି ।
ପୁରୁଷୋତ୍ତମ କ୍ଷେତ୍ରରେ ଇନ୍ଦ୍ରଦ୍ୟୁମ୍ନଙ୍କର
ଯଜ୍ଞରେ ପ୍ରୀତି ଲଭିଲେ ତ୍ରୈଲୋକ୍ୟ ସକଳ ।
ବୈକୁଣ୍ଠନାଥଙ୍କୁ କରିବାକୁ ସୁପ୍ରସନ୍ନ
ବ୍ରହ୍ମାଙ୍କର ନିର୍ଦ୍ଦେଶରେ ରାଜା ଇନ୍ଦ୍ରଦ୍ୟୁମ୍ନ ।
ଗୋଟି ଗୋଟି କରି ଯଜ୍ଞ କଲେ ସମ୍ପାଦନ
ଏକୋନ ସହସ୍ର ସଂଖ୍ୟା ହୋଇଗଲା ପୂର୍ଣ୍ଣ ।
ଅନନ୍ତର ସାହସ୍ରିକ ଯଜ୍ଞରେ ଦୀକ୍ଷିତ
ହୋଇଲେ ଯେଉଁ କାଳରେ ତହିଁ ନରନାଥ ।
ଦିନନୁଦିନ ସେ ଦିବ୍ୟଗତି ଲାଭ କଲେ
ସହସ୍ର ସଂଖ୍ୟକ ଯାଗ ସମାପନ କଲେ ।
ଅବଭୃଥ ସ୍ନାନ ଥାଇ ସପ୍ତମ ଦିନ
ରାତ୍ର ଚତୁର୍ଥ ପ୍ରହରେ ନୃପକଲେ ଧ୍ୟାନ ।
ସୌଭାଗ୍ୟରୁ ଧ୍ୟାନଯୋଗେ ମିଳିଲା ଦର୍ଶନ
ଅବ୍ୟୟ ବିଷ୍ଣୁ ମୁରତି ସ୍ୱୟଂ ଭଗବାନ ।
ଆଉ ମଧ୍ୟ ଶ୍ୱେତଦ୍ୱୀପ ସ୍ଫଟିକ ନିର୍ମିତ
ଚତୁର୍ଦ୍ଦିଗେ କ୍ଷୀର ସମୁଦ୍ର ଯେ ଅବସ୍ଥିତ ।
ବହୁକଳ୍ପ ଦ୍ରୁମ ପୁଷ୍ପ ଗନ୍ଧେ ଆମୋଦିତ
ଶଙ୍ଖ ଚକ୍ର ଚିହ୍ନ ଫଳ ପଲ୍ଲବେ ଶୋଭିତ ।
ବୃକ୍ଷର ସର୍ବାବୟବ ମଞ୍ଜିଷ୍ଠା ରଙ୍ଗରେ
ଶୋଭା ପାଏ ବିଷ୍ଣୁମୂର୍ତ୍ତି ସେ କଳ୍ପ ଦ୍ରୁମରେ ।
ଏ ଦ୍ୱୀପ ମଧ୍ୟରେ ଦିବ୍ୟ ମଣିରେ ନିର୍ମିତ
ଉତ୍କୃଷ୍ଟ ମଣ୍ଡପ ଦେଖାଯାଏ ସୁଶୋଭିତ ।
ତା ମଧ୍ୟରେ ସୂର୍ଯ୍ୟଙ୍କର କିରଣ ସମାନ
ତେଜ ପୁଞ୍ଜେ ସୁଶୋଭନ ରତ୍ନ ସିଂହାସନ ।
କ୍ଷୀର ସମୁଦ୍ରର ଜଳ ତରଙ୍ଗ ବାୟୁରେ
ଅତି ମନୋହର ଶୋଭା ଜନମନ ହରେ ।
ସିଂହାସନର ଉପରେ ଶଙ୍ଖ ଚକ୍ରଧାରୀ
ଗଦାଧରଙ୍କୁ ଦର୍ଶନ କଲେ ଦଣ୍ଡଧାରୀ ।
ଧରଣୀଧର ଅନନ୍ତ ଦେବ ଦକ୍ଷିଣରେ
ଲକ୍ଷ୍ମୀଦେବୀ ଶୋଭା ପାଉଅଛନ୍ତି ବାମରେ ।
ସମ୍ମୁଖରେ ପିତାମହ ହୋଇ ଅବସ୍ଥିତ
କୃତାଞ୍ଜଳି ପୁଟେ ବେଦ ପାଠରେ ନିରତ ।
ବିଷ୍ଣୁଙ୍କର ବାମଭାଗେ ସର୍ବେ ଜ୍ଞାନମୟ
ସୁଦର୍ଶନ ଚକ୍ର ଶୋଭା ପାଏ ଅତିଶୟ ।

ସନକାଦି ମୁନିଗଣ ମିଳି ସେ ସ୍ଥାନରେ
ସ୍ତୁତି କରୁଛନ୍ତି ସର୍ବେ ଅତି ହରଷରେ ।
ନୃପବର ସ୍ୱପ୍ନେ କଲେ ଏ ରୂପେ ଦର୍ଶନ
ଅତି ଆନନ୍ଦରେ ମନ ହୋଇଗଲା ପୂର୍ଣ୍ଣ ।
ବୈକୁଣ୍ଠନାଥଙ୍କୁ ହର୍ଷ ଗଦ୍‌ଗଦ ବାକ୍ୟରେ
ନୃପସ୍ତବ କଲେ ସେହି ଧ୍ୟାନ ଅବସ୍ଥାରେ ।
ଇନ୍ଦ୍ରଦ୍ୟୁମ୍ନ ସ୍ତୁତି କଲେ ହେ ଜଗଦାଧାର
ହେ ଜଗତରୂପୀ ଆପଣଙ୍କୁ ନମସ୍କାର ।
ହେ ଦେବ ! ଆପଣ ଗୁଣମୟ ଯେ ଅଟନ୍ତି
ଗୁଣତ୍ରୟରୁ ଅତୀତ ହୋଇ ରହିଛନ୍ତି ।
କୈବଲ୍ୟ ସ୍ୱରୂପୀ ଆପଣଙ୍କୁ ନମସ୍କାର
ନିର୍ମଳ ଜ୍ଞାନ ସ୍ୱରୂପୀ ପ୍ରଭୋ ନମସ୍କାର ।
ଚତୁର୍ବେଦ ସ୍ୱରୂପୀ ଯେ ଅଟନ୍ତି ଆପଣ
ଜଗତରୂପୀ ଶ୍ରୀପଦେ କରୁଛି ପ୍ରଣାମ ।
ସଂସାର ଜଞ୍ଜାଳେ ଶ୍ରାନ୍ତ ବ୍ୟକ୍ତିମାନଙ୍କର
ଦୁଃଖ ଦୂର କରୁଛନ୍ତି ପ୍ରଭୋ ନମସ୍କାର ।
ଦୁର୍ଭେଦ୍ୟ ହୃଦୟ ଗ୍ରନ୍ଥି ଭେଦ ଯେ କରନ୍ତି
ଆପଣଙ୍କ ଶ୍ରୀଚରଣ ତଳରେ ପ୍ରଣତି ।
ମୂଳସ୍ତମ୍ଭ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ଗୃହର
ଆପଣଙ୍କ ଶ୍ରୀଚରଣେ କରେ ନମସ୍କାର ।
କୋଟି କୋଟି ବ୍ରହ୍ମାଣ୍ଡ ତ କରନ୍ତି ନିର୍ମାଣ
ଆପଣଙ୍କୁ ଏ ଅଧମ କରୁଛି ପ୍ରଣାମ ।
ଦୟାରୂପ ସାଗରରେ ଅମୃତ ଭଣ୍ଡାର
ଉଦ୍ଧାରକର୍ତ୍ତା ଅଟନ୍ତି ଦୀନଜନଙ୍କର ।
ଅତି ଗୁହ୍ୟବସ୍ତୁ ଦୟାସାଗର ଆପଣ
ବାରମ୍ବାର ଆପଣଙ୍କୁ କରୁଛି ପ୍ରଣାମ ।
ସୂର୍ଯ୍ୟ ଆଦି ଜ୍ୟୋତିର୍ମୟ ବସ୍ତୁମାନଙ୍କର
ଜ୍ୟୋତି ରୂପରେ ଆପଣ କରନ୍ତି ବିହାର ।
ହେ ଆଲୋକଦାତା ଲୋକ ହୃଦୟର ପାପ
ଦହନ କରି ଦିଅନ୍ତି ଅନଳ ସ୍ୱରୂପ ।
ପବିତ୍ର ଯେ ବସ୍ତୁ ତାର ପବିତ୍ର କାରଣ
ଅତି ପବିତ୍ର ଆପଣ କରୁଛି ପ୍ରଣାମ ।
ଆପଣ ବଳିଷ୍ଠ ଆପଣ ଯେ ଦୀର୍ଘତମ
ଅତି ସନ୍ନିହିତ ଦୂରେ କର ଅବସ୍ଥାନ ।
ଗୁରୁତମ ହୋଇ ଆପଣ ଯେ କ୍ଷୁଦ୍ରତମ
ଆପଣଙ୍କୁ ବାରମ୍ବାର କରୁଛି ପ୍ରଣାମ ।
ନାରାୟଣ ସକଳ ବରେଣ୍ୟ ପୁଣ୍ୟତମ
ଆପଣଙ୍କୁ ନମସ୍କାର କରେ ପୁନଃ ପୁନଃ ।
ଜଗନ୍ନାଥ ଆମ୍ଭଙ୍କୁ ଯେ କର ପରିତ୍ରାଣ
ଦୀନବନ୍ଧୁ ଆପଣଙ୍କୁ କରୁଛି ପ୍ରଣାମ ।

Digitized by srujanika@gmail.com

ସଂସାର ସାଗର ସୁଖ ତରଣୀ ସଦୃଶ
ସଂସାର ସାଗରୁ ପାରିକର ହୃଷୀକେଶ ।
ରମାନାଥ ଆପଣଙ୍କୁ କରନ୍ତେ ସାକ୍ଷାତ
ଆମ୍ଭର ସକଳ କ୍ଳେଶ ଦୂର ହୋଇଲା ତ ।
ସଚ୍ଚିଦାନନ୍ଦ ସ୍ୱରୂପୀ ଅଟନ୍ତି ଆପଣ
ଦୁଃଖ ଦୂର ହୁଏ କଲେ ସାକ୍ଷାତେ ଦର୍ଶନ ।
ହେ ନାଥ ତବ ଦର୍ଶନ ଆନନ୍ଦ କାରଣ
ସଂସାର ସାଗରେ ମଗ୍ନ ଅତି ଦୀନଜନ ।
ଆମ୍ଭଙ୍କୁ ଯେ ପରିତ୍ରାଣ କରନ୍ତୁ ଆପଣ
ମଧ୍ୟାହ୍ନ କାଳରେ ସୂର୍ଯ୍ୟ ଥାଇ ବିଦ୍ୟମାନ ।
ଆକାଶରେ ଅନ୍ଧକାର ରହି କି ପାରଇ
ଧ୍ୟାନଯୋଗେ ଏହି ସ୍ତବ କଲେ ନରସାଇଁ ।
ଧ୍ୟାନ ଶେଷେ ସ୍ୱପ୍ନାବସ୍ଥା ହୋଇଗଲା ଦୂର
ଜାଗ୍ରତ ଅବସ୍ଥା ଲାଭ କଲେ ନୃପବର ।
ସ୍ୱପ୍ନ ଶେଷେ ଆତ୍ମଦ୍ୱାରା ଆତ୍ମାନି ସ୍ମରଣ
କଲେ ନିଜକୁ କୃତାର୍ଥ ମଣିଲେ ରାଜନ ।
ସହସ୍ରାଶ୍ୱମେଧ ଯଜ୍ଞ ହୋଇଲା ସଫଳ
ସୌଭାଗ୍ୟ ଯେ ଉତପତି ହେଲା ନୃପଙ୍କର ।
ସ୍ୱର୍ଗବାସୀ ଋଷିଙ୍କର ସକଳ ବଚନ
ବ୍ୟର୍ଥ ନୁହେଁ ନରପତି ଚିନ୍ତିଲେ ତକ୍ଷଣ ।
ସ୍ୱୟଂ ଜଗନ୍ନାଥ କେଉଁକାଳେ କି ପ୍ରକାରେ
ଆମ୍ଭର ଦୃଷ୍ଟିଗୋଚର ହେବେ ଏ ସ୍ଥାନରେ ।
ଏ ରୂପ ଚିନ୍ତାରେ ରାତ୍ର ହୋଇଲା ପ୍ରଭାତ
ନାରଦଙ୍କୁ କହିଲେ ସେ ସ୍ୱପ୍ନର ବୃତ୍ତାନ୍ତ ।
ନାରଦ ଶ୍ରବଣ କରି ନୃପଙ୍କୁ କହିଲେ
ତୁମ୍ଭର ତ ମନଦୁଃଖ ଗଲା ଅତିଦୂରେ ।
ଅରୁଣୋଦୟ କାଳରେ ଦେଖିଲ ସ୍ୱପନ
ଦଶଦିନ ମଧ୍ୟେ ଫଳ ଲଭିବ ରାଜନ ।
ସହସ୍ରାଶ୍ୱ ମେଧ ଯଜ୍ଞ ହୋଇଗଲା ଶେଷ
ଏ ସ୍ଥାନେ ଭଗବାନଙ୍କୁ ଦେଖିବ ଅବଶ୍ୟ ।
ପୂର୍ବେ ବ୍ରହ୍ମା ଆମ୍ଭଦ୍ୱାରା ଯାହା କହିଥିଲେ
ଭଗବାନ ସ୍ୱପ୍ନରେ ତା ବ୍ୟକତ କରିଲେ ।
ଅତଏବ ଆଜ୍ଞା ଅନୁଷ୍ଠାନ କରି ଶେଷ
ସେ ବାକ୍ୟର ସାର୍ଥକତା କରନ୍ତୁ ପ୍ରକାଶ ।
ହେ ନୃପ ଶାର୍ଦ୍ଦୁଳ ଏହି ସ୍ୱପ୍ନର ବୃତ୍ତାନ୍ତ
ହରିଙ୍କର ଅଟଇ ଯେ ଦୁର୍ବୋଧ୍ୟ ଚରିତ ।
କିନ୍ତୁ ରାଜନ ଯେ ତୁମ୍ଭେ ଅଟ ଭାଗ୍ୟଧର
ଏପରି ସ୍ୱପ୍ନ ଦର୍ଶନ ସୁଲଭ ତୁମ୍ଭର ।
ସ୍କନ୍ଦ ପୁରାଣ ଉତ୍କଳ ଖଣ୍ଡେ ସପ୍ତଦଶ
ଅଧ୍ୟାୟ ଉତ୍କଳ ଭାଷାରେ ଯେ ହେଲା ଶେଷ ।।
ନୀଳ ସୁନ୍ଦର ପର୍ବତେ ଆଶ୍ଚର୍ଯ୍ୟ ପରାଯେ
ଅନିର୍ବଚନୀୟ କଳ୍ପ ବୃକ୍ଷ ଶୋଭା ପାଏ ।
ତା ଅଗ୍ରଭାଗରେ ଏକପତ୍ର ବିଦ୍ୟମାନ
ସେ ପତ୍ରଟି ଦୁଇପତ୍ରେ ଅତି ସୁଶୋଭନ ।
ପ୍ରଚ୍ଛାୟା ତିନି ତାପକୁ କରଇ ହରଣ
ମୂଳକୁ ଆଶ୍ରୟ କରିଛନ୍ତି ଦେବଗଣ ।
କିନ୍ତୁ ସେ ବୃକ୍ଷର ଆଦିଅନ୍ତ ନ ମିଳଇ
ଭକତ ଚର୍ମ ନେତ୍ରରେ କେବଳ ଦେଖଇ ।
ଏପରି ହେ କଳ୍ପଦ୍ରୁମ ନୀଳ ପର୍ବତରେ
ପାପୀ ତାପୀ ଜନଙ୍କୁ ଯେ ପରିତ୍ରାଣ କରେ ।
ସେ ଭକ୍ତଜନ ବତ୍ସଳ କରୁଣା ସାଗର
ବାଞ୍ଛା ପୂର୍ଣ୍ଣ କରିବେ ଯେ ମାଗେ ହରିହର ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ଅଶ୍ୱମେଧ ଯାଗେ ଇନ୍ଦ୍ରଦ୍ୟୁମ୍ନ ସ୍ୱପ୍ନଦର୍ଶନ
ବର୍ଣ୍ଣନେ ନାମ ସପ୍ତଦଶୋଽଧ୍ୟାୟଃ ।

□□

## ଅଷ୍ଟାଦଶ ଅଧ୍ୟାୟ

ଜୈମିନି ମୁନି କହନ୍ତି ଶୁଣ ମୁନି ଯୂଥ
ଯାଗ ଶେଷ କଲେ ଇନ୍ଦ୍ରଦ୍ୟୁମ୍ନ ନରନାଥ ।
ଅଶ୍ୱମେଧ ଯାଗ ଶେଷେ ନରପତିଙ୍କର
ଅବଭୃଥ ସ୍ନାନ ଅର୍ଥେ ହୋଇଲେ ତତ୍ପର ।
ସେ ଯଜ୍ଞେ ତ୍ରୈଲୋକ୍ୟବାସୀ ସକଳେ ଏକତ୍ର
ଜଣାଯାଏ ତ୍ରିଭୁବନ ଏକ ଗୃହ ବତ ।
ଋତ୍ୱିକ ବ୍ରାହ୍ମଣଗଣ ମନ୍ତ୍ରପାଠ କାଳେ
ଉଚ୍ଚାରିତ ବର୍ଣ୍ଣପଦ ଉଦାତ୍ତାଦି ସ୍ୱରେ ।
ବହୁ ସ୍ତୋତ୍ର ପାଠ ଧ୍ୱନି ଆକାଶେ ବ୍ୟାପିଲା
ଅନ୍ୟାନ୍ୟ ଧ୍ୱନି ସକଳ ନିସ୍ତବ୍ଧ ହୋଇଲା ।
ଅର୍ଥିଗଣଙ୍କର ଅଭିଳାଷ ଯେ ଦ୍ରବ୍ୟରେ
ବିପରୀତ ହେଉଥିଲା ସେ ସଭା ମଧ୍ୟରେ ।
ସ୍ତୁତିପାଠକ ନର୍ତ୍ତକ ନଟଗଣଙ୍କର
ଅଭିଳାଷ ପୂର୍ଣ୍ଣ କରେ ସେ ସଭା ସତ୍ୱର ।
ଅବଭୃଥ ସ୍ନାନ ଅର୍ଥେ ବିଲ୍ୱେଶ୍ୱରଙ୍କର
ସମୀପେ ନିଯୁକ୍ତ ଥିଲେ ସେବକ ସକଳ ।
ସେମାନେ ଦ୍ରୁତବେଗେରେ ହେଲେ ଉପସ୍ଥିତ
ଦୁଇ କରଯୋଡ଼ି କରି କହିଲେ ଏମନ୍ତ ।
ହେ ଦେବ ଶୁଣିବା ହେଉ ସମୁଦ୍ର ତଟରେ
ଏକ ବୃକ୍ଷ ଦେଖାଯାଏ ତା ଅଗ୍ର ଜଳରେ ।
ଜଳ ତରଙ୍ଗେ ବୁଲିଛି ତାର ମୂଳ ଦେଶ
ଭାସି ଆସି ସ୍ନାନ ଗୃହ ନିକଟେ ପ୍ରବେଶ ।

Digitized by srujanika@gmail.com

ତାର ସର୍ବ ଅବୟବ ଦିଶେ ରକ୍ତବର୍ଣ୍ଣ
ଶଙ୍ଖ ଚକ୍ର ଚିହ୍ନ ସର୍ବ ଗାତ୍ରେ ବିଦ୍ୟମାନ ।
ସେ ବୃକ୍ଷ ଅଦ୍‌ଭୁତ ବୋଲି କରୁଅଛୁ ଜ୍ଞାନ
ତାର ଆରାମ ରାଜନ କରନ୍ତୁ ସନ୍ଧାନ ।
ସେ ବୃକ୍ଷ ତେଜରେ ସିନ୍ଧୁତଟ ଆଲୋକିତ
ଯେସନେ ନବ ସୂର୍ଯ୍ୟକି ହୋଇଛି ଉଦିତ ।
ସେ ବୃକ୍ଷ ଗନ୍ଧରେ ହୁଏ ସ୍ଥାନ ଆମୋଦିତ
ସାଧାରଣ ବୃକ୍ଷ ନୁହେଁ ଆହେ ନରନାଥ ।
ଦେବ ବୃକ୍ଷ ପରି ଲକ୍ଷ୍ୟ ହେଉଛି ନିଶ୍ଚୟ
କେଉଁ ଦେବ ବୃକ୍ଷରୂପେ ଆଗତ ନିଶ୍ଚୟ ।
ଭୃତ୍ୟମାନଙ୍କ ବଚନ ଶୁଣିଲେ ରାଜନ
ନାରଦଙ୍କୁ ପଚାରିଲେ ଏହାର କାରଣ ।
ନାରଦ ମହର୍ଷି ହସି କହିଲେ ବଚନ
ଶୀଘ୍ର ପୂର୍ଣ୍ଣାହୁତି ଦାନ କରନ୍ତୁ ରାଜନ ।
ତୁମ୍ଭର ସୌଭାଗ୍ୟ କାଳ ହେଲା ଉପସ୍ଥିତ
ସ୍ୱପ୍ନରେ ଯେ ବିଷ୍ଣୁ ମୂର୍ତ୍ତି କରିବ ସାକ୍ଷାତ ।
ଯାହାଙ୍କ ଅଙ୍ଗରୁ ରୋମ ହୋଇଲେ ସ୍ଖଳିତ
ତରୁ ରୂପ ଧରି ଶୋଭା ପାଉଛି ଏମନ୍ତ ।
ଭକ୍ତବତ୍ସଳ ମାଧବ ସ୍ଥାଣୁ ରୂପ ହେଲେ
ଅଂଶାବତାର ସ୍ୱରୂପେ ଜାତ ପୃଥିବୀରେ ।
ନରପତି ତୁମ୍ଭେ ଅଟ ପୁରୁଷ ରତନ
ତୁମ୍ଭ ବିନା ପୃଥିବୀରେ ନାହିଁ ଅନ୍ୟଜନ ।
ଏ ବୃକ୍ଷକୁ ଯେଉଁଜନ କରିବ ଦର୍ଶନ
କିନ୍ତୁ ତୁମ୍ଭ ଭାଗ୍ୟେ ସର୍ବେ କରିବେ ଦର୍ଶନ ।
ତାହାଙ୍କର ପାପରାଶି ହୋଇବ ଦହନ
ନାରଦ କହନ୍ତି ନରପତି ଧୀରେ ଶୁଣ ।
ସିନ୍ଧୁତୀରେ ଅବଭୃଥ ସ୍ନାନ କରି ଶେଷ
ମହତୀ ବେଦୀ ନିର୍ମାଣ କରନ୍ତୁ ଅବଶ୍ୟ ।
ତରୁ ରୂପୀ ଯଜ୍ଞେଶ୍ୱରଙ୍କୁ ଯେ ତହିଁ ନେଇ
ସ୍ଥାପନ କରନ୍ତୁ ଉତ୍ସବରେ ନରସାଇଁ ।
ନାରଦ ଋଷି ନୃପତି ଦୁହେଁ ପରସ୍ପର
ବାକ୍ୟାଳାପ କରିଗଲେ ସମୁଦ୍ରର ତୀର ।
ବୃକ୍ଷରୂପୀ ମାଧବଙ୍କୁ କରିବେ ଦର୍ଶନ
ମହାସମାରୋହେ କଲେ ଉତ୍ସବ ବିଧାନ ।
ସମୁଦ୍ର ତୀରରେ ଯାଇ ଉପସ୍ଥିତ ହେଲେ
ଦାରୁରୂପୀ ବ୍ରହ୍ମଙ୍କୁ ଯେ ଦର୍ଶନ କରିଲେ ।
ଦୁହେଁ ଜୀବନ୍ମୁକ୍ତ ଜନ୍ମ ସାର୍ଥକ ମଣିଲେ
ଆନନ୍ଦ ସାଗରେ ରାଜା ନିମଜ୍ଜିତ ହେଲେ ।
ସ୍ୱପ୍ନକାଳେ ଚତୁର୍ଭୁଜ ମୂର୍ତ୍ତି ଦରଶନ
କରିଥିଲେ ଯେଉଁପରି ରାଜା ଇନ୍ଦ୍ରଦ୍ୟୁମ୍ନ ।
ଚତୁର୍ଭୁଜ ତୁଲ୍ୟ ଚତୁଃଶାଖା ସମନ୍ୱିତ
ବୃକ୍ଷରାଜଙ୍କୁ ଦର୍ଶନ କରି ହେଲେ ତୃପ୍ତ ।
ନିଜର ଯେ ପରିଶ୍ରମ ସଫଳ ମଣିଲେ
ମାଧବଙ୍କୁ ନ ଦେଖିବା ଦୁଃଖ ଦୂର କଲେ ।
ହର୍ଷାଶ୍ରୁ ନୟନେ ପୁନର୍ବାର ନୃପମଣି
ସେ ଦିବ୍ୟ ତରୁ ବରକୁ କରିଲେ ପ୍ରଣାମି ।
ଜଳ ତରଙ୍ଗେ ପ୍ଲାବିତ ସେହି ମହାଦ୍ରୁମ
ଦ୍ୱିଜଗଣ ଦ୍ୱାରା ତୀରେ କଲେ ଆନୟନ ।
ଏ ସମୟେ ଶଙ୍ଖ ଘଣ୍ଟା ମୁରଜ କାହାଳ
ପଟହ ଆଦି ଯେ ବାଦ୍ୟ ବାଜିଲା ସକଳ ।
ଗାୟକଗଣ କରିଲେ ହରି ସଂକୀର୍ତ୍ତନ
ଆନନ୍ଦରେ ଜୟ ଶବ୍ଦ କଲେ ଉଚ୍ଚାରଣ ।
ଆକାଶରୁ ବୃଷ୍ଟି ହେଲା ସୁଗନ୍ଧ କୁସୁମ
ବୃକ୍ଷ ପାଶେ ଧୂପ ପାତ୍ର କରିଲେ ଧାରଣ ।
ପୂର୍ଣ୍ଣ ଯୌବନ ଷୋଡ଼ଶୀ ବରାଙ୍ଗନା ଗଣ
ରତ୍ନ ଦଣ୍ଡ ଚାମରରେ କରିଲେ ବ୍ୟଞ୍ଜନ ।
ପଟ୍ଟ ବସ୍ତ୍ରରେ ନିର୍ମିତ ପତାକା ସମୂହ
ତରୁରାଜ ଶୋଭା ବୃଦ୍ଧି କଲା ଅତିଶୟ ।
ଗଜ ଅଶ୍ୱ ପଦାତିରେ ଚାରିଦିଗ ପୂର୍ଣ୍ଣ
ବନ୍ଦନା କରୁଅଛନ୍ତି ତହିଁ ବନ୍ଦିଗଣ ।
ମହର୍ଷି ଋତ୍ୱିଜ ବିପ୍ର ପଣ୍ଡିତ ବ୍ରାହ୍ମଣ
ନାନାବିଧ ସ୍ତବ ପାଠ କଲେ ତତକ୍ଷଣ ।
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ଅନୁମତି ନେଲେ
ସୁଗନ୍ଧ ଚନ୍ଦନେ ବୃକ୍ଷ ଅଳଂକୃତ କଲେ ।
ମହାବେଦୀର ଉପରେ ସ୍ଥାପନ କରିଲେ
ନାରଦଙ୍କ ଆଦେଶରେ ନୃପ ପୂଜା କଲେ ।
ପୂଜାଶେଷେ ମୁନିଙ୍କୁ ଯେ ରାଜା ପଚାରିଲେ
ବିଷ୍ଣୁ ପ୍ରତିମା ଗଠନ ହେବ କି ପ୍ରକାରେ ।
କେଉଁ ବ୍ୟକ୍ତି ଏ ଦାରୁକୁ କରିବ ଗଠନ
ଏହା ଶୁଣି ମୁନିବର କହନ୍ତି ବଚନ ।
ସେହି ଜଗତ୍ ଗୁରୁଙ୍କର ଅତ୍ୟନ୍ତ ମହିମା
ସର୍ବ ଲୋକାତୀତ ଚେଷ୍ଟା ବୁଦ୍ଧିର ଅଗମ୍ୟ ।
ନରନାଥ କେଉଁଜନ ହେବ ଅବଗତ
ବ୍ରହ୍ମାଙ୍କ ମନରେ ସଦା ସଂଶୟ ଜାଗ୍ରତ ।
କେଉଁ ବ୍ୟକ୍ତି କି ପ୍ରକାରେ ପ୍ରତିମା ନିର୍ମାଣ
କଲେ ସନ୍ତୋଷ ହୋଇବେ ପ୍ରଭୁ ନାରାୟଣ ।
ନାରଦ ନୃପତି ଦୁହେଁ ଏପରି ଭାବନା
କଲାବେଳେ ଆକାଶରୁ ବାଣୀ ହେଲା ଶୁଣା ।
ସେ ବାଣୀ ଶ୍ରବଣେ ସର୍ବେ ବିସ୍ମୟ ହୋଇଲେ
ପରସ୍ପରରେ ବଚନ କୁହାକୋହି ହେଲେ ।

Digitized by srujanika@gmail.com

ମନୁଷ୍ୟ ଯେ କରି ନ ପାରିବ ପରିମାଣ
ଅପୌରୁଷେୟ ଅଟନ୍ତି ପ୍ରଭୁ ଭଗବାନ ।
ନିଜର ଯେ ପ୍ରତିମୂର୍ତ୍ତି ହେବ କି ପ୍ରକାର
ଏ ଦାରୁ ମଧ୍ୟରେ ଗୁପ୍ତ କରିଲେ ଶରୀର ।
ଏ ମହାବେଦୀରେ ହୋଇଛନ୍ତି ଅବତୀର୍ଣ୍ଣ
ତୁମ୍ଭେମାନେ ଏହିସ୍ଥାନେ ପଞ୍ଚଦଶ ଦିନ ।
ଅତିଯତ୍ନେ ବେଦୀଗୃହ କରି ଆଚ୍ଛାଦିତ
ଏ ବୃଦ୍ଧ ପୁରୁଷ ଶସ୍ତ୍ର ହସ୍ତେ ଉପସ୍ଥିତ ।
ଏ ବୃଦ୍ଧଙ୍କୁ ବେଦୀଗୃହେ କରାଇ ପ୍ରବେଶ
ଅତିଯତ୍ନେ ଦ୍ୱାର ବନ୍ଦ କରନ୍ତୁ ନରେଶ ।
ଯେ କାଳେ ମୂର୍ତ୍ତି ଗଠନ ନିଷ୍ପନ୍ନ ନ ହେବ
ସେ କାଳଯାଏ ବାହାରେ ବାଦ୍ୟ ବାଜୁଥିବ ।
ମୂର୍ତ୍ତି ଗଠନର ଶବ୍ଦ କର୍ଣ୍ଣରେ ଶୁଣିଲେ
ସେହି ଜନ ବଧିରତା ହେବ ତତକାଳେ ।
ଆବର ହୋଇବ ଅନ୍ଧ ନରକେ ନିବାସ
ତାହାର ଅପତ୍ୟ ନାଶ ହୋଇବ ଅବଶ୍ୟ ।
ଗଠନ ଗୃହେ ପ୍ରବେଶ କେହି ନ କରିବ
ଗଠନ କାର୍ଯ୍ୟକୁ କେହି ନେତ୍ରେ ନ ଦେଖିବ ।
ଯେ ଜନ କାର୍ଯ୍ୟେ ନିଯୁକ୍ତ ଥିବ ତାହା ଭିନ୍ନ
ଯଦି କେହି ଅନ୍ୟ ଜନ କରିବ ଦର୍ଶନ ।
ତେବେ ରାଜା ରାଜ୍ୟବାସୀ ଭୟେ ପ୍ରପୀଡ଼ିତ
ଯେ ଜନ ଦର୍ଶନକାରୀ ସେ ଅନ୍ଧ ହେବ ତ ।
ଅତଏବ ପ୍ରତିମୂର୍ତ୍ତି ନିର୍ମାଣ ସମ୍ପନ୍ନ
ନ ହେବାଯାଏ କଦାପି ନ କର ଦର୍ଶନ ।
ନରପତି ତୁମ୍ଭ କର୍ତ୍ତବ୍ୟରେ ଉପଦେଶ
ଦେବେ ସ୍ୱୟଂ ସନାତନ ଦେବ ହୃଷୀକେଶ ।
ସର୍ବଲୋକ ସୁଖକର ସେ କାର୍ଯ୍ୟ ନିଶ୍ଚୟ
ସମ୍ପାଦନ କରିବଟି ଆହେ ମହାଶୟ ।
ନାରଦ ପ୍ରଭୃତି ଏହା ଶ୍ରବଣ କରିଲେ
ସ୍ୱପ୍ନ ବିଷୟ ମନରେ ଚିନ୍ତା କରୁଥିଲେ ।
ଏ ସମୟେ ଉପସ୍ଥିତ ସେ ବୃଦ୍ଧ ପୁରୁଷ
ନରପତିଙ୍କ ନିକଟେ ହୋଇଲେ ପ୍ରବେଶ ।
କହିଲେ ହେ ରାଜା ସ୍ୱପ୍ନେ ଯେ ମୂର୍ତ୍ତି ଦର୍ଶନ
କରିଥିଲେ ସେହି ମୂର୍ତ୍ତି କରିବି ନିର୍ମାଣ ।
ମନୁଷ୍ୟଙ୍କ ପ୍ରତାରଣା କରିବା ନିମିତ୍ତ
ବେଦୀ ମଧ୍ୟେ ବୃଦ୍ଧ ହୋଇଗଲେ ଅନ୍ତର୍ହିତ ।
ସ୍କନ୍ଦ ପୁରାଣ ଉକତ ଉତ୍କଳ ଖଣ୍ଡରେ
ଅଷ୍ଟାଦଶ ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ନିରାକାର ନିରଞ୍ଜନ ନିର୍ଲେପ ନିର୍ଗୁଣ
ସଗୁଣରେ ଦାରୁବ୍ରହ୍ମ ରୂପେ ବିଦ୍ୟମାନ ।
ନୀଳାଚଳେ ପ୍ରଭୁ ନିତ୍ୟ ଲୀଳା ବିସ୍ତାରିବ
ଭକତ ଜନଙ୍କୁ ତୁମ୍ଭେ ମୁକ୍ତ କରିଦେବ ।
ଏଥିରେ ଯଦି ଆପଣ ଦୟାସିନ୍ଧୁ ହେବେ
ଅଭକ୍ତ ଜନେ ସଂସାରେ ଆଉ କି କରିବେ ।
ଦୟାସିନ୍ଧୁରୁ ଯେ ଦୟା ବିନ୍ଦୁ କରି ଦାନ
ଅଭକ୍ତ ଜନମାନଙ୍କୁ କର ପରିତ୍ରାଣ ।
ଦୟାନିଧି ଏହି ନାମ ସାର୍ଥକ ହୋଇବ
ଦୟାବିନ୍ଦୁ ହରିହର ପାଇ ଧନ୍ୟ ହେବ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ସହସ୍ରାଶ୍ୱମେଧ ଯାଗ ବର୍ଣ୍ଣନେ ଇନ୍ଦ୍ରଦ୍ୟୁମ୍ନ
ଦାରୁମୂର୍ତ୍ତି ଆନୟନେ ନାମ
ଅଷ୍ଟାଦଶୋଽଧ୍ୟାୟଃ ।



## ଊନବିଂଶ ଅଧ୍ୟାୟ

ଜୈମିନି କହନ୍ତି ଶୁଣ ସର୍ବ ମୁନିଗଣ
ପ୍ରତିମା ନିର୍ମାଣ ଅର୍ଥେ ରାଜା ଇନ୍ଦ୍ରଦ୍ୟୁମ୍ନ ।
ଗଠନ ଗୃହର ଦ୍ୱାର ଆବଦ୍ଧ କରିଲେ
ଆକାଶେ ବାକ୍‌ଦେବୀ ଯେଉଁରୂପେ କହିଥିଲେ ।
ସେ ରୂପେ ସର୍ବ ବିଷୟ କଲେ ସମ୍ପାଦନ
ଏହିପରି ଗତ ହୋଇଗଲା କେତେଦିନ ।
ସେ ସ୍ଥାନ ଅପୂର୍ବ ଗନ୍ଧେ ଆମୋଦିତ ହେଲା
ଆକାଶରୁ ପାରିଜାତ କୁସୁମ ବର୍ଷିଲା ।
ମନୋହର ଗୀତ ଧ୍ୱନି ସ୍ୱର୍ଗୀୟ ସଂଗୀତ
ଶୁଣାଗଲା ସେ ସ୍ଥାନରେ ଅତୀବ ବିଚିତ୍ର ।
ସ୍ୱର୍ଗ ଗଙ୍ଗାଜଳ ସୂକ୍ଷ୍ମ ବିନ୍ଦୁ ବିନ୍ଦୁ ହୋଇ
ବରଷା ହେଲା ସେ କାଳେ କେ ପାରିବ କହି ।
ଐରାବତ ଆଦି ଗଜ ମତ୍ତହସ୍ତୀଙ୍କର
ଅତ୍ୟୁତ୍କଟ ମଦଗନ୍ଧ ହେଲା ସୁଖକର ।
ସେ ଯଜ୍ଞକୁ ଯେତେ ଦେବଗଣ ଆସିଥିଲେ
ହରି ଆବିର୍ଭୂତ ହେଲେ ବୋଲି ବିଚାରିଲେ ।
ମାଧବଙ୍କୁ ନ ଦେଖିବା ଦୁଃଖ କଲେ ଦୂର
ନିତ୍ୟ ସେବା କରିବାକୁ ହୋଇଲେ ତତ୍ପର ।
ନୀଳମଣି ମାଧବଙ୍କୁ ପୂର୍ବେ ଯେ ପ୍ରକାରେ
ଉପାସାନ କରୁଥିଲେ ଭକତି ଭାବରେ ।
ଏ ବିଷ୍ଣୁ ବୃକ୍ଷକୁ ସେହିରୂପେ ପୂଜା କଲେ
ପୂଜାକାଳେ ଦିବ୍ୟ ଚିହ୍ନମାନ ତ ଦେଖିଲେ ।
କ୍ରମେ ପଞ୍ଚଦଶ ଦିନ ହେଲା ଉପସ୍ଥିତ
ଆମ୍ଭେ ପୂର୍ବେ କହିଅଛୁଁ ତୁମ୍ଭଙ୍କୁ ଯେମନ୍ତ ।

Digitized by srujanika@gmail.com

ସେହିରୂପେ ଜଗନ୍ନାଥ ବର୍ଦ୍ଧକୀ ରୂପରେ
ସ୍ୱୟଂ ନିଜର ମୂର୍ତ୍ତିକୁ ନିର୍ମାଣ କରିଲେ ।
ଜଗନ୍ନାଥ ବଳାରମ ସୁଭଦ୍ରା ନାମରେ
ଚକ୍ର ସହିତ ଚତୁର୍ଦ୍ଧା ରୂପକୁ ଧଇଲେ ।
ଦିବ୍ୟ ସିଂହାସନେ ଆର୍ବିଭୂତ ଜଗନ୍ନାଥ
ଶଙ୍ଖ ଚକ୍ର ଗଦା ପଦ୍ମ ହସ୍ତେ ବିରାଜିତ ।
ଅନନ୍ତ ଦେବ ଯେ ବଳରାମ ରୂପ ହେଲେ
ଗଦା ମୂଷଳ ଯେ ଚକ୍ର ବଜ୍ର ଧରି କରେ ।
ଛତ୍ରାକୃତି ସପ୍ତଫଣା ମୁକୁଟ ଶିରରେ
ଉଜ୍ଜ୍ୱଳ କୁଣ୍ଡଳ ଶୋଭା ଜନମନ ହରେ ।
ଚାରୁ ବଦନା ସୁଭଦ୍ରା ଦେବୀ ଏକହସ୍ତେ
ପଦ୍ମ ପୁଷ୍ପ ଅଭୟ ଯେ ଘେନି ଅନ୍ୟହସ୍ତେ ।
ଚୈତନ୍ୟ ରୂପିଣୀ ଲକ୍ଷ୍ମୀ ସୁଭଦ୍ରା ରୂପରେ
ବିଜେ ହୋଇଛନ୍ତି ରତ୍ନ ସିଂହାସନ ପରେ ।
କୃଷ୍ଣାବତାର ବେଳରେ ରୋହିଣୀ ଗର୍ଭରେ
ବଳରାମ ରୂପକୁ ତ ଚିନ୍ତା କରିଥିଲେ ।
ପ୍ରଭୁ ବଳଭଦ୍ର ରୂପେ ଜାତ ପୃଥିବୀରେ
ବିଷ୍ଣୁଙ୍କୁ ଯେ କ୍ଷଣକାଳ ନ ଛାଡ଼ନ୍ତି ହେଲେ ।
ବିପ୍ରଗଣ ଶୁଣ କୃଷ୍ଣ ବଳରାମ ଦୁଇ
ଏ ଦୁଇଙ୍କ ମଧ୍ୟେ କିଛି ପ୍ରଭେଦ ତ ନାହିଁ ।
ଏକଗର୍ଭେ ଜାତ ବୋଲି ଲୋକେ କହିଥାନ୍ତି
ବଳଭଦ୍ରଙ୍କର ଭଗ୍ନୀ ସୁଭଦ୍ରା ଅଟନ୍ତି ।
ଏରୂପ ବର୍ଣ୍ଣନା ହୋଇଅଛି ପୁରାଣରେ
ଲକ୍ଷ୍ମୀ ଦେବୀ ସ୍ତ୍ରୀ ରୂପରେ ପୁରୁଷ ରୂପରେ ।
ସ୍ତ୍ରୀ ନାମରେ ଲକ୍ଷ୍ମୀଦେବୀ ସଦା ବିଦ୍ୟମାନ
ପୁରୁଷ ନାମରେ ଯେତେ ବିଷ୍ଣୁ ଭଗବାନ ।
ଦେବତା ମନୁଷ୍ୟ ପକ୍ଷୀ ଆଦି ପ୍ରାଣୀ ଯେତେ
ଏ ଦୁଇଙ୍କ ବିନା ଆଉ ନାହାନ୍ତି ଜଗତେ ।
ଏହି ଦେବ ଦେବୀଙ୍କର କ୍ଷମତା ବର୍ଣ୍ଣନ
କରିବାକୁ କିଏ ଅବା ହୋଇବ ଭାଜନ ।
ପୁଣ୍ଡରୀକାକ୍ଷଙ୍କ ବିନା ଆଉ କେଉଁ ଜନ
ଫଣା ଅଗ୍ରରେ ଧରିବ ଚଉଦ ଭୁବନ ।
ଏକମାତ୍ର ସମରଥ ଯେ ଅନନ୍ତ ଦେବ
ତାହାଙ୍କର ନାମ ହୋଇଅଛି ବଳଦେବ ।
ତାହାଙ୍କର ଶକ୍ତିରୂପ ସୁଭଦ୍ରା ଭଗିନୀ
ହୋଇଛନ୍ତି ଜଗତରେ ସ୍ତ୍ରୀ ରୂପ ଧାରିଣୀ ।
ଚତୁର୍ଥରେ ଶାଖାଅଗ୍ର ଚକ୍ର ଶୁଦର୍ଶନ
ଜଗନ୍ନାଥ ହସ୍ତେ କରି ଅଛନ୍ତି ଧାରଣ ।
ଏହିରୂପେ ଚାରିମୂର୍ତ୍ତି ହେଲେ ଭଗବାନ
ନିଜେ ଆପଣାକୁ ଆସି କରିଲେ ନିର୍ମାଣ ।

ଏହିରୂପେ ଦେବ ବିଜେ ଚତୁର୍ଦ୍ଧା ରୂପରେ
ପୁନର୍ବାର ଶୁଣାଗଲା ବାଣୀ ଆକାଶରେ ।
ନରପତି ସେ ପ୍ରତିମା ମାନଙ୍କୁ ସତ୍ୱର
ପଟବସ୍ତ୍ରେ ଆଚ୍ଛାଦିତ ଦୃଢ଼ରୂପେ କର ।
ଦେବଙ୍କର ବର୍ଣ୍ଣେ ପ୍ରତିମାକୁ ଚିତ୍ରକର
ଜଗନ୍ନାଥ ନୀଳ ମେଘ ସଦୃଶ ଶ୍ୟାମଳ ।
ବଳଦେବଙ୍କୁ ଯେ ଶଙ୍ଖପରି ଶୁଭ୍ରବର୍ଣ୍ଣ
ସୁଦର୍ଶନ ଚକ୍ରକୁ ଯେ କର ରକ୍ତବର୍ଣ୍ଣ ।
ସୁଭଦ୍ରାଙ୍କୁ କଙ୍କୁମ ରଙ୍ଗରେ ସୁଶୋଭିତ
ନାନାଭଙ୍ଗୀ କରି ବହୁ ଅଳଙ୍କାରେ ଯୁକ୍ତ ।
ପ୍ରତିମାର ଦାରୁରୂପ କରିଲେ ଦର୍ଶନ
ପାପକାରୀ ସମ ନର୍କେ କରିବ ଗମନ ।
ଅତି ଯତ୍ନେ ପଟବସ୍ତ୍ର ନିର୍ଯ୍ୟାସ ଯେ ଦେଇ
ପ୍ରତିମା ଦେହ ଗୋପନ କର ନରସାଇଁ ।
କର୍ମଦକ୍ଷ ଶିଳ୍ପଗଣ ଆସନ୍ତୁ ବହନ
ପ୍ରତିମା ଦେହ କରନ୍ତୁ ଦୃଢ଼େ ଆଚ୍ଛାଦନ ।
ପ୍ରତି ବର୍ଷ ପୂର୍ବା ପୂର୍ବ ଦେହ ଆବରଣ
ଫିଟାଇବ ନରପତି କରିବ ନୂତନ ।
ବନ୍ଧନ ଗାତ୍ର ବିଲେପ ବିନା ସେ ପ୍ରତିମା
ସଦାକାଳେ ଏକରୂପେ ରହିଛନ୍ତି ସିନା ।
ଯଦ୍ୟପି କୌଣସି ବ୍ୟକ୍ତି ପ୍ରମାଦ ବଶତଃ
ପ୍ରତିମାର ଗାତ୍ରଲେପ କରେ ଉପନୀତ ।
ବିଲେପନ ଶୂନ୍ୟ ଯେବେ କରିବ ଦର୍ଶନ
ସେହି ବ୍ୟକ୍ତି ହୋଇବ ତ ନରକେ ପତନ ।
ରାଜ୍ୟ ମଧ୍ୟରେ ଦୁର୍ଭିକ୍ଷ ମଡ଼କ ହୋଇବ
ତାହାର ସନ୍ତାନ ବର୍ଗ ବିନାଶ ତ ହେବ ।
ଏ ଚାରିମୂର୍ତ୍ତିକୁ କେଉଁ କାଳରେ ରାଜନ
ଆବରଣେ ଶୂନ୍ୟ ନ କରିବ ଦରଶନ ।
ବିନା ଆବରଣେ ଯଦି କେ କରେ ଦର୍ଶନ
ମହା ଭୟରେ ପୀଡ଼ିତ ହେବ ସେହି ଜନ ।
ଏଣୁ ବହୁ ବିଲେପନ କରି ବିଲେପିତ
ଉଜ୍ଜ୍ୱଳ ଚିତ୍ର କରିଣ କରିବ ସାକ୍ଷାତ ।
କଳ୍ପ କୋଟି ପାପରାଶି ହୋଇବ ଦହନ
ଏ ବିଷୟରେ ସନ୍ଦେହ ନ କର ରାଜନ ।
ଏ ମୂର୍ତ୍ତିମାନଙ୍କୁ ଚିତ୍ର ବିଚିତ୍ର କରିଲେ
ତୁମ୍ଭର ମନ କାମନା ପୂର୍ଣ୍ଣ ହେବ ଭଲେ ।
ତୁମ୍ଭଙ୍କୁ ଯେ ଅନୁଗ୍ରହ କରିବା ନିମିତ୍ତ
ଭଗବାନ ଏହିସ୍ଥାନେ ହେଲେ ଆବିର୍ଭୂତ ।
ତୁମ୍ଭ ଅନୁଗ୍ରହେ ଜନ୍ତୁମାନଙ୍କୁ ବହନ
ଚତୁର୍ବର୍ଗ ପ୍ରଦାନ କରିବେ ଭଗବାନ ।

Digitized by srujanika@gmail.com

ନୀଳ ପର୍ବତରେ କଳ୍ପ ବୃକ୍ଷ ଅବସ୍ଥିତ
ତାର ବାୟୁକୋଣେ ଦୂର ଏକଶତ ହସ୍ତ ।
ପ୍ରତିଷ୍ଠିତ ନୃସିଂହଙ୍କ ଉତ୍ତର ଦିଗରେ
ଯେ ପ୍ରଶସ୍ତ ଦେଶ ବିଦ୍ୟମାନ ଯେ ସ୍ଥାନରେ ।
ସହସ୍ର ହସ୍ତ ଉନ୍ନତ ତେତେ ଆୟତନ
ଏକ ସୁଦୃଢ଼ ପ୍ରାସାଦ କରନ୍ତୁ ନିର୍ମାଣ ।
ସେ ପ୍ରାସାଦେ ପ୍ରଭୁଙ୍କୁ ଯେ କରିବ ସ୍ଥାପନ
ପୂଜାକଲେ ବିଶ୍ୱାବସୁ ଶବର ପ୍ରଧାନ ।
ମାଧବଙ୍କୁ ପ୍ରତିଦିନ ପୂଜା କରୁଥିଲା
ବିଦ୍ୟପତିଙ୍କ ସଙ୍ଗତେ ବନ୍ଧୁତା କରିଲା ।
ବିଦ୍ୟାପତି ବିଶ୍ୱାବସୁ ଦୁହିଁଙ୍କ ବଂଶରେ
ଯେତେ ସନ୍ତାନ ଜନ୍ମିବେ ଭବିଷ୍ୟକାଳରେ ।
ସେହିମାନଙ୍କୁ ନିଯୁକ୍ତ କର ଏ ସ୍ଥାନରେ
ପ୍ରତିମା ସଂସ୍କାର ଯଜ୍ଞ ଉତ୍ସବ କାର୍ଯ୍ୟରେ ।
ଆକାଶରୁ ଏହି ବାଣୀ ରାଜନ ଶୁଣିଲେ
ଆନନ୍ଦ ମନରେ ବେଦୀ ସମୀପେ ଚଳିଲେ ।
ମହାବେଦୀରେ ବେଷ୍ଟନୀ କରିଲେ ମୋଚନ
ପ୍ରଭୁଙ୍କୁ ଦେଖିଲେ ବିଜେ ରତ୍ନ ସିଂହାସନ ।
ବଳରାମ ଜଗନ୍ନାଥ ସୁଭଦ୍ରା ସହିତ
ବାସୁଦେବଙ୍କର ଚକ୍ର ଅତି ସୁଶୋଭିତ ।
ଅକାଶରେ ବାକ୍ୟଦେବୀ ଯେ ରୂପେ କହିଲେ
ତଦ୍ରୂପ ଚିତ୍ର ଭୂଷିତ ପ୍ରତିମା ଦେଖିଲେ ।
ଜଗନ୍ନାଥଙ୍କର ବକ୍ଷସ୍ଥଳ ଯେ ଉନ୍ନତ
ବଦନ ମଣ୍ଡଳେ ଈଷତ୍ ହାସ୍ୟ ବିକଶିତ ।
ଦୀନ ଜନମାନଙ୍କର ଉଦ୍ଧାର ନିମିତ୍ତ
ଭୁଜ ପଞ୍ଜର ଯେ ହୋଇଅଛି ବିଳମ୍ବିତ ।
ନେତ୍ରଦ୍ୱୟ ପ୍ରସ୍ଫୁଟିତ ଶ୍ୱେତ ପଦ୍ମସମ
ରକ୍ତବର୍ଣ୍ଣ ଅଧର ଯୁଗଳ ସୁଶୋଭନ ।
ଦର୍ଶନକାରୀର ପାପ ହରଣ କରନ୍ତି
ଦାରୁମୟ ଦେହେ ପଦ୍ମାସନେ ବସିଛନ୍ତି ।
ନାନାବିଧ ଦିବ୍ୟ ଅଳଙ୍କାରେ ବିଭୂଷିତ
ନିଜର ନିର୍ମଳ ତେଜ ପୁଞ୍ଜ ବିରାଜିତ ।
ଦେହ କାନ୍ତି ନୀଳମେଘ ପରି ମନୋହର
ଜୀବମାନଙ୍କ ସନ୍ତାପ କରୁଛନ୍ତି ଦୂର ।
ବଳରାମଙ୍କୁ ଯେ କଲେ ତହିଁ ଦରଶନ
ମୁଖ ପଦ୍ମ ଅଟହାସ୍ୟେ ଅତି ସୁଶୋଭନ ।
ଛତ୍ରାକାରେ ଫଣାରାଜି ହୋଇ ସୁଶୋଭିତ
ବାରୁଣୀ ପାନରେ ନେତ୍ରଦ୍ୱୟ ବିଘୂର୍ଣ୍ଣିତ ।
ନାଗରାଜା କି ପାତାଳ ତଳୁ ଆସିଛନ୍ତି
ବକ୍ଷସ୍ଥଳ ସୁକୋମଳ ପୃଥୁଳ ଯେ ଅତି ।
ଅଳ୍ପ ଅବନତ ହୋଇଅଛି ପୃଷ୍ଠଦେଶ
ଦେହର ଅପର ଭାଗ କୁଣ୍ଡଳ ସଦୃଶ ।
ହଳ ଚକ୍ର ପଦ୍ମ ମୂଷଳ ଯେ ଧରି ହସ୍ତ
ଗଳ ଦେଶେ ବନମାଳା ଅତି ସୁଶୋଭିତ ।
ହାର କେୟୁର ମୁକୁଟ କିରୀଟ କୁଣ୍ଡଳ
ଅଳଙ୍କାରେ ଦେହ କାନ୍ତି ଦିଶଇ ଉଜ୍ଜ୍ୱଳ ।
ଜଗନ୍ନାଥ ବଳରାମଙ୍କର ମଧ୍ୟେ ବିଜେ
ଭଦ୍ରାରୂପିଣୀ ସୁଭଦ୍ରା ରୂପେ ଲକ୍ଷ୍ମୀ ନିଜେ ।
ବିକଶିତ ପଦ୍ମ ତୁଲ୍ୟ ବଦନ ମଣ୍ଡଳ
ହସ୍ତ ଦ୍ୱୟେ ବରାଭୟ ଦିଶଇ ସୁନ୍ଦର ।
ଦେହ କାନ୍ତି କୁଙ୍କୁମ ରଙ୍ଗରେ ବିରାଜିତ
ମନେ ହୁଏ ଲକ୍ଷ୍ମୀ ଦେବୀ ଅଟନ୍ତି ସାକ୍ଷାତ ।
ଜଗନ୍ନାଥଙ୍କର ବାମେ ଶାଖାଗ୍ରେ ନିର୍ମିତ
ଚକ୍ର ଶୋଭା ପାଏ ନବ ସୂର୍ଯ୍ୟ କି ଉଦିତ ।
ନରପତି ଇନ୍ଦ୍ରଦ୍ୟୁମ୍ନ ସୌଭାଗ୍ୟ ବଶତଃ
ଏ ଦିବ୍ୟ ମୂର୍ତ୍ତି ସକଳ କରିଲେ ସାକ୍ଷାତ ।
ଅପାର ଆନନ୍ଦ ସମୁଦ୍ରରେ ବୁଡିଗଲେ
ନିଜର କର୍ତ୍ତବ୍ୟ ଜ୍ଞାନ ବିସ୍ମୃତ ହୋଇଲେ ।
ନିଜ ଶରୀରର ବଳ ହୋଇଗଲା କ୍ଷୀଣ
ଆନନ୍ଦ ଲୋତକେ ନେତ୍ର କଲେ ନିମ୍ମୀଳନ ।
କର ଦୁଇ ଯୋଡ଼ି କରି ନିଶ୍ଚଳ ମନରେ
ପ୍ରତିମା ସମ୍ମୁଖେ ଉପବେଶନ ମନରେ ।
ନାରଦ ମହର୍ଷି ହସି କହିଲେ ବଚନ
ହେ ରାଜା ଯେଉଁ ନିମିତ୍ତ କଲ ଏତେ ଶ୍ରମ ।
ଏହିକ୍ଷଣେ ସେହି ଶ୍ରମ ହୋଇଲା ସଫଳ
ପୃଥିବୀ ମଧ୍ୟରେ ଏକା ତୁମ୍ଭେ ଭାଗ୍ୟଧର ।
ଶ୍ରୀ ଜଗନ୍ନାଥଙ୍କୁ କଲ ଆନନ୍ଦେ ଦର୍ଶନ
ଆକର୍ଣ୍ଣ ବିସ୍ତୃତ ପଦ୍ମ ପଲାଶ ନୟନ ।
ଭକ୍ତଜନମାନଙ୍କର ଦୟାର ସାଗର
ବିଷୟ ଗୋଚର ଜ୍ଞାନ ସ୍ୱରୂପ ପ୍ରାଣୀର ।
ଯାହାଙ୍କ ଦର୍ଶନ ଅର୍ଥେ ନିତ୍ୟ ଯୋଗୀଗଣ
କହନ୍ତି ଅନ୍ତଃକରଣେ ସଞ୍ଜମ ସାଧନ ।
ସେହି ଜନାର୍ଦ୍ଦନ ଦାରୁମୟ ଦେହ ଧରି
ତୁମ୍ଭଙ୍କୁ ତ ଅନୁଗ୍ରହ କଲେ ଦଣ୍ଡଧାରୀ ।
ହେ ରାଜା କରୁଣା ସିନ୍ଧୁ ଦୀନ ବନ୍ଧୁଙ୍କର
ସ୍ତବ ସ୍ତୁତି କରିବାକୁ ହୁଅ ଆଗଭର ।
ତୁମ୍ଭେ ସ୍ତବ କଲେ ତୋଷ ହେବେ ଭଗବାନ
ନିଶ୍ଚୟ କରିବି ତୁମ୍ଭ ମନୋରଥ ପୂର୍ଣ୍ଣ ।
ଉତ୍କଳଖଣ୍ଡେ ଊଣିଶ ଛାନ୍ଦ ହେଲା ଶେଷ
ଆନନ୍ଦରେ ହରିବୋଲ ସକଳ ବିଦୂଷ ।

Digitized by srujanika@gmail.com

ହରିବୋଲ ହରିବୋଲ ହରିବୋଲ ସର୍ବେ
ସଂସାର ସାଗର ପାରି ହୋଇଯିବ ଯେବେ ।
ଆସ ଭାଇ ବେଗେ ଚଳିଯିବା ନୀଳାଚଳ
ଦର୍ଶନ କରିବା ପ୍ରଭୁ ଶ୍ରୀପଦ କମଳ ।
ଭକ୍ତ ମୁଖେ ନାମ ଶୁଣି କର୍ଣ୍ଣ ହେବ ପୂତ
ଶ୍ରୀଅଙ୍ଗ ନିର୍ମାଲ୍ୟ ଘେନି ଶରୀର ପବିତ୍ର ।
ଦେହ ପବିତ୍ର ହୋଇବ କରିଲେ ପ୍ରଣାମ
ରସନା ରଟିବ ସଦା ଜଗନ୍ନାଥ ନାମ ।
ଜଗନ୍ନାଥ ବଳରାମ ସୁଭଦ୍ରା ସହିତ
ସୁଦର୍ଶନଙ୍କୁ ସାକ୍ଷାତ କରିବା ନିୟତ ।
ହରିବୋଲ ହରିବୋଲ ଭାଇଗଣ ମିଳି
ଦୀନ ହରିହର ଯିବାପାଇଁ କରେ ଅଳି ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ଇନ୍ଦ୍ରଦ୍ୟୁମ୍ନ ଦାରୁମୂର୍ତ୍ତି ଦର୍ଶନେ
ନାମ ଉନବିଂଶୋଽଧ୍ୟାୟଃ ।

ଦ୍ଦ

## ବିଂଶ ଅଧ୍ୟାୟ

ଜୈମିନି କହନ୍ତି ମହୀପତି ଇନ୍ଦ୍ରଦ୍ୟୁମ୍ନ
ନାରଦଙ୍କଠାରୁ ଶୁଣି ଏସନ ବଚନ ।
ଅତି ଉଚ୍ଚସ୍ୱରେ ସ୍ତୁତି ବାକ୍ୟ ଆରମ୍ଭିଲେ
କୃପାସିନ୍ଧୁ ଜଗନ୍ନାଥଙ୍କର ସ୍ତୁତି କଲେ ।
ହେ ମୁରାରି ! ପୂର୍ବେ ପୂର୍ବ ଜନମରେ ମୁହିଁ
ଆପଣଙ୍କ ପାଦପଦ୍ମ ସେବା କରିନାହିଁ ।
ସେହି କର୍ମବିପାକରେ ହେଲି ଅତି ଦୀନ
ଭୋଗୁଛି ଦାରୁଣ ଦୁର୍ବିପାକ ଭୋଗମାନ ।
ବ୍ରହ୍ମା ରୁଦ୍ର ଇନ୍ଦ୍ରଦେବ ମୁକୁଟ ମଣିରେ
ଆପଣଙ୍କ ପାଦ ପଦ୍ମ ବନ୍ଦନ୍ତି ସଧୀରେ ।
ବିଷ୍ଠାମୂତ୍ର ରକ୍ତ ମାଂସ ଚର୍ମ ଅସ୍ଥି ଦେହ
ଧରି ସେବିବି କିପରି ଆହେ ଦୟାମୟ ।
ସାଦୃଶ ହତଭାଗାର ପକ୍ଷେ ଅସମ୍ଭବ
ଆପଣଙ୍କ ପାଦପଦ୍ମ ଅତ୍ୟନ୍ତ ଦୁର୍ଲ୍ଲଭ ।
ଅସାର ସଂସାରେ ଭ୍ରମି ହେଲି ଅତିଶ୍ରାନ୍ତ
ଦୁଃଖ ସହିପାରୁ ନାହିଁ ଆହେ ଜଗନ୍ନାଥ ।
ଆପଣଙ୍କ ସ୍ୱରୂପକୁ କିପରି ବୁଝିବି
ବୁଝିବାକୁ ହେଲେ କ୍ଲେଶ ସହି ନ ପାରିବି ।
ଯେଉଁମାନେ ଏ ସଂସାରେ ଦୁଃଖ ଭୋଗ କରି
କ୍ଲାନ୍ତବୋଧ ନ କରନ୍ତି ଆହେ ନରହରି ।
ତାହାଙ୍କର ଶ୍ରମ ଅଟେ ଅତ୍ୟନ୍ତ କଠୋର
ଆପଣଙ୍କ ସ୍ୱରୂପକୁ ଜାଣନ୍ତି ନିକର ।

ଅନେକ ଜନ୍ମରେ କଲି ପାପ ବହୁତର
ତେଣୁ ଦୁଃଖ ଭୋଗ କରେ ବହୁ ପରକାର ।
ତିକ୍ତ ରସସହ ମଧୁ ଆସ୍ୱାଦନ କଲେ
ଯେ ସ୍ୱାଦୁ ହୁଏ ଐହିକ ଭୋଗ ସେ ପ୍ରକାରେ ।
ପୂର୍ବ ପୂର୍ବ ଜନ୍ମେ କଲି ଯେତେ ପୁଣ୍ୟ କର୍ମ
ସେ ଫଳେ କିଞ୍ଚିତ ସୁଖ ଲାଭ ଏହିକ୍ଷଣ ।
ସୁଖ ଭୋଗ ଅର୍ଥେ ପୂର୍ବେ ପୁଣ୍ୟ ଯାହା ଥିଲା
ଉତ୍କଟ ପାପର ଫଳେ ଦୁଃଖମୟ ହେଲା ।
ମୋପରି ଦୁଃଖୀ ଲୋକ ତ ସଂସାରରେ ନାହିଁ
ଭବ ସଂସାର ଜଞ୍ଜାଳେ ଆସକ୍ତ ଯେ ହୋଇ ।
ମନ ମଧ୍ୟେ ଆପଣଙ୍କୁ ଯେବେ ଚିନ୍ତିଥାନ୍ତି
ଆଉ ଜନ୍ମ ଦୁଃଖ ଭୋଗ କିମ୍ପାଇ କରନ୍ତି ।
ହେ ମୁରାରି ଏ ସଂସାରେ କେତେ ପିତା ହେଲି
କେତେଥର ପୁତ୍ର ହୋଇ ଜନମ ଲଭିଲି ।
କେତେବେଳେ ପ୍ରଭୁ କେତେବେଳେ ହେଲି ଦାସ
କେବେ ମାତା ପତି ଜାୟାବନ୍ଧ୍ୟା ଆଉ ହଂସ ।
କେତେ ପକ୍ଷୀ ଜାତି କେବେ ହୋଇଲି ଦେବତା
ଉଚ୍ଚ ନୀଚେ ଜନ୍ମି ଭୋଗ କଲି କି ଅବସ୍ଥା ।
କେତେ ପ୍ରକାରେ ଯେ ରିଷ୍ଟ ଭୋଗ କରିଅଛି
ତେଣୁ ଆପଣଙ୍କ ଚିନ୍ତା ମନୁ ପାସୋରିଛି ।
ପ୍ରଭୋ ଏତେ କାଳେ କଷ୍ଟ ସହି ଏକଦିନ
ବୁଝି ନ ପାରିଲା ମାୟାଧରଙ୍କର କାମ ।
ଆପଣଙ୍କୁ ନ ଚିହ୍ନିଲି ପଶୁର ସମାନ
ସସାଗରା ପୃଥିବୀରେ କଲି ରାଜପଣ ।
ସ୍ୱରୂପା ସୁନ୍ଦରୀ ଶତ ଶତ ପୁରନାରୀ
ମନ ଅନୁକୂଳେ ଭୋଗ କରୁଅଛି ହରି ।
ଏହି ନିଷ୍କଣ୍ଟକ ରାଜ୍ୟ ପଶୁ ହସ୍ତଗତ
ପଶୁସ୍କନ୍ଧେ ଗୁରୁ ଭାରା ଦେବାକି ଉଚିତ ।
ହେ କୃପା ସାଗର ତୁମ୍ଭେ ଦୟାକର ମୋତେ
ଭାର ଓହ୍ଲାଇ ଦିଅନ୍ତୁ କନ୍ଧରୁ ତୁରିତେ ।
ଏହି ଭାର ଯେତେବେଳେ ହୋଇବ ଲାଘବ
ମୋର କଷ୍ଟ ଦୂର ହେବ ଆହେ ବାସୁଦେବ ।
ହେ ଦୀନ ଦୟାଳୁ ହସ୍ତୀ କରିଲା ସ୍ମରଣ
ତାହାର ବନ୍ଧନ ଶୀଘ୍ର କରିଲ ମୋଚନ ।
ଘଟି ଯନ୍ତ୍ର ପରି ଘୁରୁଅଛି ଏ ସଂସାରେ
କେବେ ଖସୁଛି ତଳକୁ ଉଠୁଛି ଉପରେ ।
ଜଗନ୍ନାଥ ଏ ଦୁଃଖରୁ କର ପରିତ୍ରାଣ
ଆଉ ମାତୃ ଗର୍ଭେ ନ କରିବି ମୁଁ ବିଶ୍ରାମ ।
ଜଳ ସ୍ରୋତେ ଭାସମାନ ବୃକ୍ଷର ସମାନ
ସଂସାର ସ୍ରୋତରେ ଭାସୁଅଛି ମୁଁ ତେସନ ।

Digitized by srujanika@gmail.com

ଆପଣଙ୍କ ଭିନ୍ନ ବନ୍ଧୁ ଆଉ କେହି ନାହିଁ
ବିଷୟ ଭୋଗରେ ଶ୍ରଦ୍ଧା ମନରେ ବଢ଼ଇ ।
ସଂସାର ବନ୍ଧନ ଅତି କଠୋର ହୋଇଛି
ପାପ ବୁଦ୍ଧି ପାପ କାର୍ଯ୍ୟ ସର୍ବଦା ମାତିଛି ।
ଆପଣଙ୍କ ପାଦପଦ୍ମେ ନ ହୁଏ ଆସକ୍ତ
ପାପ କାର୍ଯ୍ୟରୁ ସେ ବୁଦ୍ଧି ଫେରିବ ଯେମନ୍ତ ।
ଆପଣଙ୍କ ପାଦ ପଦ୍ମେ ଲୀନ ହୋଇଥିବ
ଏତିକି ପ୍ରାର୍ଥନା ବୁଦ୍ଧ ଅଚ୍ୟୁତ ନ ହେବ ।
ସହସ୍ର ଜନ୍ମ ସଞ୍ଚିତ ସୌଭାଗ୍ୟ ବଳରେ
ଆପଣ ପ୍ରାପ୍ତ ହୁଅନ୍ତି କୃତ ପୁଣ୍ୟଫଳେ ।
ସଚ୍ଚିଦାନନ୍ଦ ସାଗର ସ୍ୱରୂପୀ ଆପଣ
ଆପଣଙ୍କ ଭିନ୍ନ ଅନ୍ୟେ ନ କରନ୍ତି ମନ ।
ଦୁଃଖମୟ ବିଷରୂପ ଅଳ୍ପ ସୁଖଯୁକ୍ତ
ବିଷୟ ରାଶିରେ ନ ହୁଅନ୍ତି ବିମୋହିତ ।
ଅତ୍ୟନ୍ତ ସୁଖ କେବଳ ଦୁଃଖ ଗ୍ରନ୍ଥି ଯୁକ୍ତ
ଦୁର୍ଭେଦ୍ୟ କର୍ମ ବନ୍ଧନେ ନାନା କାର୍ଯ୍ୟବ୍ୟସ୍ତ ।
ଅନାଦି ଅନନ୍ତ ଆନନ୍ଦରେ ପରିପୂର୍ଣ୍ଣ
ଆପଣଙ୍କ ପାଦପଦ୍ମ ପାଇବି କେସନ ।
ମମତାବର୍ତ୍ତ କୁକର୍ମ କୁମ୍ଭୀରରେ ପୂର୍ଣ୍ଣ
ଏମାୟା ସାଗରେ ଭାସୁଅଛି ଚିରଦିନ ।
ଦେବ ଆଶ୍ରୟ ବିହୀନ ଜନର ଉପରେ
କୃପା ଦୃଷ୍ଟି ଦେଇ ପାରି କରିଦିଅ ତୀରେ ।
ଯେଉଁମାନେ କରିବାକୁ ସ୍ୱକାର୍ଯ୍ୟ ସାଧନ
ଶ୍ରୀପଦେ କରନ୍ତି ନିତ୍ୟ ଆଶ୍ରୟ ଗ୍ରହଣ ।
ତାହାଙ୍କର ମନୋରଥ କରିବାକୁ ପୂର୍ଣ୍ଣ
ହେ ଦୀନ ଦୟାଳୁ ତୁମ୍ଭେ ସଦା ସାବଧାନ ।
ଆପଣ ଅଟନ୍ତି ଏକ ଉଦ୍ଧାର କରତା
ଏକଥା ନ ବୁଝି କ୍ଷୁଦ୍ର କାର୍ଯ୍ୟେ ଭ୍ରମେ ବୃଥା ।
ହେ ଜଗତ ବନ୍ଦନୀୟ ମୁଁ ତ ଅତି ଦୀନ
ହେ ଦୀନ ବାନ୍ଧବ ମୋତେ କର ପରିତ୍ରାଣ ।
ହେ ବେଦାନ୍ତ ଶାସ୍ତ୍ରବେଦ୍ୟ ଅବ୍ୟୟ ଈଶ୍ୱର
କରନ୍ତି ସମର୍ଥ ପଣେ ପାପ ରାଶି ଦୂର ।
ହେ ନାଥ ମୁଁ ମନ୍ଦ ମତି ଆପଣଙ୍କୁ ତେଜି
ଘୂରୁଅଛି ଇହକାଳ ସୁଖ ଖୋଜି ଖୋଜି ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ସମସ୍ତ
ପ୍ରାଣୀବର୍ଗ ଆପଣଙ୍କ ମାୟାରେ ନିଦ୍ରିତ ।
ଆପଣଙ୍କର ସ୍ୱରୂପ ଜ୍ଞାନ ସୂର୍ଯ୍ୟୋଦୟ
ହେଲେ ମୋହ ନିଦ୍ରାତେଜି ଉଠିବେ ନିଶ୍ଚୟ ।
ବଳଦେବ ଆପଣ ତ ଅଖିଳ ଈଶ୍ୱର
ସହସ୍ର ଫଣା ଛତ୍ରରେ ଦେହ ମନୋହର ।
ବଳବାନ୍ ବ୍ୟକ୍ତି ମଧ୍ୟେ ଶ୍ରେଷ୍ଠ ଯେ ଆପଣ
ତେଣୁ ହୋଇଅଛି ବଳଦେବ ତୁମ୍ଭ ନାମ ।
ଯେଣୁ ଅଟନ୍ତି ଜଗତ ଈଶ୍ୱର ଆପଣ
ତେଣୁ ତୁମ୍ଭ ପାଦ ପଦ୍ମେ ପଶିଲି ଶରଣ ।
ହେ ନାଥ ଆପଣଙ୍କର ଯେଉଁ ନିଜଶକ୍ତି
ଏ ଜଗତ ସୃଷ୍ଟି କରି ଲଭିଅଛି ଖ୍ୟାତି ।
ଯାହାଙ୍କୁ ହୃଦୟ ପଦ୍ମେ ଦେଇଛି ଆସନ
ସେ ତ ଦେବଗଣଙ୍କର ଉତ୍ପତ୍ତି କାରଣ ।
ଏ ଅଖିଳ ଜଗତର ଆଶ୍ରୟ ଅଟନ୍ତି
ସେହି ସୁଭଦ୍ରା ଦେବୀଙ୍କ ଚରଣେ ପ୍ରଣତି ।
ହେ ନାଥ ଯାର କିରଣ ପ୍ରତିବିମ୍ବ ରୂପେ
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ଯେ ଦୃଶ୍ୟ ହୁଏ ଆପେ ।
ଜଗନ୍ନାଥଙ୍କର ହସ୍ତ ସଂସର୍ଗ ଫଳରେ
ଦୁର୍ଦ୍ଦାନ୍ତ ଦୈତ୍ୟମାନଙ୍କ ପ୍ରାଣ ବେଗେ ହରେ ।
ସୁନ୍ଦର ରୂପେ ଜଗତ ଯେ କରେ ଦର୍ଶନ
ତେଣୁ ଜଗତେ ଲଭିଛ ନାମ ସୁଦର୍ଶନ ।
ସେ ସୁଦର୍ଶନ ଚକ୍ରକୁ କରୁଛି ପ୍ରଣାମ
ଏ ଘୋର ସଂସାରୁ ଦେବ କର ପରିତ୍ରାଣ ।
ଜୈମିନି କହିଲେ ସେହି ରାଜା ଇନ୍ଦ୍ରଦ୍ୟୁମ୍ନ
ଏହିରୂପେ ସ୍ତବ କଲେ ସାଷ୍ଟଙ୍ଗ ପ୍ରଣାମ ।
ଜଗନ୍ନାଥ ଏ ସଂସାର ସାଗରେ ନିମଗ୍ନ
ହେ ଅନାଥ ବନ୍ଧୁ ମୋତେ କର ପରିତ୍ରାଣ ।
ସେହିସ୍ଥାନେ ଥିଲେ ଆଉ ଯେତେ ରାଜାଗଣ
ବେଦ ପାରଗ ଉତ୍ତମ ଶ୍ରୋତ୍ରୀୟ ବ୍ରାହ୍ମଣ ।
ମୁନିବର୍ଗ ଦ୍ୱିଜଗଣ କ୍ଷତ୍ରିୟ ବିଦ୍ୱାନ
ବୈଶ୍ୟ ଜାତି ସର୍ବେ କଲେ ସାଷ୍ଟାଙ୍ଗ ପ୍ରଣାମ ।
ଜଗନ୍ନାଥ ବଳଦେବ ସୁଭଦ୍ରା ଦେବୀଙ୍କୁ
ସ୍ତୁତି କଲେ ଉଚ୍ଚେ ପଢ଼ି ବୈଦିକ ମନ୍ତ୍ରକୁ ।
ସୂକ୍ତ ମନ୍ତ୍ର ପୁରାଣୋକ୍ତ ସ୍ତବ ସ୍ତୋତ୍ରମାନ
କବିତା ରଚନା କରି ଗାଇଲେ ବିଦ୍ୱାନ ।
ନାରଦ ମୁନି ଯେ ସ୍ତବ ପଢ଼ିଲେ ତକ୍ଷଣ
ଜୟ ଜୟ ନାରାୟଣ ପ୍ରଭୁ ଭଗବାନ ।
ଅପାର ଭବ ସାଗରୁ କର ପରିତ୍ରାଣ
ସନକ ସନନ୍ଦ ସନାତନ ଯୋଗୀଗଣ ।
ଚିନ୍ତା କରୁଛନ୍ତି ଦିବ୍ୟ ତତ୍ତ୍ୱ ଅନୁଦିନ
ନିଜ ମାୟାରେ କରିଛ ଏ ସୃଷ୍ଟି ଭିଆଣ ।
ଛନ୍ଦୋମୟ ଗାନ ନାଗରାଜାଙ୍କର ପ୍ରିୟ
ଭକ୍ତ ବତ୍ସଳ ହେ ପ୍ରଭୁ ଭକ୍ତଜନ ପ୍ରିୟ ।
ନିଜ ମାୟାଜାଲେ ଆଚ୍ଛାଦିତ ନିଜ ରୂପ
ବିଶ୍ୱ ପ୍ରକାଶ ବିଶ୍ୱ ତୋ ମୁଖ ବିଶ୍ୱ ରୂପ ।

Digitized by srujanika@gmail.com

ଅନନ୍ତ ନେତ୍ର ଅନନ୍ତ କର୍ଣ୍ଣ ପାଦ ହସ୍ତ
ଶିର ଗ୍ରୀବା ନାସା ଚର୍ମ କେଶ ଲୋମଯୁକ୍ତ ।
ହେ ଅନନ୍ତ ଲିଙ୍ଗ ତୁମ୍ଭେ ସର୍ବ ଲୋକାତ୍ମକ
ସର୍ବଲୋକ ସୁଖାବହ ସର୍ବୋପକାରକ ।
ସର୍ବଲୋକେ ନମସ୍କୃତ ଲୀଳା ବିଳସିତ
କୋଟି ପଦ୍ମୋଦ୍ଭବ ରୁଦ୍ର ଇନ୍ଦ୍ରାଦି ସେବିତ ।
ତ୍ରିଭୁବନ ଗୁରୁ ପ୍ରଭୋ ନମସ୍ତେ ନମସ୍ତେ
ଜ୍ଞାନର ଅତୀତ ମହାପ୍ରଭୁ ହେ ନମସ୍ତେ ।
ପୁରୋହିତଙ୍କୁ କହିଲେ ରାଜା ଇନ୍ଦ୍ରଦ୍ୟୁମ୍ନ
ବିଷ୍ଣୁଙ୍କର ପୂଜା ଦ୍ରବ୍ୟ କର ଆୟୋଜନ ।
ନାରଦଙ୍କ ଉପଦେଶେ ସେହି ନରପତି
ମନ୍ତ୍ର ପଢ଼ି ଦେବତାଙ୍କୁ ପୂଜିଲେ ଝଟତି ।
ବଳଦେବଙ୍କୁ ଯେ ପୂଜା କଲେ ଭକ୍ତିଭରେ
ଦ୍ୱାଦଶାକ୍ଷର ଶ୍ରୀ ବାସୁଦେବଙ୍କୁ ମନ୍ତ୍ରରେ ।
ଉତ୍ତାନ ପାଦ ରାଜାର ପୁତ୍ର ଏହି ମନ୍ତ୍ର
ଉପାସନା କରି ଉର୍ଦ୍ଧ୍ୱ ଲୋକେ ବସିଲେ ତ ।
ଅତ୍ୟନ୍ତ ପାବନ ଅଟେ ଯେ ପୁରୁଷ ସୂକ୍ତ
ତିନି ବେଦରେ ରହିଛି ତାହାର ମହତ୍ତ୍ୱ ।
ସେ ପୁରୁଷ ସୂକ୍ତ ପାଠ କଲେ ନରପତି
ବିଷ୍ଣୁଙ୍କୁ ପୂଜା କରିଲେ ମନେ କରି ଭକ୍ତି ।
ସୁଭଦ୍ରାଙ୍କୁ ଦେବୀ ସୂକ୍ତ ମନ୍ତ୍ରରେ ପୂଜିଲେ
ସୌଦର୍ଶନୀ ସୂକ୍ତେ ସୁଦର୍ଶନ ପୂଜା କଲେ ।
ସେ ରାଜା ନିଜେ ବିଭବ ଭକ୍ତି ଅନୁସାରେ
ସକଳ ଦେବତା ପୂଜା ସମାପନ କଲେ ।
ଦେବତାମାନଙ୍କ ପ୍ରୀତି ସାଧନ ନିମିତ୍ତ
ସାତ୍ତ୍ୱିକ ଭାବେ ବିପ୍ରଙ୍କୁ ଦକ୍ଷିଣା ଦେଲେ ତ ।
ତୁଳା ପୁରୁଷ ପ୍ରଭୃତି ଯେତେ ମହା ଦାନ
ଯେଉଁ ଦିନେ ଅଶ୍ୱମେଧ ଯାଗ ହୁଏ ପୂର୍ଣ୍ଣ ।
ଅଳଂକୃତ କରି କୋଟି ଧେନୁ ଦାନ
ଆନନ୍ଦ ମନେ ପ୍ରଦାନ କରିଲେ ରାଜନ ।
ଏହି ଧେନୁମାନଙ୍କର ଖୁରାଗ୍ରେ ଖୋଦିତ
ସେହି ସ୍ଥାନରେ ହୋଇଲା ଏକ ମହାଖାତ ।
ଦାନ କାଳରେ ହସ୍ତରୁ ଯେ ଜଳ ଖସିଲା
ସେହି ଜଳେ ମହାଖାତ ପୂର୍ଣ୍ଣ ହୋଇଗଲା ।
ଏକ ପବିତ୍ର ତୀର୍ଥରେ ହେଲା ପରିଣତ
ସ୍ନାନ ତର୍ପଣ କରିଲେ ପିତୃଗଣ ତୃପ୍ତ ।
ସହସ୍ରାଶ୍ୱମେଧ ଯଜ୍ଞ ଫଳ ଲାଭ କରେ
ସଂଶୟ ନ କର ତୀର୍ଥ ଫଳଦାନ କାରେ ।
ରାଜା ଇନ୍ଦ୍ରଦ୍ୟୁମ୍ନଙ୍କର ନାମ ଅନୁସାରେ
ଇନ୍ଦ୍ରଦ୍ୟୁମ୍ନ ସରୋବର ବିଖ୍ୟାତ ଲୋକରେ ।

ଯେ ମାନବ ପିତୃଗଣଙ୍କର ଉଦ୍ଦେଶ୍ୟରେ
ପିଣ୍ଡ ଦାନ କରଇ ଯେ ଏ ତୀର୍ଥ କୂଳରେ ।
ଏକ ବିଂଶତି ପୁରୁଷ କରଇ ଉଦ୍ଧାର
ସେ ମାନବ ବ୍ରହ୍ମଲୋକେ କରଇ ବିହାର ।
ଅଶ୍ୱମେଧ ଯାଗରୁ ଯେ ହୋଇ ଉତପନ୍ନ
ଇନ୍ଦ୍ରଦ୍ୟୁମ୍ନ ସରୋବର ନାମେ ବିଦ୍ୟମାନ ।
ପୃଥିବୀରେ ଶ୍ରେଷ୍ଠ ତୀର୍ଥ ଆଉ କାହି ନାହିଁ
ତ୍ରିପଥ ଗାମିନୀ ଗଙ୍ଗା ସମାନ ଅଛଇ ।
ଜଗନ୍ନାଥ ଦେବଙ୍କର ପ୍ରସାଦ ନିର୍ମାଣ
କରିବାକୁ ବିଚାରିଲେ ତହିଁ ଇନ୍ଦ୍ରଦ୍ୟୁମ୍ନ ।
ଦୈବଜ୍ଞଗଣ ନିର୍ଣ୍ଣୟ କରିଲେ ତକ୍ଷଣ
ଯୋଗ ନକ୍ଷତ୍ର ମୁହୂର୍ତ୍ତ ଆଦି ଶୁଭଦିନ ।
ନାରଦ ପ୍ରଭୃତି ବିପ୍ରଗଣଙ୍କୁ ତୋଷିଲେ
କର୍ମାଙ୍ଗ ସ୍ୱସ୍ତି ବାଚନ ରାଜନ ପଢ଼ିଲେ ।
ଶ୍ରୀ ଜଗନ୍ନାଥଙ୍କୁ ମନେ କରିଲେ ସ୍ମରଣ
ପ୍ରସାଦ ନିର୍ମାଣ ଅର୍ଥେ ଦେଲେ ଅର୍ଘ୍ୟ ଦାନ ।
ବସୁଧା ଦେବଙ୍କୁ ରାଜା ପ୍ରାର୍ଥନା କରିଲେ
ଯେତେକାଳ ଚନ୍ଦ୍ର ସୂର୍ଯ୍ୟ ଥିବେ ଆକାଶରେ ।
ସେତେକାଳଯାଏ ରହିଥିବ ଏହି ସ୍ଥାନ
ବାସ୍ତୁଯାଗେ ବାସ୍ତୁଦୋଷ ହେଲା ଉପଶମ ।
ଶିଳ୍ପୀଗଣେ ବହୁ ଧନ ପୁରସ୍କାର ଦେଲେ
ଗୀତ ବାଦ୍ୟ ଉତ୍ସବାଦି ଆନନ୍ଦେ କରିଲେ ।
ଦୀନ ଅନାଥ ବିପନ୍ନ ଥିଲେ ଯେତେ ଜନ
ତାହାଙ୍କର ଅଭିଳାଷ କରିଲେ ପୂରଣ ।
ନାନା ଦେଶରୁ ଯେ ଆସିଥିଲେ ରାଜାଗଣ
ନିଷ୍ପାପ ହେଲେ କରିଲେ ବିଷ୍ଣୁଙ୍କୁ ଦର୍ଶନ ।
ଇନ୍ଦ୍ରଦ୍ୟୁମ୍ନ ସେ ରାଜାଙ୍କୁ ବହୁ ପ୍ରଶଂସିଲେ
ସ୍ୱଦେଶେ ଯିବା ନିମିତ୍ତ ଆଦେଶ କରିଲେ ।
ନରପତି ଦେବଗୃହ ନିର୍ମାଣ ନିମିତ୍ତ
ବହୁ ପ୍ରସ୍ତର ଛେଦନ କଲେ ଯଥାର୍ଥତ ।
ନିର୍ମାଣ କାର୍ଯ୍ୟେ ଅସଂଖ୍ୟ ଧନ ବ୍ୟୟ କଲେ
ଅଧିକ ପ୍ରସ୍ତର ଲୋଡ଼ା ହେଲା ସେ ସ୍ଥାନରେ ।
ପାଷାଣ ସମ୍ପତ୍ତିଶାଳୀ ଯେଉଁ ରାଜା ଥିଲେ
ବହୁ ଦେଶରୁ ତାହଙ୍କୁ ଡକାଇ ଆଣିଲେ ।
ସେ ରାଜାଙ୍କୁ ସଭାମଧ୍ୟେ କହିଲେ ରାଜନ
ଦିଗ୍‌ବିଜୟ କାଳେ ଯେତେ କଲି ଉପାର୍ଜ୍ଜନ ।
ବ୍ୟୟ କରିଦେବି ସେହି ଉପାର୍ଜ୍ଜିତ ଧନ
ଜଗନ୍ନାଥଙ୍କ ଦେଉଳ କରିଣ ନିର୍ମାଣ ।
ଯେତେ ଶ୍ରମ ଦିଗ୍‌ବିଜୟ ବେଳେ କରିଥିଲି
ଦେଉଳ ନିର୍ମାଣ କରି ସଫଳ ମଣିଲି ।

Digitized by srujanika@gmail.com

ଏହାଠାରୁ କି ଅଧିକ ଭାଗ୍ୟ ଆଉ ହେବ
ସ୍ୱର୍ଜିତ ଧନ ଦେଉଳ ନିର୍ମାଣ ଲାଗିବ ।
ବିଷ୍ଣୁଙ୍କର ପ୍ରିୟତମା ଲକ୍ଷ୍ମୀ ଦେବୀଙ୍କର
ଅନୁଗ୍ରହେ ହୋଇଅଛି ସମ୍ପତ୍ତି ମୋହର ।
ସେ ଧନେଏହି ଦେଉଳ କରିବି ନିର୍ମାଣ
କୃତ୍ୟ କୃତ୍ୟ ହୋଇ ତାଙ୍କୁ କରିବି ଅର୍ପଣ ।
ଚରାଚର ପ୍ରଭୁଙ୍କର କୃପା ମୋତେ ଅଛି
ଦେଉଳ ତୋଳିବା ପାଇଁ ସମର୍ଥ ହୋଇଛି ।
ସଦୟ ହୁଅନ୍ତି ସେହି ପ୍ରଭୁ ଯାହା ପ୍ରତି
ସର୍ବତୋଭାବେ ବଢ଼ଇ ତାହାର ସମ୍ପତ୍ତି ।
ଯାହାଙ୍କ ଜିହ୍ୱାରେ ବାକ୍ୟଦେବୀ କରେ ନୃତ୍ୟ
ଆରାଧନା କରି ବ୍ରହ୍ମା ଲଭିଛି ବ୍ରହ୍ମତ୍ୱ ।
ରୁଦ୍ର ମହେଶ୍ୱର ପଦେ ହେଲେ ଅଧିଷ୍ଠିତ
ଇନ୍ଦ୍ର ସ୍ୱର୍ଗ ଭୁବନରେ ପାଇଲେ ମହତ୍ତ୍ୱ ।
ଜଗତରେ ବନ୍ଦନୀୟ ସେ ଦେବ ଶାଶ୍ୱତ
ତାହାଙ୍କର ପାଦ ପୂଜା କରିବା ନିଶ୍ଚିତ ।
ଆନନ୍ଦେ କରନ୍ତି କୃଷ୍ଣ ଚରଣ ପୂଜନ
ପାପ ମୁକ୍ତି ହୋଇଥାନ୍ତି ସେ ମହାତ୍ମାଗଣ ।
ଶ୍ରୀ ପୁରୁଷୋତ୍ତମ ଦେହ ରୂପ ଏହି କ୍ଷେତ୍ର
ପୁରୁଷୋତ୍ତମ ନାମରେ ହୋଇଛି ବିଖ୍ୟାତ ।
ଏହିସ୍ଥାନେ ଜଗନ୍ନାଥ ଅହଙ୍କାରେ ଯୁକ୍ତ
ଆବିର୍ଭୂତ ତିରୋଭୂତ ହୁଅନ୍ତି ନିଶ୍ଚିତ ।
ଦେହଧାରୀ ମାଧବଙ୍କୁ ଏ କ୍ଷେତ୍ର ମଧରେ
ଯେ ମାନବ ଶ୍ରଦ୍ଧାସହ ଅରଚନା କରେ ।
ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ତାର
ସିଦ୍ଧି ହୁଏ ନ ଦେଖଇ ଭବ ପାରାବାର ।
ସ୍କନ୍ଧ ପୁରାଣ ଉତ୍କଳ ଖଣ୍ଡେ ବିଂଶ ଛାନ୍ଦ
ସମାପ୍ତ ଉତ୍କଳ ଭାଷା କଲି ଅନୁବାଦ ।
ଜୟ ଜଗନ୍ନାଥ ଜୟ ବଳଭଦ୍ର ଦେବ
ଜଗନ୍ମୟୀ ସୁଭଦ୍ରା ଦେବୀଙ୍କ ଦୟା ହେବ ।
ସୁଦର୍ଶନ ଚକ୍ରେ ଛେଦ ଜଗତ ଆପଦ
ଦୀନ ହରିହର ଇଚ୍ଛା କରେ ସେହି ପାଦ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ଉନ୍ଦ୍ରଦ୍ୟୁମ୍ନ ସ୍ତୁତି କରଣେ ନାମ
ବିଂଶୋଽଧ୍ୟାୟଃ



# ଏକବିଂଶ ଅଧ୍ୟାୟ

ଇନ୍ଦ୍ରଦ୍ୟୁମ୍ନ ରାଜା ଏହିପରି କହୁଛନ୍ତି
ଏ ସମୟେ ଏକ ବିପ୍ର ହେଲେ ଉପସ୍ଥିତି ।
ଋକ୍‌ବେଦ ପାରଗ ଜ୍ଞାନ ଶାସ୍ତ୍ରରେ ପଣ୍ଡିତ
ଜ୍ଞାନଶୀଳ ନୃପତିଙ୍କୁ କହିଲେ ଏମନ୍ତ ।
ହେ ନୃପ ତୁମ୍ଭର ଭାଗ୍ୟ ଅଟଇ ବିଚିତ୍ର
ଦାରୁମୂର୍ତ୍ତି ଧରି ଆବିର୍ଭୂତ ଜଗନ୍ନାଥ ।
ଏ ଦେବଙ୍କୁ ଉପାସନା କରେ ଯେଉଁ ବ୍ୟକ୍ତି
ବେଦ କହେ ସେହି ବ୍ୟକ୍ତି ହୋଇଯାଏଁ ମୁକ୍ତି ।
ଏ ଦାରୁରେ ପୁରୁଷର କର୍ତ୍ତୃତ୍ୱଟି ନାହିଁ
ସମୁଦ୍ର ପାରିରୁ ଭାସିଆସି ଯେ ଅଛଇ ।
ଦୁରାରାଧ୍ୟ ଏ ଦେବଙ୍କୁ କଲେ ଉପାସନା
ଅତ୍ୟନ୍ତ ଦୁର୍ଲ୍ଲଭ ମୋକ୍ଷପଦ ପାଏ ସିନା ।
ଏକଥା ଶୁଣନ୍ତେ ବ୍ରହ୍ମଜ୍ଞାନର ସାଗର
ନାରଦ ବିପ୍ରଙ୍କ ବାକ୍ୟ କରିଲେ ସ୍ୱୀକାର ।
ବେଦାନ୍ତ ବାକ୍ୟରେ ଜ୍ଞାନ ଏହି ଭଗବାନ
ବେଦ ଅନୁଯାୟୀ କାର୍ଯ୍ୟ କରନ୍ତି ସାଧନ ।
ଏହି ପ୍ରଭୁ ସୃଷ୍ଟି କାଳେ ନିଜେ ସୃଷ୍ଟି ହୋଇ
କାର୍ଯ୍ୟ କରନ୍ତି ବେଦର ପ୍ରମାଣକୁ ନେଇ ।
ବେଦ ବହିର୍ଭୂତ କାର୍ଯ୍ୟେ ପ୍ରବୃତ୍ତ କରନ୍ତି
ସାମାଜିକ ଜନେ ତାହା ଗ୍ରହଣ କରନ୍ତି ।
ବେଦରେ ପ୍ରସିଦ୍ଧ ଏ ପ୍ରଭୁଙ୍କ ଅବତାର
ବେଦାନ୍ତ ଜ୍ଞେୟ ପୁରୁଷ ରୂପରେ ପ୍ରଚାର ।
ସାମାନ୍ୟ ପ୍ରତିମା ବୋଲି ନ ମଣ ରାଜନ
ମନୁଷ୍ୟଙ୍କୁ ଏ କରନ୍ତି ମୁକତି ପ୍ରଦାନ ।
ଯେ ମନୁଷ୍ୟ ଏ ପ୍ରଭୁଙ୍କୁ କରେ ଦରଶନ
ନାଶ ହୁଏ ତାର ଅତିବଡ଼ ତମୋଗୁଣ ।
ଏ ଜଗନ୍ନାଥ ପ୍ରତିମା ଅର୍ଚ୍ଚନା ବିଧାନ
ଏହା ପୂର୍ବରୁ ବେଦରେ ହୋଇଛି ବର୍ଣ୍ଣନ ।
ପ୍ରତିମା ସକଳ ଦୃଷ୍ଟିଗୋଚର ହୁଅନ୍ତେ
ସୌଭାଗ୍ୟ ରବି ଉଦୟ ହୋଇଲା ଜଗତେ ।
ଆଶ୍ଚର୍ଯ୍ୟ ଭାରତବାସୀଗଣ ପାପଶୂନ୍ୟ
ଯେଣୁ ଆବିର୍ଭୂତ ମୁକ୍ତିଦାତା ଜନାର୍ଦ୍ଦନ ।
ଭାରତବର୍ଷ ମଧରେ ଉତ୍କଳ ପ୍ରଦେଶ
ସକଳ ଦେଶ ମୁକୁଟ ମଣିର ସଦୃଶ ।
ଏଦେଶ ବାସୀ ଏ ଚର୍ମ ଚକ୍ଷୁରେ ଦର୍ଶନ
କରୁଛନ୍ତି ଯେଣୁ ବ୍ରହ୍ମରୂପୀ ଜନାର୍ଦ୍ଦନ ।
ଶ୍ରୁତି ସ୍ମୃତି ଶାସ୍ତ୍ର ମତ କର୍ମେ ଆଚ୍ଛାଦିତ
ଘଟ ଯନ୍ତ୍ର ପରି ମାୟା ହୋଇଅଛି ବ୍ୟାପ୍ତ ।

Digitized by srujanika@gmail.com

କେବଳ ତ ସତ୍ୟପଦ ପ୍ରାପ୍ତିର କାରଣ
ଜ୍ଞାନମୟ ଜଗନ୍ନାଥ ଯହିଁ ବିଦ୍ୟମାନ ।
ଶ୍ରୁତି ମତ ବିନା ମୁକ୍ତି ଦାନ କରୁଛନ୍ତି
ଜନ୍ମ ମୃତ୍ୟୁରୂପେ ଯାତାୟାତ ଯେ କରନ୍ତି ।
ସେ ଦୁଷ୍ଟ ଜନମାନଙ୍କୁ ବାନ୍ଧବ ସଦୃଶ
ସୁଖଦାନ କରୁଛନ୍ତି ସେହି ହୃଷୀକେଶ ।
ହେ ରାଜନ ସାବଧାନେ ମନ ଦେଇ ଶୁଣ
ଶ୍ରୁତି ସ୍ମୃତିର ନିୟମ ନାହିଁ ଏହି ସ୍ଥାନ ।
ଏ ପ୍ରଭୁଙ୍କୁ ଯେ କୌଣସି ସ୍ଥାନେ ଯେ ପ୍ରକାରେ
ନେତ୍ର ପଥରେ ଦର୍ଶନ ଯଦି କେହି କରେ ।
ଜନ୍ମ ମୃତ୍ୟୁ ଭୋଗ କରେ ଅଭକ୍ତ ଯେ ଜନ
ଯଦ୍ୟପି ସେ କରେ ଏହି ପ୍ରଭୁଙ୍କୁ ଦର୍ଶନ ।
ସହସ୍ରାଶ୍ୱମେଧ ଯଜ୍ଞ ଫଳ ସେହି ପାଏ
ଏହି ବିଷୟରେ ମନେ ନ କର ସଂଶୟେ ।
ସ୍ଥିର ଚିତ୍ତେ ଭକ୍ତିଯୋଗେ ନିୟମରେ ରହି
ଯେଉଁ ଜନ ଏ ପ୍ରଭୁଙ୍କୁ ଭଜନା କରଇ ।
ବ୍ରହ୍ମ ସାଯୁଜ୍ୟ ମୁକତି ଲଭେ ସେହି ଜନ
ଏହି ବିଷୟରେ ନାହିଁ ସନ୍ଦେହ କାରଣ ।
ବହୁ ଦୁଃଖ ଶ୍ରମ ସାଧ୍ୟ ଅଳ୍ପକାଳ ସ୍ଥାୟୀ
ପୁଣ୍ୟ କ୍ଷୟ ହେଲେ ମର୍ତ୍ତ୍ୟଭୁବନେ ଆସଇ ।
ଏହିପରି ସ୍ୱର୍ଗ ସୁଖ କ୍ଷଣକେ ବିନାଶ
ଏ ସ୍ୱର୍ଗ ଭୋଗକୁ ଇଚ୍ଛା ନ କରେ ନରେଶ ।
ଦାବ ଅଗ୍ନିର ସମାନ ପାପ ଭସ୍ମ କରେ
ସଚ୍ଚିଦାନନ୍ଦ ମୂର୍ତ୍ତିକୁ ଯେ ଦର୍ଶନ କରେ ।
ମୁକ୍ତିଦାତା ଦାରୁବ୍ରହ୍ମ ବିଜେ ଏ ସ୍ଥାନରେ
ହେ ରାଜନ ଆଉ ନାହିଁ କ୍ଷିତି ମଣ୍ଡଳରେ ।
ଦୁରାତ୍ମାଜନ ବେଦୋକ୍ତ କାର୍ଯ୍ୟେ ଅସମର୍ଥ
ସେ ଯେବେ ଦର୍ଶନ କରେ ଦେବ ଜଗନ୍ନାଥ ।
ମହାତ୍ମାଗଣ ବୈଦିକ କର୍ମ ଅନୁଷ୍ଠାନ
କରିଲେ ଭକ୍ତି ଯେ ଫଳ ବା ଲଭେ ଦୁର୍ଜନ ।
ଅନ୍ୟକ୍ଷେତ୍ରେ ଭଗବାନ ଦୁର୍ଲ୍ଲଭ ହୁଅନ୍ତି
ମୁକ୍ତିଦାତା ରୂପେ ଏ କ୍ଷେତ୍ରରେ ବସିଛନ୍ତି ।
ମହାତ୍ମନ ତୁମ୍ଭ ହିତ କହୁଅଛି ଶୁଣ
ଆପଣ ତ ବିଷ୍ଣୁଭକ୍ତ ପଣ୍ଡିତ ପ୍ରଧାନ ।
ଏହିସ୍ଥାନେ ବନ୍ଧୁବର୍ଗ ସହ ବାସ କର
ଉପାସନା କର ନିତ୍ୟ ଚକ୍ରଧରଙ୍କର ।
ସେହି ବ୍ରାହ୍ମଣଙ୍କ ବାକ୍ୟ କରିଲେ ଶ୍ରବଣ
ନାରଦ ଋଷି କହିଲେ ମଧୁର ବଚନ ।
ଏ ବ୍ରାହ୍ମଣ ବେଦ ମତ ଯା କଲେ ଦର୍ଶନ
ତାହାର ଯଥାର୍ଥ ଅର୍ଥ କରୁନ୍ତୁ ଶ୍ରବଣ ।

ସୃଷ୍ଟି ଆରମ୍ଭେ ବ୍ରହ୍ମାଙ୍କ ନିଃଶ୍ୱାସ ପବନ
ତହିଁରୁ ବେଦ ସମୂହ ହେଲା ଉତ୍ପନ୍ନ ।
ସେ ବେଦ ମଧ୍ୟରେ ଦାରୁବ୍ରହ୍ମ ସମ୍ବନ୍ଧରେ
ଅବ୍ୟକ୍ତ ଯା ଥିଲା ବ୍ୟକ୍ତ ହେଲା ଏ ସ୍ଥାନରେ ।
ହେ ରାଜା ଏହା ପୂର୍ବରୁ ସେହି ପିତାମହ
ଅବ୍ୟକ୍ତ ଅର୍ଥକୁ ଜାଣିଥିଲେ ତ ନିଶ୍ଚୟ ।
ତାହାଙ୍କ ମୁଖରୁ ମୁହିଁ ଜାଣିଲି ସେ ଅର୍ଥ
ତୁମ୍ଭ କାର୍ଯ୍ୟ ସାଧନାରେ ହେଲି ନିୟୋଜିତ ।
ତୁମ୍ଭେ ଏହି ଦେବତାଙ୍କୁ କର ଆରାଧନା
ଏହି ସ୍ଥାନେ ବାସ କର ଆହେ ମହାମନା ।
ବ୍ରହ୍ମାଙ୍କ ସମୀପେଆମ୍ଭେ ଯିବୁ ଏହିକ୍ଷଣ
ମୁରାରୀଙ୍କ ଆବିର୍ଭାବ କରିବୁ ବର୍ଣ୍ଣନ ।
ତୁମ୍ଭେ ମନଯୋଗ ସହ ବିପୁଳ ଅର୍ଥରେ
ଦେଉଳ ନିର୍ମାଣ କର ଅତି ଯତନରେ ।
ସେ ଦେଉଳେ ଜଗନ୍ନାଥ ହେଲେ ପ୍ରତିଷ୍ଠିତ
ସାଯୁଜ୍ୟ ମୁକତି ଦାନ କରିବେ ନିଶ୍ଚିତ ।
ଜୈମିନି କହିଲେ ନରପତି ମୁନିଙ୍କର
ବଚନ ଶୁଣନ୍ତେ ଶୀରେ ଦେଲେ ନିଜ କର ।
ହେ ମହର୍ଷେ ମୁ ତ ଆପଣଙ୍କ ସଙ୍ଗତରେ
ବ୍ରହ୍ମାଙ୍କ ସମୀପେ ଯିବାକୁ ତ ଇଚ୍ଛା କରେ ।
ତାହାଙ୍କର ପ୍ରସାଦରେ ଶ୍ରୀ ଜଗନ୍ନାଥଙ୍କୁ
ଦର୍ଶନ କରି ପବିତ୍ର କରିବି ନେତ୍ରକୁ ।
ମୂର୍ତ୍ତି ପ୍ରତିଷ୍ଠା କିପରି ହେବ ପ୍ରଭୁଙ୍କର
ଦେଉଳେ ପ୍ରତିଷ୍ଠା କାର୍ଯ୍ୟ ଉତ୍ସବ ସକଳ ।
ବ୍ରହ୍ମା ବ୍ରହ୍ମଲୋକେ ଛାଡ଼ି ମର୍ତ୍ତ୍ୟକୁ ଆସିବେ
ଦେଉଳେ ପୁରୁଷୋତ୍ତମଙ୍କୁ ଯେ ବସାଇବେ ।
ହେ ମହର୍ଷି ପ୍ରତିମା କରନ୍ତୁ ଅଳ୍ପଦିନ
ଦେଉଳ ମଧ୍ୟରେ ହେବ ରତ୍ନ ସିଂହାସନ ।
ଏ ସକଳ କାର୍ଯ୍ୟ କରି ବେଗେ ସମାପନ
ଦୁହେଁ ମିଳି ବ୍ରହ୍ମଲୋକେ କରିବା ଗମନ ।
ଏହାପରେ ରାଜା ଶିଳ୍ପୀଗଣଙ୍କୁ ଡାକିଲେ
ଦେଉଳ ନିର୍ମାଣ କାର୍ଯ୍ୟେ ନିଯୁକ୍ତ କରିଲେ ।
ଉଚିତ ସତ୍କାର ଆଉ କଲେ ଧନ ଦାନ
ଯେପରି ଦେଉଳ ଶୀଘ୍ର ହୋଇବ ନିର୍ମାଣ ।
ଦେଉଳ ନିର୍ମାଣ କାର୍ଯ୍ୟ ଦିନକୁ ଦିନ ତ
ଅତି ସୁନ୍ଦର ରୂପରେ ହୋଇଲା ଉନ୍ନତ ।
ଶୁକ୍ଳପକ୍ଷ ଚନ୍ଦ୍ରପରି ଅବୟବ ତାର
ପରିପୂର୍ଣ୍ଣ ହୋଇଦିଶେ ଅତ୍ୟନ୍ତ ସୁନ୍ଦର ।
ଦେଉଳର ଉଚ୍ଚ ଏତେ ଅଧିକ ହୋଇଲା
ଦର୍ଶକ ନେତ୍ରେ ସକଳ ଦେଖି ନ ପାରିଲା ।

Digitized by srujanika@gmail.com

କେତେ ସଂଖ୍ୟକ ପ୍ରସ୍ତର ଲାଗିଛି ଦେଉଳେ
ତାହା ସଂଖ୍ୟା କରିହେବ କୌଣସି ପ୍ରକାରେ ।
କିନ୍ତୁ ରାଜା କଲେ ବ୍ୟୟ କେତେ କୋଟିବିତ୍ତ
ସେ ଦେଉଳ ହୋଇଅଛି ତା ସଂଖ୍ୟା ଅତୀତ ।
ସେତେବେଳେ ଏ ଭାରତ ବରଷ ମଧ୍ୟରେ
ଯେଉଁ ରାଜାମାନେ ରାଜ୍ୟ ଶାସନରେ ଥିଲେ ।
ଇନ୍ଦ୍ରଦ୍ୟୁମ୍ନ ସେ ସକଳ ରାଜାଙ୍କୁ ତୁରିତ
ଦେଉଳ ନିର୍ମାଣ କାର୍ଯ୍ୟେ କରିଲେ ନିଯୁକ୍ତ ।
ଏକ ବିଭାଗରେ ଏକ ନିଯୁକ୍ତ ହୋଇଲେ
ସେମାନେ ବହୁଲୋକଙ୍କୁ ନିଯୁକ୍ତ କରିଲେ ।
ସର୍ବେ ଦେଉଳ ନିର୍ମାଣେ ପ୍ରବୃତ୍ତ ହୋଇଲେ
ଏହିରୂପ ଯେତେ ଜନ ତହିଁ ରୁଣ୍ଡ ହେଲେ ।
ଏ ସକଳ ଲୋକଙ୍କର ହର୍ଷ କୋଳାହଳ
ପରିପୂର୍ଣ୍ଣ ହୋଇଗଲା ଆକାଶ ମଣ୍ଡଳ ।
ନୃପତିଙ୍କ ଶ୍ରଦ୍ଧା ଭକ୍ତି ସାତ୍ୱିକ ଭାବରେ
ପ୍ରସନ୍ନ ହେଲେ ଶ୍ରୀଦେବୀ ମନ୍ଦିର ଗାତ୍ରରେ ।
ଦେଉଳର କେଉଁ ସ୍ଥାନ ସ୍ୱର୍ଣ୍ଣରେ ନିର୍ମିତ
କେଉଁସ୍ଥାନେ ହୋଇଅଛି ରତନ ଖଚିତ ।
ସ୍ଫଟିକ ନିର୍ମିତ ସ୍ତମ୍ଭ କାହିଁ ଶୋଭା ପାଏ
ଶରତ୍ ଋତୁର ମେଘପରି ଦେଖାଯାଏ ।
ଏପରି ସୁନ୍ଦର ମନୋହର ଗୁଣେ ପୂର୍ଣ୍ଣ
ନିର୍ମାଣ କଲେ ଦେଉଳ ରାଜା ଇନ୍ଦ୍ରଦ୍ୟୁମ୍ନ ।
ଦେଉଳ ଉପରେ ବଜ୍ରପାତ ଆଦି ଭୟ
ନିବାରଣ ଅର୍ଥେ ଶାସ୍ତ୍ରେ ଅଛି ଯେ ଉପାୟ ।
ପୁରୁଷାକୃତି ପ୍ରସ୍ତର ସ୍ଥାପନ କରିଲେ
ଦୈବ ବିପ୍ତାତରୁ ରକ୍ଷା ପାଇଥାଏ ଭଲେ ।
ପୁନର୍ବାର ହେବାପାଇଁ ଦେଉଳ ସଂସ୍କାର
ବହୁମୂଲ୍ୟ ରତ୍ନ ତହିଁ ରଖିଲେ ନୃପବର ।
କୀର୍ତ୍ତିଶାଳୀ ମହାରାଜା ପ୍ରସାଦ ନିର୍ମାଣ
ସମ୍ବନ୍ଧେ ନିଜ କର୍ତ୍ତବ୍ୟ କରେ ସମାପନ ।
ଅନ୍ୟାନ୍ୟ ଭୂପତିଗଣ ମନେ ବିଚାରିଲେ
ଏ କାର୍ଯ୍ୟ ସମ୍ଭବ ହେବନାହିଁ ତ୍ରିକାଳରେ ।
ଜୈମିନି କହନ୍ତି ସ୍ୱର୍ଗବାସୀ ଦେବଗଣ
ଏପରି ଦେଉଳ କରି ନଥିଲେ ଦର୍ଶନ ।
ଭୂମିତଳେ ଏହିପରି ଦେଉଳ ତ ନାହିଁ
ଅଥବା ସ୍ୱର୍ଗ ଭୁବନେ ରହିଥିବ କାହିଁ ।
ଯେଉଁ ରାଜାର ସହାୟ ନାରଦ ଅଟନ୍ତି
ଆଉ ମଧ୍ୟ ଏ ଜଗତ ସ୍ରଷ୍ଟା ବେଦବତି ।
ସେ ରାଜାଙ୍କୁ କେଉଁ ବସ୍ତୁ ଦୁର୍ଲ୍ଲଭ ନ ହେବ
ବିଷ୍ଣୁ ବା ବିଷ୍ଣୁ ଭକ୍ତଙ୍କୁ ସକଳ ସମ୍ଭବ ।

ଅନନ୍ତର ଇନ୍ଦ୍ରଦ୍ୟୁମ୍ନ ପ୍ରାସାଦ ମଧ୍ୟରେ
ନାରଦ ଋଷିଙ୍କୁ ଏହି କଥା ପଚାରିଲେ ।
ହେ ଋଷି ଆମ୍ଭର ଏହି ପ୍ରସାଦ ଯେପରି
ଚିରକାଳ ଥିବ ବିଷ୍ଣୁଙ୍କ ଦେହପରି ।
ଏହା କହି ମୁନିଙ୍କର ପାଦଯୁଗଳରେ
ମସ୍ତକ ରଖି ପ୍ରମାଣ କଲେ ସେ କାଳରେ ।
ନାରଦ ନରପତିଙ୍କୁ ଉଠାଇ ଧରିଲେ
ଆଲିଙ୍ଗନ କରି ଏହି ବଚନ କହିଲେ ।
ହେ ନୃପତି ତୁମ୍ଭ ଆମ୍ଭ ଦୁହିଁଙ୍କ ମଧ୍ୟରେ
କୌଣସି ପ୍ରଭେଦ ନାହିଁ ରଖିଥା ମନରେ ।
କେବଳ ତୁମ୍ଭ ନିମିତ୍ତ ରହି ଜଗନ୍ନାଥ
ଏହି ସ୍ଥାନେ ସାକ୍ଷାତରେ ହେଲେ ଆବିର୍ଭୂତ ।
ତାହାଙ୍କର ପାଦପଦ୍ମେ ନିଶ୍ଚଳା ଭକତି
ହୋଇଅଛି ତୁମ୍ଭ ଅନ୍ତଃକରଣରେ ଅତି ।
ଏହାଠାରୁ କି ଅଧିକ ଅଛି ପରମାର୍ଥ
ପ୍ରଭୁଙ୍କୁ ଅର୍ଚ୍ଚନା କରି ହୁଅ ଜୀବନ୍ମୁକ୍ତ ।
ତୀର୍ଥ ପର୍ଯ୍ୟଟନ ମନ୍ତ୍ର ପାଠ ଜପ ଦାନ
ସଦକ୍ଷିଣା ଯାଗ ଯଜ୍ଞ କଲେ ସମାପନ ।
ଯେଉଁ ଫଳ ଲଭିବାକୁ ନ ହୁଏ ସମର୍ଥ
ଏକା ଉକ୍ତିଦ୍ୱାରା ତାହା ତୁମ୍ଭ ହସ୍ତଗତ ।
ହେ ରାଜନ ଶୋକ ତୁମ୍ଭେ ନ କର ଯେ ଆଉ
ଏପରି ଭକ୍ତି ମନରେ ଚିରକାଳ ଥାଉ ।
ପିତାମହଙ୍କ ନିକଟେ କରନ୍ତୁ ଗମନ
ତାହାଙ୍କୁ ବୁଝାଇ କହ ତୁମ୍ଭର ଯା ମନ ।
ପିତାମହ ତୁମ୍ଭଙ୍କୁ ତ ଉପଦେଶ ଦେବେ
ଯାତ୍ରା ମହୋତ୍ସବ ପ୍ରଭୁଙ୍କର ବୁଝାଇବେ ।
ହେ ରାଜନ ତୁମ୍ଭଙ୍କୁ ତ ସ୍ୱୟଂ ଭଗବାନ
ମନ ଅଭିଳାଷ ବର କରିବେ ପ୍ରଦାନ ।
ସ୍ୱୟଂ ଧାତା ଯେତେବେଳ ଆସିବେ ଏ ସ୍ଥାନ
ଏହି ଦେଉଳ ପ୍ରତିଷ୍ଠା କରିବେ ବିଧାନ ।
ସେତେବେଳେ ସପ୍ତଋଷି ଗଣ ସଙ୍ଗେ ଘେନି
ଏ ସ୍ଥାନରେ ଉପସ୍ଥିତ ହେବ ନୃପମଣି ।
ଅତଏବ ଆସ ଦୁହେଁଏକ ସଙ୍ଗେ ଯିବା
ବ୍ରହ୍ମଲୋକେ ବିଧାତାଙ୍କୁ ସାକ୍ଷାତ କରିବା ।
ପୃଥିବୀରେ ତୁମ୍ଭ ଭିନ୍ନ ଆଉ କେଉଁ ଜନ
ବ୍ରହ୍ମଲୋକେ ଯିବାକୁ ତ ନୁହଇ ଭାଜନ ।
ନାରଦ ମୁନି ରାଜାଙ୍କୁ କହିଲେ ଏମନ୍ତ
ଆକାଶ ପଥେ ଯିବାକୁ ଉଠିଲା ତୁରିତ ।
ସ୍କନ୍ଦ ପୁରାଣରେ ଉକ୍ତ ଉତ୍କଳ ଖଣ୍ଡରେ
ଏକବିଂଶ ଛାନ୍ଦ ଶେଷ ଉତ୍କଳ ଭାଷାରେ ।

Digitized by srujanika@gmail.com

ଜଗନ୍ନାଥ ପୂରିଅଛ ସକଳ ବସ୍ତୁରେ
ତୁମ୍ଭର ନ ଥିବା ସ୍ଥାନ ନାହିଁ ଜଗତରେ ।
ତୁମ୍ଭ ରୂପ ଚର୍ମ ନେତ୍ରେ ଦେଖି ନ ପାରଇ
ଜ୍ଞାନ ନେତ୍ର ଖୋଲି ନ ଦେଉଛ କାହିଁପାଇଁ ।
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କୁ ଯେ ଅନୁଗ୍ରହ କଲେ
ନୀଳାଚଳେ ଆସି ଦାରୁରୂପେ ବିଜେ ହେଲେ ।
ପାପୀ ତାପୀ ଜନଙ୍କୁ ଯେ କରିବ ଉଦ୍ଧାର
ପ୍ରତିଜ୍ଞା କରିଛ ପୂର୍ବକାଳେ ଦାମୋଦର ।
ନିଜର ପ୍ରତିଜ୍ଞା ରକ୍ଷାକର ଭଗବାନ
ଶ୍ରୀପଦେ ଗୁହାରି କରେ ହରିହର ଦୀନ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ଇନ୍ଦ୍ରଦ୍ୟୁମ୍ନ ରାଜା ନୀଳାଚଳେ ମନ୍ଦିର
ନିର୍ମାଣେ ନାମ ଏକବିଂଶୋଽଧ୍ୟାୟଃ ।



## ଦ୍ୱାବିଂଶ ଅଧ୍ୟାୟ

ଜୈମିନି କହନ୍ତି ମହୀପତି ଇନ୍ଦ୍ରଦ୍ୟୁମ୍ନ
ଅଲକ୍ଷ୍ୟ ଗତି ଋଷିଙ୍କୁ କହିଲେ ଏସନ ।
ହେ ନାରଦ ମନଠାରୁ ଅତି ବେଗବାନ
ପୁଷ୍ପରଥ ରହିଅଛି କରିବା ଗମନ ।
ଆମ୍ଭେ ଦୁହେଁ ସେହି ରଥ କରି ଆରୋହଣ
ବ୍ରହ୍ମାଙ୍କୁ ବ୍ରହ୍ମ ଲୋକରେ କରିବା ଦର୍ଶନ ।
କ୍ଷଣକାଳ ଅପେକ୍ଷା ତ କରନ୍ତୁ ଏଠାରେ
ଦେଉଳେ କର୍ମୀମାନଙ୍କୁ କହି ଆସେ ଥରେ ।
ଅତି ଶୀଘ୍ର ପ୍ରଭୁଙ୍କୁ ତ କରି ପ୍ରଦକ୍ଷିଣ
ଆସୁଅଛି ଏହି କଥା କହନ୍ତେ ରାଜନ ।
ନାରଦ ଋଷି ଶୁଣନ୍ତେ ଏସନ ବଚନ
ଶ୍ରଦ୍ଧାରେ ରାଜାଙ୍କ ହସ୍ତ କରିଲେ ଧାରଣ ।
ମହାବେଦୀର ସମୀପେ ହେଲେ ଉପସ୍ଥିତ
ବଳରାମ ସୁଭଦ୍ରା ସହିତ ଜଗନ୍ନାଥ ।
ବ୍ରହ୍ମଲୋକେ ଯିବା ପାଇଁ ପ୍ରାର୍ଥନା କରିଲେ
ବାରମ୍ବାର ପ୍ରଣାମ ଯେ ତହିଁ ଦୁହେଁ କଲେ ।
ଇନ୍ଦ୍ରଦ୍ୟୁମ୍ନ ତିନିବାର କରି ପ୍ରଦକ୍ଷିଣ
କାୟ ମନୋବାକ୍ୟେ କଲେ ସାଷ୍ଟାଙ୍ଗ ପ୍ରଣାମ ।
ଦୁଇ କରଯୋଡ଼ି କରି ଅତି ବ୍ୟାକୁଳରେ
ଯିବା ପାଇଁ ପୁନର୍ବାର ପ୍ରାର୍ଥନା କରିଲେ ।
ମୁନି ରାଜା ଦୁହେଁ ରଥ ଆରୋହଣ କଲେ
ବ୍ରହ୍ମଲୋକ ଅଭିମୁଖେ ଯାତ୍ରା ଆରମ୍ଭିଲେ ।
କ୍ରମେ ନଭୋ ମଣ୍ଡଳର ମଧ୍ୟବର୍ତ୍ତୀ ହେଲେ
ସୂର୍ଯ୍ୟମଣ୍ଡଳକୁ ପ୍ରଦକ୍ଷିଣ ପାଇଁ କଲେ ।
ସୂର୍ଯ୍ୟ ମଣ୍ଡଳକୁ ଅତିକ୍ରମ କରି ଗଲେ
ଏହିପରି ଉର୍ଦ୍ଧ୍ୱଲୋକେ ଗମନ କରିଲେ ।
ଏ ସମୟେ ଜନଲୋକ ବାସୀ ସିଦ୍ଧଗଣ
ନତ ମୁଖେ ଏମାନଙ୍କୁ ଚାହିଁଲେ ତକ୍ଷଣ ।
ମନୋମଳ ବିଶୋଧକ ଶ୍ରୀବିଷ୍ଣୁ ଚରିତ
ବାକ୍ୟାଳାପ କରି ହେଲେ ଦୁହେଁ ଆନନ୍ଦିତ ।
ନାରଦ ମହର୍ଷି ସର୍ବଲୋକ ନମସ୍କୃତ
ସକଳ ପୁରେ ଯିବାକୁ ତାଙ୍କୁ ଦ୍ୱାରମୁକ୍ତ ।
ମର୍ତ୍ତ୍ୟବାସୀ ନରରାଜା ବିଷ୍ଣୁଭକ୍ତି କରି
ସକଳ ପୁରେ ଯିବାକୁ ହେଲେ ଅଧିକାରୀ ।
ଯେ ଜନ ବିଷ୍ଣୁଙ୍କୁ ଏହା ଭକ୍ତି କରିପାରେ
ଦୁର୍ଲ୍ଲଭ ନୁହଇ ତାକୁ କିଛି ବ୍ରହ୍ମାଣ୍ଡରେ ।
ଅଧିକ ତ ମୁକ୍ତି ତାର ହୁଏ ହସ୍ତଗତ
ଦୁହେଁ ମହଲୋକେ ଯାଇଁ ହେଲେ ଉପସ୍ଥିତ ।
ସେ ସ୍ଥାନେ ଅଭିନନ୍ଦନ ସିଦ୍ଧଗଣ କଲେ
ସ୍ୱ-ଦେହ ପାର୍ଥିବ ବୋଲି ରାଜା ନା ଭାବିଲେ ।
ଏହି କ୍ରମେ ଉର୍ଦ୍ଧ୍ୱଲୋକେ ଗମନ କରିଲେ
ସୁଖୀ ଦ୍ୱନ୍ଦ୍ୱ-ଶୂନ୍ୟ ପୁରୁଷଙ୍କୁ ତ ଦେଖିଲେ ।
ଦେଖି ଦେଖି ସନ୍ତୁଷ୍ଟ ହୋଇଲେ ଇନ୍ଦ୍ରଦ୍ୟୁମ୍ନ
ଦେଉଳ ନିର୍ମାଣ କଥା କରିଲେ ସ୍ମରଣ ।
ଦେଉଳ କାର୍ଯ୍ୟ ସକଳ ସରିଛି କି ନାହିଁ
ବ୍ରହ୍ମଲୋକକୁ ଗମନ କରୁଅଛି ମୁହିଁ ।
ଏ ସମୟେ ଶତ୍ରୁ ଆସି ନଷ୍ଟ କରିଦେବେ
ନିଜର ଯେ ଅଧିକାର ଘୋଷଣା କରିବେ ।
କିମ୍ବା ନିଯୁକ୍ତ ସେବକେ କରି ଦ୍ରବ୍ୟ ଲୋଭ
ଦେଉଳର କାର୍ଯ୍ୟ ଶେଷ ନ କରିବେ ସର୍ବ ।
ଅଥବା ବେତନ ଭୋଗୀ ଶିଳ୍ପୀଗଣ ଯେତେ
ଅଳସୁଆପଣେ କାର୍ଯ୍ୟ ନ କରିବେ ତେତେ ।
ଯେ ପର୍ଯ୍ୟନ୍ତ ଚତୁର୍ମୁଖ ବିଧାତାଙ୍କୁ ନେଇ
ନୀଳାଚଳରେ ପ୍ରବେଶ ହୋଇନାହିଁ ମୁହିଁ ।
ଦେଉଳ ନିର୍ମାଣ କାର୍ଯ୍ୟ ସେହି ପରିଯନ୍ତ
ସମ୍ପନ୍ନ ହୋଇବ ନାହିଁ ଏକଥା ନିଶ୍ଚିତ ।
ଯେଉଁମାନେ ଏହି ବ୍ରହ୍ମଲୋକକୁ ଆସନ୍ତି
ସେମାନେ ଭୂ-ମଣ୍ଡଳକୁ ଆଉ ନ ଫେରନ୍ତି ।
ସାମନ୍ତ ରାଜାଏ ଏହିପରି ମନେ କରି
ମୋ ରାଜ୍ୟ ହରଣ କରି ନେବେ ଚେଷ୍ଟା କରି ।
ଏହି ଅବସ୍ଥାରେ ଯେତେ ଶତ୍ରୁ ରାଜାଗଣ
ମୋ ରାଜ୍ୟକୁ କରିବେ ତ ସର୍ବ ଆକ୍ରମଣ ।
ଉଦ୍‌ବେଗମନେ ରାଜା ଯେ ଚିନ୍ତା କରୁଥିଲେ
ତ୍ରିକାଳଦର୍ଶୀ ନାରଦ ତା ଜାଣି ପାରିଲେ ।
ହେ ରାଜେନ୍ଦ୍ର ଦୁଃଖ ମନେ ଚିନ୍ତା କରୁଅଛ
ଚିନ୍ତାର ଅତୀତ ସ୍ଥଳେ ଆସି ପହଞ୍ଚିଛ ।

Digitized by srujanika@gmail.com

ଆଧି ବ୍ୟାଧି ଜରା ମୃତ୍ୟୁଆଦି ଯେତେ କ୍ଳେଶ
ନାହିଁ ଏ ସ୍ଥାନରେ ମନେ ରଖନ୍ତୁ ନରେଶ ।
ମହାଭାଗ ଏ ସ୍ଥାନରେ ହୋଇଛ କୃତାର୍ଥ
ନରଦେହେ ବ୍ରହ୍ମଲୋକେ ହେଲେ ଉପସ୍ଥିତ ।
ବ୍ରହ୍ମଲୋକେ ସ୍ୱୟଂ ହରି ଦେବଙ୍କୁ ଦର୍ଶନ
କଲ ଯେଣୁ ତୁମ୍ଭେ ଅଟ ଅତି ଭାଗ୍ୟବାନ ।
ଯେଉଁ ଜୀବମାନେ ବ୍ରହ୍ମଲୋକକୁ ଆସନ୍ତି
ତୁଚ୍ଛା ସାଂସାରିକ କାର୍ଯ୍ୟେ ଶୋକ ନ କରନ୍ତି।
ନାରଦ ଋଷି ଏ ରୂପେ ବଚନ କହିଲେ
ମହୀପତି ସେ କଥାରେ ଉତ୍ତର କରିଲେ ।
ହେ ଋଷି ମୋ ରାଜ୍ୟ ବନ୍ଧୁ ଆତ୍ମୀୟ ସ୍ୱଜନ
ଏମାନଙ୍କ ପ୍ରତି ଶୋକ ନାହିଁ ମୋର ମନ ।
ଭଗବାନଙ୍କ ନିମିତ୍ତ ଦେଉଳ ତୋଳିଛି
ଏଣେ ବ୍ରହ୍ମଲୋକକୁ ତ ମୁହିଁ ଆସିଅଛି ।
ଏ କଥା ଜାଣି ଅଛନ୍ତି ମୋର ଭୃତ୍ୟଗଣ
ଅବଶିଷ୍ଟ କାର୍ଯ୍ୟ କରୁ ନ ଥିବେ ସମ୍ପନ୍ନ ।
ଯେଉଁ ଦେଉଳ ନିର୍ମାଣ କରିଅଛି ମୁହିଁ
ତାର ପ୍ରତିଷ୍ଠା କରିବ ସେ ସ୍ଥାନକୁ ଯାଇ ।
ସେ କାର୍ଯ୍ୟରେ କାଳେ ଜାତ ହେବ ବିଘ୍ନମାନ
ଏହା ମନେ କରି ଦୁଃଖ ହୁଏ ଏହିକ୍ଷଣ ।
ରାଜାଙ୍କର ଏହି ବାକ୍ୟ ଶ୍ରବଣ କରନ୍ତେ
ନାରଦ ମୁନି କହିଲେ ବଚନ ତୁରିତେ ।
ହେ ଭୂପାଳ ତୁମ୍ଭେ ନୁହ ସାମାନ୍ୟ ରାଜନ
ତୁଳନାରେ ତୁମ୍ଭେ ପ୍ରଜାପତିଙ୍କ ସମାନ ।
ପୃଥିବୀ ମଧ୍ୟରେ କେହି ବ୍ୟକ୍ତି ତୁମ୍ଭର ତ
ଅପକାର କରିବାକୁ ନୋହିଛି ସମର୍ଥ ।
ବର୍ତ୍ତମାନ ଯେଉଁ କାର୍ଯ୍ୟ କରିଛ ଆରମ୍ଭ
ତହିଁ ଜଗତ କର୍ତ୍ତାଙ୍କ ସାହାଯ୍ୟ ପାଇବ ।
ଏବେ ତୁମ୍ଭେ ବ୍ରହ୍ମଲୋକକୁ ଯେ ଆସିଅଛ
ତ୍ରିଲୋକରେ ତୁମ୍ଭ ଯଶ ଚନ୍ଦ୍ରପରି ସ୍ୱଚ୍ଛ ।
ତୁମ୍ଭର ପ୍ରତାପ ଅଟେ ସୂର୍ଯ୍ୟର ସମାନ
ତୁମ୍ଭ କାର୍ଯ୍ୟେ ବିଘ୍ନ ଜାତ କରିବ କେ ଜନ ।
ଚତୁର୍ମୁଖ ବ୍ରହ୍ମା ଯାକୁ ହୁଅନ୍ତି ସୁହାୟ
ତାର କାର୍ଯ୍ୟରେ କଦାପି ନାହିଁ ବିଘ୍ନଭୟ ।
ଆପଣ ମନରୁ ଦୁଃଖ ବେଗେ ଦୂର କର
କେହି କହି ନ ପାରିବ ଏ ଦେଉଳ ମୋର ।
ମହାରାଜା ଦେଖାଯାଉଅଛି ଅଳ୍ପ ଦୂରେ
ଶଚୀପତି ବସିଅଛି ସେ ସଭା ମଧ୍ୟରେ ।
ହେ ଭୂପତି ଏହି ଇନ୍ଦ୍ର ସଭାର ଉପରେ
ଦେଖ ବ୍ରହ୍ମାଙ୍କ ସଦନ ଦିଶେ କି ପ୍ରକାରେ ।

କୋଟିଏ ଚନ୍ଦ୍ରର କାନ୍ତି କରିଛି ଧାରଣ
ସେ ଶୋଭା ଦେଖିଲେ ତୋଷ ହେଉଅଛି ମନ।
କୋଟି ଅମୃତ ସାଗର ତୁଲ୍ୟ ଯାର କାନ୍ତି
ବ୍ରହ୍ମାଙ୍କ ସଦନ ପାଶେ ଉପସ୍ଥିତ ହୁନ୍ତି ।
ଏହିରୂପେ କଥାବାର୍ତ୍ତା ହୋଇ ଦୁହେଁ ଗଲେ
ବ୍ରହ୍ମାଙ୍କ ସଦନ ପାଶେ ଉପସ୍ଥିତହେଲେ ।
ବ୍ରହ୍ମର୍ଷିମାନଙ୍କ ମୁଖ ବିବରୁ ନିର୍ଗତ
ସୁସ୍ପଷ୍ଟ ବର୍ଣ୍ଣ ସୁ-ସ୍ୱର ସୁପଦେ ଭୂଷିତ ।
ବେଦ ଅଧ୍ୟୟନ ଧ୍ୱନି କରିଲେ ଶ୍ରବଣ
ସ୍ପଷ୍ଟ ପଦ ଉଚ୍ଚଶବ୍ଦେ ହେଉଅଛି ଗାନ ।
ଇତିହାସ ପୁରାଣେ ଯେ ଛାନ୍ଦ ଗାଥା କଳ୍ପ
ଭିନ୍ନ ଭିନ୍ନ ରୂପେ ତହିଁ ଶୁଣିଲ ତ ନୃପ ।
ଋଷିବର କହୁଛନ୍ତି ଆହେ ନୃପବର
ବ୍ରହ୍ମାଙ୍କ ସଦନୁ ଶୁଣିଯାଉଛି ସକଳ ।
ସଭା ଦେଖାଯାଉଅଛି ତହିଁ ବେଦପତି
ବ୍ରହ୍ମର୍ଷିମାନଙ୍କ ସହ ସୁଖେ ବସିଛନ୍ତି ।
ବହୁବିଧ ଜୀବଙ୍କର ଆଶ୍ରୟ ହୁଅନ୍ତି
ଜୀବନ୍ମୁକ୍ତ ଗଣଙ୍କର ଉପାସ୍ୟ ଅଟନ୍ତି ।
ଜୀବଗଣ ଥରେ ଏହି ସ୍ଥାନକୁ ଆସିଲେ
ସଂସାର ସଙ୍କଟେ ନ ପଡ଼ନ୍ତି ଆଉ ଭଲେ ।
ସତ୍ ଏହି ଶବ୍ଦ ଅଟେ ବ୍ରହ୍ମାଙ୍କର ନାମ
ସତ୍ୟ ଲୋକନାମେ ଖ୍ୟାତ ବ୍ରହ୍ମାଙ୍କ ସଦନ ।
ଏହାରି ଉପରି ଭାଗ ଅଟେ ମହାଶୂନ୍ୟ
ବ୍ରହ୍ମାର ଅଣ୍ଡ କପାଳ ଅଟେ ବିଦ୍ୟମାନ ।
ତାର ତଳେ ବୈକୁଣ୍ଠ ଭୁବନ ଅବସ୍ଥିତି
ସେ ସ୍ଥାନେ ମୁକ୍ତ ପୁରୁଷେ ବାସ କରିଥାନ୍ତି ।
ସେ ସ୍ଥାନରେ ଯୋଗୀଗଣଙ୍କର ଚିନ୍ତନୀୟ
ଯୋଗେଶ୍ୱର ଜନାର୍ଦ୍ଦନ ସାକ୍ଷାତ ବିଜୟ ।
ତାଙ୍କୁ ପ୍ରାପ୍ତ ହେଲେ ମୃତ୍ୟୁ ଭୟ ହୁଏ ଦୂର
ଆନନ୍ଦ ଘନ ଚୈତନ୍ୟ ଶରୀର ତାଙ୍କର ।
ଲୋକମାନଙ୍କର ସ୍ରଷ୍ଟା ସେ ପ୍ରଭୁ ଅଟନ୍ତି
ମତ୍ସ୍ୟ କୂର୍ମ ଆଦି ରୂପେ ଲୋକଙ୍କୁ ରଖନ୍ତି ।
ରୁଦ୍ର ରୂପ ଧରି ଲୋକ ସଂହାର କରନ୍ତି
ସେହି ସ୍ଥାନେ ଦେବ ଦେବଙ୍କର ଯେ ବସତି ।
ଏ କଥା ଋଷି ରାଜାଙ୍କୁ କହି କହି ଗଲେ
ଯାଇଁକରି ବ୍ରହ୍ମଲୋକେ ଉପସ୍ଥିତ ହେଲେ ।
ସେ ସ୍ଥାନେ ଦେଖିଲେ ଇନ୍ଦ୍ର ଆଦି ଦିଗପାଳ
ମନ୍ୱନ୍ତରାଧିପ ପିତୃଗଣ ଯେ ସକଳ ।
ବହୁକାଳୁଁ ନୀଚ ଜଳ ପରି ରହିଛନ୍ତି
ଦ୍ୱାରପାଳକୁ ବିନୟ ହୋଇଣ କହନ୍ତି ।

Digitized by srujanika@gmail.com

ତଥାପି ତ ଦ୍ୱାରପାଳ ଛାଡ଼ି ଦେଉ ନାହିଁ
ଭିତରେ ପ୍ରବେଶ କରି ନ ପାରନ୍ତି କେହି ।
ଇନ୍ଦ୍ରଦ୍ୟୁମ୍ନ ସହ ନାରଦଙ୍କୁ ଦ୍ୱାରପାଳ
ଦେଖିବା ମାତ୍ରେ ପ୍ରଣାମ କରିଲା ଚଞ୍ଚଳ ।
ଦ୍ୱାରପାଳ କହେ ପ୍ରଭୋ! ଚଉଦ ଭୁବନ
ପର୍ଯ୍ୟଟନ କରୁଛନ୍ତି ସର୍ବଦା ଆପଣ ।
ଆପଣ ତ ନ ଥିବାରୁ ପ୍ରିତୃ ଦେବଙ୍କର
ସଭା ଶୋଭା ପାଉନାହିଁ ଆହେ ମୁନିବର ।
ଯଦ୍ୟପି ବ୍ରହ୍ମ ତତ୍ପର ବ୍ରହ୍ମଙ୍କ ପ୍ରବର
ସଭାରେ ଅଛନ୍ତି ଗୌତମାଦି ମୁନିବର ।
ତଥାପି ବ୍ରହ୍ମ ଲୋକରେ ସଭା ରମଣୀୟ
ହେଉ ନାହିଁ ଆପଣଙ୍କ ବିନା ମହାଶୟ ।
ତାରକା ମଣ୍ଡଳୀ ରାତ୍ରେ ଉଦୟ ହୋଇଲେ
ଚନ୍ଦ୍ରବିନା ଆକାଶ କି ଶୋଭା ପାଏ ଭଲେ ।
ଦ୍ୱାରପାଳ ଏହିପରି ବିନୟେ କହିଲା
ନାରଦଙ୍କୁ ଯିବାପାଇଁ ଦ୍ୱାର ଛାଡ଼ିଦେଲା ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ଦ୍ୱାବିଂଶ ଅଧ୍ୟାୟ ଶେଷ ଉତ୍କଳ ଭାଷାରେ ।
ଜୟ ଜଗନ୍ନାଥ ଦୀନଜନ ଦୁଃଖ ହାରୀ
କିମ୍ପାଇଁ ନ ଶୁଣ ହରିହରର ଗୁହାରି ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ଇନ୍ଦ୍ରଦ୍ୟୁମ୍ନ ରାଜା ବ୍ରହ୍ମଲୋକ ଗମନେ
ନାମ ଦ୍ୱାବିଂଶୋଽଧ୍ୟାୟଃ



## ତ୍ରୟୋବିଂଶ ଅଧ୍ୟାୟ

ନାରଦ ଋଷି କହନ୍ତି ଦ୍ୱାରପାଳ ଶୁଣ
ମହାଯଶସ୍ୱୀ ରାଜର୍ଷି ରାଜା ଇନ୍ଦ୍ରଦ୍ୟୁମ୍ନ ।
ବୈଷ୍ଣବମାନଙ୍କ ଚୂଡ଼ାମଣି ସାର୍ବଭୌମ
ଆସିଛନ୍ତି ବିଧାତାଙ୍କୁ କରିବେ ଦର୍ଶନ ।
ଏହିକ୍ଷଣି ତୁମ୍ଭେ ତାଙ୍କୁ ଦିଅ ଅନୁମତି
ବିଧାତାଙ୍କ ସମୀପକୁ ଯିବେ ସେ ଝଟତି ।
ଏହା ଶୁଣି ଦ୍ୱାରପାଳ ଉତ୍ତର ଦିଅନ୍ତି
ହେ ସ୍ୱାମୀ ! ଆପଣଙ୍କର ସଙ୍ଗେ ଆସିଛନ୍ତି ।
ତେଣୁ ବୁଝୁଛି ନୁହନ୍ତି ଏ ସାମାନ୍ୟ ବ୍ୟକ୍ତି
ନ ଛାଡ଼ିବି ଦ୍ୱାର ନ ପାଇଲେ ଅନୁମତି ।
ଏହି ସ୍ଥାନେ ପିତୃଗଣ ଆଉ ଦିଗପାଳ
ମନ୍ୱନ୍ତରାଧିପ ରହି ଅଛନ୍ତି ସକଳ ।
ମର୍ତ୍ତ୍ୟବାସୀ ପ୍ରଭାବ ସମ୍ପନ୍ନ ନରପାଳ
କେତେକ୍ଷଣ ବିଶ୍ରାମ କରନ୍ତୁ ଏହିସ୍ଥଳ ।
ଆପଣ ପଦ୍ମଯୋନିଙ୍କୁ ଯାଇଁ ଜଣାଇବେ
ଅନୁମତି ଦେଲେ ସଭା ମଧ୍ୟକୁ ଏ ଯିବେ ।
ଆମ୍ଭେ ଭୃତ୍ୟ ଦ୍ୱାର ରକ୍ଷା କାର୍ଯ୍ୟରେ ନିଯୁକ୍ତ
ପ୍ରଭୁ ଆଦେଶ ପାଳନ କରିବା ଉଚିତ ।
ଆପଣଙ୍କ ପିତା ଆଉ ଆପଣ ନିଜେ ତ
ଏ ବିଷୟରେ କରିବେ ନାହିଁ କ୍ରୋଧ ଜାତ ।
ଦ୍ୱାରପାଳର ବଚନ ଶୁଣନ୍ତେ ଏସନ
ନାରଦ ସଭା ମଧକୁ କରିଲେ ଗମନ ।
ସାଷ୍ଟାଙ୍ଗ ପ୍ରଣାମ କଲେ ପିତାଙ୍କ ଚରଣ
ଜଣାଇଲେ ଦ୍ୱାରେ ଅଛନ୍ତି ରାଜା ଇନ୍ଦ୍ରଦ୍ୟୁମ୍ନ ।
ଏହା ଶୁଣି ପଦ୍ମଯୋନି ଆଖି ଠାରିଦେଲେ
ରାଜାଙ୍କୁ ପ୍ରବେଶ ପାଇଁ ଅନୁମତି କଲେ ।
ସେ ସମୟେ ହେଉଥିଲା ସଭାରେ ସଂଗୀତ
ତାହା ଶୁଣିବାକୁ ଚତୁର୍ମୁଖ ଥିଲେ ରତ ।
ନାରଦ ସନ୍ତୋଷ ଶୁଣି ଗାନ ଗାୟକର
ଅନୁମତି ହେଲା ଏହା ବୁଝିଲେ ସତ୍ୱର ।
ରାଜାଙ୍କୁ ନେଇ ସଭାରେ ପ୍ରବେଶ ହୋଇଲେ
ଏହା ଦେଖି ଦେବଗଣ ବିସ୍ମୟ ମଣିଲେ ।
ଜଗତ୍‌କର୍ତ୍ତା ବିଧାତାଙ୍କୁ ଦୂରରୁ ଦର୍ଶନ
କରନ୍ତେ ଚିତ୍ତେ ବିଚାର କଲେ ଇନ୍ଦ୍ରଦ୍ୟୁମ୍ନ ।
ଏ ପର୍ଯ୍ୟନ୍ତ ଥିଲେ ଦାରୁ ମୂର୍ତ୍ତି ଜଗନ୍ନାଥ
ସ୍ୱୟଂ ଜଗନ୍ନାଥ ବୋଲି ଦେବେ ତ ସାକ୍ଷାତ ।
ରାଜ ହାତଯୋଡି କରି ଧୀରେ ଧୀରେ ଗଲେ
ସ୍ତବ ପାଠ ନମସ୍କାର ପ୍ରଣାମାଦି କଲେ ।
ସଭାକୁ ଆସନ୍ତେ ରାଜା ମନେ ଭୟ କଲେ
ନାରଦ ଦେଖାଇ ଦେଲେ ସେ ସ୍ଥାନେ ବସିଲେ ।
ଅନନ୍ତର ଲକ୍ଷ୍ମୀପତି ଚରିତ ଗାୟନ
ଶୁଣନ୍ତେ ବିଧାତା ହେଲେ ମୁହୂର୍ତ୍ତେ ମଉନ ।
ସାବିତ୍ରୀ ଶାରଦା ବ୍ରହ୍ମାଙ୍କର ଦୁଇ ପତ୍ନୀ
ବିଧାତାଙ୍କ ଦୁଇପାର୍ଶ୍ୱେ ଚାମର ଢାଳନ୍ତି ।
ସ୍ୱଚ୍ଛ ନିର୍ମଳ ଶରୀରଧାରୀ ଦେବଗଣ
ବ୍ରହ୍ମାଙ୍କର କରୁଛନ୍ତି ସୁଖେ ସ୍ତୁତି ଗାନ ।
ସ୍ୱୟଂ ଚତୁର୍ମୁଖ ଧାତା କରିଲେ ସୃଜନ
କାଳ କାଷ୍ଠା ନିମେଷାଦି ଯୁଗ ପରିମାଣ ।
ସେ ଲୋକର ମନ୍ୱନ୍ତର ଯୁଗ ଆବର୍ତ୍ତନ
କଳ୍ପାନ୍ତର ଆଦି ନାମ ନ ହୁଏ ଶ୍ରବଣ ।
ସେ ଲୋକରେ ସେହି ବ୍ୟକ୍ତି ନୁହେଁ ଜରାଗ୍ରସ୍ତ
ଜନ୍ମ ମୃତ୍ୟୁ ଆଧି ବ୍ୟାଧି ପୀଡ଼ାର ମୁକତ ।
ସେହି ସ୍ଥାନେ ପିତାମହ ସଂଗୀତ ଶେଷରେ
ହସି ହସି ରାଜାଙ୍କୁ ତ କହିଲେ ମଧୁରେ ।

Digitized by srujanika@gmail.com

ଇନ୍ଦ୍ରଦ୍ୟୁମ୍ନ ମହା ବଳଶାଳୀ ନରନାଥ
ତୁମ୍ଭ ଭଗବାନଙ୍କ ଅତି ପ୍ରିୟପାତ୍ର ।
ସାମାନ୍ୟ ଜନେ ଦୁର୍ଲ୍ଲଭ ଏ ସତ୍ୟଲୋକ ତ
ଏକଥା ପୂର୍ବରୁ ତୁମ୍ଭେ ହୋଇଅଛ ଜ୍ଞାତ ।
ମୁନିଗଣେ ଅତି ଦୁଃଖେ ତପସ୍ୟା କରନ୍ତି
ପାପ ଶୂନ୍ୟ ହୋଇ ବ୍ରହ୍ମଲୋକକୁ ଆସନ୍ତି ।
ଚତୁର୍ଦ୍ଦଶ ଭୁବନରେ ସୃଷ୍ଟି ପ୍ରାଣୀଗଣ
ବିଭିନ୍ନ ପ୍ରକାର ରୂପ କରନ୍ତି ଧାରଣ ।
ସେ ସକଳ ଏହି ବ୍ରହ୍ମ ଲୋକକୁ ଆଶ୍ରୟ
କରିଥାନ୍ତି ଏ କଥାରେ ନ କର ସଂଶୟ ।
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ଉଦ୍ଦେଶ୍ୟଟି ଯାହା
ପିତାମହ ପୂର୍ବରୁ ଯେ ଜାଣିଛନ୍ତି ତାହା ।
ତଥାପି ସମ୍ମାନ ସହ ପରମ ପ୍ରୀତିରେ
ରାଜାଙ୍କୁ ତ ପଚାରିଲେ ସସ୍ନେହ ଦୃଷ୍ଟିରେ ।
କି ନିମିତ୍ତ ଆସିଅଛ ଏ ନିତ୍ୟ ଭୁବନ
ମନ କଥା ପ୍ରକାଶ୍ୟରେ କରନ୍ତୁ ବର୍ଣ୍ଣନ ।
ଆଉ ଯେ ବିଷୟ ବାଞ୍ଛା ମନମଧ୍ୟେ ଅଛି
ତାହା କହିବାରେ ନାହିଁ ପ୍ରୟୋଜନ କିଛି ।
ରାଜା କହନ୍ତି ବିନୟେ ଚତୁର ବଚନ
ଆପଣ ତ ଅନ୍ତର୍ଯ୍ୟାମୀ ମନ କଥା ଜାଣ ।
ଆପଣଙ୍କର ଅଜ୍ଞାତ କେଉଁକଥା ଭବେ
ଶ୍ରବଣ କରନ୍ତୁ ତାହା କହୁଅଛି ଏବେ ।
ତଥାପି ହେ ନାଥ ମୋତେ ପଚାରିଲ ଯାହା
ତହିଁରେ ପ୍ରକାଶ ହେଲା ମୋର ପ୍ରତି ଦୟା ।
ଆପଣଙ୍କ ପୁତ୍ର ନାରଦଙ୍କର ମୁଖରୁ
ଆପଣଙ୍କର ଆଦେଶ ଶୁଣିବା ହେତୁରୁ ।
ସହସ୍ର ସଂଖ୍ୟାରେ ଅଶ୍ୱମେଧ ଯାଗ କଲି
ସମୁଦ୍ରେ ଭାସିବା ଏକ ଦାରୁ ଯେ ଦେଖିଲି ।
ସେ ଦାରୁକୁ ଆଣି ମୂର୍ତ୍ତି କରିଲି ଗଠନ
ପ୍ରଭୁଙ୍କ ନିମିତ୍ତ କଲି ମନ୍ଦିର ନିର୍ମାଣ ।
ଆପଣଙ୍କ ଅନୁଗ୍ରହେ ସକଳ କରିଛି
ସାକ୍ଷାତ ଜଗନ୍ନାଥଙ୍କ ଦର୍ଶନ ପାଇଛି ।
ଯେଉଁ ସ୍ଥାନରେ କରିଛି ପ୍ରାସାଦ ନିର୍ମାଣ
ସେହି ସ୍ଥାନକୁ ଆପଣ କରିବେ ଗମନ ।
ସେ ଦେଉଳେ ଜଗନ୍ନାଥ ଦେବଙ୍କୁ ସ୍ଥାପନ
କଲେ ମୋ ମନ କାମନା ହୋଇଯିବ ପୂର୍ଣ୍ଣ ।
ଏଣୁ ନାରଦ ଋଷିଙ୍କ ସଙ୍ଗରେ ଆସିଛି
ଆପଣଙ୍କ ପାଦପଦ୍ମ ଦର୍ଶନ ଲଭିଛି ।
ପିତାମହ ଆମ୍ଭପ୍ରତି ହୁଅ ସୁପ୍ରସନ୍ନ
ସତ୍ୱର କରନ୍ତୁ ଆମ୍ଭ ଅଭୀଷ୍ଟ ପୂରଣ ।

ସାକ୍ଷାତେ ଆପଣ ଆଉ ଜଗନ୍ନାଥ ଏକ
ଦୁହିଁଙ୍କ ମଧ୍ୟରେ ନାହିଁ କିଛି ତ ପାର୍ଥକ୍ୟ ।
ଏହିକ୍ଷଣି ଜଗନ୍ନାଥ ହେବେ ସ୍ଥାପନୀୟ
ଆପଣ ସ୍ଥାପନ କର୍ତ୍ତା ହୋଇବେ ନିଶ୍ଚୟ ।
ଏକମାତ୍ର ଜ୍ଞେୟ ବସ୍ତୁ ସେହି ଜଗନ୍ନାଥ
ଆପଣ ଜ୍ଞାତା ରୂପରେ ସ୍ୱୟଂ ଅବସ୍ଥିତ ।
ଜୈମିନି କହନ୍ତି ନରପତି ଇନ୍ଦ୍ରଦ୍ୟୁମ୍ନ
ଏହି ପ୍ରକାରେ ପିତାଙ୍କୁ କରନ୍ତେ ଜଣାଣ ।
ଦୁର୍ବାସା ମୁନି ସହସା ଏହି ସମୟରେ
ଉପସ୍ଥିତ ହେଲେ ଆସି ସେ ସଭା ମଧ୍ୟରେ ।
ବିଧାତାଙ୍କୁ ସାଷ୍ଟାଙ୍ଗରେ ହେଲେ ପ୍ରଣିପାତ
କୃତାଞ୍ଜଳି ହୋଇକରି କହିଲେ ଏମନ୍ତ ।
ପ୍ରଭୋ ! ସଭାଦ୍ୱାର ଦେଶ ଦିଗପାଳଗଣ
ସର୍ବେ ମନ୍ୱନ୍ତରାଧିପ ଆଉ ପିତୃଗଣ ।
ଦ୍ୱାରପାଳ ଏମାନଙ୍କୁ ଦ୍ୱାର ଛାଡୁନାହିଁ
ନୀଚ ଜନପରି ହେଉଅଛନ୍ତି ବିନୟୀ ।
ହେ ଲୋକ ଭାବନ ଶୀଘ୍ର ଦିଅ ଅନୁମତି
ସେମାନେ ଏ ସ୍ଥାନେ ଆସି ହୁଅନ୍ତୁ ପ୍ରଣତି ।
ଦେବ ଦେବ ପିତାମହ ଦୁର୍ବାସାଙ୍କ ବାଣୀ
ଶୁଣିକରି ହସି ହସି କହିଲେ ସେକ୍ଷଣି ।
ହେ ଦୁର୍ବାସା ! ଇନ୍ଦ୍ରଦ୍ୟୁମ୍ନ ସଭାକୁ ଆସିଲେ
ଲୋକପାଳଗଣ କିମ୍ବା ବାହାରେ ରହିଲେ ।
ଏହି କଥା କହୁଅଛ ଆହେ ମୁନିବର
କିନ୍ତୁ ସେ ରାଜା ସମାନ ନୁହନ୍ତି ସକଳ ।
ସେ ସକଳେ ମୋହେ ବଶୀଭୂତ ହୋଇଛନ୍ତି
ଇନ୍ଦ୍ରଦ୍ୟୁମ୍ନ ସଙ୍ଗେ ସମ ହେବାକୁ ଇଚ୍ଛନ୍ତି ।
ଜୀବନମୁକ୍ତ ଅଟନ୍ତି ତ ଏହି ନରପତି
ସତ୍କାର୍ଯ୍ୟରେ ଦେହ ପାପ କ୍ଷୟ କରିଛନ୍ତି ।
ଆମ୍ଭ ବଂଶରେ ଏ ରାଜା ପଞ୍ଚମ ସନ୍ତାନ
ବୈଷ୍ଣବ ଆଉ ସର୍ବଦା ବିଷ୍ଣୁ ପରାୟଣ ।
ନିଜ ସୁଖ ଭୋଗ ଅର୍ଥେ ଏହି ଦେବଗଣ
ଦେବତ୍ୱ ଲଭିଲେ କରି ନାନାବିଧ କର୍ମ ।
ବ୍ରହ୍ମଲୋକେ ଆସିବାକୁ ତପ ଆଚରିଲେ
ଏ ସ୍ଥାନକୁ ଆସିବାକୁ ସମର୍ଥ ହୋଇଲେ ।
ଯାହାହେଉ ଏହିକ୍ଷଣି ତୁମ୍ଭର କଥାରେ
ଆମ୍ଭଙ୍କୁ ଦର୍ଶନ କରି ଯାଆନ୍ତୁ ସୁଖରେ ।
ଅନନ୍ତର ଦୁର୍ବାସା ଯେ ତାହାଙ୍କୁ ଡାକିଲେ
ଦେବଗଣ ସଭାମଧ୍ୟେ ପ୍ରବେଶ ହୋଇଲେ ।
ଗାୟକଗଣ ଯେ ସ୍ଥାନେ କରୁଥିଲେ ଗାନ
ଦୂରେ ରହି ସେହିସ୍ଥାନେ କରିଲେ ପ୍ରଣାମ ।

Digitized by srujanika@gmail.com

ସମ୍ମୁଖେ ପ୍ରଣବ ସର୍ବ ଲୋକ ପାଳଗଣ
ଆଉ କରଯୋଡ଼ି ରହିଛନ୍ତି ଇନ୍ଦ୍ରଦ୍ୟୁମ୍ନ ।
ଏମାନଙ୍କୁ ଦୃଷ୍ଟିଦାନେ କୃତାର୍ଥ କରିଲେ
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କୁ ତ ବିଧାତା କହିଲେ ।
ହେ ରାଜା ତୁମ୍ଭେ ଦେଉଳ କରିଛ ନିର୍ମାଣ
ସ୍ୱୟଂ ଭଗବାନ କରିବେଡ଼ୁ ଅବସ୍ଥାନ ।
ଏକଥା ଯଥାର୍ଥ କିନ୍ତୁ ନାହିଁ ସେହିଦିନ
ଯେଉଁକାଳେ ହୋଇଥିଲା ଦେଉଳ ନିର୍ମାଣ ।
ଏହାମଧ୍ୟେ ତୁମ୍ଭ ରାଜ୍ୟ ହୋଇଲାଣି ଧ୍ୱଂସ
ତୁମ୍ଭ ବଂଶ ସନ୍ତାନ ସନ୍ତତି ହେଲେ ନାଶ ।
ସେ ସମୟେ ଗାଉଥିଲେ ଗାୟକ ସକଳ
ସେ ସମୟ ତୁମ୍ଭ ପକ୍ଷେ ଅତି ଦୀର୍ଘକାଳ ।
ଦେବତାମାନଙ୍କ ଏକ ସପ୍ତତି ଯୁଗରେ
ଏକ ମନ୍ୱନ୍ତର ହୁଏ ପୃଥିବୀ ମଧ୍ୟରେ ।
ତୁମ୍ଭର ବିଶୁଦ୍ଧ ବଂଶ ହୋଇଅଛି ନାଶ
କୋଟି କୋଟି ରାଜା ରାଜ୍ୟେ ଭୋଗ କଲେ ଶେଷ ।
କେବଳ ସେ ଦାରୁ ମୂର୍ତ୍ତି ଦେବ ବିଦ୍ୟମାନ
ରହିଅଛି ଯେ ଦେଉଳ କରିଛ ନିର୍ମାଣ ।
ସ୍ୱାରୋଚିଷ ମନୁଙ୍କର ଆଦି ଯୁଗକାଳେ
ଆମ୍ଭ ସମୀପରେ ଗାନ ଶୁଣି କଟାଇଲେ ।
ମୃତ୍ୟୁ ଆଉ ବାର୍ଦ୍ଧକ୍ୟରେ ହୋଇଛ ଆକ୍ରାନ୍ତ
ଋତୁ ବିପର୍ଯ୍ୟୟ ନ ଜାଣିଲ ଏ ସ୍ଥାନେ ତ ।
କାଳ ପରିମାଣ କିଛି ବୁଝି ନ ପାରିଲ
ଭୂଲୋକ ଗମନ କରି ଏକ୍ଷଣି ଚଞ୍ଚଳ ।
ଦେବତା ଦେଉଳ ନିଜ ଆୟତ୍ତକୁ ଆଣ
ପୁନର୍ବାର ଏହି ସ୍ଥାନେ କର ଆଗମନ ।
ଆଉ ଏ ସ୍ଥାନେ ଆସିବା ନାହିଁ ପ୍ରୟୋଜନ
ତୁମ୍ଭ ପଛେ ପଛେ ଯିବୁ ଆମ୍ଭେ ସେହିସ୍ଥାନ ।
ପ୍ରଥମରେ ଧରାଧାମେ କରନ୍ତୁ ଗମନ
ମୂଲ୍ୟବାନ ଦ୍ରବ୍ୟ ସର୍ବ କର ଆୟୋଜନ ।
ସେ କାଳ ମଧ୍ୟରେ ଆମ୍ଭେ ଏ ସ୍ଥାନରୁ ଯିବୁ
ତୁମ୍ଭ ନିକଟରେ ଆମ୍ଭେ ପ୍ରବେଶ ହୋଇବୁ ।
ଇନ୍ଦ୍ରଦ୍ୟୁମ୍ନଙ୍କୁ ଏ ଆଜ୍ଞା ପ୍ରଦାନ କରିଲେ
ଦେବଗଣଙ୍କୁ ସସ୍ନେହ ଦୃଷ୍ଟିରେ ଚାହିଁଲେ ।
କରଯୋଡ଼ି ଦେବ ସମ୍ମୁଖରେ ଉପସ୍ଥିତ
ଗ୍ରୀବାଦେଶ ହୋଇଅଛି ବିନୟାବନତ ।
ଅଧୋମୁଖେ କରିଛନ୍ତି ଦେବେ ଅବସ୍ଥାନ
ପଦ୍ମଯୋନି କହିଲେ ତ ମଧୁର ବଚନ ।
ହେ ଅମରଗଣ ସର୍ବେ ହୋଇ ଏକତ୍ରିତ
କି ନିମନ୍ତେ ଏହି ସ୍ଥାନେ ହେଲ ଉପସ୍ଥିତ ।
ତୁମ୍ଭର କି କାର୍ଯ୍ୟ ଅଛି ଆମ୍ଭ ସମୀପରେ
ପ୍ରକାଶ କରନ୍ତୁ ଅତି ଶୀଘ୍ର ଏ ସ୍ଥାନରେ ।
ବିଧାତାଙ୍କ ଏ ବଚନ କରନ୍ତେ ଶ୍ରବଣ
ଦେବଗଣଙ୍କର ମନ ହେଲା ସୁପ୍ରସନ୍ନ ।
ବିଧାତାଙ୍କୁ ପ୍ରତ୍ୟୁତ୍ତର କରିଲେ ବହନ
ପିତାମହ ଦୟାକରି କରନ୍ତୁ ଶ୍ରବଣ ।
ପୂର୍ବକାଳେ ସିନ୍ଧୁତଟେ ନୀଳ ପର୍ବତରେ
ନୀଳମଣିମୟ ଦେବ ବିଜେ କରିଥିଲେ ।
କି ନିମନ୍ତେ ସେହି ଦେବ ହେଲେ ଅନ୍ତର୍ହିତ
ଆମ୍ଭେମାନେ ହେଲୁ ତାଙ୍କ ସେବାରୁ ବଞ୍ଚିତ ।
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ଯଜ୍ଞ ଶେଷକାଳେ
କି ନିମନ୍ତେ ମହାପ୍ରଭୁ ଦାରୁରୂପ ହେଲେ ।
ଏ ବିଷୟ ଜାଣିବାକୁ ଆମ୍ଭେ ଦେବଗଣ
ଆପଣଙ୍କ ପାଦପଦ୍ମେ କରୁଛୁ ପ୍ରଣାମ ।
ହେ ଦେବ ଆପଣ ବେଗେ ହୁଅ ସୁପ୍ରସନ୍ନ
କିମ୍ବା ଦାରୁମୂର୍ତ୍ତି ହେଲେ କରନ୍ତୁ ବର୍ଣ୍ଣନ ।
ଏହି କଥା ଦେବଗଣ କଲେ ନିବେଦନ
ପିତାମହ କହୁଛନ୍ତି କୋମଳ ବଚନ ।
ଦେବଗଣ ଏହି କଥା ଗୋପନ ଅଟଇ
କେଉଁସ୍ଥାନେ ପ୍ରକାଶ ଯେ କରିନାହିଁ ମୁହିଁ ।
ଏହିସ୍ଥାନେ ଦୀର୍ଘକାଳ କଲ ଅବସ୍ଥାନ
ଆଗ୍ରହରେ ଯେଉଁକଥା କରୁଅଛ ପ୍ରଶ୍ନ ।
ସେହି କଥା ଅଟଇ ତ ଅତି ଗୁହ୍ୟତମ୍
ତାହା ବର୍ଣ୍ଣନା କରୁଛି ଶୁଣ ଦେବଗଣ ।
ଆମ୍ଭର ଏକ ପରାର୍ଦ୍ଧକାଳ ଶେଷବେଳେ
ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରେ ଭଗବାନ ଥିଲେ ।
ନୀଳକାନ୍ତ ମଣିମୟ ଶରୀରୁ ଧାରଣ
କରିଥିଲେ ସାକ୍ଷାତରେ ତହିଁ ଭଗବାନ ।
ଶ୍ୱେତବରାହ କଳ୍ପରେ ଏକ୍ଷଣି ଆମ୍ଭର
ଦ୍ୱିତୀୟ ପରାର୍ଦ୍ଧ ଦିନ ହେଲା ପ୍ରାତଃକାଳ ।
ସ୍ୱାୟଂଭୂବ ମନୁଙ୍କର ହେଲା ଆଧିପତ୍ୟ
ଦାରୁ ରୂପରେ ବିଜୟ ହେଲେ ଜଗନ୍ନାଥ ।
ଦ୍ୱିତୀୟ ପରାର୍ଦ୍ଧ କାଳ ଶେଷ ପରିଯନ୍ତେ
ଦାରୁ ରୂପ ଧରି ରହିଥିବେ ଜଗନ୍ନାଥେ ।
ହେ ଦେବଗଣ ! ଆମ୍ଭର ଆତ୍ମା ଭଗବାନ
ଆମ୍ଭେ ଆତ୍ମା ଦେବଗଣଙ୍କର ନୋହୁ ଭିନ୍ନ ।
ଆମ୍ଭ ଦୁହିଁଙ୍କ ବ୍ୟତୀତ ଜଗତ ମଧ୍ୟରେ
ଆଉ କେହି ରହିନାହିଁ କୌଣସି ସ୍ଥାନରେ ।
କ୍ଷୀର ସମୁଦ୍ରରେ ଶ୍ୱେତ ଦ୍ୱୀପର ମଧ୍ୟରେ
ମଣିମୟ ମଣ୍ଡପରେ ଅନନ୍ତ ଶଯ୍ୟାରେ ।

Digitized by srujanika@gmail.com

ଯୋଗନିଦ୍ରା ଦେବୀଙ୍କୁ ଯେ କରିଣ ଆଶ୍ରୟ
ଶୟନ କରିଅଛନ୍ତି ପ୍ରଭୁ ଦେବରାୟ ।
ସେ ପ୍ରଭୁ ସଚରାଚର ଜଗତ କାରଣ
ଶଙ୍ଖ ଚକ୍ରରେ ଅଙ୍କିତ ତାଙ୍କ ଦେହ ଲୋମ ।
ଶ୍ୱେତଦ୍ୱୀପେ ଚୈତନ୍ୟର ଅଧିଷ୍ଠାନ ରୂପେ
ସତ୍ୟ ପୁରୁଷ ପ୍ରକାଶ ବୃକ୍ଷର ସ୍ୱରୂପେ ।
ପ୍ରଥମରେ ସିନ୍ଧୁଜଳେ ହେଲେ ସମୁତ୍ପନ୍ନ
ତ୍ରୈଲୋକ୍ୟ ଭୋଗ ସକଳ ଇଚ୍ଛାକରି ମନ ।
ଜଗନ୍ନାଥ କଲେ ଦାରୁ ବିଗ୍ରହ ଧାରଣ
ଅନେକ ସହସ୍ର ଜନ୍ମ ଲାଭ କରି ଜନ ।
ଭକ୍ତି ସହ ଚିନ୍ତାକଲେ ପୂର୍ଣ୍ଣକାମ ହୁଏ
ଏ ଘୋର ସଂସାର ଦୁଃଖ ନାଶ ହୋଇଯାଏ ।
ସେ ପ୍ରଭୁ ଜୀବର କର୍ମଫଳ ନାଶ କରି
ସାଫଲ୍ୟ ମୁକ୍ତି ଜଗତ ବାସୀଙ୍କୁ ବିତରି ।
ଧ୍ୟାନ ଧାରଣା ଦୁଷ୍କର ତପସ୍ୟା ବ୍ୟତୀତ
ମୋକ୍ଷ ଦେବାକୁ ସେ ପ୍ରଭୁ ହେଲେ ଆର୍ବିଭୂତ ।
ଦାରୁମୟ ମୂର୍ତ୍ତି କଥା ଅତି ଗୋପନୀୟ
ଏ ବିଷୟ ମନ ମଧ୍ୟେ କରଇ ସଂଶୟ ।
ଯେ ଯେଉଁ ରୂପରେ ତାଙ୍କୁ କରଇ ଦର୍ଶନ
ତା ସମୀପେ ସେହିରୂପେ ପ୍ରଭୁ ବିଦ୍ୟମାନ ।
ଧାର୍ମିକ ଜନତା ମତ ଏ ଅଟେ ପ୍ରମାଣ
ସେ ପ୍ରଭୁ ଚତୁର ବର୍ଗ କରନ୍ତି ପ୍ରଦାନ ।
ଭୂମଣ୍ଡଳେ ଜୀବଗଣ କରିଲେ ଦର୍ଶନ
ପାପ ମୁକ୍ତ ହୋଇ ମୋକ୍ଷଭାଗୀ ତତକ୍ଷଣ ।
ଜୈମିନି କହନ୍ତି ସେହି ସ୍ଥାନେ ଦେବଗଣ
ସନ୍ତୁଷ୍ଟ ହୋଇଲେ ଶୁଣି ବ୍ରହ୍ମାଙ୍କ ବଚନ ।
ଆନନ୍ଦ ମନରେ ଚିନ୍ତା କରିଲେ ତକ୍ଷଣ
କ୍ଷଣସ୍ଥାୟୀ ଦେବପଦେ କେଉଁ ପ୍ରୟୋଜନ ।
ଶ୍ରୀପୁରୁଷୋତ୍ତମ କ୍ଷେତ୍ରେ ହୋଇବୁ ଜନମ
ଶୁଦ୍ଧ ଚିତ୍ତରେ ସେବିବୁ ପ୍ରଭୁଙ୍କ ଚରଣ ।
ବିଧାତା ଆନନ୍ଦ ନେତ୍ରେ ଚାହିଁଣ କହିଲେ
ଯେ ପ୍ରଭୁ ଇନ୍ଦ୍ରଦ୍ୟୁମ୍ନଙ୍କୁ ଅନୁଗ୍ରହ କଲେ ।
ସେହି ପ୍ରଭୁ କରିବେ ତ ଶ୍ରୀମୁଖ ବର୍ଣ୍ଣନ
ପ୍ରତିମାସେ ଯାହା ହେବ ଯାତ୍ରା ପର୍ବମାନ ।
ଆଉ ମଧ ସେହି ପ୍ରଭୁ ଭକତ ବତ୍ସଳ
ବରଦାନ କରି ଉଦ୍ଧାରିବେ ଜୀବକୁଳ ।
ଇନ୍ଦ୍ରଦ୍ୟୁମ୍ନଙ୍କର ଦେଉଳରେ ପ୍ରଭୁଙ୍କର
ପ୍ରତିଷ୍ଠା କରିବା ଅର୍ଥେ ଚଳିବୁଁ ସତ୍ୱର ।
ତୁମ୍ଭେମାନେ ସେହିସ୍ଥାନେ କରିବ ଗମନ
ଇନ୍ଦ୍ରଦ୍ୟୁମ୍ନ ସଙ୍ଗେ ଯାଇ କର ଆୟୋଜନ ।
ନିଜ ନିଜ ଅଧିକାର ଛାଡ଼ି ଦେବଗଣ
ଇନ୍ଦ୍ରଦ୍ୟୁମ୍ନଙ୍କୁ ସାହାଯ୍ୟ କରିବ ବହନ ।
ସମ୍ପ୍ରତି ପ୍ରଥମ ମନ୍ୱନ୍ତର ହେଲା ଗତ
ସେ ପ୍ରସାଦ ସେ ପ୍ରତିମା ରାଜାର ପ୍ରକୃତ ।
ଏହିକଥା ତୁମ୍ଭେମାନେ କରିବ ନିଶ୍ଚିନ୍ତ
ଶୀଘ୍ର ଚଳିଯାଅ ନୀଳ ସୁନ୍ଦର ପର୍ବତ ।
ଏହି ରାଜାର ସନ୍ତତି କେହି ତ ନାହାନ୍ତି
ଏକ୍ଷଣି ସହାୟ ହୀନ ରାଜା ହୋଇଛନ୍ତି ।
ଅତଏବ ତୁମ୍ଭେମାନେ ପ୍ରତିଷ୍ଠା ନିମିତ୍ତ
ଆୟୋଜନ କର ଦ୍ରବ୍ୟ ସମ୍ଭାର ଯାବତ ।
ଆମ୍ଭ ଅନୁମତି ପାଇ ପଦ୍ମନିଧି ଯିବେ
ପ୍ରତିଷ୍ଠା ଦ୍ରବ୍ୟ ସମ୍ଭାର ସର୍ବ ସମ୍ପାଦିବେ ।
ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କର ଏହି ଆଧିପତ୍ୟ
ଦର୍ଶନରେ ଅତ୍ୟାଶ୍ଚର୍ଯ୍ୟ ହେଲେ ହୃଷ୍ଟଚିତ୍ତ ।
ଜଗଦ୍‌ଗୁରୁଙ୍କର ନେଲେ ତହିଁ ଅନୁମତି
ଚରଣ ତଳେ କରିଲେ ସାଷ୍ଟାଙ୍ଗ ପ୍ରଣତି ।
ଧାତାଙ୍କର ଆଜ୍ଞା ଶିରେ କରିଲେ ଗ୍ରହଣ
ଦେବଗଣ ସହ କଲେ ଭୂଲୋକେ ଗମନ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ତ୍ରୟୋବିଂଶ ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ଜୟ ପଙ୍କଜ ଆସନ ଜଗତ କରତା
ତୁମ୍ଭେ ଜୀବ ଜଗତର ସୁଖ ଦୁଃଖ ଦାତା ।
ଜୀବ ଯେଉଁ କର୍ମ କରେ ସେହି ଅନୁସାରେ
ସେ କର୍ମର ଫଳ ଭୋଗିଲେକ କପାଳରେ ।
ସେ ଫଳ ଭୋଗ ତ ଜୀବ ନିଶ୍ଚୟ କରିବ
ଏ ଭାବ ତାକୁ ଅନ୍ୟଥା କେ କରିପାରିବ ।
ଏ ସଂସାର ସୁଖ ଦୁଃଖେ ନାହିଁ ପ୍ରୟୋଜନ
କିପରି ଏ ଭବ ସିନ୍ଧୁ ହୋଇବି ଉତ୍ତୀର୍ଣ୍ଣ ।
ଜୟଗୁରୁ ଜଗଦ୍‌ଗୁରୁ ଜୟଗୁରୁ ନାମ
ରସନା ରଟିବ ମାର୍ଗେ ହରିହର ଦୀନ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳଖଣ୍ଡେ
ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମଲୋକ ଗମନେ
ବ୍ରହ୍ମସଭା ବର୍ଣ୍ଣନେ ନାମ
ତ୍ରୟୋବିଂଶୋଽଧ୍ୟାୟଃ



Digitized by srujanika@gmail.com

# ଚତୁର୍ବିଂଶ ଅଧ୍ୟାୟ

ଜୈମିନି କହନ୍ତି ନରପତି ଇନ୍ଦ୍ରଦ୍ୟୁମ୍ନ
ବହୁଯୁଗ ପରେ କ୍ଷେତ୍ରେ କଲେ ଆଗମନ ।
ଉତ୍କଣ୍ଠିତ ଚିତ୍ତେ ଜାତ ରୋମାଞ୍ଚ ଦେହରେ
ଜଗନ୍ନାଥଙ୍କୁ ପ୍ରଣାମ କଲେ ଭୂତଳରେ ।
ହେ ବ୍ରହ୍ମଣ୍ୟ ଦେବ ଗୋ ବ୍ରାହ୍ମଣ ହିତକାରୀ
ପ୍ରଣତ ଜନର ସଦା ଅଶୁଭ ନିବାରି ।
ଆପଣ ଧର୍ମାଦି ଚତୁବର୍ଗର କାରଣ
ହିରଣ୍ୟ ଗର୍ଭ ପୁରୁଷ ରୂପେ ବିଦ୍ୟମାନ ।
ପ୍ରଧାନ ଅବ୍ୟକ୍ତ ଏକମାତ୍ର ଜ୍ଞାନ ଗମ୍ୟ
ସେହି ବାସୁଦେବଙ୍କୁ ଯେ କରୁଛି ପ୍ରଣାମ
ଏହିରୂପେ ସ୍ତୁତି ବାକ୍ୟ କଲେ ଉଚ୍ଚାରଣ
ଆନନ୍ଦ ଅଶ୍ରୁ ନୟନେ କଲେ ପ୍ରଦକ୍ଷିଣ ।
ପୁନରପି ବହୁଥର କରିଲେ ପ୍ରଣାମ
ସଂଗତରେ ଆସିଥିଲେ ଯେତେ ଦେବଗଣ ।
କୃତାଞ୍ଜଳି ପୁଟେ ଅତି ହରଷ ମନରେ
ଅବନତ ଶିରେ ସ୍ତୁତି ବାକ୍ୟ ଆରମ୍ଭିଲେ ।
ଯାହାର ସହସ୍ର ଶିର ସହସ୍ର ଶ୍ରବଣ
ସହସ୍ର ଚର୍ମ ନୟନ ଚିହ୍ନ ଆଉ ପ୍ରାଣ ।
ମୁଖ ହସ୍ତ ପାଦ ବାୟୁ ଉପସ୍ଥ ସହସ୍ର
ସକଳ ପ୍ରାଣୀଙ୍କ ଦେହ ମଧରେ ନିବାସ ।
ନାଭି ଉର୍ଦ୍ଧ୍ୱେ ଦଶାଙ୍ଗୁଳ ସ୍ଥାନ ବିଦ୍ୟମାନ
ଜ୍ଞାନରୂପୀ ପରମାତ୍ମାଙ୍କର ଅଧିଷ୍ଠାନ ।
ପରଂବ୍ରହ୍ମ ପରମାତ୍ମା ପରମ ପୁରୁଷ
ତିନିନାମେ ଅଭିହିତ କରନ୍ତି ବିଦୂଷ ।
ଭୂତ ଭବିଷ୍ୟତ ବର୍ତ୍ତମାନ ତ୍ରିକାଳରେ
ବିଦ୍ୟମାନ ବୋଲି କହୁଛନ୍ତି ଶାସ୍ତ୍ରକାରେ ।
ଏ ରୂପେ ଯାର ମହିମା ସଦା ବିରାଜିତ
ସର୍ବଦେଶେ ସଦାକାଳେ ହୋଇଅଛି ବ୍ୟାପ୍ତ ।
ଏହି କାରଣରୁ ସେହି ପ୍ରଭୁ ସର୍ବ ଜ୍ୟେଷ୍ଠ
ଚତୁର୍ଦ୍ଦଶ ଭୁବନରେ ସେ ପୁରୁଷ ଶ୍ରେଷ୍ଠ ।
ପୃଥିବୀ ଜଳ ଅନଳ ଆକାଶ ପବନ
ତାହାଙ୍କର ଏକପାଦ ରୂପେ ବିଦ୍ୟମାନ ।
ଋକ ଯଜୁ ସାମ ବେଦ ସେହି ପ୍ରଭୁଙ୍କର
ଅନ୍ୟ ତିନିପାଦ ରୂପେ ରହିଅଛି ସ୍ଥିର ।
ସେହି ପାଦ କ୍ରିୟାତ୍ମକ ସୂର୍ଯ୍ୟ ରୂପ ହୋଇ
ସ୍ୱର୍ଗ ରାଜ୍ୟ ମୁକ୍ତିଦ୍ୱାର ରୂପେ ବିରାଜଇ ।
ହେ ଦେବ ସର୍ବନିୟନ୍ତା ଅଟନ୍ତି ଆପଣ
ପରମାତ୍ମା ସ୍ୱରୂପରେ କରି ଅବସ୍ଥାନ ।
ଆପଣଙ୍କଠାରୁ ଛିଦ୍ର ହୋଇଛି ଉତ୍ପନ୍ନ
ଆଉ ଯଜ୍ଞ ପୁରୁଷଙ୍କୁ କରିଛନ୍ତି ଜନ୍ମ ।
ଆପଣଙ୍କଠାରୁ ସର୍ବ ପ୍ରାଣୀ ଉତପତ୍ତି
ମୁଖ ଦେଶରୁ ଜନମ ଏ ବ୍ରାହ୍ମଣ ଜାତି ।
ବାହୁରୁ କ୍ଷତ୍ରିୟ ଉରୁଦେଶୁ ବୈଶ୍ୟ ଜାତ
ପାଦ ଦେଶରୁ ଯେ ଶୂଦ୍ର ହୋଇଛି ସମ୍ଭୁତ ।
ଆପଣଙ୍କ ମନରୁ ଯେ ଚନ୍ଦ୍ରର ଜନମ
ନୟନରୁ ସୂର୍ଯ୍ୟ କର୍ଣ୍ଣ ଦେଶରୁ ପବନ ।
ଜିହ୍ୱାରୁ ଅନଳ ଜାତ ନାଭିରୁ ଆକାଶ
ମସ୍ତକରୁ ସ୍ୱର୍ଗ ପଦୁଁ ପୃଥିବୀ ପ୍ରକାଶ ।
କର୍ଣ୍ଣ ଦ୍ୱୟରୁ ଯେ ଅଷ୍ଟଦିଗ ଉତପତ୍ତି
ସ୍ୱୟଂ ଯଜ୍ଞ ପୁରୁଷ ରୂପରେ ଅବସ୍ଥିତି ।
ସପ୍ତ ସମୁଦ୍ର ପରିଧି ରୂପେ ଶୋଭା ପାଏ
ଏକବିଂଶ ଛାନ୍ଦ ଯଜ୍ଞେ ସମିଧ ବୋଲାଏ ।
ଚରାଚର ଏ ଜଗତ ତୁମ୍ଭଠାରୁ ଜାତ
ହେ ପରମେଶ୍ୱର ତୁମ୍ଭେ ସ୍ୱୟଂ ଜଗନ୍ନାଥ ।
ଜଗତ ପାଳନକର୍ତ୍ତା ଆପଣ ଅଟନ୍ତି
ଜଗତ ସଂହାର କର ଧରି ଉଗ୍ର ମୂର୍ତ୍ତି ।
ଆପଣ ନିଜକୁ ନିଜେ କରନ୍ତି ପ୍ରକାଶ
ଆପଣ ତ ସ୍ୱୟଂ ଯଜ୍ଞ ଆବର ଯଜ୍ଞାଂଶ ।
ଆପଣ ଅଟନ୍ତି ପରାତ୍ପର ଯଜ୍ଞେଶ୍ୱର
ପରମ ଶବଦ ବ୍ରହ୍ମ ରୂପରେ ବିହାର ।
ଏହି ବିଶ୍ୱକୁ ପ୍ରକାଶ କରନ୍ତୁ ଆପଣ
ବ୍ରହ୍ମ ସ୍ୱରୂପ ସମ୍ରାଟ ରୂପେ ବିଦ୍ୟମାନ ।
ଆପଣ ତ ଅଧଃ ଉର୍ଦ୍ଧ୍ୱ ଚାରିଦିଗେ ବ୍ୟାପ୍ତ
ଶ୍ରେଷ୍ଠପଦ ଦିଅ ଯଜ୍ଞେ ହେଲେ ଆରାଧିତ ।
ଭୋକ୍ତାରୂପରେ ଆପଣ ଭୋଜ୍ୟ ତ ଆପଣ
ହବି ହୋତା ହୋମଫଳ ରୂପେ ବିଦ୍ୟମାନ ।
ସମସ୍ତ କର୍ମର ଭୋକ୍ତା ଅଟନ୍ତି ଆପଣ
ଆବର ସମସ୍ତ କର୍ମ ରୂପେ ବିଦ୍ୟମାନ ।
ସମସ୍ତ କର୍ମର ଉପକରଣ ଆପଣ
ସମଗ୍ର କର୍ମର ଫଳ କରନ୍ତି ପ୍ରଦାନ ।
ସକଳ ପ୍ରାଣୀଙ୍କୁ କର୍ମେ ନିଯୁକ୍ତ କରନ୍ତି
ଧର୍ମ ଅର୍ଥ କାମ ମୋକ୍ଷଫଳ ଦେଇଥାନ୍ତି ।
ହୃଷିକେଶ ଆଉ କିଏ ଆପଣଙ୍କ ଭିନ୍ନ
ସମର୍ଥ ହୋଇବା କରିବାକୁ ମୁକ୍ତି ଦାନ ।
ଅନନ୍ତ ଦେବ ସହସ୍ର ମୂର୍ତ୍ତି ପାଦ ଶିର
କର୍ଣ୍ଣଚକ୍ଷୁ ଉରୁ ବାହୁ ହଜାର ହଜାର ।
ସହସ୍ର ନାମ ଶାଶ୍ୱତ ପୁରୁଷ ଉତ୍ତମ
ସସ୍ରକୋଟି ଯୁଗଧାରୀ ପ୍ରଭୁଙ୍କୁ ପ୍ରଣାମ ।

Digitized by srujanika@gmail.com

ପ୍ରଭୋ ଆମ୍ଭ ଅଧିକାର ହୋଇଅଛି ଚ୍ୟୁତ
ଆପଣଙ୍କ ପାଦତଳେ ଶରଣ ଗଲୁ ତ ।
ହେ ପୁଣ୍ଡରିକାକ୍ଷ ଆମ୍ଭର ନାହିଁ ଅନ୍ୟଗତି
ଆମ୍ଭର ତ ଏକମାତ୍ର ଆପଣ ଯେ ଗତି ।
ଆମ୍ଭମାନଙ୍କୁ ଯେ ରକ୍ଷା କରନ୍ତୁ ଆପଣ
ଏ ସଂସାରେ ଦୁଃଖ ଭୋଗୁଛନ୍ତି ଜୀବଗଣ ।
ତାହାଙ୍କର ଏକମାତ୍ର ଆଶ୍ରୟ ଅଟନ୍ତି
ଦୀନ ଜନମାନଙ୍କୁ ତ ପାଳନ କରନ୍ତି ।
ଦୀନ ଅନାଥ ବ୍ୟକ୍ତିର ଆଶ୍ରୟ ଆପଣ
ହେ ବିଷ୍ଣୁ ହେ ଜଗନ୍ନାଥ କର ପରିତ୍ରାଣ ।
ହେ କମଳକାନ୍ତ ତୁମ୍ଭ ବିନା ଏ ଭବରେ
ଆମ୍ଭଙ୍କୁ ରକ୍ଷା କରିବ ସଂସାର ସାଗରେ ।
ପ୍ରଭୁ ଅନ୍ତର୍ଯ୍ୟାମୀ ସର୍ବ ତେଜର ଆଧାର
ଆପଣଙ୍କ ପାଦତଳେ କରୁଁ ନମସ୍କାର ।
ଜୈମିନି ମୁନି କହନ୍ତି ଶୁଣ ଋଷିଗଣ
ଏହିରୂପେ ବହୁ ସ୍ତବ କଲେ ଦେବଗଣ ।
ପୁନଃ ପୁନଃ ପ୍ରଣିପାତ ସକଳେ କରିଲେ
ଇନ୍ଦ୍ରଦ୍ୟୁମ୍ନଙ୍କ ସଙ୍ଗତେ ତହୁଁ ବାହୁଡ଼ିଲେ ।
ନରସିଂହଙ୍କ ମନ୍ଦିରେ ପ୍ରବେଶ ହୋଇଲେ
ପ୍ରଥମେ ପ୍ରଣାମ କରି ଭକ୍ତିରେ ପୂଜିଲେ ।
ନୀଳ ପର୍ବତ ଶିଖରେ ପ୍ରଭୁଙ୍କ ନିମିତ୍ତ
ଯେଉଁ ମନ୍ଦିର ପୂର୍ବରୁ ହୋଇଛି ନିର୍ମିତ ।
ତାର ପ୍ରତିମା ସମ୍ଭାର ପ୍ରସ୍ତୁତ କରିବେ
ପଦ୍ମନିଧିଙ୍କ ସହିତ ସର୍ବ ସମ୍ପାଦିବେ ।
ଦେଖିଲେ ଦେଉଳ ଅତି ଉଚ୍ଚ ହୋଇଅଛି
ଗଗନ ମଣ୍ଡଳ ଭେଦ ଅଗ୍ର କରିଅଛି ।
ମନରେ ଚିନ୍ତିଲେ ବିନ୍ଧ୍ୟ ପର୍ବତ ସମାନେ
ସୂର୍ଯ୍ୟଙ୍କର ଗତିରୋଧ ହେବ କି ଏ ସ୍ଥାନେ ।
ଆଉ ସବୁ ଦିନ ବ୍ୟାପୀ ହୋଇ ଅବସ୍ଥିତ
ସେ ପ୍ରାସାଦ ବହୁବିଧ ଚିତ୍ରରେ ଚିତ୍ରିତ ।
ବହୁକାଳ ପରେ ଶୋଭାମ୍ଳାନ ହୋଇନାହିଁ
ନୂତନ ନିର୍ମାଣ କରି କାନ୍ତି ବିରାଜଇ ।
ବିଷ୍ଣୁଭକ୍ତ ଇନ୍ଦ୍ରଦ୍ୟୁମ୍ନ ପ୍ରାସାଦ ଦେଖିଲେ
ବିକୃତ ଯେ ହୋଇନାହିଁ ମନରେ ଚିନ୍ତିଲେ ।
ଯେତେବେଳେ ସତ୍ୟଲୋକେ କରିଲି ଗମନ
ହୋଇ ନଥିଲା ତ ଶେଷ ଦେଉଳ ନିର୍ମାଣ ।
ଏହିକ୍ଷଣି ଏ ଦେଉଳ ହୋଇଛି ସମ୍ପୂର୍ଣ୍ଣ
ଦେବ ଅନୁଗ୍ରହ ବିନା ଅନ୍ୟ କେ ଭାଜନ ।
ମନ୍ୱନ୍ତର ପରେ ମନ୍ୱନ୍ତର ଉପସ୍ଥିତ
ଚନ୍ଦ୍ର ସୂର୍ଯ୍ୟ ଇନ୍ଦ୍ର ଆଦି ହେଲେ ଲୟ ପ୍ରାପ୍ତ ।।

ତଥାପି ତ ଏ ଦେଉଳ ବିକୃତ ନ ହୋଇ
ରହିଅଛି ପୂର୍ବପରି ଆଶ୍ଚର୍ଯ୍ୟ ଲାଗଇ ।
ବାଲ୍ମୀକ ସମାନ ଅନ୍ୟ ସକଳ ଦେଉଳ
ମନୁଷ୍ୟଦ୍ୱାରା ନିର୍ମିତ ହୋଇଛି କେବଳ ।
ଉପରି ଭାଗରେ ନାନାବିଧ ବୃକ୍ଷ ଜାତ
ଜୀର୍ଣ୍ଣ ଶୀର୍ଣ୍ଣ ଦେଖାଯାଏ ସେ ଦେଉଳ ଗାତ୍ର ।
ସେହିସବୁ ଦେଉଳର ସ୍ଥିତି ଅଳ୍ପକାଳ
ଭଗବାନଙ୍କର ଦୟା ଆମ୍ଭଙ୍କୁ କେବଳ ।
ପ୍ରଭୁ ନିଜ ନିକେତନ ରକ୍ଷା କରିଛନ୍ତି
ଏହା ମନେ ଚିନ୍ତାକରି ବଚନ କହନ୍ତି ।
ହେ ସାହାଯ୍ୟକାରୀଗଣ ! ତୁମ୍ଭେମାନେ ଜାଣ
ପ୍ରଭୁଙ୍କ ଅର୍ଥେ ପ୍ରାସାଦ କରିଛି ନିର୍ମାଣ ।
ଭଗବାନ ସ୍ୱୟଂ ଦାରୁମୟ ରୂପ ଧରି
ଆବିର୍ଭୂତ ହୋଇଛନ୍ତି ଏହି ନୀଳଗିରି ।
ସେ କାଳେ ଆକାଶବାଣୀ ଶ୍ରବଣ କରିଲି
ଜଗଦୀଶ୍ୱରଙ୍କ ବାସ ଅର୍ଥେ ନୀଳଗିରି ।
ଶିଖର ଦେଶରେ କର ପ୍ରାସାଦ ନିର୍ମାଣ
ସହସ୍ର ହସ୍ତ ହୋଇବ ତାର ଆୟତନ ।
ଏହିସ୍ଥାନେ ପ୍ରଭୁଙ୍କର ପ୍ରତିଷ୍ଠା ନିମିତ୍ତ
ସ୍ୱୟଂ ପଦ୍ମଯୋନି ସିଦ୍ଧ ବ୍ରହ୍ମର୍ଷି ସହିତ ।
ସକଳ ଦେବତାଗଣ ଘେନି ସଙ୍ଗତରେ
ଉପସ୍ଥିତ ହେବେ ଆସି ନୀଳ ପର୍ବତରେ ।
ଆହେ ଦେବଗଣ ଏହିକ୍ଷଣି କି ପ୍ରକାର
ଆୟୋଜନ କରାଯିବ କି ଦ୍ରବ୍ୟ ସମ୍ଭାର ।
ରାଜାଙ୍କର ଏହିକଥା କରନ୍ତେ ଶ୍ରବଣ
କହୁଛନ୍ତି ତହିଁ ଥିଲେ ଯେତେ ଦେବଗଣ ।
ହେ ରାଜନ ଜଣାନାହିଁ ପ୍ରତିଷ୍ଠା ବିଧାନ
କିପରି ହେବ ପ୍ରତିଷ୍ଠା ଦ୍ରବ୍ୟ ଆୟୋଜନ ।
ଆମ୍ଭମାନଙ୍କର ଗୁରୁଦେବ ବୃହସ୍ପତି
ଦେବ ପ୍ରାସାଦ ପ୍ରତିଷ୍ଠା ବିଧାନ ଜାଣନ୍ତି ।
ସ୍ୱର୍ଗରାଜ୍ୟେ ଆମ୍ଭମାନଙ୍କ ପୁରୋହିତ
ସେ କହିବେ ଆମ୍ଭେମାନେ ନୋହୁଁ ସମର୍ଥ ।
ଏହି ବିଷୟରେ ପଦ୍ମନିଧି ଯେ କହିଲେ
ହେ ରାଜନ ବିଧାତାଙ୍କ ଆଦେଶାନୁସାରେ ।
ଆପଣଙ୍କ ସଙ୍ଗତରେ ଆସିଛି ଏ ସ୍ଥାନ
କହନ୍ତୁ କି କାର୍ଯ୍ୟ ମୁହିଁ କରିବି ସାଧନ ।
ଆଉ ଯେ ସମ୍ଭାର ଦ୍ରବ୍ୟ ହେବ ପ୍ରୟୋଜନ
ତାହା ମୁଁ ଯୋଗାଇ ଦେବି ହୋଇ ସାବଧାନ ।
ଜୈମିନି କହିଲେ ପୂର୍ବେ କମଳ ଆସନ
ନାରଦ ଋଷିଙ୍କୁ କରିଥିଲେ ତ ପ୍ରେରଣ ।

Digitized by srujanika@gmail.com

ଏହିରୂପେ କୁହାକୁହି ହେଉଥିଲାବେଳେ
ନାରଦ ମହର୍ଷି ଉପସ୍ଥିତ ଆସି ହେଲେ ।
ଋଷିଙ୍କୁ ଦେଖି ରାଜନ କହିଲେ ବଚନ
ପ୍ରତିଷ୍ଠା ନିମିତ୍ତ କର ସର୍ବ ଆୟୋଜନ ।
ନାରଦଙ୍କୁ ଦେଖି ତହିଁ ସର୍ବ ଦେବଗଣ
ଆନନ୍ଦରେ ଯଥାଯୋଗ୍ୟ କରିଲେ ସମ୍ମାନ ।
ରାଜା ଷଡ଼ାର୍ଘ୍ୟରେ ଋଷିବରଙ୍କୁ ପୂଜିଲେ
ନର ଦେହଧାରୀ ଦେବେ ପ୍ରମାଣ କରିଲେ ।
ଇନ୍ଦ୍ରଦ୍ୟୁମ୍ନ ପ୍ରତିଷ୍ଠାର ଦ୍ରବ୍ୟ ସମ୍ପାଦନ
ବିଷୟରେ ନାରଦଙ୍କୁ କଲେ ନିବେଦନ ।
ଆହେ ମୁନିଶ୍ରେଷ୍ଠ ମୋତେ କିଛି ଜଣାନାହିଁ
ବହୁକାଳ ହେଲା ପୁରୋଧାଙ୍କୁ ଦେଖିନାହିଁ ।
ଯେପରି ଦ୍ରବ୍ୟ ସମ୍ଭାର ହେବ ସମ୍ପାଦନ
ଆପଣ କରନ୍ତୁ ଶୀଘ୍ର ଆଦେଶ ପ୍ରଦାନ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ଚତୁର୍ବିଂଶ ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ଅଚ୍ୟୁତାନନ୍ଦ ଗୋପାଳ ଗୋବିନ୍ଦ ଶ୍ରୀହରି
ହେ ମଧୁସୂଦନ ବାସୁଦେବ ଦଇତାରି ।
ଯାମଳାର୍ଜୁନ ଭଞ୍ଜନ ଗୋକୁଳ ବିହାରୀ
ଦୀନଜନ ଦୁଃଖ ନାଶ ଅର୍ଥେ ଚକ୍ରଧାରୀ ।
ଲୀଳା ବିସ୍ତାରିଛ ଜଗତରେ ନାରାୟଣ
କହେ ହରିହର କିମ୍ବା ଡାକିଲେ ନ ଶୁଣ ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳ ଖଣ୍ଡେ
ଇନ୍ଦ୍ରଦ୍ୟୁମ୍ନ ଦେବଗଣ ସହ ମନ୍ଦିର
ଦର୍ଶନେ ନାମ ଚତୁର୍ବିଂଶୋଽଧ୍ୟାୟଃ



## ପଞ୍ଚବିଂଶ ଅଧ୍ୟାୟ

ଜୈମିନି ମୁନି କହନ୍ତି ଶୁଣ ଋଷିଗଣ
ପ୍ରତିଷ୍ଠା ବିଧାନ ପଚାରିଲେ ଇନ୍ଦ୍ରଦ୍ୟୁମ୍ନ ।
ନାରଦ ମହର୍ଷି ଶାସ୍ତ୍ର ବିଚାର କରିଲେ
ପ୍ରତିଷ୍ଠା ବିଧାନ ପତ୍ର ଲେଖାଇ ଯେ ଦେଲେ ।
ଦ୍ରବ୍ୟ ସୂଚିପତ୍ର ରାଜା ତକ୍ଷଣେ ପଢ଼ିଲେ
ପଦ୍ମନିଧିଙ୍କର କରେ ନେଇ ଅରପିଲେ ।
ପଦ୍ମନିଧି ଏ ସକଳ ଦ୍ରବ୍ୟ ସମ୍ପାଦିବ
ପୂର୍ଣ୍ଣମୟୀଶାଳା ବେଗେ ପ୍ରସ୍ତୁତ କରିବ ।
ବ୍ରହ୍ମାଙ୍କର ବାସଗୃହ ଶୁଭ୍ରବର୍ଣ୍ଣ ହେବ
ବ୍ରହ୍ମର୍ଷିମାନଙ୍କ ଗୃହ ନିର୍ମଳ କରିବ ।
ଇନ୍ଦ୍ରାଦି ଦେବତାଗଣ ଆଉ ସିଦ୍ଧଗଣ
ମର୍ତ୍ତ୍ୟଭୁବନେ ଅଛନ୍ତି ଯେତେ ମୁନିଗଣ ।
ନୃପଗଣ ପାତାଳରେ ନାଗ ରାଜାଗଣ
ଏମାନଙ୍କ ଅର୍ଥେ ଗୃହ କରିବ ନିର୍ମାଣ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଅଛନ୍ତି ଯେ ପ୍ରାଣୀ
ଏମାନଙ୍କ ଉପଭୋଗ୍ୟ ଦ୍ରବ୍ୟମାନ ଆଣି ।
ପଥ ଉଭୟ ପାର୍ଶ୍ୱରେ ସଜାଇ ରଖିବ
ଶ୍ରେଣୀ ବନ୍ଧକରି ଗୃହ ନିର୍ମାଣ କରିବ ।
ଅତି ସତ୍ୱର ଏ ଗୃହ କରିବ ପ୍ରସ୍ତୁତ
ବିଶ୍ୱକର୍ମା ତୁମ୍ଭଙ୍କୁ ଯେ ସହାୟ ହେବେ ତ ।
ଇନ୍ଦ୍ରଦ୍ୟୁମ୍ନ ଏହି ରୂପେ ଆଦେଶ କରିଲେ
ଏ ସମୟେ ପୁନର୍ବାର ନାରଦ କହିଲେ ।
ହେ ରାଜନ ! ଆୟୋଜନ ଯେ ଦ୍ରବ୍ୟ କରିବ
ପୃଥକ ପୃଥକ କରି ତାହା ସମ୍ପାଦିବ ।
ଉତ୍ତମ ପ୍ରକାରେ କର ତିନିଗୋଟି ରଥ
ସ୍ୱର୍ଣ୍ଣ ଭୂଷଣରେ ହେବ ତାହା ବିଭୂଷିତ ।
ପଟ୍ଟବସ୍ତ୍ର ମାଳା ରତ୍ନ ଘଣ୍ଟା ଆଭରଣ
ରଥଗୁଡ଼ିକ ହୋଇବ ସୁନ୍ଦର ନିର୍ମାଣ ।
ଗରୁଡ଼ ଧ୍ୱଜେ ଚିହ୍ନିତ ଜଗନ୍ନାଥ ରଥ
ପଦ୍ମଧ୍ୱଜେ ବିଭୂଷିତ ସୁଭଦ୍ରାଙ୍କ ରଥ ।
ଏହି ବିଶ୍ୱବ୍ରହ୍ମାଣ୍ଡରେ ଯେ ଅଟେ ଆସନ
ସ୍ୱୟଂ ଜଗନ୍ନାଥ ଦେବେ ତାହାଙ୍କର ଯାନ ।
ଯେ ହେତୁ ଆଧାର ସେହି ଅଟେ ପ୍ରଭୁଙ୍କର
ନାହିଁ ନ ଥିଲା ନ ହେବ ଶୁଣ ନୃପବର ।
ଜଗନ୍ନାଥ ରଥ ଚକ୍ର ଷୋଡ଼ଶ ସଂଖ୍ୟକ
ଚତୁର୍ଦ୍ଦଶ ବଳରାମଙ୍କର ରଥ ଚକ୍ର ।
ସୁଭଦ୍ରାଙ୍କ ରଥ ଚକ୍ର ସଂଖ୍ୟାରେ ଦ୍ୱାଦଶ
ଜଗନ୍ନାଥ ରଥ ଚକ୍ର ହସ୍ତ ଯେ ଷୋଡ଼ଶ ।
ବଳରାମ ରଥ ଚକ୍ର ହସ୍ତ ଚତୁର୍ଦ୍ଦଶ
ଦେବୀ ରଥ ଚକ୍ର ହେବ ହସ୍ତ ଯେ ଦ୍ୱାଦଶ ।
ଯେ ପ୍ରଭୁ ନିର୍ମଳ ଜ୍ଞାନ ରୂପ ଦର୍ପଣରେ
ଚରାଚର ଜଗତକୁ ଦର୍ଶନ ଯେ କରେ ।
ତାହାଙ୍କର କରତଳେ ସର୍ବଦା ଦର୍ପଣ
ନିର୍ମଳ ରୂପରେ କରିଅଛି ଅବସ୍ଥାନ ।
ଦର୍ପଣ ତଳ ହେବାରୁ ଏହାନାମ ତାଳ
ତେଣୁ ବଳରାମଙ୍କର ଚିହ୍ନ ଅଟେ ତାଳ ।

Digitized by srujanika@gmail.com

ବଳଭଦ୍ରାବତାର ଅନନ୍ତ ଦେବଙ୍କର
ରଥ ଉପରେ ଏ ତାଳଧ୍ୱଜ ଯୁକ୍ତ କର ।
ଲାଙ୍ଗଳୀ ଯେ ବଳଭଦ୍ରଙ୍କର ଅନ୍ୟ ନାମ
ତେଣୁ ରଥେ ଦେଇପାର ଲଙ୍ଗଳର ଚିହ୍ନ ।
ରଥରେ ଉତ୍ତର ରୂପେ ଧ୍ୱଜ ସମ୍ପାଦିବ
ଲାଙ୍ଗଳରୁ ତାଳଧ୍ୱଜ ପ୍ରଶସ୍ତ ଭାଷିବ ।
ଯଥାବିଧି ରଥତ୍ରୟ ପ୍ରତିଷ୍ଠା କରିବ
ଅପ୍ରତିଷ୍ଠା ରଥେ ଦେବ ବିଜେ ନ କରିବ ।
ପ୍ରତିଷ୍ଠା ନ କରି ଗୃହ ପ୍ରାସାଦ ମଣ୍ଡପ
ଦେବତା ସ୍ଥାପିଲେ ଫଳ ହାନି ହୁଏ ଭୂପ ।
ଏଣୁ ପ୍ରଭୁଙ୍କର ରଥ ପ୍ରତିଷ୍ଠା କରିବ
ଆୟୋଜନ କର ଦ୍ରବ୍ୟ ସମ୍ଭାର ଯେ ସର୍ବ ।
ଏ ପ୍ରତିଷ୍ଠା କର୍ମ ଆମ୍ଭେ କରିବୁ ସମ୍ପନ୍ନ
ପିତାଙ୍କ ଆଜ୍ଞାରେ ଶୀଘ୍ର କଲୁ ଆଗମନ ।
ଋଷିଙ୍କର ଏହି ବାକ୍ୟ ଶ୍ରବଣ କରନ୍ତେ
ପଦ୍ମନିଧି ଦ୍ରବ୍ୟ ଆଣି ଦେଲେ ତ ତୁରିତେ ।
ବିଶ୍ୱକର୍ମା ତିନିରଥ ଏକ ଦିନକରେ
ନିର୍ମାଣ କରିଲେ ଋଷି ଯେ ଆଦେଶ ଦେଲେ ।
ଏ ତିନି ରଥର ଚକ୍ର ଅତି ସୁଗଠନ
ରଥ ମାନଙ୍କର ଅବୟବ ଯେ ବିସ୍ତୀର୍ଣ୍ଣ ।
ସୁନ୍ଦର ତୋରଣା ଧ୍ୱଜା ପତାକା ଶୋଭିତ
ରଥ ଦେହ ନାନା ଚିତ୍ରେ ହୋଇଛି ଚିତ୍ରିତ ।
ବିଶୁଦ୍ଧ ସ୍ୱର୍ଣ୍ଣ ପିତୁଳା ଯୁଗଳ ରଥରେ
ଆବଦ୍ଧ ହୋଇ ରହିଛି ବନ୍ଧନ କୌଶଳେ ।
ସେ ରଥକୁ ଦେଖିଲେ ତ ମନରେ ଆସଇ
ସୂର୍ଯ୍ୟଙ୍କର ରଥ ଭୂତଳରେ ବିରାଜଇ ।
ମେଘ ଗର୍ଜନ ସମାନ ଶବ୍ଦ ଶୁଣାଯାଏ
ଗମ୍ଭୀର ନିର୍ଘୋଷ ରଥ ଗମନ ସମୟେ ।
ଅତି ଦୃଢ଼ ଆକର୍ଷଣ ରଜ୍ଜୁରେ ଶୋଭିତ
ଶୁଭ୍ରବର୍ଣ୍ଣ ବାୟୁବେଗ ଶତେ ଅଶ୍ୱଯୁକ୍ତ ।
ଋଷିବର ନାରଦ ଯେ ଶାସ୍ତ୍ର ବିଧାନରେ
ଶୁଭଦିନେ ତିନିରଥ ପ୍ରତିଷ୍ଠା କରିଲେ ।
ଜୈମିନି ମୁନିଙ୍କୁ ପଚାରନ୍ତି ମୁନିଗଣ
ବର୍ଣ୍ଣନା କରନ୍ତୁ ରଥ ପ୍ରତିଷ୍ଠା ବିଧାନ ।
ଏହା ଶୁଣି ମୁନିବର କହନ୍ତି ବଚନ
ରଥ ପ୍ରତିଷ୍ଠା ବିଧାନ କରନ୍ତୁ ଶ୍ରବଣ ।

ପୂର୍ବେ ନାରଦ ଯେ ରୂପ ପ୍ରତିଷ୍ଠା କରିଲେ
ଆମ୍ଭେ ଦେଖିଥିଲୁ ତାହା ଶୁଣନ୍ତୁ ସକଳେ ।
ରଥର ଈଶାନ କୋଣେ ଗୃହ ନିର୍ମାଣିବ
ଗୃହ ମଧ୍ୟ ଭାଗେ ଦେବୀ ଯତନେ କରିବ ।
ସମ ଚତୁରସ୍ର ବେଦୀ ଚତୁରସ୍ର ହେବ
ଏକ ହସ୍ତ ଉଚ୍ଚତାରେ ବେଦୀ ନିର୍ମାଣିବ ।
ପ୍ରତିଷ୍ଠା ପୂର୍ବ ଦିବସ ରାତ୍ରି ଶେଷକାଳେ
ସ୍ୱସ୍ତି ବାଚନ ଅଙ୍କୁରାରୋପଣ ବିଧିରେ ।
ରାତ୍ରିକାଳେ ଦେବତାମାନଙ୍କୁ ବଳି ଦେବ
ପ୍ରାତଃକାଳେ ବେଦୀଗୃହେ ପ୍ରବେଶ କରିବ ।
ସର୍ବତୋ ଭଦ୍ରମଣ୍ଡଳ ମୁରୁଜେ ଲେଖିବ
ଅବା ଅଷ୍ଟଦଳ ପଦ୍ମ ନିର୍ବାଣ କରିବ ।
ବିମ୍ବ ଆତପ୍ୟ ତଣ୍ଡୁଳ ଉପରେ ଥୋଇବ
କଷାୟ ଉଦକ ତୀର୍ଥୋଦକ ପୂର୍ଣ୍ଣ କୁମ୍ଭ ।
ସପତ ମୃତ୍ତିକା ପଞ୍ଚ ପଲ୍ଲବ ରତନ
ସର୍ବୋଷଧି ଗନ୍ଧଦ୍ରବ୍ୟ କୁମ୍ଭ କରି ପୂର୍ଣ୍ଣ ।
ଆଚାର୍ଯ୍ୟ ବିଷ୍ଣୁ ସ୍ମରଣ କରି ଶୁଚି ହୋଇ
ପୂର୍ଣ୍ଣ କୁମ୍ଭ ପୁରାଇବ ପଞ୍ଚଗବ୍ୟ ନେଇ ।
କୁମ୍ଭ ଗଳଦେଶେ ଝୀନ ବସନ ବେଢ଼ାଇ
ତା ଉପରେ ତଣ୍ଡୁଳ ସରାବ ଫଳ ଦେଇ ।
ଗନ୍ଧମାଲ୍ୟ ସିନ୍ଦୂରରେ କରି ସୁଶୋଭିତ
ମଙ୍ଗଳାଚାର ଉତ୍ସବେ ଘଟ ସ୍ଥାପିବ ତ ।
ଅନାମୟ ଦେବ ଦେବ ଶ୍ରୀ ନୃସିଂହ ଦେବ
ଦ୍ୱାତ୍ରିଂଶ ଅକ୍ଷର ମନ୍ତ୍ର ନ୍ୟାସ ଯେ କରିବ ।
ଅନନ୍ତର ରଖି ବହୁବିଧ ଉପଚାର
ମାନସରେ ପୂଜା ଜପ ସାରିବ ସତ୍ୱର ।
ତଦନ୍ତରେ ପ୍ରସନ୍ନତା ପ୍ରାର୍ଥନା କରିବ
ମନ୍ତ୍ରଚୈତନ୍ୟରେ ଆବାହନ ସମ୍ପାଦିବ ।
ସାଧବଗଣ ମାନେ ସୋପଚାରେ ପୂଜଇ
ବାହ୍ୟ ଉପଚାରେ ବାହ୍ୟ ପୂଜା ସମ୍ପାଦଇ ।
ପୂଜାଶେଷେ କୁମ୍ଭ ବାୟୁକୋଣେ କୁଣ୍ଡ ପରି
ବହ୍ନି ସ୍ଥାପନ କରିବ ମନ୍ତ୍ର ଅନୁସରି ।
ଅଷ୍ଟ ଉତ୍ତର ସହସ୍ର ସମିଧାଜ୍ୟ ଚରୁ
ହୋମ କରିବେ ଦେବତା ମୂଳମନ୍ତ୍ରେ ଗୁରୁ ।
ତଦନ୍ତେ ସମ୍ପାତ ପାତ୍ର କୁମ୍ଭରେ କରିବ
ପତାକା ବସ୍ତ୍ର ମାଳରେ ରଥ ମଣ୍ଡାଇବ ।

Digitized by srujanika@gmail.com

ସୁଗନ୍ଧ ଚନ୍ଦନ ବାରି ରଥରେ ସିଞ୍ଚିବ
ଶଙ୍ଖ କାହାଳାଦି ବାଦ୍ୟମାନ ବଜାଇବ ।
କାଳାଗୁରୁ ଧୂପଦ୍ୱାରା ଧୂପିତ କରିବ
ଯଥାଯୋଗ୍ୟ ଧ୍ୱଜ ରଥ ଉପରେ ସ୍ଥାପିବ ।
ରକ୍ତବର୍ଣ୍ଣ ମାଳାଗନ୍ଧେ ପୂଜା ଆଚରିବ
ଗରୁଡ଼ଙ୍କୁ ପ୍ରାର୍ଥନା ଯେ ମନ୍ତ୍ରରେ କରିବ ।
ଯେ ଏ ବିଶ୍ୱ ସଂସାରର ପ୍ରାଣର କାରଣ
ପରମାତ୍ମା ବିଷ୍ଣୁଙ୍କର ଶରୀର ସମାନ ।
ବିଷ୍ଣୁରଥ କେତୁରୂପେ ସଦା ବିରାଜିତ
ଥରେ ଚିନ୍ତିଲେ ମନରେ ନାଗବିଧ ଭୀତ ।
ଭୟରେ ନାଗୁଣୀ ଗର୍ଭ ହୁଅଇ ସ୍ଖଳନ
ଯାର ମୁଖେ ସର୍ପ ମାଂସ ରକ୍ତ ବିଦ୍ୟମାନ ।
ଆମ୍ଭେ ସେହି ଛନ୍ଦୋମୟ ନିର୍ମଳ ସୁପର୍ଣ୍ଣ
ଖଗପତିଙ୍କ ଚରଣ କରୁଛୁ ବର୍ଣ୍ଣନ ।
ଏ ରୂପ ପ୍ରାର୍ଥନା ପରେ କରି ବେଦ ଧ୍ୱନି
ବହୁବିଧ ବାଦ୍ୟ ଶଙ୍ଖ ବଜାଇବ ଆଣି ।
ପୁରୁଷ ସୂକ୍ତ ମନ୍ତ୍ରରେ ରଥର ଉପରେ
ଗରୁଡ଼ ଧ୍ୱଜ ସ୍ଥାପିବ ମନ ଆନନ୍ଦରେ ।
ଆଚାର୍ଯ୍ୟ ବ୍ରହ୍ମାଙ୍କ ସହ ପୂଜିତ କୁମ୍ଭର
ଜଳଦ୍ୱାରା ବିଷ୍ଣୁ ମନ୍ତ୍ର ପଢ଼ି ତିନିବାର ।
ରଥ ଉପରେ ସେଚନ କରି ପୂର୍ଣ୍ଣାହୂତି
ବ୍ରହ୍ମାଙ୍କୁ ଦକ୍ଷିଣା ଦାନ ଦେବ ମନ ତୃପ୍ତି ।
ଆଚାର୍ଯ୍ୟଙ୍କୁ ଦକ୍ଷିଣାରେ କରିବ ସନ୍ତୋଷ
ବ୍ରାହ୍ମଣ ଭୋଜନେ ଦେବ ଘୃତ ସେ ପାୟସ ।
ଏହି ରୂପ ବିଧାନରେ ବଳଦେବ ରଥ
ପ୍ରତିଷ୍ଠା କରିବ ପଢ଼ି ବାସୁଦେବ ମନ୍ତ୍ର ।
ଲାଙ୍ଗଳଂ ପରବୀରଂ ନତ୍' ଇତ୍ୟାଦି ମନ୍ତ୍ରରେ
ଧ୍ୱଜା ବନ୍ଧନ କରିବ ରଥର ଉପରେ ।
ମୂଳ ମନ୍ତ୍ରେ ବଳଦେବଙ୍କର ପୂଜା ସାରି
ସୁଭଦ୍ରା ରଥ ପ୍ରତିଷ୍ଠା କରିବ ଏପରି ।
ଲକ୍ଷ୍ମୀ ସୂକ୍ତ ମନ୍ତ୍ରେ ପୂଜା ହୋମ ଆଦି ସାରି
ପଦ୍ମ ଧ୍ୱଜ ସ୍ଥାପିତ ଯେ ରଥର ଉପରି ।
ମୁର ରିପୁ ବିଷ୍ଣୁଙ୍କର ନାଭିରୁ ଉତ୍ପନ୍ନ
ଚତୁର ଆନନଙ୍କର ହୋଇଛି ଆସନ ।
ବିଷ୍ଣୁପ୍ରିୟା ଲକ୍ଷ୍ମୀଙ୍କର ସ୍ଥାନ ଅବସ୍ଥାନ
ରଥରେ ଧ୍ୱଜା ରୂପରେ କର ଅବସ୍ଥାନ ।

ଏ ରୂପେ ପ୍ରାର୍ଥନା ମନ୍ତ୍ର କରି ଉଚ୍ଚାରଣ
ସୁଭଦ୍ରାଙ୍କ ରଥେ ଧ୍ୱଜା କରିବ ବନ୍ଧନ ।
ତିନିରଥ ପ୍ରତିଷ୍ଠା ଯେ ଏକତ୍ରେ କରିବ
ତିନି ଦେବଙ୍କର ପୂଜା ବିଧାନ ସାରିବ ।
ପାଞ୍ଚ ପାଞ୍ଚ ଆହୂତି ଯେ ପୃଥକ କ୍ରମରେ
ତିନି ଦେବତାଙ୍କୁ ଦେବ ଯଥା ବିଧାନରେ ।
ଦେବତାମାନଙ୍କ ପ୍ରତି ରଖି ଭକ୍ତିଭାବ
ସୁବର୍ଣ୍ଣ ଗୋ ବସ୍ତ୍ର ଆଦି ଦକ୍ଷିଣା ଯେ ଦେବ ।
ରଥ ପ୍ରତିମା ଏ ରୂପେ ସମ୍ପନ୍ନ ହୋଇଲେ
ଦେବତାମାନଙ୍କୁ ତହିଁ ବସାଇବ ଭଲେ ।
ବେଦଧ୍ୱନି ଜୟଧ୍ୱନି ମଙ୍ଗଳ ନିର୍ଘୋଷ
ନାନାବିଧ ବାଦ୍ୟ ଧ୍ୱନି କରିବ ଅବଶ୍ୟ ।
ଚାମର ବ୍ୟଜନ ଧୂପ ପୁଷ୍ପ ବୃଷ୍ଟି କରି
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟଗଣ ସର୍ବେ ମିଳି ।
ରଥ ଉପରେ ଦେବଙ୍କୁ କରିବ ସ୍ଥାପନ
ବ୍ରାହ୍ମଣମାନଙ୍କୁ ତୋଷ କରି ଧନ ଦାନ ।
ସୁଲକ୍ଷଣ ଘୋଟକ ବା ବଳିବର୍ଦ୍ଧ ଶାନ୍ତ
ରଥରେ ଆଣି ଝଟତି କରିବ ନିଯୁକ୍ତ ।
କିମ୍ବା ବିଷ୍ଣୁ ଭକ୍ତ ପରାୟଣ ଯେଉଁମାନେ
ରଜ୍ଜୁ ଧରି ରଥ ଟାଣିନେବେ ସେ ଯତନେ ।
ତତ୍ପରେ ସୁସ୍ୱାଦୁ ଭକ୍ଷ୍ୟ ଭୋଜ୍ୟ ଦ୍ରବ୍ୟମାନ
ସୁଗନ୍ଧ ଚନ୍ଦନ ତହିଁ କରି ବିତରଣ ।
ଦେବତାମାନଙ୍କୁ ରଥ ଉପରି ଭାଗରେ
ବଳିଦାନ ଦେବ ମନ୍ତ୍ର ପଢ଼ି ଉଚ୍ଚସ୍ୱରେ ।
ଦେବଗଣ ମୋର ବଳି କରନ୍ତୁ ଗ୍ରହଣ
ହେ ଆଦିତ୍ୟଗଣ ବସୁଗଣ ମରୁଦ୍‌ଗଣ ।
ହେ ଅଶ୍ୱିନୀ କୁମାର ହେ ସର୍ବ ରୁଦ୍ରଗଣ
ସୁପର୍ଣ୍ଣୀ ପନ୍ନଗ ବଳି କରନ୍ତୁ ଗ୍ରହଣ ।
ଭୋ ଅସୁର ନିଜର ଭୋ ଯାତୁଧାନ ଗଣ
ହେ ରଥାଧିଷ୍ଠିତ ସମୁଦାୟ ଦେବଗଣ ।
ଭୋ ଦିକ୍‌ପାଳଗଳ ଲୋକପାଳ ଯେ ସକଳ
ବିଘ୍ନ ବିନାୟକଗଣ ଦେବର୍ଷି ମଣ୍ଡଳ ।
ମହର୍ଷିଗଣ ମଙ୍ଗଳ କରନ୍ତୁ ବିଧାନ
ମୋର ଏ ବିଷୟେ ବିଘ୍ନ କର ନିବାରଣ ।
ମୋ ପ୍ରତି ଯେ ପ୍ରତିକୂଳ ନ ହେବେ ଆପଣ
ହେ ଦେବଗଣ ହେ ଦୈତ୍ୟଗଣ ଭୂତଗଣ ।

Digitized by srujanika@gmail.com

ସର୍ବେ ମୋ ପ୍ରଦତ୍ତ ବଳି କରନ୍ତୁ ଗ୍ରହଣ
ତୃପ୍ତ ହୋଇ ସୌମ୍ୟ ଭାବ କରନ୍ତୁ ଧାରଣ ।
ବୈଷ୍ଣବୀ ଗାୟତ୍ରୀ ପବିତ୍ର ଯେ ବିଷ୍ଣୁ ସୂକ୍ତ
ପଢ଼ି ଆକର୍ଷଣ ନେବ ଦେବତାଙ୍କ ରଥ ।
ପବିତ୍ର ଯେ ବାମଦେବ ମନସ୍ତୋକ ମନ୍ତ୍ର
ମଙ୍ଗଳବାଦ୍ୟ ବାଜଣା କରିବ ସତତ ।
ଚକ୍ରମାନଙ୍କରେ ତୈଳ ଦେଇ ଧୀରେ ଧୀରେ
ରଥ ଚଳାଇବ ସମତଳ ଭୂମିପରେ ।
ରଥ କଳ୍ପନା କାଳରେ ଘଟିଲେ ଉତ୍ପାତ
କହୁଅଛୁ ଶୁଣ ସର୍ବେ ହୋଇ ଏକଚିତ୍ତ ।
ଯଦି ରଥ ଈଶ ଭଗ୍ନ ହୁଏ ଅକସ୍ମାତ
ବ୍ରାହ୍ମଣମାନଙ୍କର ଯେ ହୁଏ ଭୟ ଜାତ ।
ଅକସ୍ମାତ ରଥ ଅକ୍ଷ ଯେବେ ହୁଏ କ୍ଷୟ
କ୍ଷତ୍ରିୟ କୁଳର ଦୁଃଖ ହୋଇବ ନିଶ୍ଚୟ ।
ଅଖ ତୁଳୀ ଭଗ୍ନ ହେଲେ ବୈଶ୍ୟ ହୁଏ ନାଶ
ଶମୀ ଭଗ୍ନ ହେଲେ ଶୁଦ୍ର କୁଳର ବିନାଶ ।
ଧୁରାଭଙ୍ଗେ ଅନାବୃଷ୍ଟି ହୁଅଇ ଦେଶରେ
ପ୍ରଜାଗଣ ଭୟ ପାନ୍ତି ପୀଠଭଗ୍ନ ହେଲେ ।
ଚକ୍ରଭଙ୍ଗ ହେଲେ ପରରାଷ୍ଟ୍ର ଭୟ ଜନ୍ମେ
ରାଜାର ରାଜତ୍ୱ ନାଶ ଧ୍ୱଜର ପତନେ ।
ପ୍ରତିମାର ଅଙ୍ଗ ଭଙ୍ଗ ଯଦ୍ୟପି ଘଟିବ
ତେବେ ସେହି ରାଜାର ତ ପଞ୍ଚତ୍ୱ ହୋଇବ ।
ଏକ କାଳେ ଏ ସକଳ ଉତ୍ପାତ ଘଟିଲେ
ସମୁଦାୟ ଜନସ୍ଥାନ ନିର୍ଜନ ସେ କାଳେ ।
ଏହି ଅଶୁଭ ଉତ୍ପାତ ଯଦ୍ୟପି ଘଟିବ
ବଳିଦାନ ଶାନ୍ତି ହୋମ ନିଶ୍ଚୟ କରିବ ।
ପୁନର୍ବାର ବ୍ରାହ୍ମଣଙ୍କୁ ଭୋଜନେ ତୋଷିବ
ସମାହିତ ଚିତ୍ତେ ଧନ ଦାନ ଯେ କରିବ ।
ଦୀକ୍ଷିତ ବିପ୍ର ରଥର ପୂର୍ବୋତ୍ତର ଭାଗେ
ଅଗ୍ନିସ୍ଥାନେ କରିବ ଘୃତ ମଧ୍ୟ ଯୋଗେ ।
ପଳାଶ ସମିଧ ମୂଳ ଅଗ୍ରଭାଗ ଦ୍ୱାରା
ବୈଷ୍ଣବ ମନ୍ତ୍ରରେ ହୋମ କରିବଟି ତ୍ୱରା ।
ସୋମ ଅଗ୍ନି ପ୍ରଜା ପ୍ରଜାପତି ଗ୍ରହଗଣ
ବ୍ରହ୍ମା ଦିଗ୍‌ପାଳଙ୍କୁ ମନ୍ତ୍ରେ କରିବ ଯେ ହୋମ ।
ସେ ସ୍ଥାନେ ରଥରେ ଯଦି ଉତ୍ପାତ ଘଟିବ
ସେ ସ୍ଥାନେ ଦୀକ୍ଷିତ ବିପ୍ରେ ହୋମ କରାଇବ ।
ଏ ସକଳ ଦେବତାଙ୍କୁ ବିଶେଷ ଭାବରେ
ମନ୍ତ୍ରରେ ହୋମ କରିବ ଯଥା ବିଧାନରେ ।
ଅନନ୍ତର ହୋମ କାର୍ଯ୍ୟ ହେଲେ ସମାପନ
ଶାନ୍ତି ବାଚନ ପଢ଼ିବେ ମିଳି ଦ୍ୱିଜଗଣ ।
ମଙ୍ଗଳ ହେଉ ସଂସାରେ ବିପ୍ରମାନଙ୍କର
ରାଜାଙ୍କର ମଙ୍ଗଳ ତ ହେଉ ନିରନ୍ତର ।
ସ୍ୱଜାତିର ମଙ୍ଗଳ ଯେ ହେଉ ଚିରକାଳ
ପ୍ରଜାମାନଙ୍କ ମଙ୍ଗଳ ଜଗତେ ମଙ୍ଗଳ ।
ମନୁଷ୍ୟମାନଙ୍କର ଯେ ମଙ୍ଗଳ ସର୍ବତ୍ର
ଚତୁଷ୍ପଦ ଜୀବଙ୍କର ଶାନ୍ତି ହେଉ ନିତ୍ୟ ।
ପ୍ରଜାମାନଙ୍କ କୁଶଳ ଆମ୍ଭର କୁଶଳ
ଦେବଗଣଙ୍କର ଶାନ୍ତି ହେଉ ଚିରକାଳ ।
ଭୂର୍ଭୁବଃ ସ୍ୱଃ ଏହି ତିନି ଲୋକଙ୍କ ମଙ୍ଗଳ
ସର୍ବସ୍ଥାନେ ଶାନ୍ତି ରହୁ ସର୍ବଦା ମଙ୍ଗଳ ।
ଚତୁର୍ଦ୍ଦିଗ ମଙ୍ଗଳରେ ହେଉ ପରିପୂର୍ଣ୍ଣ
ହେ ଦେବ ଜଗତ ସୃଷ୍ଟି କରିଛ ଆପଣ ।
ଜଗତ ପାଳନକାରୀ ସର୍ବଦା ଆପଣ
ହେ ଜଗତ ପତି ଶାନ୍ତି କରନ୍ତୁ ବିଧାନ ।
ଯାତ୍ରାକାଳେ ରାଜାଙ୍କର ଅନ୍ୟ ଜନଙ୍କର
ଦୁଷ୍ଟଗ୍ରହ କେଉଁପରି କରିବ ବିଚାର ।
ଦୁଷ୍ଟଗ୍ରହ ଥିଲେ ଶାନ୍ତି କରିବ ବିଧାନ
ଶ୍ରବଣ କଲ ତ ରଥ ପ୍ରତିଷ୍ଠା ବିଧାନ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ପଞ୍ଚବିଂଶ ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ଶ୍ରୀ ଜଗନ୍ନାଥ ପ୍ରଭୁଙ୍କ ଚରଣେ ଶରଣ
ବଡ଼ ଠାକୁରଙ୍କ ପଦେ କରୁଛି ପ୍ରଣାମ ।
ଜୟ ମା ସୁଭଦ୍ରା ଦେବୀ କର ସୁକଲ୍ୟାଣ
ହରିହର ମନୋବାଞ୍ଛା ବେଗେ ହେଉ ପୂର୍ଣ୍ଣ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳଖଣ୍ଡେ ରଥ
ନିର୍ମାଣ ଓ ପ୍ରତିଷ୍ଠା ବର୍ଣ୍ଣନେ
ନାମ ପଞ୍ଚବିଂଶୋଽଧ୍ୟାୟଃ ।

□□

## ଷଡ଼ବିଂଶ ଅଧ୍ୟାୟ

ଜୈମିନି କହିଲେ ବିପ୍ରଗଣ ଏହାପରେ
ଆମ୍ଭେ ଦେବତାମାନଙ୍କୁ ବସାଇ ରଥରେ ।
ସମତଳ ପ୍ରଦେଶରେ ଶୁଭ ମୁହୂର୍ତ୍ତରେ
ପ୍ରସାଦ ସମୀପେ ଉପସ୍ଥିତ ହେଲୁ ଧୀରେ ।
ନୃପ ଇନ୍ଦ୍ରଦ୍ୟୁମ୍ନଙ୍କର ନିର୍ଦ୍ଦେଶାନୁସାରେ
ଦେବଶିଳ୍ପୀ ବିଶ୍ୱକର୍ମା ଉପସ୍ଥିତ ହେଲେ ।
ସ୍ୱର୍ଣ୍ଣମଣି ମାଣିକ୍ୟାଦି ବିବିଧ ରତ୍ନରେ
ବିଶାଦ ଦେବତାଶାଳା ନିର୍ମାଣ କରିଲେ ।
ସେ ଦେବାଳୟ ପ୍ରତିଷ୍ଠା ଅର୍ଥେ ଇନ୍ଦ୍ରଦ୍ୟୁମ୍ନ
ଘୃତ ସମିଧ କୁଶାଦି କଲେ ଆୟୋଜନ ।

Digitized by srujanika@gmail.com

ନାନାବିଧ ଭୋଜ୍ୟ ଦ୍ରବ୍ୟ ସଂଗ୍ରହ କରିଲେ
ବହୁବିଧ ବାଦ୍ୟ ଗୀତ ଆଦି କରାଇଲେ ।
ବିପ୍ରଗଣ ଅଧିକ କି କହିବା ଏଠାରେ
ପୂର୍ବେ ଇନ୍ଦ୍ରଦ୍ୟୁମ୍ନଙ୍କର ରାଜତ୍ୱ କାଳରେ ।
ଯେ ରୂପ ସମ୍ପଦ ଥିଲା ତାଠାରୁ ଅଧିକ
ଦେଖି ବିସ୍ମୟ ହୋଇଲେ ତହିଁ ସର୍ବଲୋକ ।
ଏ ସମୟେ ଗାଲ ନାମେ ରାଜା କ୍ଷିତିତଳେ
ରାଜ୍ୟ କରି ପ୍ରଜାମାନଙ୍କୁ ସେ ପାଳୁଥିଲେ ।
ଦାରୁମୟ ବିଷ୍ଣୁମୂର୍ତ୍ତି ମାଧବ ନାମରେ
ପ୍ରତିଷ୍ଠା କରି ମନ୍ଦିରେ ପୂଜା କରୁଥିଲେ ।
ପରେ ଇନ୍ଦ୍ରଦ୍ୟୁମ୍ନ କ୍ଷୁଦ୍ର ଦେଉଳ ନିର୍ମାଣ
କରି ମାଧବଙ୍କୁ ତହିଁ କରିଲେ ସ୍ଥାପନ ।
ପୁରୁଷୋତ୍ତମଙ୍କୁ ମନ୍ଦିରରୁ ନେଇ ଗଲେ
ଗାଲରାଜା ଦୂତ ମୁଖୁଁ ସମ୍ବାଦ ଶୁଣିଲେ ।
କ୍ରୁଦ୍ଧହୋଇ ସୈନ୍ୟଗଣ ଘେନି ସଙ୍ଗତରେ
ଯୁଦ୍ଧାର୍ଥେ ନୀଳ ସୁନ୍ଦର ପର୍ବତେ ମିଳିଲେ ।
କିନ୍ତୁ ସ୍ୱପ୍ନରେ ଦୁର୍ଲ୍ଲଭ ଅଟଇ ଯେ ଦ୍ରବ୍ୟ
ପ୍ରତିଷ୍ଠା ନିମିତ୍ତ ଆୟୋଜନ ଦେଖି ସର୍ବ ।
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କୁ ଯେ ପ୍ରଶଂସା କରିଲେ
ଅତି ବିସ୍ମୟରେ ମନ ମଧ୍ୟରେ ଚିନ୍ତିଲେ ।
ଅସାମାନ୍ୟ କାର୍ଯ୍ୟ ଅତି ଆଶ୍ଚର୍ଯ୍ୟ ବ୍ୟାପାର
ଦେଖି ଜାଣିଲେ ଏ ଇନ୍ଦ୍ରଦ୍ୟୁମ୍ନ ନୃପବର ।
ଏ ଅଦ୍‌ଭୂତ ଦେବଗୃହ କରିଲେ ନିର୍ମାଣ
ପ୍ରତିଷ୍ଠା ଦ୍ରବ୍ୟ ସକଳ କରି ଆୟୋଜନ ।
ଭଗବାନଙ୍କୁ ପ୍ରତିଷ୍ଠା କରିବା ନିମିତ୍ତ
ବ୍ରହ୍ମଲୋକରୁ ଆସିଲେ ଏ ନୀଳ ପର୍ବତ ।
ଏହି କାର୍ଯ୍ୟ ସାଧନରେ କମଳ ଆସନ
ପଦ୍ମନିଧି ସଙ୍ଗତରେ ଯେତେ ଦେବଗଣ ।
ଇନ୍ଦ୍ରଦ୍ୟୁମ୍ନଙ୍କର ଗୁରୁ ନାରଦ ମହର୍ଷି
ଏହିସ୍ଥାନେ ଆଗମନ କରିଛନ୍ତି ଆସି ।
ଅଲୌକିକ ଏ ବ୍ୟାପାର ଶ୍ରବଣ କରିଲେ
ଗାଲରାଜା ଆପଣାକୁ କୃତାର୍ଥ ମଣିଲେ ।
ଏହିଠାରୁ ଶ୍ରେୟ କାର୍ଯ୍ୟ ଅତୀତ କାଳରେ
ହୋଇନାହିଁ ହେବନାହିଁ ଭବିଷ୍ୟ କାଳରେ ।
ଏହାଙ୍କ ନିକଟେ ରହି କରିବି ଦର୍ଶନ
କି ବିଧିରେ ଏ ଉତ୍ସବ ହେବ ସମାପନ ।
ପ୍ରତିବର୍ଷ ଏ ଉତ୍ସବ କରିବି ବିଧିରେ
ଏହିକଥା ଗାଲରାଜା ମନେ ସ୍ଥିର କଲେ ।
ଅଭାଗ୍ୟ ବଶରୁ ଏତେକାଳ ପରିଯନ୍ତ
ଦାରୁବ୍ରହ୍ମ ବିଷ୍ଣୁଙ୍କୁ ଯେ ନ କରି ସାକ୍ଷାତ ।
ଏହାଙ୍କର ସେବା ଦିନେ କରି ନ ପାରିଲି
ଏ ମନୁଷ୍ୟ ଜନମକୁ ବିଫଳ ମଣିଲି ।
ଯା ହେବାର ହୋଇଲାଣି ବ୍ରହ୍ମ ଲୋକାଗତ
ମହାଭାଗବତ ଇନ୍ଦ୍ରଦ୍ୟୁମ୍ନ ନରନାଥ ।
ତାହାଙ୍କ ଚରଣେ ଯାଇ କରିବି ପ୍ରଣାମ
ଦାରୁ ବ୍ରହ୍ମଙ୍କୁ ଦେଉଳେ କରିବି ଦର୍ଶନ ।
ବୈକୁଣ୍ଠନାଥଙ୍କୁ ଏହି ସ୍ଥାନେ ପ୍ରତିଷ୍ଠିତ
ଅବଶ୍ୟ କରିବେ ଇନ୍ଦ୍ରଦ୍ୟୁମ୍ନ ନରନାଥ ।
ପ୍ରଭୁଙ୍କର ସେବା ଭାର ଆମ୍ଭଙ୍କୁ ତ ଦେଇ
ବ୍ରହ୍ମଲୋକଙ୍କୁ ଗମନ କରିବେ ତ ସେହି ।
ଯେ ହେତୁ ସେ ଦୀର୍ଘକାଳ ବ୍ରହ୍ମଲୋକେ ରହି
ମର୍ତ୍ତ୍ୟଭୁବନକୁ ଇଚ୍ଛା କରିବେ କିମ୍ପାଇ ।
ପ୍ରଭୁଙ୍କର ସେବାଅର୍ଥେ ଧନରତ୍ନ ମାନ
ଉପଚାରାଦି ବିଷୟେ କରିବେ ସ୍ଥାପନ ।
ଅବଶ୍ୟ ସେ ଭଗବାନ ବ୍ରହ୍ମଙ୍କ ସହିତ
ପୁନର୍ବାର ବ୍ରହ୍ମଲୋକେ ଚଳିବେ ତୁରିତ ।
ବିଷ୍ଣୁଭକ୍ତ ମହାଜ୍ଞାନୀ ନୃପବର ଗାଲ
ମନ୍ତ୍ରୀବର ସହିତରେ କରି ଏ ବିଚାର ।
ବିନୀତ ଭାବରେ ଅତି ଆନନ୍ଦ ମନରେ
ଇନ୍ଦ୍ରଦ୍ୟୁମ୍ନଙ୍କ ନିକଟେ ଉପସ୍ଥିତ ହେଲେ ।
ନୃପବର ଗାଲରାଜା କେତେଦୂର ଯାଇ
ଇନ୍ଦ୍ରଦ୍ୟୁମ୍ନଙ୍କୁ ଦର୍ଶନ କରିଲେ ଯେ ରହି ।
ପ୍ରଣାମ କରିଣ କରଯୋଡ଼ି ମସ୍ତକରେ
ସଭୟେ ଇନ୍ଦ୍ରଦ୍ୟୁମ୍ନଙ୍କ ସମୀପେ ମିଳିଲେ ।
ବିନୟେ କହିଲେ ଦେବ ରାଜରାଜେଶ୍ୱର
ମନୁଷ୍ୟ ହୋଇ ଆପଣ ବ୍ରହ୍ମଲୋକେ ଗଲ ।
ତେଣୁ ଅସୀମ ଶକତି ସମ୍ପନ୍ନ ଆପଣ
ଜୀବନ୍ମୁକ୍ତ ହୋଇ କରୁଛନ୍ତି ଅବସ୍ଥାନ ।
ହେ ନୃପ ଅତି ସାମାନ୍ୟ କୀଟପରି ମୁହିଁ
ଆପଣଙ୍କ ଗୁଣାବଳୀ ନ ପାରିବି କହି ।
ଆପଣଙ୍କ ମହିମାକୁ ଜାଣି ମୁଁ ନ ଥିଲି
ସୈନ୍ୟସହ ଯୁଦ୍ଧ କରିବାକୁ ଆସିଥିଲି ।
ଆସି ଦେଖିଲି ଆପଣ ଅଦ୍‌ଭୂତ ପୁରୁଷ
ଇନ୍ଦ୍ର ସମାନ ଐଶ୍ୱର୍ଯ୍ୟ କରୁଛ ପ୍ରକାଶ ।
ତ୍ରୈଲୋକ୍ୟ ବାସୀ ସକଳ ଯେତେ ଦେବଗଣ
ପଦ୍ମନିଧି ସହ ଆଜ୍ଞା କରନ୍ତି ପାଳନ ।
ବ୍ରହ୍ମଲୋକୁ ଫେରିଆସି ଅଛନ୍ତି ଆପଣ
ସାଧନ କରୁଛ ଅସମ୍ଭବ କାର୍ଯ୍ୟମାନ ।
ଅତଏବ ନୃପୋତ୍ତମ ହୁଅନ୍ତୁ ପ୍ରସନ୍ନ
ସାର୍ଥକ ହୋଇବ ଆମ୍ଭମାନଙ୍କ ଜୀବନ ।

Digitized by srujanika@gmail.com

ଜୈମିନି କହିଲେ ସେହି ଗାଲ ନୃପବର
ଏହିରୂପେ ନିବେଦନ କରନ୍ତେ ସତ୍ୱର ।
ଈଷତ୍ ହାସ୍ୟ ମୁଖେ ନୃପବର ଇନ୍ଦ୍ରଦ୍ୟୁମ୍ନ
କହିଲେ ବିନୟ ବାକ୍ୟ ହେ ଗାଲ ରାଜନ ।
ଏ ସଂସାରେ ଆପଣ ତ ଜଣେ ବିଷ୍ଣୁଭକ୍ତ
ସାର୍ବଭୌମ ମହୀପତି ଲୋକରେ ବିଦିତ ।
ଆଉ ଏକ କଥା ଜାଣି ରଖନ୍ତୁ ନିଶ୍ଚୟ
ରାଜାମାନଙ୍କ ରାଜତ୍ୱ ସାମାନ୍ୟ ବିଷୟ ।
ମୋ ପରି ଅତି ସାମାନ୍ୟ ବ୍ୟକ୍ତିକୁ ଏପରି
ପ୍ରଶଂସା କରି କହିବା ନୁହେଁ ଦଣ୍ଡଧାରୀ ।
ଆଉ ଏ କଥାରେ ଆଉ ନାହିଁ ପ୍ରୟୋଜନ
ଅଦ୍ୱିତୀୟ ନୃପମଣି କ୍ଷିତିରେ ଆପଣ ।
ଜୀବମଧ୍ୟେ ସର୍ବଶ୍ରେଷ୍ଠ ମାନବ ସଂସାରେ
କିନ୍ତୁ ରାଜାର ଅଧୀନ ସକଳ କାର୍ଯ୍ୟରେ ।
ପିତାମହ ବ୍ରହ୍ମା ଅଷ୍ଟଦିକ୍‌ପାଳ ଅଂଶରେ
ନୃପତିକୁ ସୃଷ୍ଟି କରି ଅଛନ୍ତି ସଂସାରେ ।
ଯେ ରାଜାର ପୁଣ୍ୟବଳ ଅତି ଅଳ୍ପ ମାତ୍ର
ଯେ ରାଜା ପ୍ରଜାପାଳନେ ନୁହଇ ସମର୍ଥ ।
ନରୋତ୍ତମ ଯେଉଁ ରାଜା ଅତି ପୁଣ୍ୟଶୀଳ
ପ୍ରଜାପାଳନ ବିଷୟେ ଅତ୍ୟନ୍ତ କୁଶଳ ।
ଅତୁଳ ଧନ ସଞ୍ଚୟ କରି ଲଭେ କୀର୍ତ୍ତି
ପରଲୋକେ ପ୍ରାପ୍ତ ହୁଏ ପରମ ସଦ୍‌ଗତି ।
ବିଶେଷରେ ଆପଣ ତ ପରମ ବୈଷ୍ଣବ
ଆପଣଙ୍କର ତ ହେବ ସଦଗତି ଲାଭ ।
ଯେ ବ୍ୟକ୍ତି ପ୍ରାସାଦ ମଧ୍ୟେ ଯଥା ବିଧାନରେ
ବିଷ୍ଣୁ ପ୍ରତିମା ସ୍ଥାପନ କରଇ ଭକ୍ତିରେ ।
ତାହାର ଦେହ ବନ୍ଧନ ରଜ୍ଜୁ ଛିଡ଼ିଯାଏ
ବିଷ୍ଣୁଙ୍କ ପରମ ପଦ ଜୀବ ଲାଭ ପାଏ ।
ହେ ଗାଲ ରାଜନ ତୁମ୍ଭେ ପ୍ରାସାଦ ମଧ୍ୟରେ
ଦାରୁମୟ ବିଷ୍ଣୁ ମୂର୍ତ୍ତି ସ୍ଥାପିଛ ଭକ୍ତିରେ ।
ତୁମ୍ଭର କାର୍ଯ୍ୟ ନିର୍ବିଘ୍ନେ ସମାଧା ହୋଇଛି
ଆମ୍ଭ କାର୍ଯ୍ୟ ମନ୍ୱନ୍ତର ଗତ ହୋଇଅଛି ।
ତଥାପି ଆମ୍ଭର କାର୍ଯ୍ୟ ସିଦ୍ଧି ହୋଇନାହିଁ
ନିର୍ମିତ ପ୍ରାସାଦ ଅପ୍ରତିଷ୍ଠା ଅଛି ରହି ।
ଏଣୁ ଆମ୍ଭର ମନରେ ସନ୍ଦେହ ହୁଅଇ
ପ୍ରଭୁଙ୍କ ମୂର୍ତ୍ତି ସ୍ଥାପନ ହୋଇବ କି ନାହିଁ ।
ଚତୁର୍ମୁଖ ବିଧାତା ତ ନୁହନ୍ତି ସ୍ୱାଧୀନ
କେବେ ଏ ସ୍ଥାନକୁ ସେ କରିବେ ଆଗମନ ।
ଦେବ ପ୍ରାସାଦ ପ୍ରତିଷ୍ଠା କରିବେ ତ ସେହି
ତାହାଙ୍କୁ ତ ନିମନ୍ତ୍ରିତ କରିଅଛି ମୁହିଁ ।।
ଅନ୍ୟ ବ୍ୟକ୍ତିଦ୍ୱାରା ମୂର୍ତ୍ତି ପ୍ରତିଷ୍ଠା କରିବି
ଦେବତାଙ୍କୁ ନେଇ ସିଂହାସନେ ବସାଇବି ।
କିନ୍ତୁ ଅନ୍ୟକୁ ପ୍ରତିଷ୍ଠା କାର୍ଯ୍ୟରେ ନିଯୁକ୍ତ
କରାଇବା ଆମ୍ଭ ପକ୍ଷେ ନୁହଇ ଉଚିତ ।
ନୃପୋତ୍ତମ ବଧାତା ତ ନିଶ୍ଚୟ ଆସିବେ
ଦୟାକରି ଆମ୍ଭକାର୍ଯ୍ୟ ସମାଧା କରିବେ ।
ଏହା ହେଲେ ତତ୍ତ୍ୱରୂପୀ ଦେବ ଜନାର୍ଦ୍ଦନ
ସିଂହାସନ ପରେ ନେଇ କରିବୁଁ ସ୍ଥାପନ ।
ତୁମ୍ଭଙ୍କୁ ତ କରିଦେଇ ସେବା ସମର୍ପଣ
ବ୍ରହ୍ମଲୋକକୁ ତକ୍ଷଣେ କରିବୁଁ ଗମନ ।
ଆପଣ ତ ଯଥାବିଧି ଉପଚାର ଦେଇ
ପ୍ରଭୁଙ୍କର ସେବାକାର୍ଯ୍ୟ କରାଇବେ ରହି ।
ସ୍ୱୟଂ ଧାତା ଯଥାବିଧି ଦେବେ ଉପଦେଶ
ନିତ୍ୟ ସେବା ଯାତ୍ରାପୂର୍ବ ବିଧାନ ବିଶେଷ ।
ଆପଣ କରିବେ ସେହିପରି ଅନୁଷ୍ଠାନ
ଯେହେତୁ ଧର୍ମ ପାଳନ ଅଟନ୍ତି ରାଜନ ।
ଗାଲ ନୃପତି ଯେ କଥା ମନେ ଭାବୁଥିଲେ
ରାଜା ଇନ୍ଦ୍ରଦ୍ୟୁମ୍ନ ସେହି ଆଦେଶ ଯେ ଦେଲେ ।
ଗାଲରାଜା ଏହା ଶୁଣି ଆନନ୍ଦ ହୋଇଲେ
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ନିକଟେ ରହିଲେ ।
ଇନ୍ଦ୍ରଦ୍ୟୁମ୍ନ ଯେ ଆଦେଶ ଦିଅନ୍ତି ଯେବେଳେ
ଭୃତ୍ୟପରି ସେ କାର୍ଯ୍ୟକୁ କରନ୍ତି ତତ୍‌କାଳେ ।
ପ୍ରତିଷ୍ଠା ଦ୍ରବ୍ୟ ସମ୍ଭାର ଯଥା ବିଧାନରେ
ଇନ୍ଦ୍ରଦ୍ୟୁମ୍ନ ଗାଲଦ୍ୱାରା ଆୟୋଜନ କଲେ ।
ଦେବଗଣ ଚଉପାଶେ ବେଢ଼ିଣ ବସିଲେ
ଇନ୍ଦ୍ରଦ୍ୟୁମ୍ନ ସିଂହାସନପରେ ବିଜେ କଲେ ।
ତକ୍ଷଣେ ବାଜିଲା ମୁରଜାଦି ବାଦ୍ୟମାନ
ବେଣୁ ବାଣୀ ଧ୍ୱନିରେ ଯେ ଦିଗ ହେଲା ପୂର୍ଣ୍ଣ ।
ଐରାବତ ଆଦି ଗଜଗଣଙ୍କ କଣ୍ଠରେ
କିଙ୍କିଣୀ ମାଳାର ଧ୍ୱନି ସକଳେ ଶୁଣିଲେ ।
ଏହାପରେ ଆକାଶ ମଣ୍ଡଳ ପୂର୍ଣ୍ଣ ହୋଇ
ଅଦ୍‌ଭୁତ ତେଜୋରାଶି ଯେ ପ୍ରକାଶିଲା ତହିଁ ।
କ୍ଷିତିତଳେ ରହିଥିଲେ ଯେତେ ଜନଗଣ
ସେ ତେଜକୁ ଚାହିଁବାକୁ ନ ହେଲେ ଭାଜନ ।
ସକଳ ଜନଙ୍କ ଚକ୍ଷୁ ବୁଜି ହୋଇଗଲା
ଅତି ଯତ୍ନେ ସେ ତେଜର ଦର୍ଶନ ମିଳିଲା ।
ଅନନ୍ତର ତେଜରାଶି ମଧ୍ୟେ ବିମାନରେ
ପ୍ରଜାପତିଙ୍କୁ ଦର୍ଶନ କରିଲେ ସକଳେ ।
ଚାରିଦିଗେ ଶତ ଶତ ସ୍ୱର୍ଣ୍ଣ ହଂସଗଣ
ସେ ବିମାନକୁ କନ୍ଧରେ କରନ୍ତି ବହନ ।

Digitized by srujanika@gmail.com

ଦିଗ୍‌ପାଳଗଣ ହସ୍ତରେ ଧରିଣ ଚାମର
ବ୍ୟଜନ କରୁଅଛନ୍ତି ହୋଇଣ ତତ୍ପର ।
ଜାହ୍ନବୀ ଯମୁନା ଦୁହେଁ ତାହାଙ୍କର ଗାତ୍ର
ଦୁଇପାଖେ କରୁଛନ୍ତି ଜଳେ ଅଭିଷିକ୍ତ ।
ଚନ୍ଦ୍ର ସୂର୍ଯ୍ୟ ତାହାଙ୍କର ଉଭୟ ପାର୍ଶ୍ୱରେ
ଦୁଇଗୋଟି ଆତପତ୍ର ଧରିଛନ୍ତି କରେ ।
ମନ୍ଦ ମନ୍ଦ ସମୀରଣେ ସେ ଆତ ପତ୍ରର
ଝାଲେରୀ ଦୋହଲୁଥିଲା ଅତି ମନୋହର ।
ଗୌତମାଦି ଋଷିଗଣ ତହିଁ ଯେତେ ଥିଲେ
ବେଦ ରହସ୍ୟ ମନ୍ତ୍ରରେ ସ୍ତୁତି କରୁଥିଲେ ।
ଇନ୍ଦ୍ରଦ୍ୟୁମ୍ନାଦି ରାଜର୍ଷି ଆଉ ଦେବଗଣ
ପ୍ରଜାନାଥଙ୍କର ସ୍ତୁତି କରନ୍ତି ଗାୟନ ।
ଚଉପାଶେ ଦେବଗଣ ଜୟ ଗାଉଥିଲେ
ଆନନ୍ଦେ ଅପ୍‌ସରାଗଣ ନୃତ୍ୟ କରୁଥିଲେ ।
ଗନ୍ଧର୍ବଗଣ ମଧୁର ସଂଗୀତ କରନ୍ତି
ସିଦ୍ଧ ବିଦ୍ୟାଧର ଗଣ ବୀଣାକୁ ବଜାନ୍ତି ।
ଆନନ୍ଦେ ତପସ୍ୱୀଗଣ ଦୂରଦେଶେ ରହି
ଉପାସନା କରୁଛନ୍ତି ଶିରେ କରଦେଇ ।
ସାବିତ୍ରୀ ସରସ୍ୱତୀ ଯେ ପବିତ୍ର ବାକ୍ୟରେ
ସନ୍ତୋଷ ବିଧାନ କରୁଛନ୍ତି ସେ କାଳରେ ।
ଏ ଦୁଇ ପତ୍ନୀଙ୍କ ଛଡ଼ା ଆଉ ବ୍ରହ୍ମାଙ୍କର
ସନ୍ତୋଷ ସାଧନେ ଅଛି ସମର୍ଥ କାହାର ।
ଜୈମିନି କହନ୍ତି ଦ୍ୱିଜଗଣ ଶୁଣ ଧୀରେ
ନାରଦାଦି ଋଷି ସିଦ୍ଧ ଗନ୍ଧର୍ବ ସକଳେ ।
ବିନୟୀ ହୋଇ ହସ୍ତରେ ଧରି ସୁନାବେତ
ସୋପାନ ଶ୍ରେଣୀ ଦର୍ଶନ କରାନ୍ତି ସତତ ।
ଏ ସମୟରେ ଗମନ ପଥ ସଙ୍କୁଚିତ
ଦେବଗଣଙ୍କ ସମର୍ଥ ହେଲା ଉପସ୍ଥିତ ।
ଯେ ମାର୍ଗରେ ଯାର ଇଚ୍ଛା ଯେ ପଥେ ସେ ଗଲା
ଗମନ ମାର୍ଗ ସ୍ଥିରତା ଆଉ ନ ରହିଲା ।
କେହି କାହାରିକୁ ତହିଁ ନ କଲେ ଗଣନା
କିପରି ଆଗରେ ଯିବେ ଏହି ବିବେଚନା ।
ଏହିରୂପେ ସଙ୍କୁଚିତ ହେଲା ଗତିପଥ
ନିଜ ବାହନ ବିଷୟେ ହେଲେ ଆକୁଳିତ ।
ଏ ରୂପ ହୋଇବା ନୁହେ ବିଚିତ୍ରର କଥା
ଆସୁଛନ୍ତି ସୃଷ୍ଟି ସ୍ଥିତି ପ୍ରଳୟର କର୍ତ୍ତା ।
ସ୍ୱୟଂ ସୃଷ୍ଟିକର୍ତ୍ତା ବ୍ରହ୍ମା ଯିବେ ଯେ ପଥରେ
ସେ ପଥେ କି ଅନ୍ୟଦେବେ ଚାଲିବେ ସୁସ୍ଥରେ ।
ସେହି ସ୍ଥାନରେ ବିଧାତା ହେଲେ ଉପସ୍ଥିତ
ଇନ୍ଦ୍ରଦ୍ୟୁମ୍ନ ଗାଲରାଜା ନାରଦ ସହିତ ।
ମହର୍ଷିଗଣ ଅମରଗଣ ସେ କାଳରେ
ସାଷ୍ଟାଙ୍ଗ ପ୍ରଣାମ ସର୍ବେ କଲେ ଭୂତଳରେ ।
ସେ ମହତ୍ମା ଇନ୍ଦ୍ରଦ୍ୟୁମ୍ନ ପରମ ଭକ୍ତିରେ
ନିଜକୁ ତ କୃତକୃତ୍ୟ ମନରେ ଭାବିଲେ ।
ଆନନ୍ଦରେ ଦେହ ହୋଇଗଲା ରୋମାଞ୍ଚିତ
ବ୍ରହ୍ମାଙ୍କୁ ଦେଖନ୍ତେ ବାକ୍ୟ ରୋଧ ହେଲା ଜାତ ।
ବ୍ରହ୍ମାଙ୍କର ସମ୍ମୁଖରେ କୃତାଞ୍ଜଳି ହୋଇ
ଦଣ୍ଡାୟମାନ ହୋଇଲେ ନୀରବରେ ତହିଁ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ଷଡ଼ବିଂଶ ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ଜୟ କମଳ ଆସନ ଜୟ ପ୍ରଜାପତି
ସୃଷ୍ଟି ସ୍ଥିତି ପ୍ରଳୟର କର୍ତ୍ତା ବେଦପତି ।
ସେ ବେଦଜ୍ଞାନ ରୂପରେ ସର୍ବଦା ପ୍ରକାଶ
ଜ୍ଞାତ ଜ୍ଞେୟ ଜ୍ଞାନ ଏହି ରୂପରେ ବିଶେଷ ।
ସେ ଜ୍ଞାନ ଲୋକରେ ହୃଦୟରୁ ଅନ୍ଧକାର
ଦୂରକୁ ପଳାଇ ଯାଉ ମାଗେ ହରିହର ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ବ୍ରହ୍ମା ନୀଳାଚଳ ଆଗମନେ ନାମ
ଷଡ଼ବିଂଶ ଅଧ୍ୟାୟଃ ।



## ସପ୍ତବିଂଶ ଅଧ୍ୟାୟ

ଅନନ୍ତର ଉପସ୍ଥିତ ହୋଇଲା ବିମାନ
ବିଧାତା ତହିଁରୁ ହେଲେ ସୁଖେ ଅବତୀର୍ଣ୍ଣ ।
ବିମାନର ପାଦ ପୀଠେ ଖଞ୍ଜିଲେ ତୁରିତ
ସୋପାନମାଳା ରତନ କାଞ୍ଚନେ ନିର୍ମିତ ।
ସୋପାନର ମୂଳ ଭୂମି ତଳକୁ ଲାଗିଲା
ଚାରିହସ୍ତ ଦୀର୍ଘ ଅଟେ ସେ ସୋପାନ ମାଳା ।
ବ୍ରହ୍ମାଙ୍କ ବିମାନ ଆଉ ପ୍ରାସାଦ ମଧ୍ୟରେ
ଇନ୍ଦ୍ରଧନୁ ତୁଲ୍ୟ ଶୋଭା ପ୍ରକାଶ ଯେ କରେ ।
ଗନ୍ଧର୍ବ ରାଜାଏ ହସ୍ତେ ଧରି ସ୍ୱର୍ଣ୍ଣବେତ
ପଥ ଦେଖାଇ ଦିଅନ୍ତି ବ୍ରହ୍ମାଙ୍କ ଅଗ୍ରତ ।
ବିଧାତା ଧରି ଦୁର୍ବାସା ନାରଦଙ୍କ ହସ୍ତ
ଦୃଷ୍ଟିପାତେ ଜଗତକୁ କରିଲେ ପବିତ୍ର ।
ସୋପାନରେ ବିମାନରୁ ତଳକୁ ଆସିଲେ
ତିନିରଥ ନିକଟରେ ଉପସ୍ଥିତ ହେଲେ ।
ରଥକୁ ଦେଖିଣ ବ୍ରହ୍ମା ସ୍ମିତହାସ୍ୟ କଲେ
ଅଳଂକୃତ ହୋଇଥିବା ପ୍ରାସାଦ ଦେଖିଲେ ।

Digitized by srujanika@gmail.com

ବିମାନରୁ ଭୂତଳକୁ ବିଧାତା ଆସିଲେ
ଦେବଗଣ ସିଦ୍ଧଗଣ ମହର୍ଷି ସକଳେ ।
ମସ୍ତକେ ଅଞ୍ଜଳି କରି ସ୍ତୁତି ଆରମ୍ଭିଲେ
ପିତାମହ ଯେ ଦିଗକୁ ଦୃଷ୍ଟି ପକାଇଲେ ।
ସେ ଦିଗରେ ଦୁଇକର ଯୋଡ଼ି ମସ୍ତକରେ
ପ୍ରଣାମ କରୁଅଛନ୍ତି ସକଳେ ଶ୍ରଦ୍ଧାରେ ।
ଏହାପରେ ରାଜା ଇନ୍ଦ୍ରଦ୍ୟୁମ୍ନ ଧାତାଙ୍କର
ଚରଣ ତଳରେ ଯାଇ କଲେ ନମସ୍କାର ।
ବିଧାତା ଦେଖିଲେ ସେ ସ୍ଥାନରେ ଦେବଗଣ
ବ୍ରହ୍ମର୍ଷି, ପିତୃ, ତାପସ, ଯକ୍ଷ, ସିଦ୍ଧଗଣ ।
ବିଦ୍ୟାଧର ଗନ୍ଧର୍ବ ଯେ ଅପ୍ସରା ସକଳ
ଆନନ୍ଦରେ ଜୟଗାନ କରନ୍ତି କେବଳ ।
ବିଧାତା ଇନ୍ଦ୍ରଦ୍ୟୁମ୍ନଙ୍କୁ ଅଙ୍ଗୁଳି ଦେଖାଇ
ମୃଦୁ ମଧୁର ବଚନ କହିଲେ ବୁଝାଇ ।
ଇନ୍ଦ୍ରଦ୍ୟୁମ୍ନ ତୁମ୍ଭର କି ଭାଗ୍ୟ ଉପସ୍ଥିତ
ତୁମ୍ଭ ଭାଗ୍ୟବଳେ ସପ୍ତଲୋକ ବଶୀଭୂତ ।
ତୁମ୍ଭର କାର୍ଯ୍ୟ ସାଧନ କରିବା ନିମିତ୍ତ
ସପ୍ତଲୋକବାସୀ ଆମ୍ଭ ସଙ୍ଗେ ଉପସ୍ଥିତ ।
ଏକଥା ଇନ୍ଦ୍ରଦ୍ୟୁମ୍ନଙ୍କୁ ବିଧାତା କହିଲେ
ନାରାୟଣଙ୍କର ରଥ ସମୀପକୁ ଗଲେ ।
ରଥରେ ପ୍ରଭୁଙ୍କୁ ତିନିବାର ପ୍ରଦକ୍ଷିଣ
ଆନନ୍ଦ ସାଗରେ ଭାସି କରିଲେ ପ୍ରଣାମ ।
ନିଜର ଆତ୍ମା ସ୍ୱରୂପ ପ୍ରତ୍ୟକ୍ଷ କରିଲେ
ଗଦ୍‌ଗଦ୍ ସ୍ୱରରେ ସ୍ତୁତିବାକ୍ୟ ଆରମ୍ଭିଲେ ।
ବିଶ୍ୱ ଆତ୍ମା ନମସ୍କାର କରେ ବାରମ୍ବାର
ନିଜ ସଙ୍ଗତରେ ଆପଣଙ୍କୁ ନମସ୍କାର ।
ଯେ ହେତୁ ମୋର ସ୍ୱରୂପ ଅଟନ୍ତି ଆପଣ
ଆପଣଙ୍କର ସ୍ୱରୂପ ମୁଁ ଅଟେ ତେସନ ।
ଏ ହେତୁ ଅଭିନ୍ନ ଆତ୍ମା ତୁମ୍ଭ ସଙ୍ଗେ ମୋର
ତୁମ୍ଭଙ୍କୁ ଆମ୍ଭଙ୍କୁ ପୁନଃ ପୁନଃ ନମସ୍କାର ।
ମୋ ସହିତ ଚରାଚର ଅଖିଳ ଜଗତ
ଆପଣଙ୍କର ମାୟାର ବିଳାସ ସମସ୍ତ ।
ବାସ୍ତବରେ ଆପଣଙ୍କ ମାୟାର ଉତ୍ପନ୍ନ
ସର୍ବଦୃଶ୍ୟ ବସ୍ତୁଙ୍କୁ ପ୍ରତିବିମ୍ବର ସମାନ ।
ହେ ନାଥ ଆପଣଙ୍କୁ ତ ନ ଜାଣିବା ପଣେ
ଏ ଦୃଶ୍ୟ ବସ୍ତୁରୁ ପରମାର୍ଥ ପରିମାଣେ ।
ଆପଣଙ୍କର ପ୍ରକୃତ ସ୍ୱରୂପ ବୁଝିଲେ
ଦୃଶ୍ୟ ଜଗତ ପ୍ରକାଶେ ଅନିତ୍ୟ ରୂପରେ ।
ଯେପରି ରଜ୍ଜୁରେ ଭ୍ରମେ ହୁଏ ସର୍ପଜ୍ଞାନ
ଭ୍ରାନ୍ତି ଦୂର ହେଲେ ରଜ୍ଜୁ ରହଇ ତେସନ ।

ଜାଗତିକ ବସ୍ତୁ ସତ୍ତା ହୋଇଲେ ବିଲୀନ
ସର୍ବତ୍ର ଆପଣ ଏକମାତ୍ର ବିଦ୍ୟମାନ ।
ଜଗତରେ କେଉଁ ବସ୍ତୁ ପ୍ରକୃତରେ ସତ୍ୟ
ଆଉ କେଉଁ ବସ୍ତୁ ଅଟେ ପ୍ରକୃତ ଅସତ୍ୟ ।
ଏକଥା ବିଶେଷ ରୂପେ ବିଚାର କରିଲେ
ସତ୍ୟକୁ ପ୍ରକାଶ କରି ନ ହୁଏ ବାକ୍ୟରେ ।
ସର୍ବ ଦୃଶ୍ୟ ବସ୍ତୁ ଏକମାତ୍ର ଯେ ଆପଣ
କେଉଁ ବସ୍ତୁ ଆପଣଙ୍କଠାରୁ ନୁହେଁ ଭିନ୍ନ ।
ଅଦ୍ୱିତୀୟ ଏକମାତ୍ର ଅଟନ୍ତି ଆପଣ
ଆପଣଙ୍କ ସତ୍ତା ଜଗତରେ ଭାସମାନ ।
ନିଜେ ନିଜକୁ ପ୍ରକାଶ ସର୍ବତ୍ର କରନ୍ତି
ଆପଣଙ୍କ ଶ୍ରୀଚରଣେ କରୁଛି ପ୍ରଣତି ।
ସହଜ ଆନନ୍ଦ ରୂପା ଅଟନ୍ତି ଆପଣ
ଆନନ୍ଦ ରୂପେ ବିଷୟ ମଧ୍ୟେ ବିଦ୍ୟମାନ ।
ବିଷୟାନନ୍ଦକୁ ଇଚ୍ଛାକରି ଜୀବଗଣ
ଜଗତରେ କରୁଛନ୍ତି ଜୀବନ ଧାରଣ ।
ନିରାକର ନିର୍ବିକାର ସ୍ୱୟଂ ନିରାଶ୍ରୟ
ଜଗତ୍ ପ୍ରପଞ୍ଚ ରୂପରେ ପ୍ରକାଶ ନିଶ୍ଚୟ ।
ଆପଣଙ୍କର ମାୟାରେ ହୋଇଛି ମୋହିତ
ସୃଷ୍ଟି କାର୍ଯ୍ୟ କରିବାରେ ସର୍ବଦା ବ୍ୟାପୃତ ।
କୌଣସି ପ୍ରକାରେ ଶାନ୍ତି ସୁଖ ମିଳୁନାହିଁ
ତାହା ଆପଣ ଜାଣନ୍ତି ଅନ୍ତର୍ଦ୍ଦେଶେ ରହି ।
ଆପଣଙ୍କ ନାଭି କମଳରୁ ଜନ୍ମ ହେଲି
ସେ ନାଭି କମଳେ ଦୀର୍ଘକାଳ ମୁଁ ରହିଲି ।
ନିରନ୍ତର ଆପଣଙ୍କ ସ୍ତୁତି ଗାନ କଲି
ଆପଣଙ୍କର ମାୟାକୁ ବୁଝି ନ ପାରିଲି ।
ଏ ବ୍ରହ୍ମାଣ୍ଡ ସୃଷ୍ଟି କାର୍ଯ୍ୟ କରିବା ନିମିତ୍ତ
ମୋତେ ଉତ୍ପାଦନ କରି ଅଛନ୍ତି ହେ ନାଥ ।
ସେହିପରି କୋଟି କୋଟି ବ୍ରହ୍ମାଣ୍ଡ ମଧ୍ୟରେ
ବ୍ରହ୍ମାଙ୍କୁ କରିଛ ସୃଷ୍ଟି ପ୍ରତି ବ୍ରହ୍ମାଣ୍ଡରେ ।
ସାର୍ଦ୍ଧ ତ୍ରିକୋଟି ସଂଖ୍ୟକ ବ୍ରହ୍ମାଙ୍କ ମଧ୍ୟରେ
ଏକମାତ୍ର ମୁଁ ତ ଆପଣଙ୍କ ସମ୍ମୁଖରେ ।
ଆପଣଙ୍କ ମହିମାକୁ କେଉଁପରି ଜାଣେ
ଏପରି ତ ନ ଜାଣନ୍ତି ଅନ୍ୟ ବ୍ରହ୍ମାମାନେ ।
ଆହେ ନାଥ ଅନନ୍ତ ମହିମା ବିଭୂଷିତ
ଚୈତନ୍ୟ ରୂପକୁ କରୁଅଛି ପ୍ରଣିପାତ ।
ସେ ପ୍ରଭୁ ଆପଣ ସର୍ବ ଦେବଙ୍କ ମଧ୍ୟରେ
ଆରାଧ୍ୟ ଦେବତା ଅଧି ଦେବତା ରୂପରେ ।
ଆବର ପ୍ରକାଶ ହୁଏ ଦିବ୍ୟ ଦିବ୍ୟ ରୂପ
ଆପଣ ଅଟନ୍ତି ଏକମାତ୍ର ଦିବ୍ୟ ରୂପ ।

Digitized by srujanika@gmail.com

ଆପଣଙ୍କୁ ବାରମ୍ବାର କରେ ନମସ୍କାର
ଆପଣ ତ ଜରା ମୃତ୍ୟୁ ଦୁଇରୁ ବାହାର ।
ଜ୍ୱଳନ୍ତ ଅଗ୍ନିରେ ତେଜ ବିଶିଷ୍ଟ ଆପଣ
ମୃତ୍ୟୁର ମୃତ୍ୟୁ ସ୍ୱରୂପ ପ୍ରଭୋ ନମୋ ନମଃ ।
ଶରଣାଗତ ବ୍ୟକ୍ତିର ମୃତ୍ୟୁ ବିନାଶକ
ଭକ୍ତଗଣଙ୍କର ପ୍ରିୟ ଆନନ୍ଦ ଦାୟକ ।
ପିତାମାତା ଅଟନ୍ତି ତ ଏହି ଜଗତର
ଆପଣଙ୍କ ଶ୍ରୀଚରଣ ତଳେ ନମସ୍କାର ।
ଅଜ୍ଞାନାନ୍ଧକାର ବିନାଶନେ ଦିବାକର
ଦୁଃଖ ଦୂର କରିଦିଅ ଶରଣାଗତର ।
ତ୍ରିବିଧ ତାପରେ ଦଗ୍‌ଧ ଜୀବ ମାନଙ୍କର
କୃପା ସାଗର ସ୍ୱରୂପ ପ୍ରଭୋ ନମସ୍କାର ।
ଆପଣ ତ ସର୍ବଶ୍ରେଷ୍ଠ ଆଉ ପରାତ୍ପର
ଭକ୍ତଗଣଙ୍କର ପାପ ବିନାଶେ ତତ୍ପର ।
ଅପାର ସଂସାର ସାଗରର ପରତୀର
ବ୍ରହ୍ମ ସ୍ୱରୂପୀ ଶ୍ରୀପଦ ତଳେ ନମସ୍କାର ।
ଦୟାମୟ ତୁମ୍ଭେ ମୂଳ ଅଖିଳ ବସ୍ତୁର
ଓତଃପ୍ରୋତ ରୂପେ ସ୍ଥିତ ପରତତ୍ତ୍ୱ ପର ।
ପରମାତ୍ମା ସ୍ୱରୂପ ଯେ ଅଟନ୍ତି ଆପଣ
ପ୍ରଭୋ ତବ ଶ୍ରୀଚରଣେ କରୁଛି ପ୍ରଣାମ ।
ନିତ୍ୟ ଉଦ୍‌ଯୋଗ ପୁରୁଷ ପ୍ରଣତ ଜନର
ଦୁଃଖ ହରଣ କରତା ପ୍ରଭୋ ନମସ୍କାର ।
ଏ ସୃଷ୍ଟିଭାର ଲାଘବ ହୋଇବା ନିମିତ୍ତ
ଆପଣଙ୍କୁ ପ୍ରାର୍ଥନା ମୁଁ କରୁଛି ବହୁତ ।
ହେ ସହଜାନନ୍ଦ ରୂପୀ ପ୍ରସନ୍ନ ହୁଅନ୍ତୁ
ପୂର୍ବର ପ୍ରାର୍ଥନା ମୋର ପୂରଣ କରନ୍ତୁ ।
କୃପାସିନ୍ଧୁ ଜଗତ୍ ଲୀଳା କାରଣେ ଆପଣ
ଆପଣଙ୍କଠାରୁ ମୋତେ କରିଅଛ ଭିନ୍ନ ।
ଏ ଜଗତ ରୂପ କାରାଗୃହର ମଧ୍ୟରେ
ଅବଦ୍ଧ କରି ରଖିଛ ଅଜ୍ଞାନାନ୍ଧକାରେ ।
ବନ୍ଧନରୁ ମୁକ୍ତି ଲାଭ ବିଷୟେ କାରଣ
ଆପଣଙ୍କ କୃପା ବିନା ଆଉ ନାହିଁ ଭିନ୍ନ ।
ଅନନ୍ତ କାଳ ଜଗତେ ଭ୍ରମଣ କରିଲି
ମୁକ୍ତି ଦ୍ୱାରର ସନ୍ଧାନ କାହିଁ ନ ପାଇଲି ।
ହେ ଦେବ ଆରାଧ୍ୟ ଏକମାତ୍ର ଯେ ଆପଣ
ଅର୍ଚ୍ଚନା କରନ୍ତି ନିତ୍ୟ ଦେବାସୁର ଗଣ ।
ତାପ ହରଣ କାରଣେ ଚନ୍ଦ୍ରମା ସମାନ
ସୁଧାନିଧି ଆପଣଙ୍କ ଚରଣେ ପ୍ରଣାମ ।
ଦୀନବନ୍ଧୁ ଆପଣ ତ ଦୀନଜନଙ୍କର
କଳ୍ପବୃକ୍ଷ ସମ ମନୋରଥ ଦାନ କର ।
ଦୀନ ଅନାଥ ପ୍ରଣତ ଭକ୍ତଜନଙ୍କର
କ୍ଲେଶ ବିନାଶନ ପ୍ରଭୁ ପଦେ ନମସ୍କାର ।
ହେ ନାଥ ସଂସାର ଦୁଃଖ ସାଗରେ ନିମଗ୍ନ
ଜଗଦ୍‌ବାସୀ ଜୀବ ପ୍ରତି ହୁଅନ୍ତୁ ପ୍ରସନ୍ନ ।
କରୁଣା ସାଗର କୃପା ପ୍ରକାଶି ସତ୍ୱର
ଜଗଦ୍‌ବାସୀ ଜନଙ୍କୁ ଯେ ପରିତ୍ରାଣ କର ।
ଲୋକଗୁରୁ ପିତାମହ ଜଗନ୍ନାଥଙ୍କର
ଏହିରୂପେ ସ୍ତୁତି କରି କଲେ ନମସ୍କାର ।
ଶ୍ରୀଅନନ୍ତ ବଳଭଦ୍ର ରୂପରେ ଅବତୀର୍ଣ୍ଣ
ସେହି ପ୍ରଭୁଙ୍କ ସମୀପେ କରିଲେ ଗମନ ।
ବଳରାମଙ୍କୁ ଭକ୍ତିରେ କରିଲେ ପ୍ରଣାମ
ଆନନ୍ଦରେ ଉଚ୍ଚସ୍ୱରେ ସ୍ତବ କଲେ ଗାନ ।
ଦେବେଶ ନଭୋ ମଣ୍ଡଳ ମସ୍ତକ ତୁମ୍ଭର
କ୍ଷିତିତଳ ପାଦଦ୍ୱୟ ଜଳଧି ଶରୀର ।
ବହ୍ନି ମୁଖ ଅଣଚାଶ ପବନ ନିଃଶ୍ୱାସ
ଚନ୍ଦ୍ର ସୂର୍ଯ୍ୟ ଚକ୍ଷୁଦ୍ୱୟ ରୂପେ ପରକାଶ ।
ହେ ନାଥ ଦିଗ ସକଳ ବାହୁରୂପେ ଖ୍ୟାତ
ଚୌଦ ଭୁବନର ମୂଳ ସ୍ତମ୍ଭ ଆପଣ ତ ।
ଜ୍ଞାନ ଦର୍ପଣ ସ୍ୱରୂପ ଅଟନ୍ତି ଆପଣ
ଶ୍ରୀଚରଣ ତଳକୁ ଯେ କରୁଛି ପ୍ରଣାମ ।
ଆପଣଙ୍କ ପାଦପଦ୍ମ କରିଲେ ଆଶ୍ରୟ
ଦୂର ହୋଇଯାଏ ତାହାଙ୍କର ପାପ କ୍ଷୟ ।
ଆପଣଙ୍କର ଅନନ୍ତ ମୁଖ ଚକ୍ଷୁ କର୍ଣ୍ଣ
ଅନନ୍ତ ହସ୍ତ ପାଦକୁ କରୁଛି ପ୍ରଣାମ ।
ହେ ପ୍ରଭୁ ଆପଣଙ୍କର ଆଦି ଅନ୍ତ ନାହିଁ
ବିଶ୍ୱ ବ୍ରହ୍ମାଣ୍ଡର ମହାମୂଳ ରୂପ ହୋଇ ।
ତମୋରାଶି ନାଶ ଅର୍ଥେ ସୂର୍ଯ୍ୟର ସମାନ
ବେଦତ୍ରୟ ସ୍ୱରୂପତ ଅଟନ୍ତି ଆପଣ ।
ଆଧ୍ୟାତ୍ମିକ ଆଦି ଦୋଷ ତବ କୃପା ହେଲେ
ପ୍ରଶମିତ ହୋଇଯାଏ ନିଶ୍ଚିତ ରୂପରେ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ରୂପେ ଅବତୀର୍ଣ୍ଣ
ଆପଣଙ୍କୁ ବାରମ୍ବାର କରୁଛି ପ୍ରଣାମ ।
ଆପଣ ନିଜ ମସ୍ତକେ ଫଣାମଣି ସମ
ବିଶାଳ କ୍ଷିତି ମଣ୍ଡଳ କରିଛ ଧାରଣ ।
କାଳାଗ୍ନି ରୁଦ୍ର ସ୍ୱରୂପ ଅଟନ୍ତି ଆପଣ
ମହାରୁଦ୍ର ସ୍ୱରୂପକୁ କରୁଛି ପ୍ରଣାମ ।
ପ୍ରଳୟ କାଳେ ବର୍ଦ୍ଧିତ ମହାର୍ଣ୍ଣବ ଜଳ
ତହିଁରେ ପ୍ଲାବିତ ହୁଏ ଜଗତ ସକଳ ।
ସେ ସମୟରେ ଆପଣ ନିଜ ଶରୀରରେ
ଶଯ୍ୟା ରଚନା କରନ୍ତି କୁଣ୍ଡଳ ଆକାରେ ।

Digitized by srujanika@gmail.com

ଫଣା ମଣ୍ଡଳକୁ କରି ଛତ୍ରର ଆକାରେ
ମହାସୁଖେ ନିଦ୍ରାଯାନ୍ତି ପ୍ରଳୟ କାଳରେ ।
ହେ ନାଥ ଆପଣ ସକଳର ସୃଷ୍ଟିକର୍ତ୍ତା
ପାଳନ କରତା ଆଉ ସଂହାର କରତା ।
ଏକମାତ୍ର ଆପଣ ତ ଏ ଧରା ମଣ୍ଡଳ
ଧରି ରଖିଅଛ ମସ୍ତକରେ କାଳକାଳ ।
ଆମ୍ଭମାନଙ୍କର ମୂଳ କାରଣ ଆପଣ
ବେଦାନ୍ତ ଶାସ୍ତ୍ରରେ ଯାର ମହିମା ବର୍ଣ୍ଣନ ।
ସେହି ପରମାତ୍ମା ଭଗବାନ ନାରାୟଣ
କଦାପି ନୁହନ୍ତି ଆପଣଙ୍କଠାରୁ ଭିନ୍ନ ।
କେବଳ ସେ ଅନିର୍ବଚନୀୟ ରୂପ ହୋଇ
ଆପଣଙ୍କଠାରୁ ପୃଥକ୍ ରୂପେ ବିରାଜଇ ।
ଆପଣ ଶଯ୍ୟା ଶୟନକର୍ତ୍ତା ନାରାୟଣ
ଆପଣ ଛାଦକ ଛାଦ୍ୟ ସେହି ନାରୟଣ ।
ଯାହାକୁ ଲୋକେ କହନ୍ତି କୃଷ୍ଣ ସେହି ରାମ
ସେହି କୃଷ୍ଣ ନିଶ୍ଚୟ ତ ରାମ ଯାର ନାମ ।
କୃଷ୍ଣ ରାମ ଦୁହିଁଙ୍କର ମଧ୍ୟେ ଭେଦ ନାହିଁ
ଆମ୍ଭପ୍ରତି ସୁପ୍ରସନ୍ନ ହୁଅନ୍ତୁ ଗୋସାଇଁ ।
ଏହି ସ୍ତୁତି କରି ବ୍ରହ୍ମା ପରମ ଈଶ୍ୱର
ବଳରାମଙ୍କର ପଦେ କଲେ ନମସ୍କାର ।
ବିଷ୍ଣୁଶକ୍ତି ସୁଭଦ୍ରାଙ୍କ ରଥ ନିକଟରେ
ଦର୍ଶନ କରିବା ଅର୍ଥେ ଉପସ୍ଥିତ ହେଲେ ।
ହେ ଦେବ ଜଗତମାତଃ ସୁପ୍ରସନ୍ନ ହୁଅ
ହେ ପରମେଶ୍ୱର ହେଉ ତୁମ୍ଭର ଯେ ଜୟ ।
କାର୍ଯ୍ୟ କାରଣ ଉଭୟ ରୂପେ ବିଦ୍ୟମାନ
ସର୍ବଶକ୍ତି ସ୍ୱରୂପିଣୀ କରୁଛି ପ୍ରଣାମ ।
ହେ କୈବଲ୍ୟ ସୁଖଦାତ୍ରି ସମସ୍ତ ଜୀବର
ହୃଦୟ ପଦ୍ମ ମଧ୍ୟରେ କରୁଛ ବିହାର ।
ଜ୍ଞାନରୂପେ ମୋହରୂପେ ଦେବାରି ରୂପରେ
ଭଦ୍ରେ ପ୍ରଣାମ କରୁଛି ତବ ଚରଣରେ ।
ହେ ଦେବି ଚରାଚରକୁ ମୋହିତ କରୁଛ
ତେଣୁ ବିଷ୍ଣୁ ମାୟାରୂପେ ଖ୍ୟାତି ଲଭିଅଛ ।
ବିଷ୍ଣୁଙ୍କର ହୃଦୟ କମଳ ବିହାରିଣୀ
ଜୀବନ ହୃଦୟ ପଦ ଆସନରେ ପୁଣି ।
ଜ୍ଞାନରୂପେ ମୋହରୂପେ କର ଅବସ୍ଥାନ
ହେ କୈବଲ୍ୟ ସୁଖଦାତ୍ରି ଭଦ୍ରେ ନମୋ ନମଃ ।
ମାତଃ ଏକମାତ୍ର ଲକ୍ଷ୍ମୀରୂପେ ବିରାଜିତ
ଗୌରୀ ଶଚୀ କାତ୍ୟାୟିନୀ ରୂପରେ ବିଖ୍ୟାତ ।
ଆଉ କି ଅଧିକ ଏହି ଜଗତ ମଧ୍ୟରେ
ଯେତେ ବସ୍ତୁ ଅଛି ସତ ଅସତ ରୂପରେ ।
ସକଳ ବସ୍ତୁରେ ଶକ୍ତିରୂପେ ବିରାଜିତ
ଯେତେ ଅଖିଳ ଜଗତ ଆତ୍ମାରୂପେ ଖ୍ୟାତ ।
ସ୍ତୁତି କରିବାକୁ କିଏ ହୋଇବ ସମର୍ଥ
ହେ ଭଦ୍ର ଦାୟିନୀ ଭଦ୍ରା ନାମରେ ବିଖ୍ୟାତ ।
ହେ ସୁଭଦ୍ରେ ତୁମ୍ଭ ଜୟ ହେଉ ଜଗତରେ
ଭଦ୍ରକାଳି ଜୟ ଭଦ୍ର ଅଭଦ୍ର ରୂପରେ ।
ହେ ଦେବି ତୁମ୍ଭ ଚରଣେ କରେ ନମସ୍କାର
ହେ ଦେବି ତୁମ୍ଭେ ଜନନୀ ସର୍ବ ଜଗତର ।
ନାରାୟଣ ଜଗତର ପିତା ଯେ ଅଟନ୍ତି
ସ୍ତ୍ରୀ ମୂର୍ତ୍ତି ଜଗତ ମଧ୍ୟରେ ଯେତେକ ଛନ୍ତି ।
ସେ ସକଳ ରୂପରେ ତ ତୁମ୍ଭେ ବିଦ୍ୟମାନ
ପୁରୁଷ ରୂପରେ ବିଦ୍ୟମାନ ନାରାୟଣ ।
ହେ ପରମେଶ୍ୱର ତୁମ୍ଭ ଦୁହିଁଙ୍କ ମଧ୍ୟରେ
ପ୍ରଭେଦ ତ ନାହିଁ ଏହି ଜଗତ ମଧ୍ୟରେ ।
ତୁମ୍ଭଠାରୁ ଶ୍ରେଷ୍ଠବସ୍ତୁ ଆଉ କିଛି ନାହିଁ
ଆମ୍ଭମାନଙ୍କୁ କାର୍ଯ୍ୟରେ ଲଗାଉଛୁ ତୁହି ।
ତୁମ୍ଭ ବିଷ୍ଣୁ ମାୟାର ଯେ ନିର୍ଦ୍ଦେଶାନୁସାରେ
ଭ୍ରମଣ କରୁଛି ମାତଃ ଏହି ଜଗତରେ ।
ପରମା ବୃତ୍ତି ପ୍ରବୃତ୍ତି କ୍ଷୁଧା ନିଦ୍ରାରୂପେ
ଭକ୍ତବାଞ୍ଛା କଳ୍ପତରୁ କାମ ପ୍ରଦା ରୂପେ ।
ହେ ନିତ୍ୟେ ପ୍ରଣାମ ତୁମ୍ଭ ଚରଣ ତଳରେ
ପରିତ୍ରାଣ କର ମୋତେ କୃପା କଟାକ୍ଷରେ ।
ଜୀବମାନଙ୍କର ମୁକ୍ତି ପ୍ରଦାୟିନୀ ମାତଃ
ଭବ ବନ୍ଧନ କାରଣ ରୂପରେ ବିଖ୍ୟାତ ।
ସୁଭଦ୍ରାଙ୍କୁ ଏହିପରି ସ୍ତୁତି ଧାତା କଲେ
ସୁଦର୍ଶନ ଚକ୍ରଙ୍କୁ ଯେ ପ୍ରଣାମ କରିଲେ ।
ବିଷ୍ଣୁଙ୍କର ଚତୁର୍ଥ ଶରୀର ରୂପେ ଖ୍ୟାତ
ଭକ୍ତିରେ ସ୍ତୁତି ବଚନ କହିଲେ ତୁରିତ ।
ମହାଦୀପ୍ତି ଶାଳୀ ସୁଦର୍ଶନ ନମୋ ନମଃ
କୋଟି ସୂର୍ଯ୍ୟ ସମ ପ୍ରଭୁ କରୁଛି ପ୍ରଣାମ ।
ଅଜ୍ଞାନ ତିମିର ଅନ୍ଧ ବ୍ୟକ୍ତି ମାନଙ୍କର
ବୈକୁଣ୍ଠ ମାର୍ଗ ଦର୍ଶନ ପ୍ରଭୋ ନମସ୍କାର ।
ପ୍ରତି ନିୟତ ତେଜର ବିଳାସ ତୁମ୍ଭର
ବୈଷ୍ଣବାସ୍ତ୍ର ମାନଙ୍କର ଅଟନ୍ତି ଆଧାର ।
ତୁମ୍ଭେ ଅବାରିତ ବୀର୍ଯ୍ୟ ମୂର୍ତ୍ତି ବିଷ୍ଣୁଙ୍କର
ଆପଣଙ୍କୁ ନମସ୍କାର କରେ ବାରମ୍ବାର ।
ଏ ରୂପେ ସୁଦର୍ଶନଙ୍କୁ ପ୍ରଣାମ କରିଲେ
ଦେବତାମାନଙ୍କ ସଙ୍ଗେ ଗଲେ ନୀଳାଚଳେ ।
ଇନ୍ଦ୍ରଦ୍ୟୁମ୍ନ ନାରଦ ଯେ ପଥ ଦେଖାଇଲେ
ସେହି ପଥରେ ପ୍ରାସାଦ ଦେଖିବାକୁ ଗଲେ ।

Digitized by srujanika@gmail.com

ଅନନ୍ତର ବ୍ରହ୍ମା ଦେବଗଣଙ୍କ ସହିତ
ପ୍ରାସାଦ ସମୀପେ ଯାଇ ହେଲେ ଉପସ୍ଥିତ ।
ମନୋମତ ମନୋହର ଶାଳକୁ ଦେଖିଲେ
ତନ୍ମଧ୍ୟେ ଦେବ ଉରଗ ଗଣଙ୍କୁ ସ୍ଥାପିଲେ ।
ବ୍ରହ୍ମ ଋଷି ଯୋଗୀ ବିପ୍ର ତପସ୍ୱୀ ମଣ୍ଡଳ
ବୈଷ୍ଣବ ଭୂପତିଗଣ ସ୍ଥାପିଲେ ସକଳ ।
ଇନ୍ଦ୍ରଦ୍ୟୁମ୍ନ ଦିବ୍ୟ ସିଂହାସନ ଆଣିଦେଲେ
ତହିଁରେ ବିଧାତା ଉପବେଶନ କରିଲେ ।
ପିତାମହଙ୍କ ଆଦେଶ ରାଜା ଇନ୍ଦ୍ରଦ୍ୟୁମ୍ନ
ଶାନ୍ତିକ ପୌଷ୍ଟିକ କର୍ମେ ଅଟନ୍ତି ପ୍ରବୀଣ ।
ଭରଦ୍ୱାଜ ମୁନିଙ୍କୁ ଯେ ବରଣ କରିଲେ
ବହୁମୁଲ୍ୟ ଦ୍ରବ୍ୟମାନ ଆଣି ଅରପିଲେ ।
ସେ ସକଳ ଦେବଗଣ ପ୍ରତିଷ୍ଠା କର୍ମରେ
ଅଭିମତ ହୋମବଳି ପୂଜାଦି କାର୍ଯ୍ୟରେ ।
ସେ ସକଳ ଦେବତାଙ୍କୁ ରାଜା ଇନ୍ଦ୍ରଦ୍ୟୁମ୍ନ
ଗନ୍ଧ ପୁଷ୍ପମାଲ୍ୟ ଦେଇ କରିଲେ ଅର୍ଚ୍ଚନ ।
ପୂଜିତ ଦେବତାଗଣ ଚତୁର ଦିଗରେ
ଧ୍ୟାନଯୋଗେ ବିଷ୍ଣୁରୂପ ଚିନ୍ତା ବସି କଲେ ।
ଅନନ୍ତର ଭରଦ୍ୱାଜ ମୁନି ବ୍ରହ୍ମାଙ୍କର
ସମକ୍ଷରେ କର୍ମାରମ୍ଭ କରିଲେ ସତ୍ୱର ।
ପ୍ରଥମେ ନୃପତି ଇନ୍ଦ୍ରଦ୍ୟୁମ୍ନ ଆନନ୍ଦରେ
ସପରିବାର ଦେବତାଗଣ ସହିତରେ ।
ଜଗତ୍ ସ୍ରଷ୍ଟା ବ୍ରହ୍ମାଙ୍କର ଅର୍ଚ୍ଚନା କରିଲେ
ତ୍ରିଲୋକବାସୀ ଜୀବଙ୍କୁ ପୂଜାରେ ତୋଷିଲେ ।
ତ୍ରିଲୋକ ବାସୀଏ ଇନ୍ଦ୍ରଦ୍ୟୁମ୍ନ ପ୍ରାସାଦରେ
ଅବସ୍ଥିତ ଦେବଗଣଙ୍କର ମଧ୍ୟସ୍ଥଳେ ।
ଅବ୍ୟୟ ବ୍ରହ୍ମ ପ୍ରତ୍ୟକ୍ଷେ ଦେହଧାରୀ ହୋଇ
ଜଗନ୍ନାଥ ବିଜେ କରିଅଛନ୍ତି ଯେ ତହିଁ ।
ଦର୍ଶନ କରନ୍ତେ ଜିବେନ୍ମୁକ୍ତ ହୋଇଗଲେ
ଭରଦ୍ୱାଜ ଦାରୁମୂର୍ତ୍ତି ପ୍ରତିଷ୍ଠା କରିଲେ ।
ସୁଶୋଭିତ ମନୋହର ମନ୍ଦିର ବିଧିରେ
ପ୍ରତିଷ୍ଠା କରି ବ୍ରହ୍ମାଙ୍କୁ ବିନୟେ କହିଲେ ।
ଦାରୁ ମୂର୍ତ୍ତିରେ କରନ୍ତୁ ଜୀବନ ସଞ୍ଚାର
ଏହା ଶୁଣି ଧାତା କଲେ ମଙ୍ଗଳ ଆଚାର ।
ନାରଦାଦି ଦେବଋଷି ମହର୍ଷି ସକଳ
ନାରାୟଣ ପଣ୍ଡିତ ବ୍ରାହ୍ମଣ ରାଜକୁଳ ।
ନିଜ ନିଜ ଆସନରୁ ସକଳେ ଉଠିଲେ
ଗନ୍ଧର୍ବଗଣ ମଧୁର ସ୍ୱରେ ଗାନ କଲେ ।
ମଙ୍ଗଳ ଉଚିତ ରାଗ ରାଗିଣୀ ସଂଗୀତ
ଅପ୍ସରାଗଣ କରିଲେ ମନୋହର ନୃତ୍ୟ ।
ଶାକୁନ ସୂକ୍ତ ପଢ଼ିଲେ ମିଳି ଦ୍ୱିଜଗଣ
ଶଙ୍ଖ କାହାଳି ମୃରଜ ଭେରୀ ବେଣୁ ସ୍ୱନ ।
ବାଦ୍ୟଗଣ ମାନଙ୍କର ମନ ମୁଗ୍ଧକର
ମହାଶବ୍ଦରେ ପୂରିଲା ସର୍ବ ଦିଗନ୍ତର ।
ବ୍ରହ୍ମାଦି ସକଳେ ରଥ ଉପରେ ଉଠିଲେ
ଭକ୍ତିରେ ଦେବଗଣଙ୍କୁ ହସ୍ତରେ ତୋଳିଲେ ।
ସାବଧାନ ହୋଇ ସର୍ବେ ପାର୍ଶ୍ୱେଦେଶ ଦ୍ୱୟ
ମସ୍ତକ ପାଦଯୁଗଳ ଆଉ ପାଦ ଦ୍ୱୟ ।
ହସ୍ତେ ଧରି ଧୀରେ ଧୀରେ ଶ୍ରୀ ଜଗନ୍ନାଥଙ୍କୁ
ରଥେ ଅବତରଣ କଲେ ଭୂତଳକୁ ।
ମଧ୍ୟେ ମଧ୍ୟେ ସ୍ଥାନ ବିଶେଷରେ ରକ୍ଷା କରି
ପ୍ରାସାଦ ସମୀପେ ନେଲେ ମୁଖେ ଗାଇ ହରି ।
ଆକାଶରୁ ପାରିଜାତ ପୁଷ୍ପ ବରଷିଲେ
ସ୍ୱାୟମ୍ଭୁ ବ୍ରହ୍ମା ତତ୍କାଳେ ଜୟ ଗାନ କଲେ ।
ଜୟ କୃଷ୍ଣ ଜଗନ୍ନାଥ ଜୟ ପାପହାରୀ
ଜୟ ଲୀଳାମୟ ବାଞ୍ଛାଫଳ ଦାନ କାରୀ ।
ଜୟ ଦାରୁମୟ ଦେହଧାରୀ ହେ ଅଚ୍ୟୁତ
ଜୟ ସଂସାର ସାଗର ତାରଣେ ସମର୍ଥ ।
ଜୟ ଦୟାର ସାଗର ଅବ୍ୟୟ ଅନନ୍ତ
ଜୟ ଦୀନଜନ ଦୁଃଖ ବିନାଶନ ଶାନ୍ତ ।
ହେ ଈଶାନ ଜୟ ହେଉ ସର୍ବଦା ତୁମ୍ଭର
ତବ ଶ୍ରୀଚରଣେ କରୁଅଛି ନମସ୍କାର ।
ବ୍ରହ୍ମା ଏହିରୂପେ ସ୍ତୁତି ଆନନ୍ଦେ କରିଲେ
ଦେବର୍ଷି ନାରଦ ବୀଣା ବାଇ ସ୍ତୁତି କଲେ ।
ଚନ୍ଦ୍ର ସୂର୍ଯ୍ୟ ଜଗନ୍ନାଥଙ୍କର ପଛେ ରହି
ମସ୍ତକରେ ରତ୍ନଛତ୍ର ଧଇଲେ ସେ ନେଇ ।
ଆଉ ସେ ସ୍ଥାନରେ ଥିଲେ ଯେତେ ଦେବଗଣ
ଦିବ୍ୟ ପୂଜା ଗନ୍ଧେ ପ୍ରୀତି କଲେ ଉତ୍ପାଦନ ।
ଅସଂଖ୍ୟ ଯୁବକ ବୃଦ୍ଧ ଉଭୟ ପାର୍ଶ୍ୱରେ
ଭକ୍ତିଭରେ ଧୀରେ ଦିବ୍ୟଚାମର ଢାଳିଲେ ।
ଏହିରୂପେ ଆନନ୍ଦରେ ମିଳିଣ ସକଳେ
ବଳଭଦ୍ର ସୁଦର୍ଶନ ସୁଭଦ୍ରାଙ୍କୁ ନେଲେ ।
ଜୈମିନି ମୁନି କହନ୍ତି ଶୁଣ ଦ୍ୱିଜଗଣ
ଅନନ୍ତର ଭଗବାନ ଚତୁର ବଦନ ।
ପ୍ରାସାଦ ଦ୍ୱାରେ ରଚିତ ରତ୍ନ ମଣ୍ଡପରେ
ଅଭିଷେକ ଅର୍ଥେ ଦେବତାଙ୍କୁ ବସାଇଲେ ।
ଦେବତାଙ୍କ ପ୍ରତିବିମ୍ବ ଦର୍ପଣ ଦେହରେ
ସୁଗନ୍ଧ ତୈଳାଦି ଦ୍ରବ୍ୟମାନ ଲଗାଇଲେ ।
କର୍ପୂର ଚନ୍ଦନ ସୁବାସିତ ତୀର୍ଥଜଳ
ପୂର୍ଣ୍ଣ କରିଣ ସ୍ଥାପିଲେ କଳଶ ସକଳ ।

Digitized by srujanika@gmail.com

ଦେବୀ ପୁରୁଷ ସୂକ୍ତାଦି ମନ୍ତ୍ର ପାଠ କଲେ
ଚାରିଦେବତାଙ୍କୁ ତହିଁ ଅଭିଷେକ କଲେ ।
ସୁଗନ୍ଧମାଳା ବିବିଧ ଅଳଙ୍କାରମାନ
ଯଥାବିଧି ବିରାଜନ କଲେ ତତକ୍ଷଣ ।
ବହୁସୂକ୍ତ ବେଦମନ୍ତ୍ର ଉଚ୍ଚେ ପାଠ କଲେ
ରମଣୀୟ ସିଂହାସନେ ନେଇ ବସାଇଲେ ।
ଅନନ୍ତର ପ୍ରାର୍ଥନା କରିଲେ ସର୍ବେ ମିଳି
ଆହେ ସର୍ବଲୋକ ପ୍ରତିଷ୍ଠିତ ବନମାଳୀ ।
ଆପଣ ତ ସର୍ବବ୍ୟାପୀ ଜଗତ ଆଧାର
ଏ ପ୍ରାସାଦେ ଦୟାକରି ଅବସ୍ଥାନ କର ।
ଚିରକାଳ ଏହିସ୍ଥାନେ କରି ଅବସ୍ଥାନ
ଆମ୍ଭମାନଙ୍କର ମନୋରଥ ହେଉ ପୂର୍ଣ୍ଣ ।
ପ୍ରାସାଦ ପ୍ରତିଷ୍ଠା ଆପଣଙ୍କ ଆଦେଶରେ
ସମ୍ପୂର୍ଣ୍ଣ ହୋଇଲା ଆପଣଙ୍କ ପ୍ରସାଦରେ ।
ଏ ରୂପେ ପ୍ରାର୍ଥନା ସର୍ବେ ମିଳିକରି କଲେ
ଶ୍ରୀ ଜଗନ୍ନାଥ ଦେବଙ୍କୁ ସ୍ନାନ କରାଇଲେ ।
ତାହାଙ୍କର ହୃତ୍‌କମଳ ବ୍ରହ୍ମା ସ୍ପର୍ଶ କଲେ
ଆନୁଷ୍ଟଭ ମନ୍ତ୍ରରାଜ ସହସ୍ରେ ଜପିଲେ ।
ବୈଶାଖ ଶୁକ୍ଳ ଅଷ୍ଟମୀ ପୁଷ୍ୟା ନକ୍ଷତ୍ରରେ
ପ୍ରତିଷ୍ଠା କାର୍ଯ୍ୟ ସମାପ୍ତ ବୃହସ୍ପତି ବାରେ ।
ଏହି ହେତୁ ଏ ଦିବସ ଅତି ପୁଣ୍ୟତମ
ସର୍ବପାପ ବିନାଶନ କରିବାରେ କ୍ଷମ ।
ଏହିଦିନ ସ୍ନାନ ଦାନ ତପସ୍ୟା କରିବ
ହୋମାଦି କାର୍ଯ୍ୟ ସକଳ ଅକ୍ଷୟ ହୋଇବ ।
ଏଦିନ ଶ୍ରୀ ଜଗନ୍ନାଥ ଆଉ ବଳରାମ
ସୁଭଦ୍ରାଙ୍କୁ ଯେ ମାନବ କରଇ ଦର୍ଶନ ।
ନିଶ୍ଚୟ ମୁକତି ଲାଭ ହୋଇବ ତାହାର
କୋଟି ଜନ୍ମାର୍ଜିତ ପାପ ହୋଇଯିବ ଦୂର ।
ଏ ଦିନ ଶ୍ରଦ୍ଧାରେ ଯଦି ଅର୍ଚ୍ଚନା କରିବ
ତାହାର ସୌଭାଗ୍ୟ ମୁଖେ କେ କହିପାରିବ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ସପ୍ତବିଂଶ ଅଧ୍ୟାଶେଷ ଉତ୍କଳ ଭାଷାରେ ।
ଜୟ ଜୟ ଜଗନ୍ନାଥ ପ୍ରଭୁ ବଳରାମ
ଭଦ୍ରଦାୟିନୀ ସୁଭଦ୍ରା ଚରଣେ ପ୍ରଣାମ ।
ସୁଦର୍ଶନ ଦେବ ଜଗତକୁ ରକ୍ଷାକର
କରଯୋଡ଼ି ମାଗୁଅଛି ଦୀନ ହରିହର ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ ମନ୍ଦିର ସହିତ ଦାରୁମୂର୍ତ୍ତି ପ୍ରତିଷ୍ଠାୟାଂ ବ୍ରହ୍ମାଙ୍କର ସ୍ତୁତି ବର୍ଣ୍ଣନେ ନାମ ସପ୍ତବିଂଶୋଽଧ୍ୟାୟଃ ।



## ଅଷ୍ଟବିଂଶ ଅଧ୍ୟାୟ

ଜୈମିନି ମୁନି କହନ୍ତି ଶୁଣ ଋଷିଗଣ
ନୀଳଚଳେ ଦାରୁରୂପେ ବିଜେ ଭଗବାନ ।
ବ୍ରହ୍ମାଙ୍କର ମନ୍ତ୍ର ମହିମାରେ ଜଗନ୍ନାଥ
ନୃସିଂହ ରୂପେ ପ୍ରକାଶ ହୋଇଲେ ତ୍ୱରିତ ।
ଇନ୍ଦ୍ରଦ୍ୟୁମ୍ନ ଆଦି ସର୍ବେ କରିଲେ ଦର୍ଶନ
ଲହ ଲହ ଜିହ୍ୱା ମୂର୍ତ୍ତି ଅତି ତେଜିୟାନ ।
କାଳାଗ୍ନି ରୁଦ୍ର ସଦୃଶ ଭୟଙ୍କର-ମୂର୍ତ୍ତି
ବିଶ୍ୱଗ୍ରାସ କରିବାକୁ ବ୍ୟଗ୍ର ହେଉଛନ୍ତି ।
ଅତ୍ୟାଶ୍ଚର୍ଯ୍ୟ ରୂପ ତାହାଙ୍କର ଚକ୍ଷୁକର୍ଣ୍ଣ
ନାସା ଗ୍ରୀବା ହସ୍ତ ପଦ ଅସଂଖ୍ୟ ବଦନ ।
ଶରୀର ତେଜରେ ସ୍ୱର୍ଗ ମର୍ତ୍ତ୍ୟ ମଧ୍ୟସ୍ଥଳ
ପରିବ୍ୟାପ୍ତ ହୋଇଛି କି ଆଦିତ୍ୟ ମଣ୍ଡଳ ।
ଭୟଙ୍କର ମୂର୍ତ୍ତି ଦେଖି ସର୍ବେ ହେଲେ ଭୀତ
ସକଳର ଭୟପ୍ରଦ ହେଲେ ଜଗନ୍ନାଥ ।
ପ୍ରଳୟ କାଳ କି ଆସି ହେଲା ଉପସ୍ଥିତ
ପ୍ରାଣୀଗଣ ବିଚାରନ୍ତି ହୋଇ ଅତି ଭୀତ ।
ଏ ରୂପ କିମ୍ପାଇଁ ହେଉଅଛି ମହାଶୟ
କହନ୍ତୁ ହେ ପିତାମହ ଏହାର ନିର୍ଣ୍ଣୟ ।
ଜଗପତି ହରିଙ୍କର ଲୀଳାର ବିଷୟ
ଏକମାତ୍ର ତ ଆପଣ ଜାଣନ୍ତି ନିଶ୍ଚୟ ।
ବ୍ରହ୍ମା ଶୁଣନ୍ତେ ନାରଦ ଋଷିଙ୍କ ବଚନ
ଲୋକ ହିତକର ବାକ୍ୟ କହିଲେ ତକ୍ଷଣ ।
ନୀଳ ପର୍ବତରେ ବ୍ରହ୍ମରୂପୀ ଜଗନ୍ନାଥ
ଦାରୁମୟ ଦେହ ଧରି ଲୋକରେ ବିଦିତ ।
ତତ୍ତ୍ୱ ଜ୍ଞାନ ହୀନ ମୂଢ଼ଗଣ ଏହି କଥା
ବିଶ୍ୱାସ କରିବେ ନାହିଁ କହିବେ ଅନ୍ୟଥା ।
ପ୍ରଭୁଙ୍କ ମହିମା ଲୋକେ ପ୍ରକାଶ ଯେପରି
ହେବ ଏହିକଥା ଆମ୍ଭେ ମନରେ ବିଚାରି ।
ଅନୁଷ୍ଟୁପ ମନ୍ତ୍ରରାଜ କରିବାରୁ ନ୍ୟାସ
ପ୍ରଭୁଙ୍କ ଦେହରେ ହେଲା ଏ ତେଜ ପ୍ରକାଶ ।
ତେଣୁ ନରସିଂହ ରୂପେ ପ୍ରକାଶ ହୋଇଲେ
ଏ ପ୍ରଭୁ ପୂର୍ବକାଳରେ ଏ ମନ୍ତ୍ର ବଳରେ ।
ଆମ୍ଭ ସପକ୍ଷରେ ଭୟଙ୍କର ରୂପ ହେଲେ
ହିରଣ୍ୟ କଶିପୁ ବକ୍ଷ ନଖେ ବିଦାରିଲେ ।
ଅସୀମ ତେଜ ବିଷ୍ଣୁଙ୍କ ଏହିପରି ମୂର୍ତ୍ତି
ଆରାଧନା କଲେ ଜୀବଗଣ ମୁକ୍ତି ହୋନ୍ତି ।
ବ୍ରହ୍ମା ଶ୍ରୀନୃସିଂହ ଦେବଙ୍କ ସମ୍ମୁଖରେ
କରଯୋଡ଼ି ଆନନ୍ଦରେ ସ୍ତୁତି ଗାନ କଲେ ।

Digitized by srujanika@gmail.com

ଅଲୌକିକ ସର୍ବଶ୍ରେଷ୍ଠ ଅଟନ୍ତି ଆପଣ
ଅଦ୍ୱିତୀୟ ସିଂହ ମୂର୍ତ୍ତିଧାରୀ ନମୋନମଃ ।
ଯୋଗୀଗଣଙ୍କର ଯୋଗରୂପ ଗୁହାଶାୟୀ
ଅପ୍ରତିମ ସିଂହ ପଦେ ହେଉଛି ବିନୟୀ ।
ମହା ସିଂହଗଣ ମଧ୍ୟରେ ତ ଶ୍ରେଷ୍ଠ ସିଂହ
ନୀଳାଦ୍ରି ଶୃଙ୍ଗ ବିହାରୀ ଆହେ ଶ୍ରେଷ୍ଠ ସିଂହ ।
ଆପଣଙ୍କ ପଦେ ବାରମ୍ବାର ନମସ୍କାର
ସିଂହ ରୂପ ଧରି ଦୁଃଖାର୍ଣ୍ଣବୁ ପାରି କର ।
ତେଜୋମୟ ଦିବ୍ୟସିଂହ ପଦରେ ପ୍ରଣାମ
ଚିତ୍ରସିଂହ ଆପଣଙ୍କ ଆକୃତି ଭୀଷଣ ।
ଶରଣାଗତ ବ୍ୟକ୍ତିର କ୍ଳେଶ ନାଶ କର
ସିଂହରୂପ ଆପଣଙ୍କ ପାଦେ ନମସ୍କାର ।
ବୀରବରଗଣ ମଧ୍ୟରେ ତ ଅଦ୍ୱିତୀୟ
ବୀରକେଶରୀ ଅଟନ୍ତି ଆପଣ ନିଶ୍ଚୟ ।
ଦୈତ୍ୟ ପଶୁ ବିନାଶନ ଅର୍ଥେ ମହାସିଂହ
ଦେବଗଣ ମଧ୍ୟେ ଅଧିଦେବ ଶେଷସିଂହ ।
ଆପଣଙ୍କ ପଦେ ବାରମ୍ବାର ନମସ୍କାର
ହେ ଭୂଷଣ ମୂର୍ତ୍ତି ଆମ୍ଭଙ୍କୁ ତ ରକ୍ଷା କର ।
ଦିବ୍ୟ ସିଂହଙ୍କୁ ଏ ରୂପେ ଧାତା ସ୍ତୁତି କଲେ
ନୃସିଂହ ଦେବଙ୍କ ଯନ୍ତ୍ର ସେ ସ୍ଥାନେ ଆଙ୍କିଲେ ।
ଶ୍ରୀ ନୃସିଂହ ଦେବଙ୍କର ଆଥର୍ବଣ ମନ୍ତ୍ର
ଯନ୍ତ୍ରର ଯଥା ସ୍ଥାନରେ କରିଲେ ଅଙ୍କିତ ।
ସେ ମନ୍ତ୍ର ଇନ୍ଦ୍ରଦ୍ୟୁମ୍ନଙ୍କୁ କରିଲେ ଦୀକ୍ଷିତ
ବୈଷ୍ଣବ ନିର୍ବାଣ ନାମେ ବେଦାନ୍ତେ ଉକତ ।
ଯେଉଁମନ୍ତ୍ରେ ବେଦ ଚତୁଷ୍ଟୟ ଅବସ୍ଥିତ
ପୂର୍ବେ ସ୍ୱାୟମ୍ଭୁବ ମନୁ ଯେ ମନ୍ତ୍ରେ ଦୀକ୍ଷିତ ।
ସ୍ୱାୟମ୍ଭୁବ ମନୁ ଜପ କରି ଯେଉଁ ମନ୍ତ୍ର
ସୃଷ୍ଟି ବିସ୍ତାର କାରଣେ ହୋଇଲେ ସମର୍ଥ ।
ଅଣିମାଦି ଅଷ୍ଟୈଶ୍ୱର୍ଯ୍ୟ ସେ ମନ୍ତ୍ରର ଫଳ
ଚତୁର୍ବର୍ଗ ପୁରୁଷାର୍ଥ ଲଭନ୍ତି ସକଳ ।
ଏ ମନ୍ତ୍ରରାଜକୁ ନିତ୍ୟ ଯେ ଜନ ଜପଇ
ସାମାନ୍ୟ କାମନା ସିଦ୍ଧି ଦୁର୍ଲ୍ଲଭ ନୁହଇ ।
ଯେ ମନ୍ତ୍ର ଯଜ୍ଞ ସମସ୍ତ ସମୁଦାୟ ତୀର୍ଥ
ସର୍ବବିଧ ଦାନଫଳ ପ୍ରଦାନେ ସମର୍ଥ ।
ସିଂହାକୃତି ନରସିଂହ ଦେବ ଯେଉଁପରି
ଦହନ କରନ୍ତି ପାପ ରାଶି ତୁଳାପରି ।
ଅକ୍ଷର ମାତ୍ରକ ମନ୍ତ୍ରରାଜ ସେହିପରି
ଜୀବମାନଙ୍କର ପାପ ଦହନ ଯେ କରି ।
ଏହି ମନ୍ତ୍ରରାଜ ଜପ କରି ଯତିଗଣ
ଭବ ବନ୍ଧନରୁ ମୁକ୍ତ ହୁଅନ୍ତି ତକ୍ଷଣ ।

ଏମନ୍ତ ଗ୍ରହଣ କଲାମାତ୍ରେ ଦୁଷ୍ଟଗ୍ରହ
ଗ୍ରହାପସ୍ମାର ଡାକିନୀ ରାକ୍ଷସ ସମୂହ ।
ଭୂତ ବେତାଳ ପିଶାଚ ଉରଗ ସକଳ
ଦୂରଦେଶେ ପଳାୟନ କରନ୍ତି ତତ୍କାଳ ।
ବିଧାତାଙ୍କ ନିକଟରୁ ରାଜା ଇନ୍ଦ୍ରଦ୍ୟୁମ୍ନ
ଯେତେବେଳେ ମନ୍ତ୍ରରାଜ କରିଲେ ଗ୍ରହଣ ।
ନୃସିଂହ ଦେବ ଭୀଷଣ ମୂର୍ତ୍ତି ତ୍ୟାଗ କଲେ
ପ୍ରସନ୍ନ ମୂର୍ତ୍ତିରେ ସିଂହାସନେ ବିଜେ କଲେ ।
କମଳା ଦେବୀ ଯେ ବକ୍ଷସ୍ଥଳେ ତାହାଙ୍କର
ଚନ୍ଦ୍ର ସୂର୍ଯ୍ୟ ପରି ସ୍ୱଚ୍ଛ ନୟନ ଯୁଗଳ ।
ଚକ୍ର ଧନୁ ଏ ଦୁଇରେ ଶୋଭା ବେନିହସ୍ତ
ଅନ୍ୟ ଦୁଇହସ୍ତ ଜାନୁ ଉପରେ ନିହିତ ।
ଓଁକାର ରୂପ କର୍ଣ୍ଣିକା ମଧ୍ୟରେ ଶୋଭିତ
ମନ୍ତ୍ର ଅକ୍ଷର ଦ୍ୱିତ୍ରିଂଶ ଦଳରେ ବେଷ୍ଟିତ ।
ପଦ୍ମମଧ୍ୟେ ମହାସୁରେ ଉପବିଷ୍ଟ ହୋଇ
ଅଟ୍ଟ ଅଟ୍ଟହାସ୍ୟ ଲକ୍ଷ୍ମୀ ବଦନକୁ ଚାହିଁ ।
ଦିବ୍ୟରତ୍ନ ଅଳଙ୍କାରେ ଦେହ ସୁଶୋଭିତ
ଜଟା ସମୂହରେ ମୁଖପଦ୍ମ ବିରାଜିତ ।
ହଳ ଲଙ୍ଗଳକୁ ହସ୍ତେ ବଳଭଦ୍ର ଧରି
ସହସ୍ର ଫଣା ମଣ୍ଡଳ ଛତ୍ରାକାର କରି ।
ବିରାଜମାନ ନୃସିଂହ ଦେବଙ୍କ ପଛରେ
ଏହାଦେଖି ଇନ୍ଦ୍ରଦ୍ୟୁମ୍ନ ହରଷ ହୋଇଲେ ।
ବିସ୍ମୟରେ ପଚାରିଲେ ବ୍ରହ୍ମାଙ୍କୁ ତୁରିତ
ଶ୍ରୀ ଜଗନ୍ନାଥ ପ୍ରଭୁଙ୍କ ଅଦ୍ଭୁତ ଚରିତ ।
କି ରୂପେ ବୁଝିବୁ ଆମ୍ଭେ ମାନବ ହୋଇଣ
ରଥରୁ ଏ ଦାରୁମୟୀ ମୂର୍ତ୍ତି ନାରାୟଣ ।
ମନ୍ଦିର ମଧ୍ୟରେ ଆଣି ରଖିଲେ ଆପଣ
ଯଜ୍ଞ ଶେଷରେ କିମ୍ପାଇ ହୋଇଲେ ଭୀଷଣ ।
ଏଥିରେ ଆମ୍ଭର ମନେ ହେଉଛି ସଂଶୟ
ପୂର୍ବକାଳେ ଦୈବବାଣୀ ଶୁଣିଲି ନିଶ୍ଚୟ ।
ମନୁଷ୍ୟଦ୍ୱାରା ନିର୍ମାଣ ହୋଇ ତ ନ ଥିବ
ବିଷ୍ଣୁଙ୍କର ଚାରିମୂର୍ତ୍ତି ପ୍ରକାଶ ପାଇବ ।
ଏକ୍ଷଣରେ ଏକମାତ୍ର ମୂର୍ତ୍ତି ପ୍ରତିଷ୍ଠିତ
ପୂର୍ବପରି ଚାରିମୂର୍ତ୍ତି ନୁହଇ ଲକ୍ଷିତ ।
ହେ ପ୍ରଭୁ ଆମ୍ଭେ ଯଦ୍ୟପି ଶୁଣିବାକୁ କ୍ଷମ
ଏ ବିଷୟ କୃପାକରି କହନ୍ତୁ ଆପଣ ।
ଭଗବାନଙ୍କର ମାୟା ଏହାକି ଅଟଇ
ଅଥବା ପ୍ରକୃତ କଥା ଏଥିରେ ଅଛଇ ।
ପିତାମହ ଏହିକଥା ଶ୍ରବଣ କରିଲେ
ସନ୍ଦେହମନା ରାଜାଙ୍କୁ ବୁଝାଇ କହିଲେ ।

Digitized by srujanika@gmail.com

ବିଷ୍ଣୁଙ୍କର ନରସିଂହାକୃତି ଆଦି ମୂର୍ତ୍ତି
ଆମ୍ଭଙ୍କୁ ତ ଅନୁଗ୍ରହ କଲେ ତୁମ୍ଭପ୍ରତି ।
ଭଗବାନ ନାରାୟଣ ସେ ଆଦ୍ୟ ମୂର୍ତ୍ତିରେ
ପ୍ରକାଶ ହୋଇଲେ ଏହି ସିଂହାସନ ପରେ ।
ହେ ନୃପ ଶାର୍ଦ୍ଦୁଳ ଏହି ମୂର୍ତ୍ତି ଦାରୁମୟୀ
ମନେ ଏକଥା ବିଚାର କରିବେ ତ ନାହିଁ ।
ଏହି ମୂର୍ତ୍ତିକୁ ପ୍ରତିମା ବୋଲି ନ ଭାବିବ
ତୁମ୍ଭର ସକଳ ଦୁଃଖ ଖଣ୍ଡନ ହୋଇବ ।
ଅଖଣ୍ଡ ଆନନ୍ଦ ଦାନ ହେତୁ ସାକ୍ଷାତରେ
ପରଂବ୍ରହ୍ମାକୃତି ବୋଲି ବିଚାର ମନରେ ।
ମନୀଷିଗଣ ବିଚାର କରି କହିଛନ୍ତି
କାଷ୍ଠ ସଦୃଶ ପରମବ୍ରହ୍ମଙ୍କର ଖ୍ୟାତି ।
ଚାରିବେଦ ମଧ୍ୟେ ବ୍ରହ୍ମରୂପୀ ନାରାୟଣ
ଦାରୁମୟ ରୂପ ବୋଲି ହୋଇଛି ପ୍ରମାଣ ।
କେବଳ ସେ ଏକମାତ୍ର ଜଗତ କରତା
ପ୍ରକୃତରେ ଅନ୍ୟ କେହି ନାହିଁ ସୃଷ୍ଟିକର୍ତ୍ତା ।
ଏ ହେତୁ ନିଜେ ନିଜକୁ ସୃଷ୍ଟି କରିଛନ୍ତି
ଶବ୍ଦବ୍ରହ୍ମ ପରଂବ୍ରହ୍ମ ଅଭେଦ ଅଟନ୍ତି ।
ପ୍ରଳୟ କାଳରେ ପରଂବ୍ରହ୍ମ ଏକମାତ୍ର
ସୃଷ୍ଟିକାଳେ ପୁନର୍ବାର ଭେଦ ଉପସ୍ଥିତ ।
ଶବ୍ଦ ଆଉ ଶବ୍ଦାର୍ଥରେ ଭେଦ ଯେ ପ୍ରକାର
ସେହିପରି ଏ କଥାରେ ସନ୍ଦେହ ନ କର ।
ଅର୍ଥ ଶୂନ୍ୟ ହୋଇକରି କେଉଁ ଶବ୍ଦ ନାହିଁ
ଶବ୍ଦ ନ ଥିଲେ ତ ଅର୍ଥ ବୋଧ ନ ହୁଅଇ ।
ଋକ୍‌ବେଦ ସ୍ୱରୂପୀ ବଳଦେବ ବିରାଜିତ
ନରସିଂହ ଦେବ ସାମବେଦ ରୂପେ ଖ୍ୟାତ ।
ଯଜୁର୍ବେଦ ସ୍ୱରୂପିଣୀ ସୁଭଦ୍ରା ଅଟନ୍ତି
ଅଥର୍ବ ବେଦ ସ୍ୱରୂପେ ସୁଦର୍ଶନ ଖ୍ୟାତି ।
ଏହିପରି ଭେଦ ଅଟେ ଭଗବାନଙ୍କର
ଚାରିପ୍ରକାରେ ବୁଝିବ ଆହେ ନୃପବର ।
ଅଭେଦ ବୁଦ୍ଧିରେ ଏକ ପଦାର୍ଥ ନିଶ୍ଚୟ
ଏହି ବିଷୟେ ନ କର ମନରେ ସଂଶୟ ।
ଏକମାତ୍ର ତ ଅଟନ୍ତି ବିଭୁ ଭଗବାନ
ବହୁ ରୂପରେ ପ୍ରକାଶ ହୁଅନ୍ତି ଜାଣିବ ।
ଭଗବାନଙ୍କର ଆଉ ଅନ୍ୟ ଅବତାର
ଏହି ରୂପରେ ପାର୍ଥକ୍ୟ ମନରେ ବିଚାର ।
ହେ ନୃପ ତୁମ୍ଭର ମନ ହେଲା କି ସନ୍ତୋଷ
ଜଗନ୍ନାଥଙ୍କର ତତ୍ତ୍ୱ କରିଲୁ ପ୍ରକାଶ ।
ତୁମ୍ଭର ମନରେ ଇଚ୍ଛା ଯେପରି ହୁଅଇ
ଭକ୍ତିରେ ଜଗନ୍ନାଥଙ୍କୁ ସେବାକର ଯାଇ ।
ଜଗନ୍ନାଥ ସର୍ବରୂପ ସର୍ବ ମନ୍ତ୍ରମୟ
ଯେଉଁ ଉଦ୍ଦେଶ୍ୟରେ ପୂଜା କରିବ ନିଶ୍ଚୟ ।
ତାହାର ଯେ ଫଳ ଲାଭ ସେ ରୂପ ହୋଇବ
ଏଥିରେ ସନ୍ଦେହ କର ନାହିଁ ନରଦେବ ।
ବିଶୁଦ୍ଧ ସ୍ୱର୍ଣ୍ଣ ଯେପରି ବହୁ ପରକାରେ
ଗଠନ ହେଲେ ବିବିଧ ନାମକୁ ଯେ ଧରେ ।
ବିବିଧ ପ୍ରକାରେ ଦିଏ ମନରେ ସନ୍ତୋଷ
ସେହିପରି ନାମ ରୂପ ଧରି ଜଗଦୀଶ ।
ଯାହାର ମନରେ ହୁଏ ଯେ ରୂପେ ବିଶ୍ୱାସ
ତାହାର କାମନା ଫଳ ସେ ରୂପେ ପ୍ରକାଶ ।
ହେ ନୃପ ବିଶୁଦ୍ଧ ମନେ ଆରାଧନା କର
ଦାରୁମୟ ହରିଙ୍କର ସେବାରେ ତତ୍ପର ।
ତୁମ୍ଭରି ମନର ଅଭିଳାଷ ବୁଝି କରି
ମନ୍ତ୍ରଦାନ କରିଅଛି ହେ ନୃପ କେଶରୀ ।
ସେ ମନ୍ତ୍ରରେ ବିଭୁଙ୍କର ଅର୍ଚ୍ଚନା କରିବ
ଚତୁର୍ବର୍ଗ ଫଳ ଲାଭ ନିଶ୍ଚୟ ହୋଇବ ।
ଏହାଠାରୁ ଶ୍ରେଷ୍ଠତମ ମନ୍ତ୍ର କିଛି ନାହିଁ
ମନେ ରଖ ଆଉ କେଉଁକାଳେ ହେବ ନାହିଁ ।
ଏମନ୍ତ ଅର୍ଚ୍ଚନା କଲେ ପ୍ରଭୁ ଭଗବାନ
ତୁଷ୍ଟ ହୋଇ ମନୋରଥ କରନ୍ତି ପ୍ରଦାନ ।
ଏପରି କି ନିଜପଦ ଦାନ କରିଥାନ୍ତି
ନୀଳାଚଳେ ଦାରୁମୟ ବିଷ୍ଣୁଙ୍କୁ ଯେ ବ୍ୟକ୍ତି ।
ଅର୍ଚ୍ଚନା କରେ ତାହାର ଯଜ୍ଞ ତୀର୍ଥ ଦାନ
ବ୍ରତ ତପସ୍ୟାରେ ଆଉ ନାହିଁ ପ୍ରୟୋଜନ ।
ହେ ଭୂପ ତୁମ୍ଭଙ୍କୁ ଜଗନ୍ନାଥଙ୍କର ତତ୍ତ୍ୱ
ବୁଝାଇ କହିଲୁ ତୁମ୍ଭ ମନ ହେଲା ତୃପ୍ତ ।
ସାଗର ତୀରେ କଳପ ବଟର ମୂଳରେ
ନୀଳାଚଳେ ଦାରୁବ୍ରହ୍ମ ଦର୍ଶନ କରିଲେ ।
ସେ ସକଳ ଜନେ ମୁକ୍ତିଲାଭ କରିଥାନ୍ତି
ଏଥିରେ ସନ୍ଦେହ କରନାହିଁ ନରପତି ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ଅଷ୍ଟବିଂଶ ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ନାନାରୂପ ଧରି ଅଛ ପ୍ରଭୁ ବ୍ରହ୍ମାଣ୍ଡରେ
ତୁମ୍ଭର ନ ଥିବା ସ୍ଥାନ ନାହିଁ ଜଗତରେ ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳ ଖଣ୍ଡେ
ଶ୍ରୀ ନୃସିଂହ ଦେବଙ୍କର ଭୀଷଣ ରୂପ ଦର୍ଶନେ
ବ୍ରହ୍ମା ଇନ୍ଦ୍ରଦ୍ୟୁମ୍ନ ସମ୍ବାଦେ ନାମ
ଅଷ୍ଟବିଂଶୋଽଧ୍ୟାୟଃ



Digitized by srujanika@gmail.com

## ଊନତ୍ରିଂଶ ଅଧ୍ୟାୟ

ଜୈମିନି କହିଲେ ଶୁଣ ସର୍ବ ଋଷିଗଣ
ଏ ରୂପେ ରାଜାଙ୍କୁ କହି କମଳ ଆସନ ।
ଲୋକ ସାଧାରଣଙ୍କର କଲ୍ୟାଣ ନିମିତ୍ତ
ଭଗବାନଙ୍କର ସିଂହ ଆକୃତି ତ୍ବରିତ ।
ନିଜ ହୃଦୟ କମଳ ସ୍ଥାପନ କରିଲେ
ପ୍ରଭୁଙ୍କର ପୂର୍ବ ରୂପ ଦେଖାଇଣ ଦେଲେ ।
ରଥରୁ ଯେ ରୂପେ ହୋଇଥିଲେ ଅବତୀର୍ଣ୍ଣ
ସେ ଚାରିରୂପ ସକଳେ କଲେ ଦରଶନ ।
ଶ୍ରୀ ଜଗନ୍ନାଥ ପ୍ରଭୁଙ୍କ କମଳ ଆସନ
ପୁରୁଷ ସୂକ୍ତ ମନ୍ତ୍ରରେ କରିଲେ ଅର୍ଚ୍ଚନ ।
ଦ୍ୱାଦଶାକ୍ଷର ମନ୍ତ୍ରରେ ଶ୍ରୀ ବଳଦେବଙ୍କୁ
ଦେବୀ ସୂକ୍ତ ମନ୍ତ୍ର ପଢ଼ି ସୁଭଦ୍ରା ଦେବୀଙ୍କୁ ।
ଦ୍ୱାଦଶ ଅକ୍ଷର ମନ୍ତ୍ରେ ସୁଦର୍ଶନଙ୍କର
ପୂଜା ସାରି ପ୍ରାର୍ଥନା କରିଲେ ବେଦବର ।
ହେ ଦେବ ଦେବେଶଭକ୍ତ ଅନୁଗ୍ରହକାରୀ
ଏହି ରାଜା ଆପଣଙ୍କୁ ନିତ୍ୟ ଭକ୍ତି କରି ।
ସହସ୍ର ଜନ୍ମ ଅତୀତ ହୋଇଛି ଏହାର
ଏ ଜନ୍ମେ ପାଇଛି ଦରଶନ ପ୍ରଭୁଙ୍କର ।
ହେ ଦେବ ! ଆପଣଙ୍କର ମିଳିଲେ ଦର୍ଶନ
ସାଯୁଜ୍ୟ ମୁକତି ଲାଭ କରେ ସେହି ଜନ ।
ଏହି ରାଜା ଆପଣଙ୍କୁ ଭକତି ଯୋଗରେ
ନିତ୍ୟ ପୂଜା କରିବାକୁ ମନରେ ବିଚାରେ ।
କେଉଁ ରୂପେ କେଉଁ କାଳେ କେଉଁ ଉପଚାରେ
ଆପଣଙ୍କର ଅର୍ଚ୍ଚନା କରିବ ଭକ୍ତିରେ ।
କେଉଁ ରୂପକୁ ମନରେ ଭାବନା କରିବ
ତାହା ବୁଝାଇ କହନ୍ତୁ କମଳା ବଲ୍ଲଭ ।
ଜଗନ୍ନାଥ ଆପଣଙ୍କ ଶ୍ରୀମୁଖ ବଚନ
ଶୁଣିବାକୁ ଇଚ୍ଛା କରିଅଛି ଇନ୍ଦ୍ରଦ୍ୟୁମ୍ନ ।
ଏହି ରୂପରେ ପ୍ରାର୍ଥନା ବିଧାତା କରିଲେ
ଦାରୁମୟ ପ୍ରଭୁ ଶୁଣି ଅଳପ ହସିଲେ ।
ଗମ୍ଭୀର ସ୍ୱରେ କହିଲେ ଶୁଣ ଇନ୍ଦ୍ରଦ୍ୟୁମ୍ନ
ତୁମ୍ଭ ନିଷ୍କାମ ଭକ୍ତିରେ ହୋଇଛୁ ପ୍ରସନ୍ନ ।
ଏ ରୂପ ସମ୍ପଦ ତୁମ୍ଭ ଭିନ୍ନ ଅନ୍ୟ କେହି
ଲଭିନାହିଁ ପୃଥିବୀରେ ଗର୍ଭୁ ଜନ୍ମ ହୋଇ ।
ହେ ନୃପ ତୁମ୍ଭଙ୍କୁ ଦେଉଅଛୁ ଏହି ବର
ଆମ୍ଭପ୍ରତି ରହିଥିବ ଭକ୍ତି ନିରନ୍ତର ।
ହେ ରାଜେନ୍ଦ୍ର କରିଅଛ କୋଟିରତ୍ନ ବ୍ୟୟ
ମନ୍ଦିର ନିର୍ମାଣ କରିଅଛ ତ ନିଶ୍ଚୟ ।
ଯଦିଚ ଏହି ମନ୍ଦିର ହୋଇଯିବ ଜୀର୍ଣ୍ଣ
ନ କରିବୁ ପରିତ୍ୟାଗ ଆମ୍ଭେ ଏହି ସ୍ଥାନ ।
କାଳାନ୍ତରେ ଅନ୍ୟ କେହି ଜନ ଏ ସ୍ଥାନରେ
ଏ ମନ୍ଦିରକୁ ନୂତନ ନିର୍ମାଣ କେ କରେ ।
ତଥାପି ତୁମ୍ଭର କୀର୍ତ୍ତି ହୋଇବ ଘୋଷିତ
ଏଥିରେ ସନ୍ଦେହ କର ନାହିଁ ନରନାଥ ।
ତୁମ୍ଭପ୍ରତି ଆମ୍ଭର ଯେ ରହିଅଛି ପ୍ରୀତି
ଏହି ମନ୍ଦିରେ କରିବୁ ନିଶ୍ଚୟ ବସତି ।
ଆମ୍ଭେ କହୁଅଛୁ ସତ୍ୟ କରି ତିନିବାର
ଦ୍ୱିତୀୟ ପରାର୍ଦ୍ଧ ଶେଷଯାଏ ବ୍ରହ୍ମାଙ୍କର ।
ଭୂମିସାତ୍ ହୋଇଯିବ ଯଦି ଏ ମନ୍ଦିର
ପରିତ୍ୟାଗ ନ କରିବୁ ଏ ସ୍ଥାନ ନୃବର ।
କଦାପି ଏ ସ୍ଥାନ ପରିତ୍ୟାଗ ନ କରିବୁ
ଦାରୁମୟ ଦେହ ଧରି ଏ ସ୍ଥାନେ ରହିବୁ ।
ସ୍ୱାୟମ୍ଭୁବ ମନୁଙ୍କର ଚତୁର୍ଯୁଗ ପରେ
ପୁନର୍ବାର ସତ୍ୟଯୁଗ ଦ୍ୱିତୀୟ ଅଂଶରେ ।
ତୁମ୍ଭର ଯଜ୍ଞ ପ୍ରଭାବେ ଆମ୍ଭେ ଏହି ସ୍ଥାନେ
ଦାରୁ ରୂପରେ ଦର୍ଶନ ଦେବୁ ସର୍ବଜନେ ।
ଜ୍ୟେଷ୍ଠ ପୂର୍ଣ୍ଣିମା ଦିନରେ ହେଲୁ ଅବତୀର୍ଣ୍ଣ
ଏ ଦିନଟି ଆମ୍ଭର ଯେ ପୁଣ୍ୟ ଜନ୍ମଦିନ ।
ଏ ଦିନ ମୋ ପ୍ରତିମାକୁ କରି ଅଧିବାସ
ବିଧାନରେ ମହାସ୍ନାନ ଉତ୍ସବ ବିଶେଷ ।
ସ୍ନାନ କରାଇଲେ କୋଟିଜନ୍ମ ପାପ ନାଶ
ନିଶ୍ଚୟ କରିବି ଜାଣିଥାଅ ହେ ନରେଶ ।
ସ୍ନାନ ଯାତ୍ରାରେ ଯେ ମୋତେ ଦର୍ଶନ କରିବେ
ସମ୍ପ୍ରଦାୟ ତୀର୍ଥସ୍ନାନ ଫଳକୁ ଲଭିବେ ।
ବାଜପେୟ ଆଦି ସର୍ବ ଯଜ୍ଞ ଅନୁଷ୍ଠାନ
ସର୍ବବିଧ ଦାନଫଳ ଲଭିବେ ତକ୍ଷଣ ।
ଏହି ବଟ ବୃକ୍ଷର ଯେ ଉତ୍ତର ଦିଗରେ
ଏକ କୂପ ରହିଅଛି ମୃତ୍ତିକା ଗର୍ଭରେ ।
ସ୍ନାନ ଅର୍ଥେ ସେ କୂପକୁ କରିଲି ନିର୍ମାଣ
ତାହାପରେ ଏହିସ୍ଥାନେ ହେଲି ଅବତୀର୍ଣ୍ଣ ।
ସେ କୂପକୁ ତୁଲେ କରବେଗେ ଅନ୍ୱେଷଣ
ପରିଷ୍କାର କର ତାର ଜଳକୁ ରାଜନ ।
ସେ କୂପ ରକ୍ଷକ ସର୍ବ ଦିଗପାଳଗଣ
କ୍ଷେତ୍ରପାଳଙ୍କୁ ବିଧାନେ କର ବଳି ଦାନ ।
ଶଙ୍ଖ କାହାଳାଦି ବାଦ୍ୟମାନ ବଜାଇଣ
ସଂସ୍କାର କରିବ କୂପ ଚତୁର୍ଦ୍ଦଶୀ ଦିନ ।
ସ୍ୱର୍ଣ୍ଣ କଳଶରେ ଜଳ ଆଣିବେ ବ୍ରାହ୍ମଣ
ସେ ଜଳରେ କରାଇବ ମୋର ମହାସ୍ନାନ ।

Digitized by srujanika@gmail.com

ଜ୍ୟେଷ୍ଠ ଶୁକ୍ଳ ପୂର୍ଣ୍ଣିମା ପ୍ରଭାତ କାଳରେ
ମୋତେ ସ୍ନାନ କରାଇବ ବ୍ରହ୍ମାଙ୍କ ସଙ୍ଗରେ ।
ରାମ ସୁଭଦ୍ରା ସୁଦରଶନଙ୍କୁ ସ୍ଥାପିବ
ସାଯୁଜ୍ୟ ମୁକତି ଲାଭ ଅବଶ୍ୟ କରିବ ।
ଯେ ବ୍ୟକ୍ତି ସ୍ନାନ କାଳରେ କରିବ ଦର୍ଶନ
ସେ ବ୍ୟକ୍ତିର ହେବ ନାହିଁ ଆଉ ପୁନର୍ଜନ୍ମ ।
ଈଶାନ କୋଣରେ ବେଦୀ ନିର୍ମାଣ କରିବ
ଚନ୍ଦନ ଜଳକୁ ସିଞ୍ଚି ଚାନ୍ଦୁଆ ବାନ୍ଧିବ ।
ସେ ବେଦୀରେ ବଳରାମ ସୁଭଦ୍ରା ସଙ୍ଗରେ
ଆମ୍ଭଙ୍କୁ ସ୍ନାନ କରାଇଦେବ ବିଧାନର ।
ପୁନର୍ବାର ମନ୍ଦିରକୁ ଯିବୁ ଯେତେବେଳେ
ଆମ୍ଭର ଦକ୍ଷିଣ ମୁଖ ଗମନ କାଳରେ ।
ଭକ୍ତିଭାବେ ଯେଉଁଜନ କରିବ ଦର୍ଶନ
ତାହାର ସକଳ ମନୋରଥ ହେବ ପୂର୍ଣ୍ଣ ।
ସେ ରାଜନ ! ଏହାପରେ ପଞ୍ଚଦଶ ଦିନ
ଚିତ୍ରଶୂନ୍ୟ ବିରୂପକୁ ନ କର ଦର୍ଶନ ।
ଏ ରୂପେ ଆମ୍ଭର ଜ୍ୟେଷ୍ଠା ସ୍ନାନ କାରଇବ
ଏ ସ୍ନାନ ଦର୍ଶନେ ମୁକ୍ତି ଅବଶ୍ୟ ଲଭିବ ।
ଆମ୍ଭର ଗୁଣ୍ଡିଚା ନାମେ ଯାତ୍ରା ମହୋତ୍ସବ
ଏହାପରେ ଜାଣିଥାଅ ନିଶ୍ଚୟ କରିବ ।
ଗୁଣ୍ଡିଚା ଯାତ୍ରାର ନାମ କଲେ ଉଚ୍ଚାରଣ
ମାନବ ନିଷ୍ପାପ ହୋଇଯାଏ ତତକ୍ଷଣ ।
ମାଘ ଶୁକ୍ଳ ପଞ୍ଚମୀ ବା ଚୈତ୍ର ଶୁକ୍ଳାଷ୍ଟମୀ
ଶ୍ରୀଗୁଣ୍ଡିଚା ଉତ୍ସବର କାଳ ନୃପମଣି ।
ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥି ବିଶେଷତ
ସେଦିନ ହୁଅଇ ପୁଷ୍ୟା ନକ୍ଷତ୍ର ସଂଯୁକ୍ତ ।
ଅତୀବ ପ୍ରଶସ୍ତତମ କାଳ ସେ ଅଟଇ
ସକଳ ଲୋକଙ୍କୁ ମୋକ୍ଷଫଳ ଦେଇଥାଇ ।
ଏହିଦିନ ବଳଭଦ୍ର ସୁଭଦ୍ରା ସହିତ
ଆମ୍ଭଙ୍କୁ ତ ଆରୋହଣ କରାଇବ ରଥ ।
ଆମ୍ଭେ ପୂର୍ବେ ଯେଉଁସ୍ଥାନେ ହେଲୁ ଅବତୀର୍ଣ୍ଣ
ସହସ୍ରାଶ୍ୱମେଧ ଯଜ୍ଞ କଲ ଯେଉଁ ସ୍ଥାନ ।
ସେ ଯଜ୍ଞର ମହବେଦୀ ଗୁଣ୍ଡିଚା ମଣ୍ଡପ
ସେ ସ୍ଥାନକୁ ଆମ୍ଭଙ୍କୁ ତ ନେଇଯିବ ଭୂପ ।
ପୃଥିବୀରେ ନୀଳାଚଳ ଅତି ପୁଣ୍ୟସ୍ଥାନ
ଆଉ କେଉଁସ୍ଥାନ ନୁହେଁ ଏହାର ସମାନ ।
ଆମ୍ଭର ପ୍ରୀତି ନିମିତ୍ତ ତୁମ୍ଭେ ଏ ସ୍ଥାନରେ
ପାଞ୍ଚଶ ବର୍ଷ କରିଲ ହୋମ ଭକତିରେ ।
ତେଣୁ ହୋଇଅଛି ପୃଥିବୀରେ ଶ୍ରେଷ୍ଠସ୍ଥାନ
ଏ ସ୍ଥାନେ କରିଛ ତୁମ୍ଭେ ପ୍ରାସାଦ ନିର୍ମାଣ ।
ବ୍ରହ୍ମାଙ୍କର ଅନୁରୋଧ ହେତୁ ହେ ରାଜନ
ଆମ୍ଭର ତ ପ୍ରୀତିକର ହୋଇଛି ଏ ସ୍ଥାନ ।
ଅଶ୍ୱମେଧ ଯଜ୍ଞ ବେଦୀ ନରସିଂହ କ୍ଷେତ୍ର
ସେ ଆମ୍ଭର ପ୍ରୀତିସ୍ଥାନ ଅତ୍ୟନ୍ତ ପବିତ୍ର ।
ପଦ୍ମଯୋନି ବ୍ରହ୍ମା ଆମ୍ଭ ଆତ୍ମାର ସମାନ
ସେ ଆମ୍ଭଙ୍କୁ ଏ ପ୍ରାସାଦେ କରିଲେ ସ୍ଥାପନ ।
ଅଛି ତ ତୁମ୍ଭର ଆମ୍ଭପ୍ରତି ଦୃଢ଼ଭକ୍ତି
ଚିରକାଳ ଏ ମନ୍ଦିରେ କରିବୁ ବସତି ।
ମହାରାଜ ରଥେ ନେବ ଗୁଣ୍ଡିଚା ଘରକୁ
ନବମ ଦିନରେ ପୁଣି ଆଣିବ ଆମ୍ଭଙ୍କୁ ।
ସେ ସ୍ଥାନେ ତୁମ୍ଭର କୀର୍ତ୍ତି ସର୍ବତୀର୍ଥମୟ
ଇନ୍ଦ୍ରଦ୍ୟୁମ୍ନ ନାମେ ଅଛି ଏକ ଜଳାଶୟ ।
ସେହି ସରୋବର ତୀରେ ସପତ ଦିବସ
ତୁମ୍ଭ ପ୍ରୀତିଅର୍ଥେ ଆମ୍ଭେ କରିବୁ ନିବାସ ।
ସେ କାଳେ ଏ ତୀର୍ଥଜଳେ ଯେ କରିବ ସ୍ନାନ
ସେ ଜନ ବୈକୁଣ୍ଠପୁରେ କରିବ ଗମନ ।
ତ୍ରିଭୁବନ ମଧ୍ୟେ ସାର୍ଦ୍ଧ ତିନିକୋଟି ତୀର୍ଥ
ମୋ ଯୋଗେ ସେ ସ୍ଥାନେ ହେବେ ସର୍ବେ ଉପସ୍ଥିତ ।
ଏଣୁ ସରୋବର ଜଳେ କରିସାରି ସ୍ନାନ
ଗୁଣ୍ଡିଚା ମନ୍ଦିରେ ମୋତେ କରିବ ଦର୍ଶନ ।
ପୁନର୍ବାର ସେ ମାନବ ଜନନୀ ଜଠରେ
କ୍ଳେଶ ଭୋଗ ନ କରିବ ସଂସାର ମଧ୍ୟରେ ।
ନବମ ଦିବସେ ଆମ୍ଭ ଆଗମନ କାଳେ
ଦକ୍ଷିଣ ମୁଖରେ ମୋତେ ଯେ ଦର୍ଶନ କରେ ।
ଅଶ୍ୱମେଧ ଯାଗଫଳ ଲଭଇ ସେ ଜନ
ଇହଲୋକେ ଭୋଗ ପାଏ ଇନ୍ଦ୍ରର ସମାନ ।
ଦେହାନ୍ତେ ଲଭଇ ଆମ୍ଭ ସାଯୁଜ୍ୟ ମୁକତି
ଏଥିରେ ସନ୍ଦେହ କର ନାହିଁ ନରପତି ।
ହେ ଭୂମିପ ! ଏପ୍ରକାରେ ଆମ୍ଭର ଶୟନ
ପାର୍ଶ୍ୱ ପରିବର୍ତ୍ତନ ଯେ ଆଉ ଉତ୍ଥାପନ ।
ମାର୍ଗଶିର ଶୁକ୍ଳଷଷ୍ଠୀ ଦିନ ପ୍ରାବରଣ
ପୌଷ ପୂର୍ଣ୍ଣିମାରେ କରାଇବ ପୁଷ୍ୟାସ୍ନାନ ।
ଫାଲ୍‌ଗୁନ ମାସରେ ଦୋଳଯାତ୍ରା ମହୋତ୍ସବ
ଦର୍ଶନ ପ୍ରଣାମ ପୂଜା କରେ ଯେ ମାନବ ।
ପ୍ରତି ଉତ୍ସବରେ ଫଳ ଲଭଇ ସେ ଜନ
ଅଷ୍ଟ ସହସ୍ରାଶ୍ୱମେଧ ଯାଗର ସମାନ ।
ଚୈତ୍ରମାସ କୃଷ୍ଣପକ୍ଷ ତ୍ରୟୋଦଶୀ ଦିନ
ଉତ୍ସବ କରିବ କାମ ପ୍ରପୁଜନ ନାମ
ବୈଶାଖ ମାସେ ଅକ୍ଷୟ ତୃତୀୟା ଦିନରେ
ମୋ ଦେହକୁ ବିଲେପନ କର ଚନ୍ଦନରେ ।

Digitized by srujanika@gmail.com

ଆମ୍ଭର ପ୍ରୀତି ନିମିତ୍ତ ଉତ୍ସବ ସକଳ
ଯେ କରିବେ ସେ ଲଭିବେ ଚତୁର୍ବର୍ଗ ଫଳ ।
ଦାରୁ ଦେହଧାରୀ ପ୍ରଭୁ ଶ୍ରୀମୁଖେ କହିଲେ
ଇନ୍ଦ୍ରଦ୍ୟୁମ୍ନ ରାଜା ଶୁଣି ସନ୍ତୁଷ୍ଟ ହୋଇଲେ ।
ଜୈମିନି ମୁନି କହନ୍ତି ଶୁଣ ଦ୍ୱିଜଗଣ
ରାଜାଙ୍କୁ ଏ ରୂପେ କଲେ ପ୍ରଭୁ ବରଦାନ ।
ଜଗନ୍ନାଥ ହସି ହସି କହିଲେ ବଚନ
ପଦ୍ମଯୋନି ତୁମ୍ଭ ମନୋରଥ କଲେ ପୂର୍ଣ୍ଣ ।
ତୁମ୍ଭର ମନରେ ଜାତ ହେବ ଯେଉଁ ଇଚ୍ଛା
ନିଶ୍ଚୟ ଜାଣିବ ତାହା ଅଟେ ଆମ୍ଭ ଇଚ୍ଛା ।
ଯେ ହେତୁରୁ ତୁମ୍ଭ ଆମ୍ଭ ଦୁହିଁଙ୍କ ମଧ୍ୟରେ
ଅଣୁମାତ୍ର ଭେଦ ନାହିଁ ବିଚାର ମନରେ ।
ପୂର୍ବକାଳେ ତୁମ୍ଭର ଯେ ପ୍ରାର୍ଥନା ବଳରେ
ମାଧବ ମୂର୍ତ୍ତି ଧାରଣ କଲୁ ଏ ସ୍ଥାନରେ ।
ଏହି ଦାରୁମୟ ଦେହ ତାର ପରିଣାମ
ଶ୍ରୀ ଜଗନ୍ନାଥ ନାମରେ ହେଲୁ ଅବତୀର୍ଣ୍ଣ ।
ଏ ସ୍ଥାନେ ଆମ୍ଭଙ୍କୁ କରି ଦର୍ଶନ ଅର୍ଚ୍ଚନ
ପ୍ରାଣତ୍ୟାଗ ଯେ କରଇ ଧନ୍ୟ ତାର ଜନ୍ମ ।
ସେ ଜନ ଏ ସଂସାରରୁ ମୁକତ ହୋଇବ
ତୁମ୍ଭ ଆମ୍ଭର ସାଯୁଜ୍ୟ ଅବଶ୍ୟ ପାଇବ ।
ମନରେ ବିଷୟ ବାଞ୍ଛା କରି ଯେଉଁ ଜନ
ଆମ୍ଭର ସେବା କରିବ ରହି ଏହି ସ୍ଥାନ ।
ଯେ ହେତୁରୁ ଏହି ସ୍ଥାନ ତୁମ୍ଭ ଅଧିଷ୍ଠାନ
ଅଭୀଷ୍ଟ ଲାଭ କରିବ ତେଣୁ ସେହି ଜନ ।
ସତ୍ୟଲୋକକୁ ଗମନ କର ଏହିକ୍ଷଣ
ସ୍ୱର୍ଗପୁରେ ଗମନ କରନ୍ତୁ ଦେବଗଣ ।
ତୁମ୍ଭର ଜୀବିତ କାଳ ପର୍ଯ୍ୟନ୍ତ ଏ ସ୍ଥାନେ
ରଖିବୁ ହେ ବେଦବର ରଖିଥାଅ ମନେ ।
ଅନନ୍ତର ଦେବଗଣ ଆଉ ଋଷିମାନେ
ଆନନ୍ଦରେ ଜଗନ୍ନାଥ ପ୍ରଭୁଙ୍କ ଚରଣେ ।
ଅବନତ ମସ୍ତକରେ ପ୍ରଣାମ କରିଲେ
ନିଜ ନିଜ ସ୍ଥାନକୁ ଯେ ବେଗେ ଚଳିଗଲେ ।
ପ୍ରତିମାରୂପୀ ଶ୍ରୀଜଗନ୍ନାଥ ସେ କାଳରେ
ଆନନ୍ଦ ଦେଲେ ଯେ ମର୍ତ୍ତ୍ୟବାସୀଙ୍କ ମନରେ ।
କେବଳ କରିଲେ ଦୃଷ୍ଟୀଭାବେ ଅବସ୍ଥାନ
ହରିବୋଲ ହରିବୋଲ ଦେଲେ ସର୍ବଜନ ।
ସେତେବେଳେ ଦୃଢ଼ ବ୍ରତ ରାଜା ବିଷ୍ଣୁଭକ୍ତ
ଧାର୍ମିକ ପ୍ରବର ଇନ୍ଦ୍ରଦ୍ୟୁମ୍ନ ନରନାଥ ।
ବ୍ରହ୍ମାଙ୍କର ପଛେ ପଛେ ଗମନ କରିଲେ
ବ୍ରହ୍ମାଙ୍କ ଆଦଶେ କେତେ ଦୂରରୁ ଫେରିଲେ ।
ବ୍ରହ୍ମା ବୁଝାଇ କହିଲେ ଶୁଣ ହେ ରାଜନ
ପ୍ରଭୁଙ୍କ ଯାତ୍ରା ଉତ୍ସବ କରିଛ ଶ୍ରବଣ ।
ଯଥାବିଧିରେ କରିବ ତାହା ସମ୍ପାଦନ
ଯେପରି ସନ୍ତୋଷ ହେବେ ପ୍ରଭୁ ଭଗବାନ ।
ଏକା ପ୍ରଭୁ ଜଗନ୍ନାଥ ହୋଇଲେ ସନ୍ତୁଷ୍ଟ
ସମୁଦାୟ ଚରାଚର ହୋଇବ ସନ୍ତୁଷ୍ଟ ।
ବ୍ରହ୍ମାଙ୍କର ଏ ଆଦେଶ ମସ୍ତକେ ଧାରଣ
କରିବେ ଅତି ଆଗ୍ରହେ ରାଜା ଇନ୍ଦ୍ରଦ୍ୟୁମ୍ନ ।
ମହାସମାରୋହେ ନାରଦଙ୍କ ସହିତରେ
ଯାତ୍ରା ମହୋତ୍ସବ ସର୍ବ ସମ୍ପାଦନ କଲେ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ଊନତ୍ରିଂଶୋଧ୍ୟାୟ ଶେଷ ଉତ୍କଳ ଭାଷାରେ ।
ଜୟ ଜୟ ଜଗନ୍ନାଥ ଜୟ ନାରାୟଣ
ଲୋକହିତେ ଦାରୁଦେହ କରିଛ ଧାରଣ ।
ଖଳବୁଦ୍ଧି ଲୋକଙ୍କର ବଢ଼େ ଦିନୁ ଦିନ
ତାହା ଦେଖୁଅଛ ବସି ରତ୍ନ ସିଂହାସନ ।
ଗୋ ବ୍ରାହ୍ମଣ ହିତକାରୀ ବ୍ରହ୍ମାଣ୍ଡ ଠାକୁର
ଦେବ ଭୋଗ୍ୟ ଦ୍ରବ୍ୟ ଭୋଗ କରୁଛି ଅସୁର ।
ଦେବତା ପ୍ରଭାବ ଆସି ହେଲାଣି ମଳିନ
ଅସୁରସ୍ୱଭାବ ଚକ୍ରେ କରନ୍ତୁ ଛେଦନ ।
ପାଞ୍ଚଜନ୍ୟ ଶଙ୍ଖ ଧ୍ୱନି କରୁ ଜୟଗାନ
କରଯୋଡ଼ି ମାଗୁଅଛି ହରିହର ଦୀନ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ଇନ୍ଦ୍ରଦ୍ୟୁମ୍ନ ବର ପ୍ରଦାନ ଯାତ୍ରୋତ୍ସବ
ବର୍ଣ୍ଣନେ ନାମ ଊନତ୍ରିଂଶୋଽଧ୍ୟାୟଃ ।

□□

## ତ୍ରିଂଶ ଅଧ୍ୟାୟ

ଜୈମିନି ମୁନିଙ୍କୁ ପଚାରନ୍ତି ମୁନିଗଣ
ବ୍ରହ୍ମାଙ୍କର ଆଦେଶରେ ରାଜା ଇନ୍ଦ୍ରଦ୍ୟୁମ୍ନ ।
ଜଗନ୍ନାଥ ପ୍ରଭୁଙ୍କର ସ୍ନାନ ମହୋତ୍ସବ
କି ରୂପେ କରିଲେ ଆଉ ସକଳ ଉତ୍ସବ ।
ଯଥାବିଧି ସେ ସକଳ ବୁଝାଇ କହିବ
ନାରଦ ଋଷିଙ୍କଠାରୁ ଶୁଣିଅଛ ସର୍ବ ।
ହେ ମୁନି ! କହନ୍ତୁ ତାହା ପୃଥକ ଭାବରେ
ପ୍ରଭୁଙ୍କର ଜନ୍ମସ୍ନାନ କଲେ କି ପ୍ରକାରେ ।
ନାରଦ ଋଷି ବ୍ରହ୍ମଙ୍କ ବ୍ରହ୍ମାଙ୍କର ସୁତ
ତୁମ୍ଭଙ୍କୁ କହିଅଛନ୍ତି ନ କରିଣ ଗୁପ୍ତ ।

Digitized by srujanika@gmail.com

ତାହା ଶୁଣିବାକୁ ଶ୍ରଦ୍ଧା ଆମ୍ଭମାନଙ୍କର
ଅତି ଭାଗ୍ୟବନ୍ତ ଇନ୍ଦ୍ରଦ୍ୟୁମ୍ନ ନୃପବର ।
ପ୍ରତିଷ୍ଠା ଶେଷେ ଘଟିଲା ଯେ ରୂପ ଅଦ୍‌ଭୁତ
ସେ ଆଶ୍ଚର୍ଯ୍ୟ କଥା କହ ପେଡ଼ି ତପୋବନ୍ତ ।
ଏପରି ଆଶ୍ଚର୍ଯ୍ୟ କଥା କେହି ଶୁଣିନାହିଁ
ଆଉ ମଧ୍ୟ କେଉଁକାଳ କେହି ଦେଖିନାହିଁ ।
ଦାରୁମୟ ପ୍ରତିମା ଯେ ସଜୀବ ଦେହରେ
ମନୁଷ୍ୟ ପରି ରାଜାଙ୍କୁ ବରଦାନ କରେ ।
ପାପ ନାଶନ ମହିମା ଭଗବାନଙ୍କର
ଆଉ ମର୍ତ୍ତ୍ୟଲୋକ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କର ।
ଅତି ଦୁର୍ଲ୍ଲଭ ଚରିତ୍ର କରନ୍ତେ ସ୍ମରଣ
ସକଳେ ଆଶ୍ଚର୍ଯ୍ୟ ହୋଇଅଛ ତପୋଧନ ।
ଆଉ ସେ ରାଜାଙ୍କ କଥା କରନ୍ତେ ଶ୍ରବଣ
ଆମ୍ଭମାନଙ୍କର ତୃପ୍ତି ହେଉନାହିଁ ମନ ।
କୃପାକରି ଭଗବାନଙ୍କର ଯେ ପ୍ରକାର
ଯାତ୍ରା ଉତ୍ସବ ସକଳ କହନ୍ତୁ ସତ୍ତ୍ୱର ।
ପ୍ରଭୁଙ୍କ ଯାତ୍ରା ଉତ୍ସବ କରିଲେ ଦର୍ଶନ
ନିଶ୍ଚୟ ବୈକୁଣ୍ଠ ପୁରେ ମିଳଇ ଯେ ସ୍ଥାନ ।
ଯେ ହେତୁ ଯାତ୍ରା ଉତ୍ସବ ମହାତ୍ମ୍ୟ କୀର୍ତ୍ତନ
ସାକ୍ଷାତରେ କହିଛନ୍ତି ଶ୍ରୀ ମଧୁସୂଦନ ।
ଜଗତ ହିତ ନିମିତ୍ତ ସେ ସର୍ବ ବିଷୟ
ଆମ୍ଭମାନଙ୍କୁ କହନ୍ତୁ ଆହେ ମହାଶୟ ।
ଜୈମିନି ମୁନି କହନ୍ତି ଶୁଣ ଋଷିଗଣ
ଜ୍ୟୈଷ୍ଠ ସ୍ନାନର ବିଧାନ କରୁଛୁ ବର୍ଣ୍ଣନ ।
ସଂକଳ୍ପ କରିବ ଜ୍ୟେଷ୍ଠ ଶୁକ୍ଳ ଦଶମୀରେ
ପରିଦିନ ମୌନ ହୋଇ ପ୍ରଭାତ କାଳରେ ।
ମାର୍କଣ୍ଡେୟ ସରୋବର କରିବ ଗମନ
ପ୍ରଥମରେ ତୀର୍ଥଜଳେ କରି ଆଚମନ ।
ପ୍ରଣାମ କରି ଶିବଙ୍କୁ ପ୍ରାର୍ଥନା କରିବ
କର ଦୁଇ ଯୋଡ଼ି କରି ସମ୍ମୁଖେ ବସିବ ।
ଅତି ତୀକ୍ଷ୍ଣ ମହାକାଳ ପ୍ରଳୟ କାଳର
ଅଗ୍ନିତୁଲ୍ୟ ତେଜୋ ଦୀପ୍ତ ତୁମ୍ଭର ଶରୀର ।
ଭୈରବ ରୂପୀ ଚରଣେ କରୁଛି ପ୍ରଣାମ
ତୀର୍ଥ ସ୍ନାନ ଅର୍ଥେ ଦିଅ ଆଦେଶ ଆପଣ ।
ଏହାପରେ ତୀର୍ଥ ଜଳେ ପ୍ରବେଶ କରିବ
ବେଦୋକ୍ତ ପଞ୍ଚବାରୁଣ ମନ୍ତ୍ରକୁ ପଢ଼ିବ ।
ତିନିବାର ପଢ଼ି ଅଘମରଷଣ ସୂକ୍ତ
ତୀର୍ଥଜଳେ ଯଥାବିଧି ସ୍ନାନ କରିବ ତ ।
ହେ ମଙ୍ଗଳମୟ ଶିବ ପାପ ବିନାଶନ
ଶାନ୍ତ ମୂର୍ତ୍ତି ଆପଣଙ୍କ ଚରଣେ ପ୍ରଣାମ ।
ଏ ସ୍ଥାନରେ କରୁଅଛି ତୀର୍ଥ ଜଳେ ସ୍ନାନ
ଆମ୍ଭର ସକଳ ପାପ କରନ୍ତୁ ଦହନ ।
ତ୍ରିପୁରାରି କନ୍ଦର୍ପକୁ ଭସ୍ମ କରିଦେଲ
ନିଜ ନୟନରୁ ଜାତ କରିଣ ଅମଳ ।
ଆପଣଙ୍କ ଶ୍ରୀଚରଣେ କରୁଛି ପ୍ରଣାମ
ଏ ଘୋର ସଂସାରୁ ମୋତେ କର ପରିତ୍ରାଣ ।
ସ୍ନାନ ଶେଷକରି କୂଳେ ପିନ୍ଧି ଧୌତବସ୍ତ୍ର
ତିଳକ ଧାରଣ କରିଣ ଯେ ଶାସ୍ତ୍ର ମତ ।
ଦେବତା ଋଷି ପିତୃଙ୍କୁ କରିବ ତର୍ପଣ
ଶିବଙ୍କର ମନ୍ଦିରକୁ କରିବ ଗମନ ।
ଭକ୍ତିରେ ସ୍ପର୍ଶ କରିବ ବୃଷଭ ବୃଷଣ
ହେ ବୃଷଭ ତୁମ୍ଭେ ଅଟ ଚତୁଷ୍ପାଦ ଧର୍ମ ।
ଯଜ୍ଞ ସ୍ୱରୂପୀ ଶୃଙ୍ଗରେ ସ୍ୱର୍ଣ୍ଣ ବିଭୂଷଣ
ତୁମ୍ଭର ଶରୀର ବେଦ ତ୍ରୟ ଅଧିଷ୍ଠାନ ।
ଅଙ୍ଗରେ ତ୍ରିଶୂଳ ଚିହ୍ନ ଶିବଙ୍କ ବାହନ
ଆପଣଙ୍କ ଚରଣରେ କରୁଛି ପ୍ରଣାମ ।
ମନ୍ତ୍ର ପଢ଼ି ଶଙ୍କରଙ୍କୁ କରିବ ଦର୍ଶନ
ତ୍ରିଲୋଚନ ଆଣଙ୍କ ଚରଣେ ପ୍ରଣାମ ।
ନମସ୍କାର କରୁଅଛି ହେ ଶଶୀଭୂଷଣ
ଏ ଘୋର ସଂସାରୁ ନାଥ କର ପରିତ୍ରାଣ ।
ବିରୂପାକ୍ଷ ସଂକଟରୁ ବେଗେ ରକ୍ଷା କର
ମହାଦେବ ତୁମ୍ଭ ଚରଣରେ ନମସ୍କାର ।
ତତ୍ପରେ ଅଘୋର ମନ୍ତ୍ରେ ଶିବଙ୍କୁ ପୂଜିବ
ପଞ୍ଚବ୍ରହ୍ମ ମନ୍ତ୍ରେ ଶିବ ଲିଙ୍ଗକୁ ଛୁଇଁବ ।
ମୁଷ୍ଟିଦ୍ୱାରା ଶକ୍ତିପୀଠ ଲିଙ୍ଗ ଅଙ୍ଗୁଷ୍ଠିରେ
ସ୍ପର୍ଶ କରିବା ବିଧାନ ଅଛି ଯେ ଶାସ୍ତ୍ରରେ ।
ଏହିରୂପେ ଭକ୍ତିଭରେ ଶିବଙ୍କୁ ଅର୍ଚ୍ଚନ
ଯେ ଜନ କରଇ ନାନା ବିଧ ସ୍ତୁତିଗାନ ।
ଦଶ ଅଶ୍ୱମେଧ ଯଜ୍ଞ ଫଳ ସେ ଲଭଇ
ଋଷିଗଣ ଏକଥାରେ ସଂଶୟ ତ ନାହିଁ ।
ମାର୍କଣ୍ଡେୟ ସରୋବର ଜଳେ କରି ସ୍ନାନ
ମାର୍କଣ୍ଡେୟ ଈଶ୍ୱରଙ୍କୁ ଯେ କରେ ଦର୍ଶନ ।
ସେହି ଜନ ଅଶ୍ୱମେଧ ଆଉ ରାଜସୂୟ
ସାଗର ଫଳ ଲଭଇ ଏକଥା ନିଶ୍ଚୟ ।
ଦେହାନ୍ତେ ସାଲୋକ୍ୟ ମୁକ୍ତି ପାଏ ଶିବଙ୍କର
ଶିବଙ୍କ ପ୍ରସାଦେ ଜ୍ଞାନ ଲାଭ ହୁଏ ତାର ।
ଶିବଙ୍କ ପ୍ରସାଦେ କ୍ରମେ ମୁକ୍ତି ପଥେ ଯାଇଁ
ନିର୍ବାଣ ଲଭଇ ସନ୍ଦେହ ତ କର ନାହିଁ ।
ମାର୍କଣ୍ଡେୟ ସରୋବର ଦକ୍ଷିଣ ତୀରରେ
ନାରାୟଣ ବିଜେ ବଟବୃକ୍ଷ ସ୍ୱରୂପରେ ।

Digitized by srujanika@gmail.com

ସେ କଳ୍ପ ବଟର ମୂଳେ କରିଲେ ଗମନ
ପାପୀଜନଙ୍କର ପାପ ହୁଅଇ ଦହନ ।
କଳ୍ପ ବଟ ବୃକ୍ଷକୁ ଯେ କରନ୍ତେ ଦର୍ଶନ
ବିଷ୍ଣୁରୂପେ ଚିନ୍ତାକରି କରିବ ପ୍ରଣାମ ।
ହେ ନ୍ୟଗ୍ରୋଧ ତୁମ୍ଭେ ପରା କଳ୍ପାନ୍ତ ଅମର
ଅତି ଅବ୍ୟକ୍ତ ସ୍ୱରୂପ ଅଟଇ ତୁମ୍ଭର ।
ହେ ବିଷ୍ଣୁରୂପ ତୁମ୍ଭଙ୍କୁ କରୁଛି ପ୍ରଣାମ
ସକଳ ପାପ ଆମ୍ଭର କରନ୍ତୁ ହରଣ ।
ତୁମ୍ଭେ ପରା ବିଷ୍ଣୁଙ୍କର ଆବାସ ନିଳୟ
ଏକମାତ୍ର ଜଗତର ଅଟ ଯେ ଆଶ୍ରୟ ।
ହେ କଳ୍ପବୃକ୍ଷ ତୁମ୍ଭଙ୍କୁ କରେ ନମସ୍କାର
ପ୍ରଦକ୍ଷିଣ କରୁଅଛି ଯୋଡ଼ି ବେନି କର ।
କଳ୍ପବଟଙ୍କୁ ଏ ରୂପେ କରିବ ପ୍ରଣାମ
ତା ମୂଳେ ପୂଜା କରିବ ଶ୍ରୀ ମଧୁସୂଦନ ।
ଏ ରୂପରେ ମାନବର କୋଟି କୋଟି ଜନ୍ମ
ପାପରାଶି ଦଗ୍ଧ ହୁଏ ସନ୍ଦେହ ନମଣ ।
ଏ ବୃକ୍ଷର ଛାୟା ସ୍ପର୍ଶ କରେ ଯେଉଁ ଜନ
ତକ୍ଷଣେ ନିଷ୍ପାପ ହୁଏ ଶୁଣ ଋଷିଗଣ ।
ତତ୍ପରେ ଶ୍ରୀହରିଙ୍କର ଉତ୍ତମ ବାହନ
ଗରୁଡ଼ଙ୍କୁ କରଯୋଡ଼ି କରିବ ପ୍ରଣାମ ।
ଭକ୍ତି ସହକାରେ କରିବଟି ସ୍ତୁତିଗାନ
ଦେବମୟ ଯଜ୍ଞ ରୂପ ବିଷ୍ଣୁଙ୍କ ବାହନ ।
ଏ ଦୀନ କରୁଛି ଆପଣଙ୍କୁ ନମସ୍କାର
ପ୍ରସନ୍ନ ହୁଅନ୍ତୁ ମାଗୁଅଛି ଯୋଡ଼ି କର ।
ଗରୁଡ଼ଙ୍କୁ ଏହିରୂପେ କରିଲେ ପ୍ରଣାମ
ଜନ୍ମ ଜନ୍ମାନ୍ତର ପାପ ହୁଅଇ ଦହନ ।
ମନ ବାକ୍ୟ କର୍ମ ତିନି କରିଣ ସଞ୍ଚିତ
ନାରାୟଣଙ୍କର ଚିନ୍ତା କରିବ ତୁରିତ ।
ମନ୍ଦିର ମଧ୍ୟରେ ଯାଇଁ କରିବ ପ୍ରବେଶ
ରତ୍ନ ସିଂହାସନେ ବିଜେ ପ୍ରଭୁ ଜଗଦୀଶ ।
ତ୍ରିବାର କରିବ ପ୍ରଥମରେ ପ୍ରଦକ୍ଷିଣ
ପୁରୁଷ ସୂକ୍ତ ସକଳ ମନ୍ତ୍ରର ପ୍ରଧାନ ।
ଦ୍ୱାଦଶାକ୍ଷର ମନ୍ତ୍ର ବା ରୁଚି ଅନୁସାରେ
ଅନ୍ୟ ମନ୍ତ୍ରରେ ପୂଜିବ ପ୍ରଭୁଙ୍କୁ ଭକ୍ତିରେ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଏହି ତିନିଜାତି
ଅର୍ଚ୍ଚନାରେ ଅଧିକାରୀ ଅନ୍ୟ କେ ନୁହନ୍ତି ।
ଆଉ ଅନ୍ୟ ଜାତିମାନ କରି ନାମ ଗାନ
ଦର୍ଶନ କରିବେ ଏହା ଶାସ୍ତ୍ରରେ ବିଧାନ ।
ପଞ୍ଚୋପଚାର ବିଧିରେ ପ୍ରଭୁଙ୍କ ଅର୍ଚ୍ଚନ
ଭକ୍ତିରେ କରିବ ନାନାବିଧ ସ୍ତୁତିଗାନ ।

ଦେବ ଦେବ ଜଗନ୍ନାଥ କରୁଣା ନିଧାନ
ସଂସାର ସାଗର ପାରି କରନ୍ତୁ ଆପଣ ।
ଭକ୍ତଗଣ ପ୍ରତି ଅନୁଗ୍ରହ ପରାୟଣ
ଆପଣ ରକ୍ଷା କରନ୍ତୁ କରୁଛି ପ୍ରଣାମ ।
ହେ କୃଷ୍ଣ ହେ ଜଗନ୍ନାଥ ହେ ଅଘନାଶନ
ହେ ଜଗତ ବନ୍ଦନୀୟ ଚରଣେ ପ୍ରଣାମ ।
ଜଗତ ଆଧାର କୋଟି ବ୍ରହ୍ମାଣ୍ଡ ଈଶ୍ୱର
ସକଳ ଦେବ ତୁମ୍ଭର ନିଃଶ୍ୱାସ ସମୀର ।
ବ୍ରହ୍ମାରୁଦ୍ର ଇନ୍ଦ୍ର ଆଦି ଦେବଗଣଙ୍କର
ନମସ୍ୟ ତୁମ୍ଭର ଜୟ ହେଉ ନିରନ୍ତର ।
କ୍ଳେଶ ନାଶକରୀ ସର୍ବ ଜଗତ ଆଧାର
କରୁଅଛି ପାଦେ ବରାମ୍ବାର ନମସ୍କାର ।
ହେ ବିଶ୍ୱ ସାକ୍ଷୀ ହେ ଦୀନ ଅନାଥ ଶରଣ
ଆପଣଙ୍କ ଜୟ ହେଉ କରୁଛି ପ୍ରଣାମ ।
ମୋହବାର୍ତ୍ତା ସୁଦୁସ୍ତର ସଂସାର ସାଗର
କାକାଦିରିପୁ ତରଙ୍ଗ ଉଠେ ନିରନ୍ତର ।
କୁକର୍ମ ରୂପ କୁମ୍ଭୀର ଅତ୍ୟନ୍ତ ଦାରୁଣ
ପାରି ହେବାକୁ ସମର୍ଥ ନୁହେଁ କେଉଁଜନ ।
ବହୁବିଧ ଦୁଖରାଶି ଫେଣର ସମାନ
ସଂସାର ଅସାର ଆଉ ଆଶ୍ରୟ ବିହୀନ ।
ତମୋଗୁଣରେ ଆବଦ୍ଧ ଅବଶ ଭାବରେ
ବୁଡ଼ି ରହିଛି ସଂସାର ସାଗର ମଧ୍ୟରେ ।
ଅଖିଳ ଜଗତ ପ୍ରକାଶକ ସ୍ୱପ୍ରକାଶ
ସୁର ଶ୍ରେଷ୍ଠ ଆପଣଙ୍କ କରୁଣା ଅଶେଷ ।
କୃପାନେତ୍ରେ ମୋତେ ଅବଲୋକନ ଯେ କର
ତୁମ୍ଭେ ଏକା ବନ୍ଧୁ ଭବ ଭୀତି ଜନଙ୍କର ।
ହେ ପ୍ରଭୁ ଆପଣଙ୍କର ଏ ସୃଷ୍ଟି ମଧ୍ୟରେ
ତୁମ୍ଭ ବିନା କିଏ ଦୀନଜନ ରକ୍ଷା କରେ ।
ଦୀନଜନ ପ୍ରତି ଦୟା ପ୍ରକାଶି ଆପଣ
ସ୍ୱଇଚ୍ଛାରେ ଦାରୁରୂପେ ହେଲେ ଅବତୀର୍ଣ୍ଣ ।
ଆପଣ ଅଟନ୍ତି ଏକମାତ୍ର ପୂର୍ଣ୍ଣ କାମ
କି କାରଣେ ଦାରୁରୂପେ ହେଲେ ଅବତୀର୍ଣ୍ଣ ।
ହେ ଜଗତପତି ତବ ଚରଣେ ଆଶ୍ରୟ
ନେଲେ ସଂସାର ସାଗରେ ନାହିଁ ଆଉ ଭୟ ।
ଆପଣଙ୍କ ପାଦ ପଦ୍ମେ ନେଇଣ ଆଶ୍ରୟ
ଯେବେ ସଂସାର ସାଗର ତରିବାକୁ ଭୟ ।
ତେବେ ତ ଆପଣଙ୍କର ଯୁଗଳ ଚରଣ
ଚତୁର୍ବର୍ଗ ଦେବାପାଇଁ ନ ହେବ ଭାଜନ ।
ଆପଣଙ୍କ ଶ୍ରୀଚରଣ ଯେ କରେ ଦର୍ଶନ
ତାର ସର୍ବ ମନୋବାଞ୍ଛା ହୋଇଥାଏ ପୂର୍ଣ୍ଣ ।

Digitized by srujanika@gmail.com

ଶ୍ରୀ ଜଗନ୍ନାଥଙ୍କୁ ଏହିରୂପେ କରି ସ୍ତୁତି
ବଳରାମଙ୍କ ସମୀପେ ହୋଇବ ପ୍ରଣତି ।
ଦ୍ୱାଦଶାକ୍ଷର ଯନ୍ତ୍ର ବା ପ୍ରଣବାଦି ନାମ
ଉଚ୍ଚାରି ଯଥାବିଧାନେ କରିବ ଅର୍ଚ୍ଚନ ।
ବୈକୁଣ୍ଠକୁ ଚନ୍ଦ୍ର ସୂର୍ଯ୍ୟ ଆଦି ଗ୍ରହଗଣ
ଯାଆନ୍ତି ଫେରିଆସନ୍ତି ପୁଣି ନିଜ ସ୍ଥାନ ।
କିନ୍ତୁ ଦ୍ୱାଦଶାକ୍ଷରରେ କରିଣ ଅର୍ଚ୍ଚନ
ଅଦ୍ୟାପି କେ ଫେରିନାହିଁ ଏ ମର୍ତ୍ତ୍ୟଭୁବନ ।
ବିଷ୍ଣୁ ପ୍ରତିଷ୍ଠାଦି ଆଉ ଅନ୍ୟ କାର୍ଯ୍ୟମାନ
ଦ୍ୱାଦଶାକ୍ଷର ମନ୍ତ୍ରରେ କରିବ ସାଧନ ।
ଏ ମନ୍ତ୍ରରେ ଯଥାବିଧି ଯେ କରେ ଅର୍ଚ୍ଚନ
ତାହାର ମହତ୍ତ୍ୱ ପଣ ବଢ଼େ ଦିନୁ ଦିନ ।
ପୂର୍ବେ ସ୍ୱାୟମ୍ଭୁବ ମନୁ ଏ ମନ୍ତ୍ର ବଳରେ
ପ୍ରଜାପତି ରୂପେ ଚରାଚର ସୃଷ୍ଟି କଲେ ।
ଏକାଗ୍ର ଚିତ୍ତରେ ବଳରାମଙ୍କୁ ପ୍ରଣାମ
ସ୍ତୁତି ପାଠ କରି କରାଇବ ସୁପ୍ରସନ୍ନ ।
ଜୟ ଜୟ ବଳରାମ ସଦା ଆତ୍ମାରାମ
ସଚ୍ଚିଦାନନ୍ଦ ବିଗ୍ରହ କରିଛ ଧାରଣ ।
ଅଜ୍ଞାନ ମଳ ରହିତ ନିର୍ମଳ ଶରୀର
ଆପଣଙ୍କୁ ବାରମ୍ବାର କରେ ନମସ୍କାର ।
ଶିରେ ଜଗତ ମଣ୍ଡଳ କରିଛ ଧାରଣ
ଦେହେ ଶ୍ରମ ଲାଗୁନାହିଁ ଅତି ପରାକ୍ରମ ।
ଭକ୍ତଜନମାନଙ୍କର ତାପତ୍ରୟ ଚୂର୍ଣ୍ଣ
କରିବା ନିମିତ୍ତ ହସ୍ତେ ଲାଙ୍ଗଳ ଧାରଣ ।
ଶରଣାଗତ ଦୀନାର୍ତ୍ତ ଜନ ପରିତ୍ରାଣ
କରିବାକୁ ଚାହିଁଅଛ ବିସ୍ତାରି ନୟନ ।
ହେ ଈଶ ଅନ୍ୟର ପାପ ରାଶିକୁ ପାଳନ
କରିବାକୁ ସମର୍ଥ ତ ଅଟନ୍ତି ଆପଣ ।
ଦୀନବନ୍ଧୁ ଜଗତ୍ପତି କରୁଣା ସାଗର
ଫଣାଗ୍ରରେ ଧରିଅଛ ବିଶ୍ୱ ଚରାଚର ।
ପରାପର ମଧ୍ୟେ ଶ୍ରେଷ୍ଠ ହେ ପରମ ଈଶ
ଆପଣଙ୍କ ଶ୍ରୀଚରଣେ ପ୍ରଣାମ ଅଶେଷ ।
ହସ୍ତରେ ହଳ ମୂଷଳ ବଳରାମଙ୍କର
ଉପାସନା ଏହିରୂପେ କରିବ ତତ୍କାଳ ।
ଜଗତର ଆଦି ଭଦ୍ର ଦେବୀଙ୍କ ଚରଣ
ପ୍ରଣାମ ପରେ କରିବ ଅର୍ଚ୍ଚନ ବନ୍ଦନ ।
ଜୟଦେବୀ ମହା ଦେବୀ ହେ ଭବ ତାରିଣୀ
ମାଗୋ ସୁରଗଣଙ୍କର ସନ୍ତୋଷ ଦାୟିନୀ ।
ଆଶ୍ରିତ ଜନର କର ଦୁଃଖ ବିମୋଚନ
ହେ ମାତଃ ତୁମ୍ଭର ଜୟ ହୁଅ ସୁପ୍ରସନ୍ନ ।
ସକଳ କାର୍ଯ୍ୟରେ ତୁମ୍ଭେ ଅଟ କାର୍ଯ୍ୟ ରୂପ
କାରଣ ମଧ୍ୟରେ ତୁମ୍ଭେ କାରଣ ସ୍ୱରୂପ ।
ସକଳ ବସ୍ତୁକୁ ତୁମ୍ଭେ କରିଛ ଧାରଣ
ସକଳର ଆଦି ମାଗୋ କରୁଛି ପ୍ରଣାମ ।
ଜନନୀ ବିଷ୍ଣୁଙ୍କ ବକ୍ଷସ୍ଥଳେ ଲକ୍ଷ୍ମୀ ରୂପା
ତୁମ୍ଭେ ଗୌରୀ ଶିବଙ୍କର ଅର୍ଦ୍ଧାଙ୍ଗ ସ୍ୱରୂପା ।
ବ୍ରହ୍ମାଙ୍କ ମୁଖେ ବାକ୍‌ଦେବୀ ରୂପେ ଶୋଭାମାନ
ଜଗତ୍‌ପ୍ରିୟ ତୁମ୍ଭଙ୍କୁ ଯେ କରୁଛି ପ୍ରଣାମ ।
ସୃଷ୍ଟି ପାଳନ ସଂହାର କରୁଛ ସାଧନ
ପରମାତ୍ମାଙ୍କର ଶକ୍ତିରୂପା ତୁମ୍ଭ ନାମ ।
ତୁମ୍ଭ ସାହଯ୍ୟ ବ୍ୟତୀତ ପରମାତ୍ମାଙ୍କର
ସାମର୍ଥ୍ୟ ନାହିଁ ଆଉ ସେ ନ ହେବେ ଈଶ୍ୱର ।
ହେ ଦେବି ! ଆପଣ ସର୍ବଲୋକର ଜନନୀ
ସକଳ ପଦାର୍ଥ ରୂପା ସୈନ୍ୟ ସ୍ୱରୂପିଣୀ ।
ବିଷ୍ଣୁ ମାୟା ମଙ୍ଗଳ କାରିଣୀ ଜଗତର
ସୁଭଦ୍ରା ଦେବୀ ପୟରେ କରେ ନମସ୍କାର ।
ଅନନ୍ତର ସିନ୍ଧୁ ସ୍ନାନ କରିବା ନିମିତ୍ତ
ପ୍ରଣାମ କରିବ ଜଗନ୍ନାଥଙ୍କୁ ତ୍ୱରିତ ।
ହେ ପ୍ରଭୁ ସକଳ ସ୍ଥାନେ ତୁମ୍ଭେ ବିଦ୍ୟମାନ
ନିର୍ବିଘ୍ନେ ସମ୍ପନ୍ନ ହେଉ ମୋର ସିନ୍ଧୁ ସ୍ନାନ ।
ଶଙ୍ଖ ଚକ୍ର ଗଦାଧର ପ୍ରଭୁ ଜଗତର
ଆପଣଙ୍କୁ ବାରମ୍ବାର କରେ ନମସ୍କାର ।
ଆପଣଙ୍କ ତୀର୍ଥେ ସ୍ନାନ କରିବା ନିମିତ୍ତ
ଆଦେଶ କରନ୍ତୁ ମାଗୁଅଛି ଜଗନ୍ନାଥ ।
ମୌନ ହୋଇ ସିନ୍ଧୁତୀରେ କରିବି ଗମନ
ପାର୍ଶ୍ୱସ୍ଥ ଉଗ୍ରସେନଙ୍କୁ କରିବ ପ୍ରଣାମ ।
ମହାପରାକ୍ରମୀ ମହାବାହୁ ଉଗ୍ରସେନ
ଜୟ ହେଉ ଆପଣଙ୍କ ଅଶେଷ ବିକ୍ରମ ।
ଭଗବାନଙ୍କୁ ତ କରିଅଛ ସୁପ୍ରସନ୍ନ
ତେଣୁ ସମୁଦ୍ର ତଟରେ ତୁମ୍ଭ ଅବସ୍ଥାନ ।
ଏ ରୂପେ ଉଗ୍ରସେନକୁ ପ୍ରାର୍ଥନା ଶେଷରେ
ପ୍ରଣାମ କରିବ ତୀର୍ଥରାଜ ସନୀଧିରେ ।
ହେ ତୀର୍ଥରାଜ ଯେ ସ୍ଥାନେ କରେ ତୀର୍ଥେ ସ୍ନାନ
ତାହାକୁ ସମ୍ପୂର୍ଣ୍ଣ ଫଳ କରୁଛ ପ୍ରଦାନ ।
ଅନୁଜ୍ଞା କରନ୍ତୁ କରିବାକୁ ସିନ୍ଧୁ ସ୍ନାନ
ଏ ରୂପ କରିବି ଶୁଣିଥାଅ ଦ୍ୱିଜଗଣ ।
ଅନନ୍ତର ଯେଉଁ ପଥେ ନିତି ଦେବଗଣ
ସ୍ୱର୍ଗରୁ ଆସନ୍ତି କରିବାକୁ ଦରଶନ ।
ହୋଇଅଛି ସେ ପଥର ସ୍ୱର୍ଗଦ୍ୱାର ନାମ
ସେ ଉତ୍ତମ ସ୍ଥାନକୁ ଯେ କରିବ ଗମନ ।

Digitized by srujanika@gmail.com

ଉଗ୍ରସେନ ତୀର୍ଥରାଜ ଦୁହିଁଙ୍କୁ ଭକ୍ତିରେ
ପ୍ରାର୍ଥନା କରିବ ସିନ୍ଧୁସ୍ନାନ ଉଦ୍ଦେଶ୍ୟରେ ।
ଉଗ୍ରସେନ ତୀର୍ଥରାଜ ତୁମ୍ଭ ଦୁହିଁଙ୍କର
ଉତପତ୍ତି ସ୍ଥାନ ପରା ସାଗରର ଜଳ ।
ସତ୍କର୍ମ ସାକ୍ଷୀ ରୂପରେ ତୁମ୍ଭେ ବିଦ୍ୟମାନ
ସ୍ୱର୍ଗଦ୍ୱାରେ କରିଅଛ ନିତ୍ୟ ଅବସ୍ଥାନ ।
ସର୍ବ ଗୁଣାନ୍ୱିତ ସର୍ବଶ୍ରେଷ୍ଠ ତୁମ୍ଭେ ଦୁଇ
ପ୍ରଣାମ କରୁଛି ସିନ୍ଧୁ ସ୍ନାନ ଅର୍ଥେ ମୁହିଁ ।
ଆଜ୍ଞା ଦିଅନ୍ତୁ ଆପଣ ଦୁହିଁଙ୍କ ମଧ୍ୟରେ
ଗମନ କରିବି ଜଳାବୃତ ସ୍ୱର୍ଗଦ୍ୱାରେ ।
ଏହି ରୂପରେ ପ୍ରଣାମ କରିବି ଭକ୍ତିରେ
ଗମନ କରିବି ତୀର୍ଥରାଜ ନିକଟରେ ।
ତୀର୍ଥରାଜକୁ ଦୂରରୁ କରିଲେ ଦର୍ଶନ
ପାପରୁ ଦୂର କରିବ ସନ୍ଦେହ ନ ମଣ ।
ହସ୍ତ ପାଦ ଧୌତ ପରେ କରି ଆଚମନ
ପୂର୍ବମୁଖେ କୁଶାସନେ ବସିବ ତକ୍ଷଣ ।
ସମ୍ମୁଖରେ ଚତୁରସ୍ର ମଣ୍ଡଳ କରିବ
ଚତୁର୍ଦ୍ୱାର ଚତୁଷ୍କୋଣେ ସ୍ୱସ୍ତିକ ଲେଖିବ ।
ଅଷ୍ଟଦଳ ପଦ୍ମ ମଧ୍ୟ ଦେଶରେ ଆଙ୍କିବ
ଅଷ୍ଟାକ୍ଷର ମନ୍ତ୍ର ବାହୁଦ୍ୱୟେ ବିନ୍ୟାସିବ ।
ଅଷ୍ଟାକ୍ଷର ମନ୍ତ୍ରର ଯେ ଆଦ୍ୟ ଷଡ଼ାକ୍ଷର
ଷଡ଼ାଙ୍ଗ ନ୍ୟାସ କରିବ ଦେହରେ ନିଜର ।
ଅବଶିଷ୍ଟ ବର୍ଣ୍ଣଦ୍ୱୟ କୁକ୍ଷି ଓ ପୃଷ୍ଠରେ
ବିନ୍ୟାସ କରିବ ଶୁଣ ଏକାଗ୍ର ମନରେ ।
ପାଦ ଜଙ୍ଘଉରୁ ଦ୍ୱୟ ନିତମ୍ବ ଦୁଇରେ
ପାର୍ଶ୍ୱଦ୍ୱୟ ନାଭି ପୃଷ୍ଠ ବାହୁ ଯୁଗଳରେ ।
ସ୍ତନ କଣ୍ଠ କକ୍ଷଦ୍ୱୟ ଆଉ ଓଷ୍ଠଦ୍ୱୟ
କର୍ଣ୍ଣ ନେତ୍ର ଗଣ୍ଡସ୍ଥଳ ନାସାରନ୍ଧ୍ର ଦ୍ୱୟ ।
ଭ୍ରୂଦ୍ୱୟ ଲଲାଟ ଦେଶ ଆଉ ମସ୍ତକରେ
ଯଥାକ୍ରମେ ମନ୍ତ୍ରାକ୍ଷର ନ୍ୟାସିବ ବିଧିରେ ।
ଏ ରୂପେ ବ୍ୟାପକ ନ୍ୟାସ ମନ୍ତ୍ରେ କରିସାରି
ମୂଳମନ୍ତ୍ରେ ପାଞ୍ଚବିଂଶ ପ୍ରାଣାୟାମ କରି ।
ତଦନ୍ତେ ଦିବ୍ୟ କବଚ କରିବ ବନ୍ଧନ
ଯହିଁରେ ସକଳ ପାପ ହୁଅଇ ମୋଚନ ।
ପୂର୍ବରେ ଗୋବିନ୍ଦ ବାରି ଜାଣ ଦକ୍ଷିଣରେ
ପଶ୍ଚିମେ ପ୍ରଦ୍ୟୁମ୍ନ ହୃଷୀକେଶ ଉତ୍ତରରେ ।
ଅଗ୍ନି କୋଣରେ ନୃସିଂହ ରଖନ୍ତୁ ଯେ ମୋତେ
ଶ୍ରୀ ମଧୁସୂଦନ ରକ୍ଷା କରନ୍ତୁ ନୈର୍ଋତେ ।
ମୋତେ ବାୟୁ କୋଣେ ରକ୍ଷା କରନ୍ତୁ ଶ୍ରୀଧର
ଈଶାନ କୋଣେ ରଖନ୍ତୁ ଦେବ ଚକ୍ରଧର ।

ତିବ୍ରିକ୍ରମ ଦେବ ରକ୍ଷା କରନ୍ତୁ ଉର୍ଦ୍ଧ୍ୱରେ
ବରାହ ରୂପୀ ଶ୍ରୀହରି ରଖନ୍ତ ଭୂତଳେ ।
ଶଙ୍ଖ ଚକ୍ର ଗଦାଧର ଦେବ ନାରାୟଣ
ସକଳ ଦିଗରେ ମୋତେ ରଖନ୍ତୁ ବହନ ।
ଚୈତନ୍ୟ ଗରୁଡ଼ ଧ୍ୱଜ ମନ ନାରାୟଣ
ବୁଦ୍ଧି ଅହଙ୍କାର ତ୍ରିଗୁଣାତ୍ମା ଜନାର୍ଦ୍ଦନ ।
ସକଳ ଦାନବ ଅରି ଶ୍ରୀମଧୁସୂଦନ
ଦୟା କରିଣ ରଖନ୍ତୁ ମୋ ଇନ୍ଦ୍ରିୟଗଣ ।
ଏ ମନ୍ତ୍ରକୁ ମନେ ଚିନ୍ତି କବଚ ବନ୍ଧନ
କରିଲେ ସକଳ ପାପ ହୁଅଇ ମୋଚନ ।
ମନରେ କଳ୍ପନା କରି ଷୋଳ ଉପଚାରେ
ପୁରୁଷୋତ୍ତମକୁ ପୂଜା କରିବ ଭକ୍ତିରେ ।
ଅନନ୍ତରେ ସେ ମଣ୍ଡଳେ କରି ଆବାହନ
ନାରାୟଣଙ୍କୁ ଭକ୍ତିରେ କରିବ ଅର୍ଚ୍ଚନ ।
ତୀର୍ଥରାଜ ଦେବ ଦେବଙ୍କର ଆତ୍ମା ଭିନ୍ନ
ନୁହେଁ ଏ ରୂପ ମନରେ ଚିନ୍ତିବ ତକ୍ଷଣ ।
କୃତାଞ୍ଜଳି ପୁଟ ହୋଇ ଏ ମନ୍ତ୍ର ପଢ଼ିବ
ହେ ସୁଦର୍ଶନ ହେ କୋଟି ସୂର୍ଯ୍ୟ ସମପ୍ରଭ ।
ଦୟାକରି ଅଜ୍ଞାନ ତିମିର ନାଶ ଅର୍ଥେ
ଦେଖାଇ ଦିଅନ୍ତୁ ବିଷ୍ଣଙ୍କର ପଥ ମୋତେ ।
ଏ ରୂପ ପ୍ରାର୍ଥନା କରି ତୀର୍ଥରାଜ କୂଳେ
ଜାନୁଦ୍ୱୟ ପକାଇଣ ବସିବ ଭୂତଳେ ।
ଭକ୍ତିଭାବେ କରଯୋଡ଼ି କରିବ ପ୍ରଣାମ
ତୀର୍ଥରାଜ ଆପଣ ତ ବିଷ୍ଣୁଙ୍କ ସମାନ ।
ଜୀବଗଣର ଜୀବନ ମୋକ୍ଷର କାରଣ
ଅମୃତର ନାଭି ସ୍ୱରୂପରେ ବିଦ୍ୟମାନ ।
ଆପଣଙ୍କର ଶରୀର ମଧ୍ୟରେ ପ୍ରବେଶ
କଲେ ପରମ ଆନନ୍ଦ ଲଭିବ ଅବଶ୍ୟ ।
ଏ ମନ୍ତ୍ର ପଢ଼ି ଜଳରେ ହେବ ଉପସ୍ଥିତ
ଅଷ୍ଟାକ୍ଷର ଯୁକ୍ତ ଅଘମରଷଣ ସୂକ୍ତ ।
ପଞ୍ଚାବୃତ ତ୍ରିରାବୃତ ବାରୁଣ ଯେ ମନ୍ତ୍ର
ପାଠକରି ଆବାହନ କରିବା ବିଧିତ ।
ଯେ ଦେବ ସ୍ନାନର ଫଳ କରନ୍ତି ପ୍ରଦାନ
ସେହି ତୀର୍ଥରାଜ ବରୁଣକୁ ଆବାହନ ।
ସ୍ନାନ କାଳେ ଏକଥର ମନ୍ତ୍ରେ ଅଙ୍ଗନ୍ୟାସ
ଏହାପରେ ସନ୍ନିଧାନ କରନ୍ତି ବିଦୂଷ ।
ସ୍ନାନ କଲା ବ୍ୟକ୍ତିର ଯେ ଫଳ ପ୍ରାପ୍ତି ଅର୍ଥେ
ସାନ୍ନିଧ୍ୟ କଳ୍ପନା ଏହି ବିଧି ଅଛି ଶାସ୍ତ୍ରେ ।
ଏହାପରେ ଅନ୍ତଃଶୁଦ୍ଧ ହୋଇବା ନିମିତ୍ତ
ମନ୍ତ୍ରପୂତ ଜଳେ ଆଚମନ କରିବ ତ ।

Digitized by srujanika@gmail.com

ସର୍ବାଙ୍ଗରେ କୁଶ ଜଳ କରିବ ସେଚନ
ବାହ୍ୟ ଶୁଦ୍ଧି ଅର୍ଥେ ମନ୍ତ୍ର କରି ଉଚ୍ଚାରଣ ।
ଅନ୍ତଃ ବାହ୍ୟ ଦୁଇ ଶୁଦ୍ଧି ଅର୍ଥେ ତିନିବାର
ମସ୍ତକେ ସିଞ୍ଚିବ ମନ୍ତ୍ରପୂତ କରି ଜଳ ।
ସିନ୍ଧୁସ୍ନାନେ ଜଳ ମଧ୍ୟେ ନ କରିବ ଜପ
ମନ ମଧ୍ୟରେ ଭାବନା କରିବ ଏ ରୂପ ।
କୋଟି ଜନ୍ମ ପାପ ମୋର ହୋଇଲା କ୍ଷାଳନ
ପୁଣି ତିନିବାର ସ୍ନାନ ଶିର ବୁଡ଼ାଇଣ ।
ତଦନ୍ତେ ଯଥା ବିଧାନେ ସାରି ଆଚମନ
ପ୍ରାର୍ଥନା କରିବ ମନ୍ତ୍ର କରି ଉଚ୍ଚାରଣ ।
ହେ ନାଥ ଆପଣ ପାତକାଗ୍ନି ଜଗତର
ବୀର୍ଯ୍ୟର ଧାରକ ଉଦ୍ଦୀପକ ଯେ କାମର ।
ଜୀବମାନଙ୍କର ପ୍ରଭୁ ଅଭୟ ପ୍ରଧାନ
ସର୍ବଭୂତମାନଙ୍କର ମଧ୍ୟରେ ଆପଣ ।
ଜଳପତି ଅମୃତର ଅରଣି ଆପଣ
ଦେବଙ୍କର ଯୋନି ସ୍ୱରୂପରେ ବିଦ୍ୟମାନ ।
ତୀର୍ଥରାଜ ଆପଣଙ୍କୁ କରେ ନମସ୍କାର
ସକଳ ପାପ ହରଣ କରନ୍ତୁ ମୋହର ।
କୋଟି ସହସ୍ର ଜନ୍ମରେ ଯେ ପାପ ସଞ୍ଚୟ
କରିଛି ସେ ପାପ ସବୁ ହୋଇବ ବିଳୟ ।
ସନାତନ ବ୍ରହ୍ମପଦ କରନ୍ତୁ ପ୍ରଦାନ
ଆପଣଙ୍କୁ ବାରମ୍ବାର କରୁଛି ପ୍ରଣାମ ।
ସ୍ନାନ ଶେଷେ ଜଳୁଁ ଆସିକରି ଆଚମନ
ମୌନ ହୋଇ ଶୁକ୍ଳବସ୍ତ୍ର ପିନ୍ଧିବ ତକ୍ଷଣ ।
ଅତ୍ୟନ୍ତ ଉଜ୍ଜ୍ୱଳ ଊର୍ଦ୍ଧ୍ୱପୁଣ୍ଡ୍ର ମସ୍ତକରେ
ଶଙ୍ଖ ଚକ୍ର ଗଦା ପଦ୍ମ ଆଙ୍କିବ ହସ୍ତରେ ।
ତିଳକ ଧାରଣ କରି ଏ ରୂପେ ଭକ୍ତିରେ
ଦେବର୍ଷି ପିତୃଗଣଙ୍କୁ ଚିନ୍ତିବ ମନରେ ।
ଭଗବାନ ରୂପ ଚିନ୍ତି ଅବ୍ୟଗ୍ର ମନରେ
ତର୍ପଣ କରିବ ଯଥା ବିଧାନେ ଶ୍ରଦ୍ଧାରେ ।
ପୂର୍ବବତ୍ ମଣ୍ଡଳ କରି ଉତ୍ତର ମୁଖରେ
ଭଗବାନଙ୍କର ପୂଜା କରିବ ଭକ୍ତିରେ ।
ମୂଳମନ୍ତ୍ରେ ବକ୍ଷ୍ୟମାଣ ମନ୍ତ୍ର କରି ଯୁକ୍ତ
ଭକ୍ତି ସହକାରେ ପୂଜା କରିବ ନିଶ୍ଚିନ୍ତ ।
ଶଙ୍ଖ ଚକ୍ର ଗଦାଧର ଦେବ ନାରାୟଣ
ଚତୁର୍ଭୁଜ ଧରା ରମା ସହ ବିଦ୍ୟମାନ ।
ଅଥବା ବିରାଜମାନ ସେ ଏକ ରୂପରେ
ଏହା ଧ୍ୟାନ କରି ପୂଜା କରିବ ମନରେ ।
ମାନସ ପୂଜା ଶେଷରେ ମନ୍ତ୍ର ଉଚ୍ଚାରିଣ
ମଣ୍ଡଳେ କରିବ ଇଷ୍ଟଦେବ ଆବାହନ ।
ପରମାନନ୍ଦ ଜଗତ ବ୍ୟାପି ଜଗତ୍‌ମୟ
ଏହିସ୍ଥାନେ ଆଗମନ କରନ୍ତୁ ନିଶ୍ଚୟ ।
ମୋର ପ୍ରତି ଅନୁଗ୍ରହ ପ୍ରକାଶ ନିମିତ୍ତ
ଏହି ମଣ୍ଡଳ ମଧ୍ୟରେ ହୁଅ ସନ୍ନିହିତ ।
ହେ ଈଶ ଏ ଚରାଚର ଯେଉଁସ୍ଥାନେ ସ୍ଥିତ
ଆପଣ ସେହି ସକଳ ମଧ୍ୟେ ଅବସ୍ଥିତ ।
ଆପଣଙ୍କ ପ୍ରୀତି ଅର୍ଥେ ଆସନ ପ୍ରଦାନ
କରୁଅଛି ଆହେ ପ୍ରଭୁ କରନ୍ତୁ ଗ୍ରହଣ ।
ବ୍ରହ୍ମରୂପୀ ଧର୍ମ ଜଳେ ଯାହାର ଚରଣ
ଧଉତ ହୋଇଛି ତାଙ୍କ ପାଦରୁ ଜନମ ।
ଗଙ୍ଗାଦେବୀ କରୁଛନ୍ତି ଜଗତ ପାବନ
ସେ ପ୍ରଭୁଙ୍କୁ ପାଦ୍ୟ ଜଳ କରୁଛି ପ୍ରଦାନ ।
ଦେବଗଣଙ୍କ ମୁକୁଟ ରତ୍ନ କିରଣରେ
ଯାର ପାଦ ପଦ୍ମ ଶୋଭା ପ୍ରକାଶ ଯେ କରେ ।
ଯାର ପାଦକୁ ଚିନ୍ତନ୍ତି ବ୍ରହ୍ମାଦି ଅମରେ
ସେ ପ୍ରଭୁଙ୍କୁ ଅର୍ଘ୍ୟଦାନ କରୁଛି ଭକ୍ତିରେ ।
ଅଚିନ୍ତ୍ୟ ଶକ୍ତି ହେ ପ୍ରଭୁ ଅଗସ୍ତି ରୂପରେ
ସମୁଦ୍ର ଜଳକୁ ଆଚମନ କରିଥିଲେ ।
ସୁବାସିତ ଜଳେ ହେଉଅଛି ଆଚମନ
ଦୟାକରି ଆହେ ପ୍ରଭୁ କରନ୍ତୁ ଗ୍ରହଣ ।
ଯେଉଁ ପ୍ରଭୁ ମଧୁପର୍କ କରିଣ ପ୍ରାଶନ
ଅମୃତ ରୂପକୁ କରିଥିଲେ ଆକର୍ଷଣ ।
ସେ ସକଳ ପାପ ରାଶି କରନ୍ତି ହରଣ
ସେ ପ୍ରଭୁଙ୍କୁ ମଧୁପର୍କ କରୁଛି ପ୍ରଦାନ ।
ଯେ ପ୍ରଭୁ ପୂର୍ବକାଳରେ ବରାହ ରୂପରେ
ପ୍ରଳୟ ଜଳରୁ ପୃଥ୍ୱୀ ଉଦ୍ଧାର କରିଲେ ।
ସେ ଭଗବାନଙ୍କୁ ସୁବାସିତ ଜଳେ ସ୍ନାନ
କରାଉଛି ଆହେ ପ୍ରଭୁ ଘେନ ନିବେଦନ ।
ଯେଉଁ ପ୍ରଭୁ ବିଶ୍ୱରୂପ କରିଲେ ଧାରଣ
କୋଟି ବ୍ରହ୍ମାଣ୍ଡକୁ ଅଙ୍ଗେ କଲେ ଆଚ୍ଛାଦନ ।
ସର୍ବ ବସ୍ତୁ ଆଚ୍ଛାଦକ ରୂପେ ବିଦ୍ୟମାନ
ସେହି ପ୍ରଭୁଙ୍କୁ ପ୍ରଦାନ କରୁଛି ବସନ ।
ଯା ପୂଜା ନ କଲେ ଯଜ୍ଞ ନିଷ୍ଫଳ ହୁଅଇ
ସେ ଯଜ୍ଞେଶ୍ୱରଙ୍କୁ ଉପବୀତ ମୁଁ ଦିଅଇ ।
ଯା ଅଙ୍ଗ ସ୍ପର୍ଶ ମାତ୍ରକେ ସକଳ ଭୂଷଣ
ଶୋଭା ବୃଦ୍ଧି ପାଇ ହୁଏ ଅତି ଶୋଭମାନ ।
ଏହି ବିଶ୍ୱ ବ୍ରହ୍ମାଣ୍ଡର ଯେ ପ୍ରଭୁ ଭୂଷଣ
ସେ ଭଗବାନଙ୍କୁ ଦେଉଅଛି ମୁଁ ଭୂଷଣ ।
ଯା ଅଙ୍ଗ ସ୍ପର୍ଶ-ବାୟୁର ସଂସର୍ଗରୁ ଜାଣ
ଚନ୍ଦନ ଦ୍ରୁମ ହୋଇଛି ସୁଗନ୍ଧରେ ପୂର୍ଣ୍ଣ ।

Digitized by srujanika@gmail.com

ସେ ଭଗବାନଙ୍କ ଅଙ୍ଗେ ସୁଗନ୍ଧ ଚନ୍ଦନ
ଲେପନ କରୁଛି ପ୍ରଭୋ କରନ୍ତୁ ଗ୍ରହଣ ।
ଯାହାଙ୍କୁ ଚିନ୍ତିଲେ ପାପକାରୀ ଜନଙ୍କର
ପାପ ଦୂର ହୁଏ ଚିତ୍ତ ହୁଅଇ ନିର୍ମଳ ।
ସେ ପ୍ରଭୁଙ୍କୁ ପୁଷ୍ପମାଲ୍ୟ କରୁଛି ଅର୍ପଣ
ହେ ମାଧବ ଜଗନ୍ନାଥ କରନ୍ତୁ ଗ୍ରହଣ ।
ଯାହାଙ୍କୁ ଅନ୍ତଃକରଣେ ଚିନ୍ତି ଜୀବଗଣ
ଭବ ଅଗ୍ନି ସନ୍ତାପରୁ ହୋନ୍ତି ପରିତ୍ରାଣ ।
ସେହି ଭଗବାନଙ୍କର ପ୍ରୀତି ସମ୍ପାଦନ
ନିମନ୍ତେ ସୁଗନ୍ଧ ଧୂପ କରୁଛି ପ୍ରଦାନ ।
ସେ ପ୍ରଭୁ ସ୍ୱୟଂ ଅଟନ୍ତି ତେଜର ନିଧାନ
ଯାହାଙ୍କ ତେଜେ ଜଗତ ହୋଇଅଛି ପୂର୍ଣ୍ଣ ।
ପ୍ରଜ୍ୱଳିତ ଦୀପ ସେହି ପ୍ରଭୁଙ୍କ ନିମିତ୍ତ
ଦାନ କରୁଅଛି ତୁଷ୍ଟ ହୁଅ ଜଗନ୍ନାଥ ।
ପ୍ରଳୟ କାଳେ ଜଗତ ଯେ ଗ୍ରାସ କରନ୍ତି
ପୁଣି ଜଗତର ପୁଷ୍ଟି ଅନ୍ନରେ ଇଛନ୍ତି ।
ସେ ଭଗବାନଙ୍କୁ କରୁଅଛି ନିବେଦନ
ଏ ଅନ୍ନକୁ ଜଗନ୍ନାଥ କରନ୍ତୁ ଗ୍ରହଣ ।
ସ୍ୱାଭାବିକ ଗନ୍ଧେ ପୂର୍ଣ୍ଣ ବଦନ ଯାହାର
ମୋହିତ ହୁଅନ୍ତି ସୁର ସୁନ୍ଦରୀ ନିକର ।
ସେ ଭଗବାନଙ୍କୁ ଏହି ତାମ୍ବୁଳ ଅର୍ପଣ
କରୁଅଛି ଆହେ ପ୍ରଭୁ କରନ୍ତୁ ଗ୍ରହଣ ।
ଭଗବାନଙ୍କୁ ଯେ କରେ ଥରେ ପ୍ରଦକ୍ଷିଣ
ସଂସାରେ ଭ୍ରମ ନୁହନ୍ତି ଆଉ ଭକ୍ତଗଣ ।
ସେହି ଜଗଦ୍‌ଗୁରୁଙ୍କୁ ମୁଁ କରିଣ ପ୍ରଣାମ
ଆନନ୍ଦ ଚିତ୍ତରେ କରୁଅଛି ପ୍ରଦକ୍ଷିଣ ।
ପ୍ରତି ଉପଚାର ଦାନ କାଳରେ ଏପରି
ପୃଥକ ପୃଥକ ମନ୍ତ୍ର ଉଚ୍ଚାରଣ କରି ।
ପ୍ରଥମେ ଜଗନ୍ନାଥଙ୍କୁ କରି ଆବାହନ
ମନେ କର ସମ୍ମୁଖରେ ଆସି ବିଦ୍ୟମାନ ।
ଉପବିଷ୍ଟ ହୋଇଛନ୍ତି ରତ୍ନ ସିଂହାସନ
ଏ ରୂପ ଭାବନା ମନେ କରିବ ଯତନେ ।
ପାଦ୍ୟ ପାତ୍ରରେ ଶ୍ୟାମାକ ପଦ୍ମ ଦୁର୍ବାଦଳ
ଅପରାଜିତା କୁସୁମ ସହିତରେ ଜଳ ।
ସଂସ୍କାର କରିବ ମୂଳ ମନ୍ତ୍ରରେ ତକ୍ଷଣ
ପାଦାମ୍ବୁଜେ ପାଦ୍ୟ ଜଳ କରିବ ଅର୍ପଣ ।
ସ୍ୱର୍ଣ୍ଣ ରୌପ୍ୟ ତାମ୍ର ପାତ୍ର ଅଥବା ଶଙ୍ଖରେ
ଯବ ଦୁର୍ବା କୁଶ ଅଗ୍ର ଫଳ ସହିତରେ ।
ଶ୍ୱେତ ସର୍ଷପ ଚନ୍ଦନ ପୁଷ୍ପ ତିଳ ଜଳ
ଅର୍ଘ୍ୟପାତ୍ରେ ଦେଇ ମୂଳେ କରିବ ସଂସ୍କାର ।
ଭଗବାନଙ୍କ ମସ୍ତକେ କୁଶ ବା ଦୁର୍ବାରେ
ସେଚନ କରିବ ଅର୍ଘ୍ୟ ଉଦକ ଭକ୍ତିରେ ।
ଅବଶିଷ୍ଟ ଜଳ ଭୂମି ତଳେ ପକାଇବ
ଅର୍ଘ୍ୟ ଦାନ ବିଧି ଏହା ମନେ ରଖିଥିବ ।
ଆଚମନ ପାତ୍ରେ ଦେବ ସୁବାସିତ ଜଳ
ଏଳା କଲ୍ଲୋଳ ଲବଙ୍ଗ ସହ ଜାତି ଫଳ ।
ମଧୁପର୍କ ଅର୍ଥେ କାଂସ୍ୟ ନିର୍ମିତ ପାତ୍ରରେ
ଗବ୍ୟ ଘୃତ ଦୁଗ୍ଧଦଧି ମଧୁ ସହିତରେ ।
ତାଦୃଶ ଅପର ପାତ୍ରେ କରି ଆଚ୍ଛାଦନ
ଭକ୍ତିଭରେ ମଧୁପର୍କ କରିବ ପ୍ରଦାନ ।
ସ୍ନାନ ଉପଯୋଗୀ ଜଳ କରି ଫଳଯୁକ୍ତ
ପ୍ରଦାନ କରିବା ମନ୍ତ୍ରେ କରିବ ସଂସ୍କୃତ ।
ନିଜ ଶକ୍ତି ଅନୁସାରେ ନୂଆ ପଟ୍ଟବସ୍ତ୍ର
କୌଷେୟ ନିର୍ମିତ ଅବା କାର୍ପାସେ ନିର୍ମିତ ।
ଉତ୍ତମ ବସ୍ତ୍ର ଯୁଗଳ କରିବ ପ୍ରଦାନ
ବିତ୍ତଶାଠ୍ୟ ନ କରିବ ବସ୍ତ୍ରେ କଦାଚନ ।
ଶକ୍ତି ଅନୁସାରେ ଦେବ ନାନା ଅଳଙ୍କାର
କେୟୁର ମୁକୁଟ ଗୌବେୟକ ସ୍ୱର୍ଣ୍ଣହାର ।
ପାଟ୍ଟ ବା କାର୍ପାସ ସୂତ୍ରେ କରି ଉପବୀତ
ଯହିଁରେ ପ୍ରସନ୍ନ ହେବେ ଦେବ ଜଗନ୍ନାଥ ।
କର୍ପୂର ଚନ୍ଦନ ସହ କସ୍ତୁରୀ କୁଙ୍କୁମ
ଚତୁଃସମ ଗନ୍ଧେ ଦେହ କରିବ ଲେପନ ।
ଗଳାରେ ତୁଳସୀ ମାଳା ଆଉ ଜାତି ଫୁଲ
ସୁର ପୁନ୍ନା ଚମ୍ପକ ପଦ୍ମ ନାଗେଶ୍ୱର ।
ଅନ୍ୟାନ୍ୟ ସୁରଭି ପୁଷ୍ପ କରିବ ନିର୍ମାଣ
ପୁଷ୍ପ ମାଲ୍ୟ ପ୍ରୀତି ଅର୍ଥେ କରିବ ପ୍ରଦାନ ।
ପାଦ ପର୍ଯ୍ୟନ୍ତ ହେ ମାଳା ହୁଏ ଲମ୍ବମାନ
ବିବିଧ ପୁଷ୍ପ ନିର୍ମିତ ମାଳା ତାର ନାମ ।
କଣ୍ଠ ଦେଶଠାରୁ ଉରୁଯାଏ ଲମ୍ବିଥାଏ
ତାହାର ନାମ ଯେ ମାଲ୍ୟ ବୋଲି କୁହାଯାଏ ।
ଯେଉଁ ପୁଷ୍ପ ଗୁଚ୍ଛ କେଶ ମଧ୍ୟେ ରହିଥାଏ
ପୁଷ୍ପ ଗଭକ ତା ନାମ କହନ୍ତି ସଭିଏଁ ।
ପୁଷ୍ପାଞ୍ଜଳି ଇଷ୍ଟ ଦେବଙ୍କର ମସ୍ତକରେ
ପ୍ରଦାନ କରିବା ବିଧି ଅଛି ତ ଶାସ୍ତ୍ରରେ ।
ଭଗବାନଙ୍କର ପ୍ରୀତି ଅର୍ଥେ ମଧୁ ଘୃତ
ଗୁଗ୍ଗୁଳ ଅଗୁରୁ ବେଣାଚେର କରି ଯୁକ୍ତ ।
ଶର୍କରା ଚନ୍ଦନ ଆଦି ସୁଗନ୍ଧ ସମ୍ପନ୍ନ
ଦ୍ରବ୍ୟମାନଙ୍କରେ ଧୂପ କରିବ ପ୍ରଦାନ ।
କାର୍ପାସ ବର୍ତ୍ତିକା ମଧ୍ୟେ କର୍ପୂରର ଚୂର୍ଣ୍ଣ
ଘୃତ ବା ତିଳ ତୈଳରେ ପ୍ରଦୀପ ଅର୍ପଣ ।

Digitized by srujanika@gmail.com

ଅନନ୍ତର ନୈବେଦ୍ୟାନ୍ନ କରିବ ପ୍ରସ୍ତୁତ
ଅଖଣ୍ଡିତ ଶାଳି ତଣ୍ଡୁଳକୁ କରି ଧୌତ ।
ଅନ୍ନ ପାନ କରି ସୁବାସିତ ଘୃତେ ସିକ୍ତ
ଗବ୍ୟ ଦଧି କ୍ଷୀର ଖଣ୍ଡ ପକ୍ୱ ରମ୍ଭାଯୁକ୍ତ ।
ନାନା ପ୍ରକାର ବ୍ୟଞ୍ଜନ ସୁସ୍ୱାଦୁ ଚାଟନୀ
ପିଷ୍ଟକ ସଙ୍ଗରେ ନାନାଫଳ ଦେବ ଆଣି ।
ଏ ସକଳ ହେବ ପ୍ରୀତିକର ରୁଚିକର
ନବ ତଣ୍ଡୁଳେ ପ୍ରସ୍ତୁତ ଗନ୍ଧ ମନୋହର ।
ଏ ରୂପେ ଭଗବାନଙ୍କୁ ନୈବେଦ୍ୟ ଅର୍ପଣ
ନୈବେଦ୍ୟାନ୍ନ ହେବ ଏକ ପ୍ରସ୍ଥ ପରିମାଣ ।
ଏକ ପ୍ରସ୍ଥରୁ ନିଉନ ଯଦ୍ୟପି ହୋଇବ
ନୈବେଦ୍ୟ ପାଇଁ ପ୍ରଶସ୍ତ ନୁହେଁ ତା ଜାଣିବ ।
ଧୂପ ଦୀପ ନଇବେଦ୍ୟ ମଧୁପର୍କ ସ୍ନାନ
ବସ୍ତ୍ର ଯଜ୍ଞୋପବୀତରେ ଦେବ ଆଚମନ ।
ଅନ୍ୟ ଉପାୟରେ ଆଚମନ ନ ଦେଇଣ
କେବଳ ଯେ ଉପଚାର କରିବ ପ୍ରଦାନ ।
କିନ୍ତୁ ସମୁଦାୟ ଉପଚାରକୁ ଜଳରେ
ସଂସ୍କାର କରିବ ମନ୍ତ୍ର ପଢ଼ି ବିଧାନରେ ।
ନୈବେଦ୍ୟ ଦାନ ଶେଷରେ ଦେଇ ଆଚମନ
ତାପରେ ଦେବ ଶ୍ରୀକରେ ଘର୍ଷିତ ଚନ୍ଦନ ।
କର୍ପୂର ଲବଙ୍ଗ ଏଳା ପୁଷ୍ପ ଜାତି ଫଳ
ଏକତ୍ର କରି ପ୍ରଦାନ କରିବ ତାମ୍ବୁଳ ।
ଏହିରୂପେ ପୂଜାକରି ଏକାଗ୍ର ଚିତ୍ତରେ
ମନ୍ତ୍ର ଅଷ୍ଟୋତ୍ତର ଶତ ଜପିବ ବିଧିରେ ।
ଯଥା ବିଧାନରେ ସ୍ତବ ପାଠ ପ୍ରଦକ୍ଷିଣ
ପ୍ରାର୍ଥନା କରିବ ଭଗବାନଙ୍କ ଚରଣ ।
ଜଗନ୍ନାଥ ଆପଣ ତ ସର୍ବ ତୀର୍ଥମୟ
ସର୍ବ ତୀର୍ଥ ସୃଷ୍ଟିକର୍ତ୍ତା ସର୍ବଦେବମୟ ।
ଏ ତୀର୍ଥରାଜ ଜଳରେ କରୁଅଛି ସ୍ନାନ
କୃପା କରି ତୀର୍ଥଫଳ କରନ୍ତୁ ପ୍ରଦାନ ।
ଦ୍ରବରୂପୀ ତୀର୍ଥରାଜ ଅଟନ୍ତି ଆପଣ
ଏ କଥାରେ ସଂଶୟ ତ କିଛି ନାହିଁ ଜାଣ ।
ହେ ନାଥ ଆପଣଙ୍କର ଚରଣେ ପ୍ରଣାମ
ଏ ଘୋର ସଂସାର ତାପେ ହୋଇଛି ନିମଗ୍ନ ।
ହେ ଦୟାସାଗର ମୋତେ କର ପରିତ୍ରାଣ
ତୀର୍ଥରାଜ ଜଳେ ସ୍ନାନ କରେ ଯେଉଁ ଜନ ।
ଦେବ ନାରାୟଣଙ୍କୁ ଯେ କରଇ ଅର୍ଚ୍ଚନ
ସର୍ବ ତୀର୍ଥ ସ୍ନାନ ଫଳ ଲଭେ ସେହି ଜନ ।
କୋଟି କୋଟି ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ
କୋଟି କୋଟି ଗୋଦାନ ଯେ ବ୍ରାହ୍ମଣ ଭୋଜନ ।
କୋଟି କୋଟି ମହାଦାନେ ହୁଏ ଯେତେ ପୁଣ୍ୟ
ସେହି ଫଳ ତୀର୍ଥରାଜ ଜଳେ କଲେ ସ୍ନାନ ।
ସ୍ନାନ ଦେବପୂଜା ଶ୍ରାଦ୍ଧ ଜପ ଦାନ ଧ୍ୟାନ
ତପସ୍ୟାଦି ସିନ୍ଧୁତୀରେ କଲେ ଅନୁଷ୍ଠାନ ।
କୋଟି କୋଟି ପୁଣ୍ୟଫଳ ସେ ଜନ ଲଭଇ
ମନରେ ସଂଶୟ ଏକଥାରେ କର ନାହିଁ ।
ଏହିରୂପେ ବିଚାରନ୍ତି ମନେ ପିତୃଗଣ
ଆମ୍ଭର ବଂଶରେ କିଏ ହୋଇବ ଜନମ ।
ସ୍ନାନ କରି ସିନ୍ଧୁଜଳେ କରିବ ତର୍ପଣ
ଆମ୍ଭମାନଙ୍କର ତୃପ୍ତି କରିବ ପ୍ରଦାନ ।
ସିନ୍ଧୁସ୍ନାନ ଅର୍ଥେ କେହି କରିଲେ ଗମନ
ତା ଦେହେ ସକଳ ପାପ କରନ୍ତି ରୋଦନ ।
ସେ ଜନର ଅମଙ୍ଗଳ ଯେତେ ରହିଥାଏ
ସିନ୍ଧୁ ସ୍ନାନରେ ସକଳ ଦୂର ହୋଇଯାଏ ।
ଅନ୍ୟ ତୀର୍ଥେ କଲା ପାପ ସିନ୍ଧୁତୀରେ କ୍ଷୟ
ସିନ୍ଧୁତୀରେ କୃତପାପ ସେ ସ୍ଥାନେ ବିଲୟ ।
ପ୍ରତିଦିନ ସିନ୍ଧୁସ୍ନାନ କରେ ଯେଉଁ ଜନ
ତାକୁ ଦେଖିଲେ ପଳାନ୍ତି ଯମଦୂତ ଗଣ ।
ସିଂହକୁ ଦେଖିଲେ ମୃଗଯୂଥ ଯେଉଁପରି
ଦଶଦିଗେ ପଳାୟନ କରନ୍ତି ସେପରି ।
ଆଉ କି ଅଧିକ ଯମରାଜ ହୋଇ ଭୀତ
ସେ ଜନ ସମ୍ମୁଖେ ରହିବାକୁ ଅସମର୍ଥ ।
ମନେ ମନେ ତାହାକୁ ଯେ କରଇ ସମ୍ମାନ
ପ୍ରଣାମ କରିଣ ଦୂରେ କରେ ଅବସ୍ଥାନ ।
ଦେବଗଣ ସିନ୍ଧୁସ୍ନାନ କରିବା ନିମିତ୍ତ
ମାନବ ଦେହକୁ ଇଚ୍ଛା କରନ୍ତି ସତତ ।
ଭୂତଳେ ମନୁଷ୍ୟ ରୂପେ ହୋଇଲେ ଜନମ
ଶ୍ରଦ୍ଧାରେ କରିବୁ ଯାଇ ସିନ୍ଧୁଜଳେ ସ୍ନାନ ।
ମେରୁ ମନ୍ଦର ସଦୃଶ ହେଲେ ପାପମାନ
ସିନ୍ଧୁସ୍ନାନେ ତୃଣପରି ହୁଅଇ ଦହନ ।
ଅନ୍ୟସ୍ଥାନେ ଜଳେ ସ୍ନାନ କାଳରେ ସ୍ମରଣ
କରିବ ନିଶ୍ଚୟ ଦେବ ଦେବ ନାରାୟଣ ।
ବିଶେଷତଃ ସିନ୍ଧୁଜଳେ ସ୍ନାନ କଲାବେଳେ
ନାରାୟଣଙ୍କୁ ଅବଶ୍ୟ ଚିନ୍ତିବ ମନରେ ।
ଗୋ ବ୍ରାହ୍ମଣ ହତ୍ୟାକାରୀ ଅବା ମଦ୍ୟପାୟୀ
ପଞ୍ଚବିଧ ମହାପାପ ଯଦି କରିଥାଇ ।
ସେ ଜନ କରଇ ଯେତେ ସିନ୍ଧୁଜଳେ ସ୍ନାନ
ପାପରୁ ମୁକତ ହୁଏ ସନ୍ଦେହ ନ ମଣ ।
କୋଟିଏ କପିଳାଧେନୁ ଦାନେ ଯେତେ ଫଳ
ଏକମାତ୍ର ସିନ୍ଧୁସ୍ନାନ ସଙ୍ଗେ ନୁହେଁ ତୁଲ ।

Digitized by srujanika@gmail.com

ଯେ କରଇ ସିନ୍ଧୁଜଳେ ଏକବାର ସ୍ନାନ
କୋଟିଏ କୁଳ ଉଦ୍ଧାର କରେ ସେହି ଜନ ।
ସକଳ ତୀର୍ଥକୁ ଯାଇଁ ଯେ କରଇ ସ୍ନାନ
ସକଳ ପୀଠ ସ୍ଥାନରେ କରଇ ଦର୍ଶନ ।
ସେ ଜନର ଲାଭ ହୁଏ ଯେତେ ପୁଣ୍ୟ ଫଳ
ଏକମାତ୍ର ସିନ୍ଧୁ ସ୍ନାନ ସଙ୍ଗେ ନୁହେଁ ତୁଲ ।
ଜନମ ଜୀବନ ଆଉ ଶାସ୍ତ୍ର ଅଧ୍ୟୟନ
ସଫଳ ହେବାରୁ ଇଚ୍ଛା କରିବ ଯେ ଜନ ।
ଏକମାତ୍ର ସିନ୍ଧୁ ସ୍ନାନ କରି ସେହି ଜନ
ଦେବତା ପିତୃଗଣଙ୍କୁ କରିବ ତର୍ପଣ ।
ଷଡ଼ଙ୍ଗ ସହିତ ଚତୁର୍ବେଦ ଅଧ୍ୟୟନ
କରିବ ତପସ୍ୟା କୁରୁକ୍ଷେତ୍ରେ ଦେବ ଦାନ ।
ଚାନ୍ଦ୍ରାୟଣାଦି ସକଳ ବ୍ରତ ଅନୁଷ୍ଠାନ
ବହୁତ ଦକ୍ଷିଣା ଦେଇ ଯଜ୍ଞ ସମ୍ପାଦନ ।
ଏ ସକଳ ପୁଣ୍ୟକାର୍ଯ୍ୟ ହୁଅଇ ସୁଲଭ
ସିନ୍ଧୁରେ ତିଳ ତର୍ପଣ ପିତୃଙ୍କୁ ଦୁର୍ଲଭ ।
ଏକମାସ ସିନ୍ଧୁଜଳେ ସତିଳ ତର୍ପଣ
ପିଣ୍ଡଦାନ କଲେ ତୋଷ ହୋନ୍ତି ପିତୃଗଣ ।
ସୂର୍ଯ୍ୟ ତେଜ ସମରଥ କରି ଆରୋହଣ
ସହସା ବ୍ରହ୍ମ ଲୋକକୁ କରିବେ ଗମନ ।
ସିନ୍ଧୁ ସ୍ନାନ ପ୍ରଥମରେ ଆବର ଶେଷରେ
ନାରାୟଣଙ୍କୁ ଅର୍ଚ୍ଚନା କରିବେ ଭକ୍ତିରେ ।
ନିଶ୍ଚୟ ସେହି ମାନବ ମୁକତି ଲଭିବ
ସିନ୍ଧୁସ୍ନାନ ପରେ ଦେହ ପବିତ୍ର ହୋଇବ ।
ଶ୍ରୀ ଜଗନ୍ନାଥଙ୍କୁ ଯାଇଁ ଦର୍ଶନ କରିବ
ବଳରାମ ସୁଭଦ୍ରାଙ୍କ ଚରଣେ ନମିବ ।
ମନେ ମନେ ପ୍ରଭୁଙ୍କର ରୂପକୁ ଚିନ୍ତିବ
ବିଷମ ସଂସାର ସଙ୍କଟରୁ ପାରିହେବ ।
ସ୍କନ୍ଦ ପୁରାଣ ଉକତ ଉତ୍କଳ ଖଣ୍ଡରେ
ତ୍ରିଂଶ ଅଧ୍ୟାୟ ସମାପ୍ତ ଉତ୍କଳ ଭାଷାରେ ।
ଆହେ ପ୍ରଭୁ ନ କରିଲି ଦିନେ ତୀର୍ଥସ୍ନାନ
ଜାଣିନାହିଁ କେଉଁପରି ବ୍ରତର ବିଧାନ ।
ତବପଦେ ଶିରନତ ନୁହଇ ଭକ୍ତିରେ
ପାପକାର୍ଯ୍ୟେ ଶ୍ରଦ୍ଧା ଜାତ ହୁଅଇ ମନରେ ।
ଦିନେମାତ୍ର ଉଚ୍ଚାରଣ ନ କରିଲି ନାମ
ଜିହ୍ୱା ନ କରିଲା ଦିନେ ତୁବ ଗୁଣଗାନ ।
ଅନ୍ତର୍ଯାଗ କରିବାକୁ ନାହିଁ ଚିତ୍ତଶୁଦ୍ଧି
ବାହ୍ୟପୂଜା ଅର୍ଥେ ଆଉ ନିଶ୍ଚିନାହିଁ ବୁଦ୍ଧି ।
କିପରି କରିବି ପ୍ରତିଦିନ ଅର୍ଥାର୍ଜନ
ବ୍ରତ କରିଚି କେବଳ ଉଦର ପୋଷଣ ।
ମୋ ଉଦର ତୃପ୍ତି ହେଲେ ଜଗତର ତୃପ୍ତି
ଏହା ମନେ କରି ପାପ କାର୍ଯ୍ୟେ ସଦାମାତି ।
ଆହେ ପ୍ରଭୁ ତୁମ୍ଭେ ପରା ଜଗତର ନାଥ
ତୁମ୍ଭେ ଏକମାତ୍ର ନାଥ ମୁଁ କିମ୍ବା ଅନାଥ ।
ଅନାଥ ହେତୁ ନ କରେ ଭକ୍ତିରେ ପ୍ରଣାମ
ଦୀନ ହରିହର ଦୁଃଖ କରନ୍ତୁ ମୋଚନ ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳଖଣ୍ଡେ ପଞ୍ଚତୀର୍ଥ ବର୍ଣ୍ଣନା ପ୍ରସଙ୍ଗେ ସମୁଦ୍ରସ୍ନାନ-କିଞ୍ଚିତକଥନଂ ନାମ ତ୍ରିଂଶୋଽଧ୍ୟାୟଃ ।



## ଏକତ୍ରିଂଶ ଅଧ୍ୟାୟ

ଜୈମିନି ଗୁଣ କହନ୍ତି ଶୁଣ ମୁନିଗଣ
କୃତ କୃତ୍ୟ ହୋଇ ତହୁଁ କରିବ ପ୍ରସ୍ଥାନ ।
ଯେ ସ୍ଥାନେ ନୃସିଂହ ମୂର୍ତ୍ତି ଦେବ ଭଗବାନ
ସେହିସ୍ଥାନେ ଅଶ୍ୱମେଧ ଯାଗରୁ ଉତ୍ପନ୍ନ ।
ଇନ୍ଦ୍ରଦ୍ୟୁମ୍ନ ସରୋବର ଅଟେ ତାର ନାମ
ଶୁଦ୍ଧ ମନେ ସେହିସ୍ଥାନେ କରିବ ଗମନ ।
ନୃସିଂହ ଦେବଙ୍କଠାରୁ ଅନୁଜ୍ଞାଗ୍ରହଣ
କଲାପରେ ସରୋବରେ କରିବଟି ସ୍ନାନ ।
ହେ ନୃସିଂହ ! ଆପଣଙ୍କ ପଦେ ନମସ୍କାର
ଆପଣଙ୍କ କ୍ଷେତ୍ରେ ଇନ୍ଦ୍ରଦ୍ୟୁମ୍ନ ନୃପବର ।
ସହସ୍ରେ ଅଶ୍ୱମେଧ ଯଜ୍ଞ କଲେ ଅନୁଷ୍ଠାନ
ତାଙ୍କ ପ୍ରସାଦରେ ସେହି ଯାଗରୁ ଉତ୍ପନ୍ନ ।
ସରୋବର ତାର ଜଳେ କରିବାକୁ ସ୍ନାନ
ମାଗୁଅଛି ଅନୁମତି ଦିଅ ଭଗବାନ ।
ଅନନ୍ତର ସରୋବରେ କରିବ ଗମନ
ଶୌଚକ୍ରିୟା ଆଚମନ କରି ସମାପନ ।
ଦୁଇ କରଯୋଡ଼ି କରି ଏମନ୍ତ କହିବ
ବିନୟେ ସରୋବରକୁ ପ୍ରାର୍ଥନା କରିବ ।
ହେ ସରସି ! ଇନ୍ଦ୍ରଦ୍ୟୁମ୍ନ ଅଶ୍ୱମେଧ କଲେ
ଯାଗରେ କୋଟିଏ କୋଟି ଧେନୁ ଦାନ ଦେଲେ ।
ଧେନୁଙ୍କର ଖୁରାଘାତେ ଭୂତଳ ବିଦୀର୍ଣ୍ଣ
ତହିଁରୁ ଆପଣଙ୍କର ହୋଇଲା ଜନମ ।
ଧେନୁଗଣ ତ୍ୟାଗକଲେ ଯେଉଁ ମୂତ୍ରଫେନ
ସେ ଖାତ ଆପଣଙ୍କର ଜଳେ ହେଲା ପୂର୍ଣ୍ଣ ।
ତେଣୁ ପରମ ପବିତ୍ର ଅଟନ୍ତି ଆପଣ
ସେ ପବିତ୍ର ଜଳେ ସ୍ନାନ ଅର୍ଥେ ଆଗମନ ।
ଆପଣଙ୍କର ଜଳରେ କରୁଅଛି ସ୍ନାନ
ସହସ୍ର ଜନ୍ମର ପାପ କରନ୍ତୁ ମୋଚନ ।

Digitized by srujanika@gmail.com

ଅନନ୍ତର ଜଳମଧ୍ୟେ କରିବ ପ୍ରବେଶ
ପଞ୍ଚବରୁଣ ମନ୍ତ୍ରକୁ ପଢ଼ିବ ଅବଶ୍ୟ ।
ନାଭି ପରିମିତ ଜଳେ କରି ଅବସ୍ଥାନ
ତ୍ରିବାର ପଢ଼ିବ-ସୂକ୍ତ ଅଘ ମରଷଣ ।
ତତ୍ପରେ କରିବ ଏହି ମନ୍ତ୍ର ଉଚ୍ଚାରଣ
ହେ ଅଶ୍ୱମେଧ ସମ୍ଭୂତ ସର୍ବାଗ ନାଶନ ।
ତବଜଳେ ସ୍ନାନକରି ଯେପରି ମୋହର
କୋଟି କୋଟି ଜନ୍ମ ପାପ ହୋଇ ଯାଉ ଦୂର ।
ଏ ମନ୍ତ୍ରକୁ ତିନିବାର କରି ଉଚ୍ଚାରଣ
ତ୍ରିବାର କରିବ ସ୍ନାନ ଶିର ବୁଡ଼ାଇଣ ।
ବିଷ୍ଣୁ ଗାୟତ୍ରୀ ମନ୍ତ୍ରକୁ ଶକ୍ତି ଅନୁସାରେ
ଜପ କରିବ ନୃସିଂହ ଚିନ୍ତିଣ ମନରେ ।
ନରରୂପୀ ପରମାତ୍ମାଙ୍କର ପୁତ୍ରଜଳ
ଜଳକୁ କହନ୍ତି ନାର ବିବୁଧ ସକଳ ।
ସେହି ନାରଙ୍କର ଜଳ ହେବାରୁ ଅୟନ
ତାହାଙ୍କର ନାମ ହୋଇଅଛି ନାରାୟଣ ।
ଏ ହେତୁ ଜଳରେ ନାରାୟଣଙ୍କୁ ସ୍ମରଣ
ନିଶ୍ଚୟ କରିବ ଶୁଣିଥାଅ ମୁନିଗଣ ।
ଇନ୍ଦ୍ରଦ୍ୟୁମ୍ନ ସରୋବରେ କରିସାରି ସ୍ନାନ
ଦେବତା ଋଷି ପିତୃଙ୍କୁ କରିବ ତର୍ପଣ ।
ପଶ୍ଚିମ ମୁଖେ ନୃସିଂହ ଯହିଁ ଅବସ୍ଥିତ
ସେହି ସ୍ଥାନକୁ ଗମନ କରିବ ତୁରିତ ।
ଶିବ ଆଉ ନୃସିଂହଙ୍କୁ ପଶ୍ଚିମ ମୁଖରେ
ଶ୍ରଦ୍ଧାରେ ଯେଉଁ ମାନବ ଦରଶନ କରେ ।
କୋଟି କୋଟି ଜନ୍ମର ଯେ ପାପରାଶି ତାର
ସମୂଳେ ବିନାଶ ହୁଏ ସନ୍ଦେହ ନ କର ।
ଅନନ୍ତର ଅଥର୍ବଣ ମନ୍ତ୍ର କରି ନ୍ୟାସ
ନୃସିଂହ ଦେବଙ୍କୁ ପୂଜା କରିବ ଅବଶ୍ୟ ।
ଦେବର୍ଷି ନାରଦ ପୂର୍ବକାଳେ ଏହି ମନ୍ତ୍ର
ପ୍ରକାଶ କରିଲେ ଇନ୍ଦ୍ରଦ୍ୟୁମ୍ନଙ୍କ ଅଗ୍ରତ ।
ଇନ୍ଦ୍ରଦ୍ୟୁମ୍ନ ରାଜା ବହୁକାଳ ଏ ମନ୍ତ୍ରରେ
ଯଥାବିଧି ନୃସିଂହଙ୍କୁ ପୂଜା କରିଥିଲେ ।
ନୃସିଂହ ଦେବଙ୍କ ଉପାସନାର ନିମିତ୍ତ
ଏମନ୍ତ ସଦୃଶ ନାହିଁ ଆଉ ଅନ୍ୟମନ୍ତ୍ର ।
ଯେ ଜନ ଏ ମନ୍ତ୍ର କରେ ଥରେ ଉଚ୍ଚାରଣ
ଶ୍ରୀନୃସିଂହ ଦେବ ତାକୁ ହୁଅନ୍ତି ପ୍ରସନ୍ନ ।
ଦାରୁମୟୀ ମୂର୍ତ୍ତି ପ୍ରଭୁ ଜଗନ୍ନାଥଙ୍କର
ପ୍ରତିଷ୍ଠା କରିଲେ ଏହି ମନ୍ତ୍ରେ ବେଦବର ।
ପୂର୍ବପରି ନୃସିଂହଙ୍କୁ ଦେବ ଉପଚାର
ସୁଗନ୍ଧ ପୁଷ୍ପ ଅରୁଣବର୍ଣ୍ଣ ଜବା ଫୁଲ ।
କର୍ପୂର ଚୂର୍ଣ୍ଣ ମିଶ୍ରିତ ଅଗୁରୁ ଚନ୍ଦନ
ନୃସିଂହ ଦେବଙ୍କ ଅଙ୍ଗେ କରିବ ଲେପନ ।
ପାୟସ ସଙ୍ଗରେ ଖଣ୍ଡ ଗବ୍ୟ ଘୃତଦେଇ
ଘୃତପକ୍ୱ ମୋଦକରେ କର୍ପୂର ମିଶାଇ ।
ଘିଅପିଠା ଅଟକାଳି ଆଉ ଶାଳି ଅନ୍ନ
ଦଧିଖଣ୍ଡ ନାନାଫଳ କରିଣ ଅର୍ପଣ ।
ନୃସିଂହ ଦେବଙ୍କୁ ଯେବା କରେ ଦରଶନ
ସ୍ପର୍ଶକରି ପାଦପଦ୍ମ କରଇ ପ୍ରଣାମ ।
ସେ ଜନର ମନୋରଥ ସର୍ବ ହୁଏ ପୂର୍ଣ୍ଣ
ଦ୍ୱିଜଗଣ ଏକଥାରେ ସନ୍ଦେହ ନ ମଣ ।
ଆଉ କି ଅଧିକ ସେ ଜନର ଅଭିମତ
ଦେବତ୍ୱ ଇନ୍ଦ୍ରତ୍ୱ ଗନ୍ଧର୍ବତ୍ୱ ବା ଈଶିତ୍ୱ ।
ବଶିତ୍ୱ ସାର୍ବଭୌମତ୍ୱ ଯେ ଇଚ୍ଛା ମନର
ସେ ସକଳ ସିଦ୍ଧ ହୁଏ ସନ୍ଦେହ ନ କର ।
ଦ୍ୱିଜଗଣ ତୁମ୍ଭେ ସର୍ବେ କରିଲ ଶ୍ରବଣ
ବର୍ଣ୍ଣନା କରିଲି ପଞ୍ଚତୀର୍ଥର ବିଧାନ ।
ପଞ୍ଚତୀର୍ଥ ପାଞ୍ଚଦିନେ ଯେ ଜନ କରିବ
ସେ ଭକ୍ତ ଦେହ ଧାରଣ ଆଉ ନ କରିବ ।
ପାଞ୍ଚଦିନ ଯାଏ କରି ହବିଷ୍ୟ ଭୋଜନ
ଶୁଦ୍ଧାଚାରେ ଶ୍ରୀହରିଙ୍କୁ କରିବ ସ୍ମରଣ ।
ପୂର୍ଣ୍ଣିମା ପ୍ରଭାତେ ସମୁଦ୍ରରେ କରି ସ୍ନାନ
ମନ୍ଦିରେ ଯାଇ ପ୍ରଭୁଙ୍କୁ କରିବ ଦର୍ଶନ ।
ସ୍ନାନ ମଞ୍ଚରେ ବିଜୟେ ଶ୍ରୀ ପୁରୁଷୋତ୍ତମ
ବଳଭଦ୍ର ସୁଭଦ୍ରାଙ୍କୁ କରିବ ପ୍ରଣାମ ।
ସକଳ ପାପରୁ ମୁକ୍ତ ହୁଏ ସେହି ଜନ
ଶ୍ରଦ୍ଧା ଭକତିରେ ଜ୍ୟେଷ୍ଠ ପୌର୍ଣ୍ଣମାସୀ ଦିନ ।
ସର୍ବ ତୀର୍ଥମୟ ସ୍ୱର୍ଣ୍ଣ କୂପର ଜଳରେ
ଭଗବାନଙ୍କର ସ୍ନାନ ଯେ ଦର୍ଶନ କରେ ।
ତାହାର ଦେହରେ ଆଉ କୌଣସି ପ୍ରକାର
ପାପ ନ ରହିବ ଏବେ ସନ୍ଦେହ ନ କର ।
ମୁନିଗଣ ଧୀର ଚିତ୍ତେ କରନ୍ତୁ ଶ୍ରବଣ
ସ୍ନାନଯାତ୍ରାର ବିଧାନ କରିବୁ ବର୍ଣ୍ଣନ ।
ତୃଣକାଷ୍ଠେ ସ୍ନାନ ମଞ୍ଚ କରିବ ନିର୍ମାଣ
ତହିଁରେ ଚୂର୍ଣ୍ଣ ଲେପିବ ଚତୁର୍ଦ୍ଦଶୀ ଦିନ ।
ଅବା ଚିରସ୍ଥାୟୀ ମଞ୍ଚ କରି ପାଷାଣରେ
ବିତ୍ତ ଶାଠ୍ୟ ନ କରିବେ କଦାପି ଏଥିରେ ।
ବହୁ ବୃକ୍ଷ ସୁଶୀତଳ ଦକ୍ଷିଣା ପବନ
ନୂତନ ହରିତ ବର୍ଣ୍ଣ ଦୁର୍ବାଦଳେ ପୂର୍ଣ୍ଣ ।
ସମୁଦ୍ର ତରଙ୍ଗ ନୃତ୍ୟ କରୁଥିବ ଯହିଁ
ନିର୍ମାଣ କରିବ ସ୍ନାନ ମଞ୍ଚକୁ ଯେ ତହିଁ ।

Digitized by srujanika@gmail.com

ଚତୁଃପାର୍ଶ୍ୱ ମହାମୂଲ୍ୟ ବସ୍ତ୍ରେ ଆଚ୍ଛାଦନ
ଅତି ଉଚ୍ଚେ ଚନ୍ଦ୍ରାତପ କରିବ ବନ୍ଧନ ।
ଦେବଗଣ ସେହିସ୍ଥାନେ କରି ଅବସ୍ଥାନ
ଭଗବାନଙ୍କର ସ୍ନାନ କରିବେ ଦର୍ଶନ ।
ଶ୍ରୀପୁରୁଷୋତ୍ତମ ସ୍ନାନ କରିବା ନିମିତ୍ତ
ସୁବାସିତ ପାରିଜାତ କୁସୁମ ମିଶ୍ରିତ ।
ସ୍ୱର୍ଗ ଗଙ୍ଗା ଜଳ ଘେନି ସର୍ବ ଦେବଗଣ
ବ୍ରହ୍ମାଙ୍କର ସଙ୍ଗତରେ ଆସନ୍ତି ସେଦିନ ।
ବିଧାତାଙ୍କ ଆଦେଶରେ ସେ ମଞ୍ଚ ଉପରେ
ଶ୍ରୀ ଜଗନ୍ନାଥଙ୍କୁ ସ୍ନାନ କରାନ୍ତି ଭକ୍ତିରେ ।
ନାନାବିଧ ସ୍ତୁତିକରି ପ୍ରଭୁଙ୍କ ଚରଣ
ବନ୍ଦନା କରନ୍ତି ଜୟ ଶବ୍ଦ ଉଚ୍ଚାରଣ ।
ଏ ନିମନ୍ତେ ଭଗବାନଙ୍କର ସ୍ନାନ ମଞ୍ଚ
ମାଲ୍ୟ ଚାମର ପତାକା ତୋରଣେ ସୁପଞ୍ଚ ।
ନାନାବିଧ ମଣିମୁକ୍ତା ତହିଁରେ ଖଞ୍ଜିବ
ସୁଗନ୍ଧ ଚନ୍ଦନ ଜଳ ଉପରେ ସିଞ୍ଚିବ ।
ସୁଗନ୍ଧ ଗୁଗ୍‌ଗୁଳ ଧୂପଦ୍ୱାରା ଆମୋଦିତ
ସ୍ନାନ ମଞ୍ଚକୁ କରିବ ଏ ରୂପେ ପ୍ରସ୍ତୁତ ।
ମଞ୍ଚର ଦକ୍ଷିଣ ଦିଗ କୂପୁ ଆଣି ଜଳ
ସୁଗନ୍ଧ ଦ୍ରବ୍ୟ କ୍ଷେଣ କରିବ କେବଳ ।
ପାବମାନୀ ସୂକ୍ତ ପଢ଼ି ସ୍ୱର୍ଣ୍ଣ କଳସରେ
ପୂର୍ଣ୍ଣ କରିଣ ରଖିବ ମନ୍ଦିର ମଧ୍ୟରେ ।
ଚତୁର୍ଦ୍ଦଶୀ ରାତ୍ରେ ଶାସ୍ତ୍ର ବିଧି ଅନୁସାରେ
ଏ ସକଳ ସମ୍ପାଦନ କରିଣ ଶ୍ରଦ୍ଧାରେ ।
ଅନନ୍ତର ହରିବୋଲ ଧ୍ୱନି କରି ଉଚ୍ଚେ
ଠାକୁରମାନଙ୍କୁ ନେଇଯିବ ସ୍ନାନ ମଞ୍ଚେ ।
ଯେଉଁମାନେ ରାଜାଙ୍କର ସମ୍ମାନ ଭାଜନ
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଏହି ତିନିବର୍ଣ୍ଣ ।
ଚାମର ଆଲଟମାନ ଧରିଣ ହସ୍ତରେ
ଭଗବାନଙ୍କୁ ବ୍ୟଞ୍ଜନ କରିବେ ଭକ୍ତିରେ ।
ଠାକୁରଙ୍କ ଦେହେ ଥିବା ଲେପନ ଚନ୍ଦନ
କାଢ଼ିବ ନାହିଁ କଦାପି ପୂର୍ବ ଆଭରଣ ।
ଯେପରି ସୁଗନ୍ଧ ଦ୍ରବ୍ୟେ ପୃଷ୍ଟ ଥିଲା ଅଙ୍ଗ
ସେହିପରି ରଖିବ ତ ନ କରି କୃଶାଙ୍ଗ ।
କୃଶାଙ୍ଗ ଯେ ଦେବମୂର୍ତ୍ତି ମଙ୍ଗଳ ବିଧିରେ
ସାବଧାନେ ନେବ ସ୍ନାନ ମଞ୍ଚର ଉପରେ ।
ସୁଭଦ୍ରା ଦେବୀ ବା ଜଗନ୍ନାଥ ବଳରାମ
ଅସାବଧାନତା ଦୋଷେ ହୋଇଲେ ପତନ ।
ଏହା ହେଲେ ରାଜାର ବା ରାଜ୍ୟେ ଅମଙ୍ଗଳ
ଯା ହସ୍ତୁ ଖସିବେ ତାର ନୋହିବ କୁଶଳ ।

ବହୁ ଦୁଃଖ ଭାଗୀ ହେବେ ତାହାଙ୍କର ବଂଶ
ଅଧିକ କି ତାହାଙ୍କର ନରକେ ନିବାସ ।
ଯେଉଁମାନେ ଅଜ୍ଞାନରେ ଅଥବା ମୋହରେ
ଅବିଶ୍ୱାସ କରନ୍ତି ଯେ ପ୍ରଭୁଙ୍କୁ ମନରେ ।
ଏ ପ୍ରତିମା ଦାରୁମୟୀ ଥିବ କେତେକାଳ
ବିଷ୍ଣୁଦ୍ରୋହୀ ହୁଅନ୍ତି ଯେ ସେ ବ୍ୟକ୍ତି ସକଳ ।
ସର୍ବଧର୍ମ କର୍ମରୁ ଯେ ହୁଅନ୍ତି ବାହାର
ନରକେ ବାସ କରନ୍ତି ଏକଥା ନିକର ।
ଧର୍ମ କାର୍ଯ୍ୟ ବିଷୟରେ ଯାର ଅବିଶ୍ୱାସ
ତାଦୃଶ ଯୁକ୍ତି ସକଳ ମନରୁ ପ୍ରକାଶ ।
ଯାହାର ଅଦୃଷ୍ଟ ଯେଉଁପରି ହୋଇଥାଏ
ସେହିପରି ଭାବ ତାର ମନରୁ ଉଦୟେ ।
ଯାହାର ଅଦୃଶ କ୍ଷୟ ହେଲେ ତାହାରି ମନରେ
ଏ କାଷ୍ଠ ପ୍ରତିମା ବୁଦ୍ଧି ଦୂର ହୋଇପାରେ ।
ପ୍ରକୃତରେ ଏହା କାଷ୍ଠ ପ୍ରତିମା ନୁହଇ
ନର ଦେହରେ ନିର୍ମାଣ କେହି କରିନାହିଁ ।
ସେ ପ୍ରଭୁ ନିଜକୁ ନିଜେ କରିଣ ନିର୍ମାଣ
ଭକ୍ତକୁ କରୁଅଛନ୍ତି ଅଭୟ ପ୍ରଦାନ ।
କଦାଚ ପ୍ରତିମା ବୋଲି ନ କର ବିଚାର
ଆଉ ତ ଏକ କାରଣ ଅଛି ଯେ ଏହାର ।
କେତେକାଳରୁ ପ୍ରତିମା ହୋଇଛି ନିର୍ମିତ
କେତେଦିନ ମନ୍ୱନ୍ତର ହେଲାଣି ଅତୀତ ।
ଦେବଗଣ ମର୍ତ୍ତ୍ୟବାସୀ ଜନଗଣଙ୍କର
ସେ ପ୍ରଭୁଙ୍କ ପ୍ରତି ଭକ୍ତି ସମାନ ପ୍ରକାର ।
କେହି ମନୁଷ୍ୟ ନିର୍ମାଣ ଯଦି କରିଥାନ୍ତା
ଏତେକାଳଯାଏ ଭକ୍ତି ସମାନ ନ ଥାନ୍ତା ।
ଏହାର ମହିମା ପୂର୍ବକାଳୁ ରହିଅଛି
ମୁନିଗଣ ସେହିକଥା ଏଠାରେ କହୁଛି ।
ସ୍ୱାରୋଚିଷ ମନୁଙ୍କର ଅଧିକାର କାଳେ
କୃପାନିଧି ଜଗନ୍ନାଥ ଆବିର୍ଭୂତ ହେଲେ ।
ବୈବସ୍ୱତ ମନୁରାଜ ଯେତେବେଳେ ହେଲେ
ଚତୁର୍ଯୁଗେ ସପ୍ତବିଂଶ ଦ୍ୱାପର ଶେଷରେ ।
ଅର୍ଜୁନଙ୍କୁ ସଙ୍ଗେ ଘେନି ବସୁଦେବସୁତ
ପୁରୁଷୋତ୍ତମ କ୍ଷେତ୍ରରେ ହେଲେ ଉପସ୍ଥିତ ।
ସେ ସ୍ଥାନରେ ତିନିଦିନ କଲେ ଅବସ୍ଥାନ
ଯଥାବିଧି ତୀର୍ଥବ୍ରତ କରିଲେ ପାଳନ ।
ଶ୍ରୀ ଜଗନ୍ନାଥଙ୍କୁ କରି ଅର୍ଚ୍ଚନ ବନ୍ଦନ
ପୁନର୍ବାର ଦ୍ୱାରକାକୁ କରିଲେ ଗମନ ।
ଆଧୁନିକ ଯୁଗର ଏ ମାନବ ସକଳ
ଜାଣି ନାହାନ୍ତି ପ୍ରକୃତ ତତ୍ତ୍ୱ ପ୍ରଭୁଙ୍କର ।

Digitized by srujanika@gmail.com

ବେଦ ରକ୍ଷାଅର୍ଥେ ଯୁଗେଯୁଗେ ଭଗବାନ
ନାନା ଅବତାରେ ଦେହ କରନ୍ତି ଧାରଣ ।
ପୂର୍ବକାଳ କଥା ଦାରୁରୂପେ ଭଗବାନ
ପୁରୁଷୋତ୍ତମ କ୍ଷେତ୍ରରେ ହେଲେ ଅବତୀର୍ଣ୍ଣ ।
ତାହାଙ୍କୁ ଚତୁରାନନ ପ୍ରତିଷ୍ଠା କରିଲେ
ଏ ସ୍ଥାନେ ପରାର୍ଦ୍ଧକାଳ ରହିବ ବୋଇଲେ ।
ବ୍ରହ୍ମାଙ୍କର ପ୍ରାର୍ଥନାରେ ପ୍ରଭୁ ଭଗବାନ
ସ୍ୱୀକାର କଲେ ରହିବୁ ଆମ୍ଭେ ଏହିସ୍ଥାନ ।
ଯେ ଜନ ଶୁଦ୍ଧ ଚିତ୍ତରେ ପ୍ରଭୁଙ୍କୁ ଭାବନ୍ତି
ତାହାଙ୍କୁ ଅଭୀଷ୍ଟ ବର ଏ ପ୍ରଭୁ ଦିଅନ୍ତି ।
ପ୍ରଭୁଙ୍କ ପ୍ରତି ଯାହାର ବିଶ୍ୱାସ ଯେ ରୂପ
ତାର ମନୋରଥ ପୂର୍ଣ୍ଣ ହୁଏ ସେହିରୂପ ।
ଯେଉଁଜନ ସର୍ବଦୋଷ ଶୂନ୍ୟ ସ୍ଥିର ଚିତ୍ତ
ଅଟଳ ବିଶ୍ୱାସୀ ଆଉ ଅଟେ ବିଷ୍ଣୁଭକ୍ତ ।
ଜଗନ୍ନାଥ ପ୍ରଭୁଙ୍କର ନିକଟରୁ ସେହି
ଇଚ୍ଛା ଅନୁରୂପ ଫଳ ଲାଭ କରିଥାଇ ।
ଅମ୍ବରୀଷ ଯେଉଁରୂପେ ସଂସାରୁ ମୁକତ
ବିସ୍ତୃତ କରି ବୁଝାଇ କହିଛୁ ସମସ୍ତ ।
ପରଂବ୍ରହ୍ମ ରୂପ ଜଗନ୍ନାଥଙ୍କର ପ୍ରତି
ସର୍ବଦା ରଖିବ ମନେ ଅଚଳା ଭକତି ।
ପୁରୁଷୋତ୍ତମ କ୍ଷେତ୍ରରେ କରି ଅବସ୍ଥାନ
ପ୍ରଭୁଙ୍କୁ ମନରେ ଚିନ୍ତା କର ଋଷିଗଣ ।
ବଳରାମ ସୁଭଦ୍ରା ଯେ ଦେବ ଜଗନ୍ନାଥ
ଏହାଙ୍କୁ ଘେନି ଆସିବ ସ୍ନାନର ନିମିତ୍ତ ।
ରାଜ ସେବାପରି ସେବା କରିବ ବିଧିରେ
ଅତିଯତ୍ନେ ଭକତିରେ ସ୍ନାନ ମଞ୍ଚପରେ ।
ଯେବେଳେ ମଞ୍ଚକୁ ଯିବେ ପ୍ରଭୁ ଭଗବାନ
ସେତେବେଳେ ଶିରେ ଛତ୍ର କରିବ ଧାରଣ ।
ଅଗୁରୁ ଧୂପରେ ଦିଗକରି ଆମୋଦିତ
ନାନା ବାଦ୍ୟ ଧ୍ୱନି ଆକାଶରେ ହେବ ବ୍ୟାପ୍ତ ।
ଦୀପାବଳୀ ଆଲୋକରେ ଅନ୍ଧକାର ଦୂର
ପ୍ରଭୁଙ୍କର ଚାରିପାଶେ ଢାଳିବ ଚାମର ।
ସେ ସମୟେ ନୃତ୍ୟ ଗୀତମାନ ହେଉଥିବ
ଦେଖିଲେ ଦର୍ଶକ ମନ ମୁଗ୍ଧ ହୋଇଯିବ ।
ଗମନ କାଳରେ କାଳେ ଅନିଷ୍ଟ ଘଟିବ
ଆଶଙ୍କାରେ ପ୍ରଭୁଙ୍କର ଅଙ୍ଗ ଆଚ୍ଛାଦିବ ।
ଦୂରବର୍ତ୍ତୀ ସ୍ନାନମଞ୍ଚେ ଗମନ ବେଳରେ
ଊର୍ଦ୍ଧ୍ୱ ମୁଖରେ ପ୍ରଭୁଙ୍କୁ ଦେଖିବେ ସକଳେ ।
ସ୍ୱର୍ଗେ ଥାଇ ମନେ ବିଚାରନ୍ତି ଦେବଗଣ
କରିବେ କି ପ୍ରଭୁ ସ୍ୱର୍ଗ ଧାମେ ଆଗମନ ।
ତେଣୁ ଊର୍ଦ୍ଧ୍ୱ ଦୃଷ୍ଟିରେ ତ ସ୍ୱର୍ଗକୁ ଚାହାଁନ୍ତି
ଜୟ ରାମ ଜୟକୃଷ୍ଣ ମୁଖେ ଉଚ୍ଚାରନ୍ତି ।
ବ୍ରାହ୍ମଣାଦି ବର୍ଣ୍ଣତ୍ରୟ ନିଶୀଥ କାଳରେ
ପ୍ରଭୁଙ୍କୁ ସ୍ନାନ ମଞ୍ଚକୁ ନେଇଯିବା ବେଳେ ।
ଦେବଗଣ ଜୟଧ୍ୱନି ସ୍ୱର୍ଗରେ କରନ୍ତି
ଅତି ଆନନ୍ଦେ ଦୁନ୍ଦୁଭି ବାଦ୍ୟକୁ ବଜାନ୍ତି ।
ଏକୁ ଏକ ଆଗଭର ହୋଇ ଦେବଗଣ
ଜୟ ଶବ୍ଦ କୋଳାହଳେ କମ୍ପାନ୍ତି ଗଗନ ।
ପ୍ରଭୁଙ୍କୁ ସ୍ନାନ ମଞ୍ଚରେ ଆଣି ବସାଇବ
ମୁଖ ବ୍ୟତୀତ ସର୍ବାଙ୍ଗ ବସ୍ତ୍ରେ ଆଚ୍ଛାଦିତ ।
ନୈବେଦ୍ୟ ଭିନ୍ନ ସକଳ ଉପଚାରମାନ
ଆନନ୍ଦ ଚିତ୍ତେ ପ୍ରଭୁଙ୍କୁ କରିବ ଅର୍ପଣ ।
ଶାନ୍ତି ପାଠ କରି ଅଧିବାସ କଳଶରେ
ଅଭିଷେକ କରାଇବ ବୈଦିକ ମନ୍ତ୍ରରେ ।
ସମୁଦ୍ର ଜ୍ୟେଷ୍ଠା ଏ ମନ୍ତ୍ର କରି ଉଚ୍ଚାରଣ
କୃତାର୍ଥ ହେବେ ଦର୍ଶକ ଅଭିଷେକ୍ତାଗଣ ।
ସଂକଳ୍ପ ପୂର୍ବକ ବ୍ରତ କରି ଅନୁଷ୍ଠାନ
ସ୍ନାନ କାଳରେ ପ୍ରଭୁଙ୍କୁ ଯେ କରେ ଦର୍ଶନ ।
ଜ୍ଞାନରେ ହେଉ ବା ଆଉ ଅଜ୍ଞାନରେ ହେଉ
ଯେତେପାପ ଏ ସଂସାରେ ସଞ୍ଚି ରଖିଥାଉ ।
ସେ ଯଦି କରଇ ସ୍ନାନ ମଞ୍ଚେ ଦରଶନ
ତାହାର ସକଳ ପାପ ହୁଅଇ ଦହନ ।
ଜନନୀର ଗର୍ଭଜଳେ ସେ ନକରେ ସ୍ନାନ
ଏକଥା ନିଶ୍ଚୟ ଶୁଣିଥାଅ ଋଷିଗଣ ।
ଜ୍ୟେଷ୍ଠା ସ୍ନାନ ଦେଖିବାକୁ ଯେ ଆସେ ବହନ
ତାହାର ନ ହୁଏ ଭବ ସାଗରେ ମଗନ ।
ଜ୍ୟେଷ୍ଠ ପୂର୍ଣ୍ଣିମା ତିଥିରେ ଯେ ଜନ ଭକ୍ତିରେ
ଶ୍ରୀ ଜଗନ୍ନାଥଙ୍କୁ ସ୍ନାନ ଦରଶନ କରେ ।
ଶାନ୍ତି ହୋଇଯାଏ ତାର ମନର ଯେ ତାପ
ଦୂର ହୋଇ ରହେ ଦେହେ ଥାଏ ଯେତେ ପାପ ।
ପ୍ରାୟଶ୍ଚିତ ଯୋଗ୍ୟ ପାପ ଯଦ୍ୟପି ତାହାର
ସ୍ନାନ ଯାତ୍ରା ଦର୍ଶନରେ ହୋଇଯାଏ ଦୂର ।
ଏହି ହେତୁ ଜ୍ୟେଷ୍ଠ ମାସେ ଜନ୍ମ ଦିନେ ସ୍ନାନ
ଦର୍ଶନ ଅପେକ୍ଷା ଆଉ ନାହିଁ ପୁଣ୍ୟ କର୍ମ ।
ସ୍ନାନ ଶ୍ରାଦ୍ଧ ତପ ଯଜ୍ଞ ଜପ ଆଉ ଦାନ
କୋଟିଗୁଣେ କୋଟି ଜନ୍ମେ କଲେ ଅନୁଷ୍ଠାନ ।
ହରିଙ୍କର ସ୍ନାନ ଯାତ୍ରା ଦର୍ଶନ ସମାନ
କଦାପି ନ ହୁଏ ଶୁଣିଥାଅ ଋଷିଗଣ ।
ଅଭାବ ପକ୍ଷେ ଯେ ଜନ ଭକ୍ତି ସହିତରେ
ଥରେ ମାତ୍ର ସ୍ନାନଯାତ୍ରା ଦରଶନ କରେ ।

Digitized by srujanika@gmail.com

ମୋକ୍ଷଲାଭ କରିବାକୁ କିମ୍ପାଇ ସେ ଜନ
ଶୋକ କରିବ ଏଥିରେ ସନ୍ଦେହ ନ ମଣ ।
ଆଉ କି ଅଧିକ ଶୁଣ ସର୍ବଋଷିଗଣ
ଯେଉଁଜନ ନିତ୍ୟ କରେ ଯଜ୍ଞ ଅନୁଷ୍ଠାନ ।
କୋଟି କୋଟି ମହାଦାନ ବ୍ରାହ୍ମଣ ଭୋଜନ
ଗୟାତୀର୍ଥେ କୋଟିବାର କରେ ପିଣ୍ଡ ଦାନ ।
ପୁଣ୍ୟକାଳେ ତୀର୍ଥାଦିରେ ତପସ୍ୟା କରଇ
ସ୍ନାନଯୋଗେ କୋଟିତୀର୍ଥେ ସ୍ନାନ କରେ ଯାଇ ।
ସେ ଜନ ଲାଭ କରଇ ଯେତେ ପୁଣ୍ୟଫଳ
ସ୍ନାନ ଯାତ୍ରା ଦର୍ଶନରେ ସଙ୍ଗେ ନୁହେ ତୁଲ ।
ତ୍ରିବାର ସତ୍ୟ କରିଣ କହୁଛି ବଚନ
ମନ ସ୍ଥିର କରି ଶୁଣ ସର୍ବ ମୁନିଗଣ ।
ଯେ ଜନ ସ୍ନାନ ମଞ୍ଚରେ ଦର୍ଶନ କରଇ
କେଉଁ ଶାସ୍ତ୍ରେ ତାହାଠାରୁ ପୁଣ୍ୟ କର୍ମ ନାହିଁ ।
ସ୍ନାନ ମଞ୍ଚେ ଶ୍ରୀପତିଙ୍କୁ କରିଲେ ଦର୍ଶନ
ତୀର୍ଥ ସ୍ନାନଠାରୁ ଶତଗୁଣେ ହୁଏ ପୁଣ୍ୟ ।
ଏ କଥାରେ ସଂଶୟ ତ କିଛିମାତ୍ର ନାହିଁ
ନିଶ୍ଚୟ କରି କହୁଛି ପ୍ରମାଣ ଅଟଇ ।
ସ୍ନାନ କଲେ ଆର୍ଦ୍ରଥିବେ ପ୍ରଭୁ ଯେତେବେଳ
ସେ କାଳରେ ଯେ ମାନବ ଦରଶନ କରେ ।
ଆନନ୍ଦରେ ପୂର୍ଣ୍ଣ ହୋଇଯାଏ ତାର ଚିତ୍ତ
କୌଣସି ରୂପେ ପାପରେ ନ ହୁଏ ସେ ଲିପ୍ତ ।
ସ୍ନାନ ଯାତ୍ରା ଅର୍ଥେ ପଞ୍ଚ ତୀର୍ଥର ବିଧାନ
ପୂର୍ବେ କହିଅଛୁ ତାହା କରିଛ ଶ୍ରବଣ ।
କେବଳ ସ୍ନାନ ମଞ୍ଚରେ କଲେ ଦରଶନ
ସେ ସକଳ ଫଳ ଲାଭ ହୁଏ ଋଷିଗଣ ।
ଏକ ଜଗନ୍ନାଥ ତିନିମୂର୍ତ୍ତି ହୋଇଛନ୍ତି
ନୀଳସୁନ୍ଦର ପର୍ବତେ ବିଜେ କରିଛନ୍ତି ।
ଏକ ଦେବଙ୍କର ସ୍ନାନ କଲେ ଦରଶନ
ଇହଲୋକେ ଯାବତୀୟ ସୁଖ ଲଭେ ଜନ ।
ଶେଷରେ ମୋକ୍ଷ ପଦରେ ହୁଏ ଅଧିକାରୀ
ମଞ୍ଚ ସ୍ନାନର ବିଧାନ କହିଲୁ ବିସ୍ତାରି ।
ସ୍ନାନ କାଳେ ଯେଉଁଜନ କରେ ଉଚ୍ଚାରଣ
ହେ କୃଷ୍ଣ ହେ ଜଗନ୍ନାଥ ଜୟ ବଳରାମ ।
ହେ ସୁଭଦ୍ରେ ଜୟ ହେଉ ଏକଥା ବୋଲଇ
ମୁକ୍ତିଲାଭ କରେ ସେହି ସନ୍ଦେହ ତ ନାହିଁ ।
ସ୍ନାନ ଅର୍ଥେ ଅଧିବାସ ଆଦି କାର୍ଯ୍ୟମାନ
ସମ୍ପାଦନ କରିଥାନ୍ତି ସେବାକାରୀ ଜନ ।
ସେମାନଙ୍କୁ ପ୍ରତ୍ୟକ୍ଷରେ ପୃଥକ ଭାବରେ
ଦକ୍ଷିଣା ଦେବ ନିଜର ଶକ୍ତି ଅନୁସାରେ ।
ସେ ସ୍ଥାନରେ ରହିଥିବେ ଆଉ ଯେ ବ୍ରାହ୍ମଣ
ତାହାଙ୍କୁ ବସ୍ତ୍ରାଳଙ୍କାର ଦେବ ମିଷ୍ଟ ଅନ୍ନ ।
ଅନାଥ ଦରିଦ୍ରଜନ ଥିବେ ସେ ସ୍ଥାନରେ
ମିଷ୍ଟାନ୍ନେ ସନ୍ତୁଷ୍ଟ ତାଙ୍କୁ କରିବ ଶ୍ରଦ୍ଧାରେ ।
ଭଗବାନଙ୍କର ସ୍ନାନ ଦେଖିବା ନିମିତ୍ତ
ଯେଉଁମାନେ ଆସିଥାନ୍ତି ସେତ ଜୀବନ୍ମୁକ୍ତ ।
ସେମାନଙ୍କୁ ରାଜା ଦେବେ ବିଧିରେ ସମ୍ମାନ
ସେଥିରେ ସନ୍ତୋଷ ହେବେ ପ୍ରଭୁ ଭଗବାନ ।
ନାରୀ ବା ପୁରୁଷ ଭଦ୍ରାସନେ ବସି କରି
ପ୍ରଭୁଙ୍କର ସ୍ନାନଶେଷ ଜଳେ ସ୍ନାନ କରି ।
ତାହାଙ୍କର ଲାଭ ହୋଇଥାଏ ଯେତେ ପୁଣ୍ୟ
ଶ୍ରବଣ କରନ୍ତୁ ତାହା ଆହେ ମୁନିଗଣ ।
ଚିର ରୋଗୀ ହୋଇଥିଲେ ଆରୋଗ୍ୟ ସେ ହୁଏ
ତାର ଅପମୃତ ଯୋଗ ଦୂର ହୋଇଯାଏ ।
ପୁତ୍ରହୀନା ମୃତବତ୍ସା ବନ୍ଧ୍ୟା ନାରୀଗଣ
ସ୍ନାନ କଲେ ସ୍ନାନୋଦକ ଲଭନ୍ତି ନନ୍ଦନ ।
ନିର୍ଦ୍ଧନ ଲଭଇ ଧନ ଯଦି କରେ ସ୍ନାନ
ଗର୍ଭବତୀ ନାରୀ ଲଭେ ଦୀର୍ଘାୟୁ ସନ୍ତାନ ।
ଗଙ୍ଗାଦି ସକଳ ତୀର୍ଥ ସ୍ନାନେ ଯେତେ ପୁଣ୍ୟ
ତାହା ଲାଭ ହୁଏ ସ୍ନାନୋଦକେ କଲେ ସ୍ନାନ ।
କୁଷ୍ଠରୋଗୀ ପ୍ରଭୁଙ୍କର ସ୍ନାନ ଶେଷ ଜଳେ
ନିଜର ସକଳ ଅଙ୍ଗ ଯଦି ସିକ୍ତ କରେ ।
ସକଳ ରୋଗ ବିନାଶ ହୁଅଇ ତାହାର
ସେ ଜଳେ ହୁଅଇ ବକ୍ତା ଶାସ୍ତ୍ରେ ଧୁରନ୍ଧର ।
ଭଗବାନଙ୍କର ସ୍ନାନୋଦକରୁ ଅଧିକ
ପବିତ୍ର ହୁଅଇ ସ୍ୱର୍ଗ ଗଙ୍ଗାର ଉଦକ ।
ବିଷ୍ଣୁଙ୍କର ସ୍ନାନୋଦକେ ଯେ କରଇ ସ୍ନାନ
ତାହାର ସର୍କଳ ମନୋରଥ ହୁଏ ପୂର୍ଣ୍ଣ ।
ଧାର୍ମିକ ବ୍ୟକ୍ତି ପ୍ରଭୁଙ୍କ ସ୍ନାନ ଶେଷ ଜଳେ
ସ୍ନାନ କରେ ମଞ୍ଚସ୍ନାନ ଦରଶନ କରେ ।
ସେହି ଜନ ଯେତେ ପୁଣ୍ୟ ଫଳ ଲାଭ କରେ
ତାହାକି ଘଟିବ ଅଧାର୍ମିକର ଭାଗ୍ୟରେ ।
ସ୍କନ୍ଦ ପୁରାଣେ ଉକତ ଉକ୍ରଳ ଖଣ୍ଡରେ
ଏକତ୍ରିଂଶ ଛାନ୍ଦ ଶେଷ ଉକ୍ରଳ ଭାଷାରେ ।
ବ୍ରାହ୍ମଣ ବଂଶରେ ପ୍ରଭୁ ହୋଇଲି ଜନମ
ନ ଜାଣଇ ସ୍ନାନ ସନ୍ଧ୍ୟା ଜପ ତରପଣ ।
ପୂଜା ଅର୍ଥେ ପୁଷ୍ପ ଆଦି ନ କରେ ଚୟନ
ସଜାଡ଼ି ନାହିଁ ତ ଦିନେ ଉପଚାର ମାନ ।
ତୀର୍ଥ ସ୍ନାନ ବ୍ରତ ତପସ୍ୟାରେ ନାହିଁ ମନ
କିପରି କରିବି ନିତି ଅର୍ଥ ଉପାର୍ଜନ ।

Digitized by srujanika@gmail.com

ଅସତ୍ୟକୁ ସତ୍ୟ ବୋଲି ବିଚାରେ ମନରେ
କେବଳ ଉଦର ସେବା କରେ ତ୍ରିକାଳରେ ।
ବ୍ରହ୍ମକୁ ଚିହ୍ନିଲେ ସିନା ହୁଅନ୍ତି ବ୍ରାହ୍ମଣ
ଶବ୍ଦରୂପ ନାମ ଏହି ଭେଦ ବିଦ୍ୟମାନ ।
ଭେଦ ବୁଦ୍ଧିରେ ଜଗତେ କରେ ବିଚରଣ
ନିଜେ ପରିଚିତ ହୁଏ ମୁଁ ଏକା ବ୍ରାହ୍ମଣ ।
ଏଣୁ ନିଜକୁ ତ ନିଜେ ଚିହ୍ନି ପାରୁନାହିଁ
ବ୍ରାହ୍ମଣ ବୋଲି ମନରେ ସଦା ଗର୍ବ ବହି ।
ହେ ପ୍ରଭୁ ଜଗତନାଥ କରୁଣା ସାଗର
କି ରୂପେ ବ୍ରାହ୍ମଣ ହେବି କହେ ହରିହର ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ସ୍ନାନ ଯାତ୍ରାବିଧି ବର୍ଣ୍ଣନେ ନାମ
ଏକତ୍ରିଂଶୋଽଧ୍ୟାୟଃ ।

□□

## ଦ୍ୱାତ୍ରିଂଶ ଅଧ୍ୟାୟ

ଜୈମିନି ମୁନି କହନ୍ତି ପ୍ରଭୁ ଭଗବାନ
ଦକ୍ଷିଣାଭିମୁଖ ହୋଇ କରିବେ ଗମନ ।
ପ୍ରଭୁଙ୍କ ଦକ୍ଷିଣ ମୁଖ ଯେ କରେ ଦର୍ଶନ
ଅଶ୍ୱମେଧ ଯଜ୍ଞ ଫଳ ଲଭଇ ସେ ଜନ ।
ଏହାପରେ ଯଥାବିଧି ଭକ୍ଷ୍ୟ ଭୋଜ୍ୟଦ୍ରବ୍ୟ
ନାନା ଉପଚାର ଗନ୍ଧ ମାଲ୍ୟ ଆଦି ସର୍ବ ।
ରାମକୃଷ୍ଣ ସୁଭଦ୍ରାଙ୍କୁ କରି ନିବେଦନ
ନୃତ୍ୟ ଗୀତ ସହିତରେ କରିବ ଅର୍ଚ୍ଚନ ।
ବ୍ରାହ୍ମଣ ବୈଷ୍ଣବ ଆଉ ଯେତେ ଭକ୍ତଜନ
ଏମାନଙ୍କୁ ଗନ୍ଧ ମାଲ୍ୟ ବସ୍ତ୍ର କରି ଦାନ ।
ପୂର୍ବପରି ମହୋତ୍ସବ କରିବ ବିଧିରେ
ଠାକୁରମାନଙ୍କୁ ନେବ ଦକ୍ଷିଣ ମୁଖରେ ।
ରାମକୃଷ୍ଣ ସଭଦ୍ରାଙ୍କୁ ଦକ୍ଷିଣ ମୂର୍ତ୍ତିରେ
ଗମନକାଳେ ଯେ ଜନ ଦରଶନ କରେ ।
ପ୍ରକୃତରେ ମନୁଷ୍ୟ ତ ନୁହେଁ ସେହିଜନ
ସ୍ୱର୍ଗରୁ ଯେ ଆସିଥିଲେ ଯେତେ ଦେବଗଣ ।
ପ୍ରଭୁଙ୍କୁ ସ୍ନାନ କରାଇ ଗଗନ ପ୍ରାଙ୍ଗଣେ
ଅବସ୍ଥିତ ହର୍ଷମନେ ରତ ସଂଘର୍ଷଣେ ।
ପ୍ରଭୁଙ୍କୁ ଦକ୍ଷିଣ ମୁଖେ ଗମନ କାଳରେ
ଠିଆହୋଇ ଯେଉଁଜନ ଦରଶନ କରେ ।
ଧର୍ମ କାର୍ଯ୍ୟ ଯେତେ ଧର୍ମ ଶାସ୍ତ୍ରରେ ଉକତ
ସେ ଜନ ଲାଭ କରଇ ସେ ଫଳ ସମସ୍ତ ।
ସ୍ନାନ କରି ଭଗବାନ ଦକ୍ଷିଣ ଦିଗରେ
ଗଲାବେଳେ ଯେ ମାନବ ଦରଶନ କରେ ।
ସ୍ନାନ କାଳେ ଦର୍ଶନରେ ହୁଏ ଯେତେ ପୁଣ୍ୟ
ତାହା ଲାଭକରି ସେ ମାନବ ହୁଏ ଧନ୍ୟ ।
ଅନନ୍ତର ବଳରାମ ସୁଭଦ୍ରା ଜନନୀ
ଶ୍ରୀ ଜଗନ୍ନାଥଙ୍କୁ ବନ୍ଦାପନା କରି ପୁଣି ।
ମନ୍ଦିର ମଧ୍ୟେ ପ୍ରବେଶ କରାଇବ ନେଇ
ଆଉ ଦର୍ଶନ ତାହାଙ୍କୁ ନ କରିବେ କେହି ।
ଏହିକଥା ଆମ୍ଭେ ପୂର୍ବେ ବିସ୍ତୃତ ରୂପରେ
କହିଅଛୁ ତୁମ୍ଭମାନଙ୍କର ଅଗ୍ରତରେ ।
ମୁନିଗଣ ପଚାରନ୍ତି ଜୈମିନି ମୁନିଙ୍କୁ
ଯେ ବ୍ରତ ବିଧାନ କଥା କହିଲ ଆମ୍ଭଙ୍କୁ ।
ପ୍ରଭୁଙ୍କୁ ସ୍ନାନ ନିମିତ୍ତ ସେ ବ୍ରତ ବିଧାନ
ଆମ୍ଭମାନଙ୍କୁ ବିଝାଇ କହନ୍ତୁ ଆପଣ ।
ଜୈମିନି ମୁନି କହନ୍ତି ଶୁଣ ମୁନିଗଣ
ଜ୍ୟେଷ୍ଠ ପଞ୍ଚକ ବୋଲିଣ ସେ ବ୍ରତର ନାମ ।
ଏ ବ୍ରତରୁ ନାହିଁ ଆଉ ବ୍ରତ ପୁଣ୍ୟତମ
ଏହା କହିଛନ୍ତି ଶାସ୍ତ୍ର ପାରଦର୍ଶୀଗଣ ।
ଏହିକଥା କହିଛନ୍ତି ବ୍ରହ୍ମା ପୂର୍ବକାଳେ
ଉକତ ହୋଇଛି ଶ୍ରୁତି ସ୍ମୃତି ପୁରାଣରେ ।
ଯେତେ ବ୍ରତ ତାହାମଧ୍ୟେ ଶ୍ରେଷ୍ଠ ଏହି ବ୍ରତ
ଜ୍ୟେଷ୍ଠ ପଞ୍ଚକ ନାମରେ ଏ ଲୋକ ବିଖ୍ୟାତ ।
ସମୁଦ୍ର ସ୍ନାନେ ଯେ ଫଳ ଲାଭ ତାହା ଶ୍ରେଷ୍ଠ
ଜଗନ୍ନାଥଙ୍କ ଦର୍ଶନ ଫଳ ତ ଗରିଷ୍ଠ ।
ଯେ ଜନ ସ୍ନାନ ଦର୍ଶନ କରି ପ୍ରତିଦିନ
ଏକବର୍ଷ ଯାଏ ଲାଭ କରେ ଯେତେ ପୁଣ୍ୟ ।
ସେହି ଫଳ ଲାଭ ହୁଏ ଜ୍ୟେଷ୍ଠ ପଞ୍ଚକରେ
ପଞ୍ଚକର ଫଳ ମହଜ୍ୟେଷ୍ଠୀ ଦିନକରେ ।
ପୂର୍ବେ କହିଛୁ ପ୍ରଭୁଙ୍କୁ ଦର୍ଶନର ଫଳ
ମହାଜ୍ୟେଷ୍ଠୀ ସ୍ନାନ ଲାଭ ହୁଏ ସେ ସକଳ ।
ଏହାଶୁଣି ମୁନିଗଣ କହନ୍ତି ବଚନ
ମହାଜ୍ୟେଷ୍ଠୀ ସ୍ନାନ ବିଧି କରନ୍ତୁ ବର୍ଣ୍ଣନ ।
ଜୈମିନି କହନ୍ତି ମହାଜ୍ୟେଷ୍ଠୀର ବିଧାନ
ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ପୂର୍ଣ୍ଣିମାର ଦିନ ।
ଚନ୍ଦ୍ର ବୃହସ୍ପତି ଥିବେ ଜ୍ୟେଷ୍ଠା ନକ୍ଷତ୍ରରେ
ଗୁରୁବାର ଶୁଭ ଯୋଗ ଯେବେ ସେଦିନରେ ।
ହୋଇଥାଏ ମହାଜ୍ୟେଷ୍ଠୀ ନାମ ତ ତାହାର
ଏ ଯୋଗରେ ସ୍ନାନକଲେ ପାପ ହୁଏ ଦୂର ।
ମହାଜ୍ୟେଷ୍ଠ ସ୍ନାନଯୋଗେ ହେଲେ ଉପସ୍ଥିତ
ସମୁଦାୟ ପୁଣ୍ୟ ତୀର୍ଥ ସମୁଦାୟ ତୀର୍ଥ ।
ସପ୍ତ ସମୁଦ୍ର ସକଳ ଯଜ୍ଞ ତପ ବ୍ରତ
ମହାଯଜ୍ଞ ଅଷ୍ଟାଦଶ ବିଦ୍ୟାର ସହିତ ।

Digitized by srujanika@gmail.com

ଶାନ୍ତିକ ପୌଷ୍ଟିକ ଆଦି କାର୍ଯ୍ୟ ଫଳେ ଯୁକ୍ତ
ସାଂଖ୍ୟଯୋଗ ସହିତରେ ହୋଇ ଏକତ୍ରିତ ।
ମହାଜ୍ୟେଷ୍ଠୀ ସ୍ନାନ ଯୋଗ କରିବେ ଦର୍ଶନ
ଦଳ ଦଳ ହୋଇକରି କରନ୍ତି ଗମନ ।
ପୁରୁଷୋତ୍ତମ କ୍ଷେତ୍ରରେ କରି ଅବସ୍ଥାନ
ଯେଉଁ ଭାଗ୍ୟବାନ ଜନ କରୁଥିବେ ସ୍ନାନ ।
ତାହାଙ୍କୁ ତ ପୁଣ୍ୟଫଳ କରିବେ ପ୍ରଦାନ
ଏକଥା ବିଚାରି କରୁଥାନ୍ତି ନିଜ ମନ ।
ମହାଜ୍ୟେଷ୍ଠୀ ଦିନେ ଅନ୍ୟ ମହାଯୋଗ ମାନ
କୁହାକୋହି ହେବେ ନିଜ ନିଜ କଥାମାନ ।
ପୁରୁଷୋତ୍ତମ କ୍ଷେତ୍ରକୁ ଗମନ କରନ୍ତି
ତେଣୁ ମହାଜ୍ୟେଷ୍ଠୀ ନାମ ଲଭିଅଛି ଖ୍ୟାତି ।
ଏହି ଯୋଗ ଅଟେ ମହା ପୁଣ୍ୟର ଜନନୀ
ପ୍ରଭୁ ଭଗବାନଙ୍କର ପ୍ରୀତି ବିବର୍ଦ୍ଧିନୀ ।
ଯେଜନ ଏ ଯୋଗେ କରେ ପ୍ରଭୁଙ୍କୁ ଅର୍ଚ୍ଚନ
ପ୍ରଭୁଙ୍କର ମଞ୍ଚ ସ୍ନାନ କରଇ ଦର୍ଶନ ।
ସେ ଜନ ଦେହରେ ପାପ ପଙ୍କ ନ ଲାଗଇ
ମୁନିଗଣ ଏକଥାରେ ସନ୍ଦେହ ତ ନାହିଁ ।
ଜ୍ୟେଷ୍ଠ ପଞ୍ଚକ ବ୍ରତକୁ କଲେ ଅନୁଷ୍ଠାନ
ଯେଉଁ ଫଳ ଲାଭ ହୁଏ କରନ୍ତୁ ଶ୍ରବଣ ।
ଦଶମୀ ଦିନ ପ୍ରଭାତକାଳେ କରି ସ୍ନାନ
ଯଥା ବିଧାନରେ ବ୍ରତ କରିବ ଗ୍ରହଣ ।
ବିଷ୍ଣୁଭକ୍ତ ବ୍ରାହ୍ମଣଙ୍କୁ ଆଚାର୍ଯ୍ୟ ବରଣ
ସଂକଳ୍ପ ଆଦି କରିବ ଯେ ଶାସ୍ତ୍ର ବିଧାନ ।
ସଂସାରାର୍ଣ୍ଣବ ତାରକ ଦେବ ଜଗନ୍ନାଥ
ଆପଣଙ୍କ ପ୍ରୀତି ଅର୍ଥେ କରୁଛି ଏ ବ୍ରତ ।
ଯେ ଦିନ ଜ୍ୟେଷ୍ଠ ପୂର୍ଣ୍ଣମା ହେବ ଉପସ୍ଥିତ
ଗ୍ରହଣ କରିଲି ସେ ପର୍ଯ୍ୟନ୍ତ ଏହି ବ୍ରତ ।
ହେ ଦେବେଶ ପ୍ରତିଦିନ ପଞ୍ଚତୀର୍ଥ ସ୍ନାନ
ଯଥାବିଧି ହବିଷ୍ୟାନ୍ନ କରିବି ଭୋଜନ ।
ଆପଣଙ୍କ ପଞ୍ଚମୂର୍ତ୍ତି ପାଞ୍ଚ ଦିବସରେ
ତ୍ରିସନ୍ଧ୍ୟାରେ ଏକମୂର୍ତ୍ତି ପୂଜା ଦିନକରେ ।
ଅନୁଗ୍ରହ କରି ମୋର ସଂକଳ୍ପିତ ବ୍ରତ
ପୂର୍ଣ୍ଣକରି ଦିଅନ୍ତୁ ହେ ପ୍ରଭୁ ଜଗନ୍ନାଥ ।
ଅନନ୍ତର ପଞ୍ଚତୀର୍ଥେ ସ୍ନାନ ଯେ କରିବ
ଗୃହକୁ ଆସି ସ୍ଥଣ୍ଡିଳ ନିର୍ମାଣ କରିବ ।
ସ୍ଥଣ୍ଡିଳରେ ଅଷ୍ଟଦଳ ପଦ୍ମ ମୁରୁଜରେ
ତୀର୍ଥଜଳେ ପୂର୍ଣ୍ଣ କୁମ୍ଭ ସ୍ଥାପିବ ତହିଁରେ ।
ତ୍ରାମ୍ର ପାତ୍ରରେ ଅକ୍ଷତ ଶ୍ରୀଫଳ ଚନ୍ଦନ
କୁମ୍ଭ ରଖି କଣ୍ଠ ବସ୍ତ୍ରେ କରିବ ବେଷ୍ଟନ ।

ତାମଧ୍ୟେ କରିବ ସ୍ୱର୍ଣ୍ଣ ପ୍ରତିମା ସ୍ଥାପନ
ସୁନ୍ଦର ଅଙ୍ଗ ପ୍ରତ୍ୟଙ୍ଗ ଶ୍ରୀମଧୁସୂଦନ ।
ସେ ପ୍ରତିମା ହୋଇଥିବ ପ୍ରଶାନ୍ତ ଆକୃତି
ବାମଭାଗେ ଶୋଭା ପାଉଥିବେ ଲକ୍ଷ୍ମୀମୂର୍ତ୍ତି ।
ଉର୍ଦ୍ଧ୍ୱ ହସ୍ତଦ୍ୱୟେ ଶଙ୍ଖ ପଦ୍ମ ବିରାଜିତ
ଦକ୍ଷିଣ ହସ୍ତ ଗରୁଡ଼ ପୃଷ୍ଠରେ ସ୍ଥାପିତ ।
ପଦ୍ମାସନେ ଅବସ୍ଥିତ ଶ୍ରୀ ମଧୁସୂଦନ
ଦେବଙ୍କୁ ପୂଜା କରିବ ଆହେ ଦ୍ୱିଜଗଣ ।
ନିଜେ କିମ୍ବା ଆଚାର୍ଯ୍ୟଙ୍କଦ୍ୱାରା କରାଇବ
ନୀଳୋତ୍ପଳ ପୁଷ୍ପମାଳା ଭକତିରେ ଦେବ ।
ଦଶକୋଟି ସଂଖ୍ୟା ପାପ ନାଶ ଦଶମୀରେ
ଭଗବାନଙ୍କର ପୂଜା କରିଲେ ଶ୍ରଦ୍ଧାରେ ।
ଦୁଇକର ଯୋଡ଼ିକରି ପ୍ରାର୍ଥନା କରିବ
ହେ ମଧୁସୂଦନ ହେ ମାଧବ ପ୍ରିୟଦେବ ।
ହେ କୃପାସିନ୍ଧୁ ଏ ଭବ ସାଗରେ ପତିତ
ରକ୍ଷାକର ପ୍ରଭୁ ମୋତେ କରେ ପ୍ରଣିପାତ ।
ଏହାପରେ ଏକାଦଶୀ ଦିନ ପ୍ରଭାତରେ
ପୂର୍ବପରି ନିତ୍ୟକୃତ୍ୟ ସାରିବ ବିଧିରେ ।
ପଞ୍ଚନିଷ୍କ କିମ୍ବା ତାର ଅର୍ଦ୍ଧ ପରିମାଣ
ସ୍ୱର୍ଣ୍ଣରେ ଶ୍ରୀ ନାରାୟଣ ପ୍ରତିମା ଗଠନ ।
ଶଙ୍ଖ ଚକ୍ର ଗଦା ପଦ୍ମ ହସ୍ତେ ଥିବ ଧରି
ଅବସ୍ଥାନ କରିଥିବେ ପଦ୍ମ ପୁଷ୍ପେ ପରି ।
ଅର୍ଚ୍ଚନା କରିବ ପଦ୍ମ ପୁଷ୍ପ ମାଳା ଦେଇ
ଖଣ୍ଡ କଦଳୀ ପାୟସ ନୈବେଦ୍ୟକୁ ଥୋଇ ।
ହେ ନାରାୟଣ ହେ ଭବସିନ୍ଧୁ କର୍ଣ୍ଣଧାର
ଆପଣଙ୍କ ଶ୍ରୀଚରଣେ ମୋର ନମସ୍କାର ।
ହେ ପଦ୍ମନେତ୍ର ଶରଣ ଜନ ରକ୍ଷାକାରୀ
ହେ ନାଥ ଭବସାଗରୁ ମୋତେ କର ପାରି ।
ପୂଜା କରି ଏହିରୂପେ ପ୍ରାର୍ଥନା କରିବ
ଜାଣିଶୁଣି ଯେ ସକଳ ପାପ କରିଥିବ ।
ଅନାଦି ଜନ୍ମରୁ ଯେତେ ଥିବଟି ସଞ୍ଚୟ
ସେ ସକଳ ପାପରାଶି ହୋଇବ ବିଳୟ ।
ଅନନ୍ତର ଦ୍ୱାଦଶୀରେ ସ୍ୱର୍ଣ୍ଣରେ ନିର୍ମିତ
ଯଜ୍ଞ ବରାହଙ୍କୁ ପୂଜା କରିବା ଉଚିତ ।
ଚନ୍ଦନାଗୁରୁ କର୍ପୂର କରିବ ଲେପନ
ଚମ୍ପକ ପୁଷ୍ପର ମାଳା କରିବ ଅର୍ପଣ ।
ଭକ୍ଷ୍ୟ ଭୋଜ୍ୟ ଧୂପ ଦୀପ କରି ନିବେଦନ
ପ୍ରାର୍ଥନା କରିବ ସ୍ତୁତି ବାକ୍ୟ ଉଚ୍ଚାରିଣ ।
ହେ ଗୋବିନ୍ଦ ଆପଣ ତ ପ୍ରଳୟ କାଳରେ
ପୃଥିବୀ ଉଦ୍ଧାର କଲ ନିଜ ବାହୁବଳେ ।

Digitized by srujanika@gmail.com

ଆପଣଙ୍କ ଶ୍ରୀଚରଣେ ହେଉଛି ପତିତ
ମୋ ଉଦ୍ଧାରେ କାହିଁପାଇଁ ନ ହୁଅ ସମର୍ଥ ।
ହେ ନାଥ ଶୋକ ସାଗରେ ହୋଇଛ ନିମଗ୍ନ
ହେ ଦୟାନିଧି ଆପଣ କରନ୍ତୁ କାରଣ ।
ଯଜ୍ଞବରାହଙ୍କୁ ଏହିରୂପେ ପୂଜା କଲେ
ପୂର୍ବ ଜନ୍ମରୁ ସଞ୍ଚିତ ଯେତେ ପାପ ଥିଲେ ।
ଗୁରୁ ଲଘୁ ଯେତେ ପାପ ବର୍ଷ ବର୍ଷ କର
ସେ ସକଳ ପାପରାଶି ହୋଇଯାଏ ଦୂର ।
ତ୍ରିୟୋଦଶୀ ଦିନ ଶୁଣ କରିବ ଏମନ୍ତ
ଚାରିନିଷ୍କ ପରିମିତ ସ୍ୱର୍ଣ୍ଣରେ ନିର୍ମିତ ।
ଶଙ୍ଖ ଚକ୍ର ବରାଭୟ ଚତୁର ହସ୍ତରେ
ପଦ୍ମୋପରି ସ୍ଥିତ ପ୍ରଦ୍ୟୁମ୍ନଙ୍କୁ ଭକତିରେ ।
ଅଶୋକ ପାଟଳି ମାଳା କର୍ପୂର ମିଶାଇ
ପୂଜା କରିବ ବିବିଧ ଉପଚାର ଦେଇ ।
ପ୍ରଣିପାତ ହୋଇକରି ଯୋଡ଼ି ଦୁଇକର
ଶୁଦ୍ଧ ମନରେ ପ୍ରାର୍ଥନା କରିବ ସତ୍ୱର ।
ହେ ଦେବ ପ୍ରଦ୍ୟୁମ୍ନ ତୁମ୍ଭେ କାମରୂପଧାରୀ
ଭକ୍ତଗଣଙ୍କର ମନୋରଥ ପୂର୍ଣ୍ଣକାରୀ ।
ହେ କାମପାଳ କରୁଛି ପଦେ ନମସ୍କାର
ଅନୁଗ୍ରହ କଲେ ହେବ କାମନା ସଫଳ ।
ଚତୁର୍ଦ୍ଦଶୀ ଦିନ ଚାରିନିଷ୍କ ପରିମାଣ
ସ୍ୱର୍ଣ୍ଣରେ ନୃସିଂହ ମୂର୍ତ୍ତି କରିବ ଗଠନ ।
ଲକ୍ଷ୍ମୀଦେବୀ ବକ୍ଷସ୍ଥଳେ ସନ୍ତୋଷ ବିଧାନ
କରୁଥିବେ ମସ୍ତକରେ ଜଟା ଲମ୍ବମାନ ।
ଅଟ୍ଟଅଟ୍ଟହାସ୍ୟ ମୁଖମଣ୍ଡଳ ବିସ୍ତୃତ
ଯୋଗ ପଟ୍ଟଧାରୀ ପଦ୍ମୋପରି ଅବସ୍ଥିତ ।
ହୋଇଥିବ ଅତି ତୀକ୍ଷ୍ଣ ହସ୍ତେ ନଖମାନ
ଭକ୍ତଜନର ବିପଦ କରିବେ ବିଦୀର୍ଣ୍ଣ ।
ଜନ ପୁଷ୍ପ ଜାଳି ପୁଷ୍ପମାଳା କରି ଦାନ
ପୁଷ୍ପାଞ୍ଜଳି ପଦେ ଦେଇ କରିବ ଜଣାଣ ।
ପ୍ରଦକ୍ଷିଣ କରିସାରି ପ୍ରାର୍ଥନା କରିବ
ତ୍ରିଲୋଚନ ହିତକାରୀ ହେ ନୃସିଂହ ଦେବ ।
ପୂର୍ବେ ହିରଣ୍ୟ କଶିପୁ କଲ ବିଦାରଣ
ସେପରି ମୋ ପାପପୁଞ୍ଜ କରନ୍ତୁ ବିଦୀର୍ଣ୍ଣ ।
ଏ ରୂପେ ପ୍ରାର୍ଥନା କରି ଦଣ୍ଡବତ ହୋଇ
ପ୍ରଣାମ କରିବ ପ୍ରଭୁ ନୃସିଂହଙ୍କୁ ତହିଁ ।
ପାଞ୍ଚ ପାଞ୍ଚ ଦୀପ ପ୍ରତି ଦେବଙ୍କ ଅଗ୍ରତ
ଜାଗର ଜାଳିବ ବ୍ରତୀ ପଞ୍ଚ ଅହୋରାତ୍ର ।
ଶ୍ରଦ୍ଧାରେ ବହୁ ବ୍ରାହ୍ମଣ ଭୋଜନ କରାଇ
ପାଞ୍ଚଯୋଡ଼ା ବସ୍ତ୍ର ଦେବ ପ୍ରତ୍ୟେକଙ୍କୁ ତହିଁ ।
ପାଞ୍ଚ ପାଞ୍ଚ ଛତ୍ର ଉପାନହ ସଙ୍ଗେ ଦେବ
ଫଳସହ ପଞ୍ଚଯଜ୍ଞ ସୂତ୍ର ସମର୍ପିବ ।
ବ୍ରାହ୍ମଣମାନଙ୍କୁ ଦେବ ଭୋଜନ ଶେଷରେ
ବ୍ରତୀ ଉଜାଗର ହେବ ସେଦିନ ରାତ୍ରରେ ।
ବାସୁଦେବଙ୍କ ସନ୍ତୋଷ ବିଧାନ ନିମିତ୍ତ
କରିବ ପୁରାଣ ପାଠ ବାଦ୍ୟ ନୃତ୍ୟ ଗୀତ ।
ପୂର୍ଣ୍ଣିମା ଦିନ ପ୍ରଭାତେ କରିସାରି ସ୍ନାନ
ଜଗନ୍ନାଥଙ୍କ ଦର୍ଶନେ କରିବ ଗମନ ।
ବଳଭଦ୍ର ସୁଭଦ୍ରା ଶ୍ରୀଜଗନ୍ନାଥ ଦେବ
ଏମାନଙ୍କୁ ଯଥାବିଧି ସ୍ନାନ କରାଇବ ।
ଅଥବା ଭକତିସହ କରିବ ଦର୍ଶନ
ପୁନରପି ସମୁଦ୍ରରେ କରିବ ଯେ ସ୍ନାନ ।
ଏହାପରେ ନିଜଗୃହେ କରି ଆଗମନ
ପଞ୍ଚମୂର୍ତ୍ତି ପୂଜା କରିଥିବ ଯେଉଁ ସ୍ଥାନ ।
ତା ପଶ୍ଚିମକୁଣ୍ଡେ କରି ଅଗ୍ନିଙ୍କୁ ସ୍ଥାପିବ
ପ୍ରତିଦେବଙ୍କୁ ସ୍ୱମନ୍ତେ ଆହୁତି କରିବ ।
ଦେବତାମାନଙ୍କ ମନ୍ତ କରନ୍ତୁ ଶ୍ରବଣ
ପ୍ରଣବାଦି ଚତୁର୍ଥ୍ୟନ୍ତ କରି ଦେବନାମ ।
ଅନ୍ତେ ନମଃ ଏହିମନ୍ତେ କରିବ ଅର୍ଚ୍ଚନ
ସ୍ୱାହାଯୁକ୍ତ କରି ହୋମ କରିବ ସମ୍ପନ୍ନ ।
ପ୍ରତି ଦେବଙ୍କୁ ଆହୂତି ଦେବ ପୃଥକରେ
ପଳାଶ ସମିଧ ତରୁ ଆଦ୍ୟ ସହିତରେ ।
ଶତାହୂତି ଦେଇ ଶତେ ଫଳ କରି ହୋମ
ଶେଷେ ପୂର୍ଣ୍ଣାହୂତି ଦେବ ଶାସ୍ତ୍ରର ବିଧାନ ।
ବ୍ରହ୍ମାଙ୍କୁ ଦକ୍ଷିଣାସହ ପୂର୍ଣ୍ଣପାତ୍ର ଦାନ
ଆଚାର୍ଯ୍ୟଙ୍କୁ ଧେନୁ ସ୍ୱର୍ଣ୍ଣ କରିବ ପ୍ରଦାନ ।
ସେ ଧେନୁର ଶୃଙ୍ଗଦ୍ୱୟ ସୁବର୍ଣ୍ଣେ ମଣ୍ଡିତ
ଖୁରା ସକଳ ରୌପ୍ୟରେ କରି ଆଚ୍ଛାଦିତ ।
ବିବିଧ ପ୍ରକାର ଉପକରଣ ସହିତେ
ଆଚାର୍ଯ୍ୟଙ୍କୁ ଧେନୁଦାନ ଦେବ ଶ୍ରଦ୍ଧାଯୁକ୍ତେ ।
ବହୁ ଧନ ବହୁ ଧାନ୍ୟ ଆଚାର୍ଯ୍ୟଙ୍କୁ ଦେବ
କିମ୍ବା ତାହାଙ୍କର ଇଚ୍ଛା ଯେ ଦ୍ରବ୍ୟେ ହୋଇବ ।
ସେ ସକଳ ଶ୍ରଦ୍ଧାସହ ପ୍ରଦାନ କରିବ
ଯେ ସ୍ୱର୍ଣ୍ଣ ପ୍ରତିମାମାନ ପୂଜା କରିଥିବ ।
ଆଉ ବ୍ରତୋପକରଣ ଦ୍ରବ୍ୟର ସହିତ
ଉତ୍ସର୍ଗ କରିବ ଆଚାର୍ଯ୍ୟଙ୍କର ନିମିତ୍ତ ।
ଘୃତ ଖଣ୍ଡ ପାୟସରେ ବ୍ରାହ୍ମଣ ଭୋଜନ
କରାଇବ ଏ ବ୍ରତର ଅଟଇ ବିଧାନ ।
ଜ୍ୟେଷ୍ଠ ପଞ୍ଚକ ଏ ବ୍ରତ କରିଲେ ଶ୍ରବଣ
ଶ୍ରଦ୍ଧା ଭକ୍ତିରେ ଯେ ଜନ କରେ ଅନୁଷ୍ଠାନ ।

Digitized by srujanika@gmail.com

ଭଗବାନଙ୍କର ସ୍ନାନ ଦର୍ଶନର ଫଳ
ସେହି ଜନ ପ୍ରାପ୍ତହୁଏ ସନ୍ଦେହ ନ କର ।
ଏ ପଞ୍ଚଦିନ ମଧ୍ୟରେ ଯେଉଁ ଏକାଦଶୀ
ଅନାମ ନିର୍ମଳା ବୋଲି କହିଛନ୍ତି ଋଷି ।
ଯେ ନିର୍ମଳା ଏକାଦଶୀ ଉପବାସେ ରହେ ।
ବାରମାସୀ ଏକାଦଶୀ ଫଳ ସେହୁ ପାଏ ।
ଏହି ବ୍ରତ ଯେ ମାନବ କରେ ଅନୁଷ୍ଠାନ
ସକଳ ବ୍ରତର ଫଳ ଲଭେ ସେହି ଜନ ।
ଯେଉଁ ବିଷୟରେ ତାର କାମନା ଯେ ଥାଇ
ସେ ସକଳ ପ୍ରାପ୍ତ ହୁଏ ସନ୍ଦେହ ତ ନାହିଁ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ଦ୍ୱିତ୍ରିଂଶ ଅଧ୍ୟାୟ ଶେଷ ଉତ୍କଳ ଭାଷାରେ ।
ବଳରାମ ସୁଭଦ୍ରା ମା ଜୟ ଜଗନ୍ନାଥ
ନାନବିଧ ଦୁର୍ଘଟଣା ବିଧାନେ ସମର୍ଥ ।
ତୁମ୍ଭ ନାମ ପରା ଅଟେ ପତିତପାବନ
ପତିତଜନଙ୍କୁ କରୁଅଛ ପରତ୍ରାଣ ।
ଜଞ୍ଜାଳ ଜାଲରେ ହେଉଅଛି ଛଟପଟ
ଫିଟାଇ ନ ଦେଇ କିମ୍ବା କରୁଛ କପଟ ।
ମୁଢ଼ଜନେ ଉପହାସ କରୁଛନ୍ତି ନିତି
ବନ୍ଧୁଜନେ ଛାଡ଼ିଲାଣି ସ୍ୱଜନ ପୀରତି ।
କରିନାହିଁ ତୀର୍ଥେ ସ୍ନାନ ବ୍ରତ ଅନୁଷ୍ଠାନ
ଦିନେ ତ ନ କରେ ପ୍ରଭୁ ସ୍ମରଣ କୀର୍ତ୍ତନ ।
ତେବେ ଆଶା ରଖିଅଛି ଏ ଅଧର୍ମି ଜନ
ନିଶ୍ଚୟ କରିବ ପରା ତାକୁ ପରିତ୍ରାଣ ।
ଉଚ୍ଚସ୍ୱରେ ଡାକୁଅଛି ଦୀନ ହରିହର
ତାକୁ ପରିତ୍ରାଣ କର ହେ କୃପା ସାଗର ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳଖଣ୍ଡେ ମଞ୍ଚସ୍ନାନ ବର୍ଣ୍ଣନ ପ୍ରସଙ୍ଗେ ଜ୍ୟେଷ୍ଠା ପଞ୍ଚକ ବ୍ରତ ବିଧାନ ବର୍ଣ୍ଣନଂ ନାମ ଦ୍ୱାତ୍ରିଂଶୋଽଧ୍ୟାୟଃ ।

□□

## ତ୍ରୟୋତ୍ରିଂଶ ଅଧ୍ୟାୟ

ଜୈମିନି ମୁନି କହନ୍ତି ଶୁଣ ମୁନିଗଣ
ରଥଯାତ୍ରା ମହୋତ୍ସବ କରନ୍ତୁ ଶ୍ରବଣ ।
ଦର୍ଶନ କରିବେ ଅଜ୍ଞାନାନ୍ଧ ଜୀବଗଣ
ଅନାୟାସେ ବୈକୁଣ୍ଠକୁ କରନ୍ତି ଗମନ ।
ବୈଶାଖ ଶୁକ୍ଳ ତୃତୀୟା ରୋହିଣୀ ସଂଯୁକ୍ତ
ସର୍ବପାପ କ୍ଷୟ ଅର୍ଥେ ସ୍ୱୟଂ ଆବିଷ୍କୃତ ।
ସଂକଳ୍ପ ପୂର୍ବ ଆଚାର୍ଯ୍ୟ କରିବ ବରଣ
ପ୍ରଭାତରେ ନିତ୍ୟକୃତ୍ୟ ସାରିଣ ରାଜନ ।
ତିନିଜଣ ସୂତ୍ରଧାର ଅବା ଏକଜଣ
ବସ୍ତ୍ର ଅଳଙ୍କାର ଦେଇ କରିବ ବରଣ ।
ଯେଉଁ ସ୍ଥାନରେ ଉତ୍ତମ ବୃକ୍ଷମାନ ଥିବ
ଜ୍ଞାନଯାଗ ଅର୍ଥେ ସେହି ବନକୁ ଯେ ଯିବ ।
ଆଥର୍ବଣ ମନ୍ତ୍ରେ ବହ୍ନି କରିବ ସ୍ଥାପନ
ଘୃତଧାରା ସହ ଅଷ୍ଟୋତ୍ତର ଶତେ ହୋମ ।
ପ୍ରତ୍ୟେକ ବୃକ୍ଷ ମୂଳରେ ଘୃତଧାରା ଦେବ
ଦିକ୍‌ପାଳଙ୍କୁ ମାଷବଳି ପ୍ରଦାନ କରିବ ।
ପଶୁବଳି ଦାନ କ୍ଷେତ୍ରପାଳଙ୍କୁ କରିବ
ବୃକ୍ଷ ପାଇଁ ଶତେ ହୋମ ଦୁଗ୍ଧାନ୍ନ କରିବ ।
ତା ପରେ ଆଚାର୍ଯ୍ୟ ହସ୍ତେ କୁଠାର ଧରିଣ
ବିଷ୍ଣୁଙ୍କୁ ମନରେ ଚିନ୍ତି ମନ୍ତ୍ର ଉଚ୍ଚାରିଣ ।
ଯେଉଁ ବୃକ୍ଷ ମୂଳ ଘୃତେ ସିକ୍ତ ହୋଇଥିବ
ଗୀତ ବାଦ୍ୟ କରି କିଛି ଛେଦନ କରିବ ।
ସୂତ୍ରଧାର କରିବେ ଯେ ବୃକ୍ଷକୁ ଛେଦନ
ଆଚାର୍ଯ୍ୟ ନିଜ ଗୃହକୁ କରିବେ ଗମନ ।
ରଥଗଢ଼ା କାଷ୍ଠ ଯଦି ନିକଟେ ମିଳିବ
ତାହାକୁ ରାଜା ଯେ ଏହି ବିଧାନେ ଆଣିବ ।
ବିଘ୍ନ ନାଶ ଅର୍ଥେ ଆଦ୍ୟେ ଗଣେଶ ଅର୍ଚ୍ଚନ
ପରେ ଆରମ୍ଭ କରିବ ରଥର ଗଠନ ।
ଲୌହମୟ ଷୋଳଚକ ଗୋଳଖଣ୍ଡି ଅର
ପରେ ଅଖୟୁକ୍ତ ରଥ ଜଗନ୍ନାଥଙ୍କର ।
କାଷ୍ଠ ପିତୁଳି ସ୍ଥାପିବ ରଥ ଚାରିଦିଗେ
ବିବିଧ ଚିତ୍ରେ ଶୋଭିତ ବେଦୀ ମଧ୍ୟଭାଗେ ।
ଚାରିଦ୍ୱାର ତୋରଣରେ କରିଣ ସଂଯୁକ୍ତ
ନାନାବିଧ କାରୁକାର୍ଯ୍ୟେ କରିବ ଭୂଷିତ ।
ଦ୍ୱାବିଂଶତି ହସ୍ତ ଉଚ୍ଚ ସ୍ୱର୍ଣ୍ଣପଟେ ଯୁକ୍ତ
ପତାକା ମାଳାରେ ରଥ କରିବ ଭୂଷିତ ।
ରକ୍ତ ଚନ୍ଦନ କାଷ୍ଠରେ କରିଣ ନିର୍ମାଣ
ଗରୁଡ଼ ଧ୍ୱଜ ରଥରେ କରିବ ସ୍ଥାପନ ।
ସ୍ଥୂଳ ଦେହ ତୀକ୍ଷ୍ଣ ନାସା କୁଣ୍ଡଳ କର୍ଣ୍ଣରେ
ଦେହ ବିଭୂଷିତ ନାନାବିଧ ଅଳଙ୍କାରେ ।
ଦୈତ୍ୟ ଦାନବ ମାନଙ୍କ ମନ ଦର୍ପହାରୀ
ସକଳ ଅଙ୍ଗ ସ୍ୱର୍ଣ୍ଣରେ ଆଚ୍ଛାଦନ କରି ।
ଚଞ୍ଚୁପୁଟେ ଏକସର୍ପ ରହିଥିବ ତାର
ପକ୍ଷଦ୍ୱୟ ହୋଇଥିବ ଅତ୍ୟନ୍ତ ବିସ୍ତାର ।
ତାହାକୁ ଦେଖିଲା ମାତ୍ରେ ଭାବିବ ମନରେ
ସତେ ଏ ଗରୁଡ଼ ଉଡ଼ିଯିବ ଆକାଶରେ ।
ଏ ରୂପେ ଜଗନ୍ନାଥଙ୍କ ରଥ ନିର୍ମାଣିବ
ରଥର ମଧ୍ୟ ଭାଗରେ ଆସନ ସ୍ଥାପିବ ।

Digitized by srujanika@gmail.com

ଚତୁର୍ଦ୍ଦଶ ଚକ୍ର ବଳରାମଙ୍କ ରଥରେ
ସୁଭଦ୍ରା ଦେବୀଙ୍କ ରଥ ଦ୍ୱାଦଶ ଚକ୍ରରେ ।
ଛୁରିଅନାରେ ଲାଙ୍ଗଳ ଧ୍ୱଜ ନିର୍ମାଣିବ
ବଳରାମଙ୍କ ରଥରେ ସ୍ଥାପନ କରିବ ।
ପଦ୍ମକାଷ୍ଠେ ପଦ୍ମଧ୍ୱଜ ନିର୍ମାଣ କରିବ
ସୁଭଦ୍ରା ଦେବୀଙ୍କ ରଥ ଉପରେ ସ୍ଥାପିବ ।
ଏହିରୂପେ ତିନିରଥ ରାଜା ନିର୍ମାଣିବ
ଶାସ୍ତ୍ରୀୟ ବିଧାନେ ତାହା ନିର୍ମାଣ କରିବ ।
ବ୍ରାହ୍ମଣମାନଙ୍କ ପ୍ରତି ବିଶ୍ୱାସ ସ୍ଥାପନ
କଲେ ସଫଳ ହୁଅଇ ଶୁଭକାର୍ଯ୍ୟମାନ ।
ଯେ ହେତୁ ବ୍ରାହ୍ମଣଗଣ ଭଗବାନଙ୍କର
ଚଳନ୍ତି ଶରୀର ବୋଲି ଖ୍ୟାତ ଏ ସଂସାର ।
ତିନି ଦେବଙ୍କର ତିନିରଥ ଏ ରୂପରେ
ତ୍ରୟୋଦଶୀ କୃଷ୍ଣପକ୍ଷ ଆଷାଢ଼ ମାସରେ ।
ଶାସ୍ତ୍ରମତେ ବିଧାନରେ ପ୍ରତିଷ୍ଠା କରିବ
ରଥକୁ ଉତ୍ତମରୂପେ ଜଗି ରହିଥିବ ।
ମନୁଷ୍ୟ ପକ୍ଷୀ ମାର୍ଜାର ନକୁଳାଦି ଜୀବ
ରଥ ଉପରେ କଦାପି ଉଠାଇ ନ ଦେବ ।
ଅନନ୍ତର ଦିତତ୍ରୟ ହୋଇଲେ ଅତୀତ
ଉତ୍ତର ଦିଗେ ମଣ୍ଡପ କରିବ ପ୍ରସ୍ତୁତ ।
ଗୁଣ୍ଡିଚା ଯାତ୍ରା ଉତ୍ସବ ସଫଳ ନିମିତ୍ତ
ଅଙ୍କୁରାରୋପଣ ବିଧି କରିବ ସମାପ୍ତ ।
ଦୈବଯୋଗେ ଯଦି କିଛି ଅନିଷ୍ଟ ଘଟିବ
ଶାସ୍ତ୍ର ବିଧାନରେ ଶାନ୍ତି ନିଶ୍ଚୟ କରିବ ।
ଗୁଣ୍ଡିଚା ଘରକୁ ଯିବେ ପ୍ରଭୁ ଯେ ପଥରେ
ସେ ପଥକୁ ପରିଷ୍କାର କରିବ ଯତ୍ନରେ ।
ପଥ ମଧ୍ୟରେ ବିଶ୍ରାମ କରିବା ନିମିତ୍ତ
କୃତ୍ରିମ ପୁଷ୍ପ ଉଦ୍ୟାନ କରିବ ପ୍ରସ୍ତୁତ ।
ଦୁଇପାର୍ଶ୍ୱେ ଫୁଲପେଣ୍ଡା ଦୁକୁଳ ଚାମରେ
ପୁଷ୍ପମାଲ୍ୟ ସଜାଇବ ଅତି ଆଡ଼ମ୍ବରେ ।
ସମତଳ ହୋଇଥିବ କର୍ଦ୍ଦମ ବିଧୀନ
ନିର୍ମଳ ଉତ୍ତମ ଗନ୍ଧ କଙ୍କରାଦି ଶୂନ୍ୟ ।
ପଥ ଉପରେ କୋମଳ ବାଲୁକା ବିଛିବ
ଯେପରି ଗମନ କାଳେ ସୁଖକର ହେବ ।
ପଥମଧ୍ୟେ ଧୂପପାତ୍ର କରିବ ସ୍ଥାପନ
ଆମୋଦରେ ଚତୁର୍ଦ୍ଦିଗ ହୋଇଥିବ ପୂର୍ଣ୍ଣ ।
ଚନ୍ଦନ ଜଳ ଛିଟିକା ପଡ଼ିବା ନିମିତ୍ତ
ପଥ ଉଭୟ ପାର୍ଶ୍ୱରେ ଥିବ ଜଳ ଯନ୍ତ୍ର ।
ଋତୁ ଜାତ ପୁଷ୍ପରାଜି କରିବ ସ୍ଥାପନ
ରଥ ଯିବା ସମୟରେ କରିବ ବର୍ଷଣ ।

ନର୍ତ୍ତକ ଗାୟକଗଣ ମିଳି ସ୍ଥାନେ ସ୍ଥାନେ
ନୃତ୍ୟ ଗୀତ କରୁଥିବେ ଆନନ୍ଦିତ ମନେ ।
ସର୍ବାଳଙ୍କାର ଭୂଷିତ ରୂପସୀ ସୁନ୍ଦରୀ
ଯୌବନ ମଦ ଗର୍ବିତା ବାର ବେଶ୍ୟା ନାରୀ ।
ଦଣ୍ଡାୟମାନ ରହିବେ ମୃଦଙ୍ଗ ପ୍ରଣବ
ଭେରୀ ଢକ୍କା ଆଦି ବାଦ୍ୟମାନ ବାଜୁଥିବ ।
ନାନାଚିତ୍ରେ ବିଚିତ୍ରିତ ପତାକା ସକଳ
ଆକାଶରେ ଉଡୁଥିବ ହୋଇ ଫରଫର ।
ପତାକା ଦଣ୍ଡ ସ୍ୱର୍ଣ୍ଣ ବା ରୂପାରେ ହୋଇବ
ଉଚ୍ଚତାରେ ଆକାଶକୁ ସ୍ପର୍ଶ କରୁଥିବ ।
ବୈଜୟନ୍ତୀ ମାଳା ଅଶ୍ୱ ମାନଙ୍କ ପିଠିରେ
ଲମ୍ବମାନ ହୋଇଥିବ ଅଥବା ଭୂମିରେ ।
ବହୁ ଅଶ୍ୱ ହସ୍ତୀ ତହିଁ ସଜାଇରଖିବ
ନାନାବିଧ ଅଳଙ୍କାରେ ଦେହ ମଣ୍ଡିଥିବ ।
ନୃପତି ଅତି ପବିତ୍ର ଚିତ୍ତେ ଭକତିରେ
କରିବ ଯେ ମହାସମାରୋହ ଏ ରୂପରେ ।
ଭଗବାନଙ୍କର ରଥଯାତ୍ରା ମହୋତ୍ସବ
ନରପତି ଆନନ୍ଦରେ ସମ୍ପନ୍ନ କରିବ ।
ଆଷାଢ଼ ଶୁକ୍ଳ ଦ୍ୱିତୀୟା ପୁଷ୍ୟା ନକ୍ଷତ୍ରରେ
ହରିଙ୍କୁ ପୂଜା କରିବ ଉଦୟ କାଳରେ ।
ବ୍ରାହ୍ମଣ ବୈଷ୍ଣବ ଯତି ତପସ୍ୱୀ ସହିତ
ପ୍ରାର୍ଥନା କରିବ ରଥଯାତ୍ରାର ନିମିତ୍ତ ।
ହେ ପ୍ରଭୁ ଇନ୍ଦ୍ରଦ୍ୟୁମ୍ନକୁ ପ୍ରତିଷ୍ଠା କାଳରେ
ଶ୍ରୀମୁଖେ ଆଦେଶ ଯେଉଁରୂପେ କରିଥିଲେ, ।
ସେ ମୁଖେ ସକଳ ହୋଇଅଛି ସମ୍ପାଦନ
ମହବେଦୀ ଉତ୍ସବକୁ କର ଆଗମନ ।
ଚକ୍ରଧର କୃପାଦୃଷ୍ଟି ପକାଇ ଆମ୍ଭର
ପବିତ୍ର କରନ୍ତୁ ଦଶଦିଗ ଅନ୍ଧକାର ।
ଚରାଚର ଜଗତରେ ଯେତେ ଜୀବଗଣ
ମୋକ୍ଷପଦ ଲାଭ କରି ଲଭନ୍ତୁ କଲ୍ୟାଣ ।
ହେ ଦେବ ଲୋକଙ୍କୁ ଦୟା କରିବା ନିମିତ୍ତ
ଦାରୁରୂପ ଧରି ହୋଇଅଛ ଆବିର୍ଭୂତ ।
ହେ ପ୍ରଭୁ ଆମ୍ଭମାନଙ୍କୁ ହୁଅ ସୁପ୍ରସନ୍ନ
ଭୂମିପରେ ପାଦ ଥୋଇ ଆସନ୍ତୁ ବହନ ।
ଭଗବାନଙ୍କ ରଥକୁ ନେବ ଯେ କାଳରେ
ଶାକୁନ ସୂକ୍ତ ପଢ଼ିବେ ବ୍ରାହ୍ମଣ ସେ କାଳେ ।
କର୍ପୂର ଚୂର୍ଣ୍ଣ ମିଶାଇ କୁସୁମ ବର୍ଷଣ
କରିବ ଯେ କାଳେ ପ୍ରଭୁ କରିବେ ଗମନ ।
ମଙ୍ଗଳ ଗାଥା ପଠନ ଥୋକାଏ କରିବେ
କେତେ ଜୟ ଜୟ ଶବ୍ଦ ମୁଖେ ଉଚ୍ଚାରିବେ ।

Digitized by srujanika@gmail.com

ତେ ଜିତଂ ଇତ୍ୟାଦି ମନ୍ତ୍ର କରି ଉଚ୍ଚାରଣ
ପ୍ରଭୁଙ୍କ ସଙ୍ଗତେ ଯିବେ ସାଧୁ ସନ୍ଥଗଣ ।
ସୁତ ମାଗଧ ସକଳ ଭଗବାନଙ୍କର
ପୁଣ୍ୟକୀର୍ତ୍ତି ଗାନ କରିବେ ଯେ ନିରନ୍ତର ।
ଉଭୟ ପାର୍ଶ୍ୱରେ କେତେ ଧରି ସୁନାବେତ
ଉପରେ ଟେକିବେ କମ୍ପାଇଣ ନିଜହସ୍ତ ।
ସ୍ୱର୍ଣ୍ଣପାତ୍ରେ କୃଷ୍ଣାଗୁରୁ ଧୂପ ସୁଗନ୍ଧରେ
ଆକାଶ ଦିଗ ସମୂହ ପୂଜିବ ସେ କାଳେ ।
ପ୍ରଭୁଙ୍କ ବିଜୟ କାଳେ ଚର୍ଚ୍ଚରୀ ଝର୍ଝରୀ
ମୃଦଙ୍ଗ ମହୁରୀ ଆଦି ବାଦ୍ୟ ନାଦ କରି ।
ଏହିପରି ସମାରୋହ କରି ସେ କାଳରେ
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ମିଳି ଆନନ୍ଦରେ ।
ଆଦ୍ୟେ ବଳରାମ ପରେ ସୁଭଦ୍ରାଙ୍କୁ ନେବେ
ତା ପରେ ଜଗନ୍ନାଥଙ୍କୁ ବିଜେ କରାଇବେ ।
ସୁବର୍ଣ୍ଣ ଦଣ୍ଡରେ କରି ରତନ ଖଚିତ
ସୂକ୍ଷ୍ମ ବସ୍ତ୍ର ପ୍ରାନ୍ତଭାଗେ ମୁକ୍ତା ବିଭୂଷିତ ।
ଏବଂ ବିଧ ବହୁଛତ୍ର ଉଭୟ ପାର୍ଶ୍ୱରେ
ଧାରଣ କରିବ ପ୍ରଭୁଙ୍କର ମସ୍ତକରେ ।
ଏହି କାଳରେ ବ୍ରାହ୍ମଣ ଆଦି ଚାରିବର୍ଣ୍ଣ
ମନେ ନ କରିବ ଉଚ୍ଚ ନୀଚ ଭେଦ ଜ୍ଞାନ ।
ରାଜା ପ୍ରଜା ସହିତରେ ନୀଚ ଜାତିଗଣ
ଧନୀ ଦରିଦ୍ର ସକଳ ମଣିବ ସମାନ ।
ମହାପ୍ରଭୁଙ୍କୁ ପହଣ୍ଡି ଯେମାନେ କରାନ୍ତି
ସେ ବାହକମାନେ ଯଦି ବିଶ୍ରାମ ଇଚ୍ଛନ୍ତି ।
ତେବେ ଅତି ଧୀରଭାବେ ପାଦ ପକାଇଣ
ତୁଳାପୂର୍ଣ୍ଣ ଆସନରେ କରିବେ ସ୍ଥାପନ ।
ଶ୍ରମ ଦୂର ହେଲେ ପୂର୍ବପରି ବହିନେବ
ରଥ ନିକଟରେ ନେଇ ସ୍ଥାପନ କରିବ ।
ନୃତ୍ୟଗୀତ ବାଦ୍ୟ ଆଦି ଉତ୍ସବ କରିବ
ଜଗନ୍ନାଥଙ୍କୁ ହସ୍ତରେ ଧାରଣ କରିବ ।
ପ୍ରଦକ୍ଷିଣ କରି ରଥ ଉପରକୁ ନେବ
ଚନ୍ଦ୍ରାତପେ ଶୋଭା ମଣ୍ଡପରେ ବସାଇବ ।
କିଙ୍କିଣୀ ମାଳା ଯେ ମାଲ୍ୟ ଚାମର ଶୋଭିତ
କୃଷ୍ଣାଗୁରୁ ଧୂପେ ହେଉଥିବ ଆମୋଦିତ ।
ଏ ରୂପେ ତିନି ରଥକୁ ବିଜେ କରାଇବ
ବଳରାମ ସୁଭଦ୍ରା ଯେ ଜଗନ୍ନାଥ ଦେବ ।
ରଥେ ନେଇ ତୁଳାଗଦୀ ପରେ ବସାଇଣ
ବସ୍ତ୍ରାଳଙ୍କାର ମାଳରେ କରିବ ଭୂଷଣ ।
ଭକ୍ତି ସହିତରେ ଦେଇ ନାନା ଉପଚାର
ପ୍ରଭୁଙ୍କୁ ପୂଜା କରିବ ନିର୍ମଳ ମନରେ ।
ଗୁଣ୍ଡିଚା ଯାତ୍ରାରେ ଶ୍ରେଷ୍ଠ ଯାତ୍ରା ଆଉ ନାହିଁ
ଭଗବାନଙ୍କୁ ସନ୍ତୁଷ୍ଟ କରିବାର ପାଇଁ ।
ପୂର୍ବେ ଇନ୍ଦ୍ରଦ୍ୟୁମ୍ନଙ୍କୁ ଯେ ଆଜ୍ଞା ଦେଇଥିଲେ
ଗୁଣ୍ଡିଚା ମଣ୍ଡପେ ଯିବୁ ବର୍ଷକରେ ଥରେ ।
ନେଇଯିବ ରଥେ ଆରୋହଣ କରାଇଣ
ପରମ କୌତୁକେ ଆମ୍ଭେ କରିବୁ ଗମନ ।
ରଥେ ବସି ଗଲାବେଳେ ଗୁଣ୍ଡିଚା ଘରକୁ
ଯେଉଁ ମାନବ ଦର୍ଶନ କରନ୍ତି ପ୍ରଭୁଙ୍କୁ ।
ସେମାନେ ବୈକୁଣ୍ଠ ପୁରେ କରନ୍ତି ଗମନ
ତିନିବାର ସତ୍ୟକରି କହୁଛୁ ପ୍ରମାଣ ।
ଏ ଉତ୍ସବଠାରୁ ଆଉ ଶ୍ରେଷ୍ଠ ମହୋତ୍ସବ
କୌଣସି ଶାସ୍ତ୍ରରେ ଖୋଜିଲେ ତ ନ ପାଇବ ।
ଗୁଣ୍ଡିଚା ଯାତ୍ରା କଥା ତ କରିଲ ଶ୍ରବଣ
ଋଷିଗଣ ଆଉ ଅଧିକେ କି ପ୍ରୟୋଜନ ।
ଏ ଉତ୍ସବ ଦରଶନ କରି ଦେବଗଣେ
ଅଧିକାରୀ ହୋଇଛନ୍ତି ଅମର ଭୁବନେ ।
ଦେବଗଣଙ୍କର ପୁଣ୍ୟ ଶେଷ ନୁହେଁ ଯେଣୁ
ଗୁଣ୍ଡିଚା ଯାତ୍ରା ମାହାତ୍ମ୍ୟ କହିନୁହେଁ ତେଣୁ ।
ଗୁଣ୍ଡିଚା ଯାତ୍ରା ଏ ନାମ କଲେ ଉଚ୍ଚାରଣ
ତାର ଶତ ଜନ୍ମ ପାପ ହୁଅଇ ଦହନ ।
ଦେବ ତ୍ରୟ ତିନିରଥ କରି ଆରୋହଣ
ଯେ କାଳେ ମହାବେଦୀକୁ କରନ୍ତି ଗମନ ।
ସେ କାଳେ ପଥ ମଧ୍ୟରେ କଲେ ଦରଶନ
ଶତକୋଟି ଜନ୍ମ ପାପ ହୁଅଇ ଦହନ ।
ଭଗବାନଙ୍କର ରଥ ଛାୟା ସ୍ପର୍ଶ କଲେ
ବ୍ରହ୍ମହତ୍ୟା ପାପରାଶି ଦୂର ହୁଏ ଭଲେ ।
ରଥ ଧୂଳି ଯେ ଜନର ଦେହରେ ପଡ଼ଇ
ତାହାର ତ୍ରିବିଧ ପାପ ବିନାଶ ହୁଅଇ ।
ସ୍ନାନ କଲେ ସ୍ୱର୍ଗଗଙ୍ଗା ଜଳେ ଯେତେ ପୁଣ୍ୟ
ତାଠାରୁ ଅଧିକ ପୁଣ୍ୟ ଲଭେ ସେହି ଜନ ।
ବୃଷ୍ଟିଯୋଗେ ଯେବେ ପଥ ହୁଅଇ କର୍ଦ୍ଦମ
ଭଗବାନଙ୍କର ଦୃଷ୍ଟି ପଡ଼ନ୍ତେ ତକ୍ଷଣ ।
ପବିତ୍ର ହୋଇ ଅନ୍ତର ପାପକୁ ନାଶଇ
ଏ କଥାରେ କିଛିମାତ୍ର ସନ୍ଦେହ ତ ନାହିଁ ।
ଯେ ବୈଷ୍ଣବ ସେହି ପଙ୍କେ ମସ୍ତକ ରଖିଣ
ଦଣ୍ଡବତ ହୋଇ ପଡ଼େ ପ୍ରଭୁଙ୍କ ଚରଣ ।
ତାହାର ଅସୀମ ପାପ ହୋଇଯାଏ ଦୂର
ମୋକ୍ଷପାଦ ଲାଭ କରେ ସଂଶୟ ନ କର ।
କୋଟି ଗୋଦାନ ଅୟୁତ କନ୍ୟାଦାନ ଫଳ
ସହସ୍ରାଶ୍ୱମେଧ ଯାଗ ଫଳ ହୁଏ ତାର ।

Digitized by srujanika@gmail.com

ଯାହାର ପ୍ରକୃତ ଭକ୍ତି ନ ଥାଏ ମନରେ
ଗୁଣ୍ଡିଚା ଯାତ୍ରା ଉତ୍ସବ ଦେଖିବା ବିଚାରେ ।
ସେ ଜନ ରଥ ପଛରେ କରନ୍ତେ ଗମନ
ତା ପଛେ ଧାମନ୍ତି ଇନ୍ଦ୍ର ଆଦି ଦେବଗଣ ।
ରଥ ଗମନ କାଳରେ ଯେ କରେ ଦର୍ଶନ
ଦାରୁମୟ ଜଗନ୍ନାଥ ବ୍ରହ୍ମ ସନାତନ ।
ଅଶ୍ୱମେଧ ଯଜ୍ଞ ଫଳ ଲଭଇ ଯେ ଜନ
ବୈଦିକ ମନ୍ତ୍ରରେ ସ୍ତୁତି କରେ ଯେ ବ୍ରାହ୍ମଣ ।
ଇତିହାସ ପୁରାଣୋକ୍ତ ସ୍ତବ ସ୍ତୋତ୍ରମାନ
ଅବା ସ୍ୱରଚିତ ସ୍ତୋତ୍ର କରିବ ପଠନ ।
ଏ ସକଳ ଜନ ପାପ ଶୂନ୍ୟ ହୋଇଥାନ୍ତି
ନାରଦାଦି ଋଷିଙ୍କର ସମାନ ହୁଅନ୍ତି ।
ଯେଉଁମାନେ ପ୍ରଭୁଙ୍କର ଗମନ କାଳରେ
ଜୟ ଜୟଧ୍ୱନି କରୁଥାନ୍ତି ଆନନ୍ଦରେ ।
କାୟିକ ବାଚିକ ମାନସିକ ପାପମାନ
ଜୟ କରନ୍ତି ସେମାନେ ସନ୍ଦେହ ନମଣ ।
ତାଳ ଲୟ ହୀନ ଗୀତ ମାଧୁରୀ ବିହୀନ
ଗୀତ ଗାନ କରି ନୃତ୍ୟ କରନ୍ତି ଯେ ଜନ ।
ପୁଣ୍ୟାତ୍ମା ମାନବ ସାଧୁ ବୈଷ୍ଣବ ସମାନ
ମୋକ୍ଷପଦେ ଅଧିକାରୀ ହୁଅଇ ସେ ଜନ ।
ଭଗବାନଙ୍କର ନାମ କରି ସଂକୀର୍ତ୍ତନ
ପ୍ରଭୁଙ୍କ ଗମନ କାଳେ ଯେ କରେ ଗମନ ।
ପୂର୍ବୋକ୍ତ ସକଳ ଫଳ ଲଭଇ ସେ ଜନ
ସନ୍ଦେହ ନ କର ଏ କଥାରେ ଋଷିଗଣ ।
ପ୍ରଭୁ ଗୁଣ୍ଡିଚା ମଣ୍ଡପେ ଗମନ କାଳରେ
ବାରମ୍ବାର ଭକ୍ତି ସହିତରେ ଗାନ କଲେ ।
ଜୟକୃଷ୍ଣ ଜୟକୃଷ୍ଣ କହଇ ମୁଖରେ
ସେ ଆଉ କ୍ଳେଶ ନ ପାଏ ଜନନୀ ଗର୍ଭରେ ।
ଯେ ବ୍ୟକ୍ତି ଜଗନ୍ନାଥଙ୍କ ରଥ ସମ୍ମୁଖରେ
ଚାମର ବ୍ୟଜନ ଆଦି ତାଳବୃନ୍ତ କରେ ।
ତାହାଙ୍କୁ ଅପ୍ସରାଗଣ କରନ୍ତି ବ୍ୟଞ୍ଜନ
ପାଛୋଟି ନିଅନ୍ତି ତାଙ୍କୁ ଗନ୍ଧର୍ବଗଣ ।
ସ୍ୱର୍ଗପୁରେ ଯାଇ ଇନ୍ଦ୍ରଙ୍କର ଆସନରେ
କଳ୍ପ କାଳଯାଏ ସ୍ୱର୍ଗସୁଖ ଭୋଗ କରେ ।
ତଦନ୍ତରେ ବ୍ରହ୍ମଲୋକେ କରଇ ଗମନ
ମୁକ୍ତିଲାଭ କରିଥାଏ ଆହେ ଋଷିଗଣ ।
ରଥର ଗମନ କାଳେ ସମ୍ମୁଖ ଭାଗରେ
ପ୍ରଭୁଙ୍କ ନିମିତ୍ତ ପୁଷ୍ପ ବୃଷ୍ଟି ଯେହୁ କରେ ।
ତାର ସର୍ବ ମନୋରଥ ହୋଇଥାଏ ପୂର୍ଣ୍ଣ
ସହସ୍ର ନାମକୁ ପଢ଼ି ଯେ କରେ ଗମନ ।
ସେ ଜନକୁ ସୁରଗଣ ନତ ମସ୍ତକରେ
ପ୍ରଦକ୍ଷିଣ କରିଥାନ୍ତି ଆନନ୍ଦ ମନରେ ।
ତାହାର ହୁଅଇ ବିଷ୍ଣୁତୁଲ୍ୟ ପରାକ୍ରମ
ଶେଷରେ ବୈକୁଣ୍ଠ ପୁରେ କରଇ ଗମନ ।
ଏକ ପରଂବ୍ରହ୍ମ ନିଜ ମାୟାଶକ୍ତି ବଳେ
ତିନି ମୂର୍ତ୍ତିର ଦର୍ଶନ ନିଅନ୍ତି ସେ କାଳେ ।
ମହତ ପୁଣ୍ୟ ଜନନୀ ଶ୍ରୀଗୁଣ୍ଡିଚା ଯାତ
ଯହିଁ ଦେବଋଷି ପିତୃଗଣ ସମବେତ ।
ଜଗତ୍‌ପ୍ରଭୁ ଜଗନ୍ନାଥ ଅତି କୌତୁକରେ
ରଥରେ ବସି ଗମନ କରନ୍ତି ଯେ କାଳେ ।
ପୃଥିବୀରେ ରହିଛନ୍ତି ଯେତେ ନୃପବର
ମହୋତ୍ସବ କରିବ ଯେ କର୍ତ୍ତବ୍ୟ ତାଙ୍କର ।
ଗୁଣ୍ଡିଚା ଯାତ୍ରାରେ ଇନ୍ଦ୍ର ଆଦି ଦେବଗଣ
ଛାଡନ୍ତି ନିଜ ନିଜର ଦେବ ଅଭିମାନ ।
ଯେ ଯାହାର ଦିବ୍ୟ ବସ୍ତ୍ର କରି ପରିଧାନ
ଧାଡ଼ିଧରି ରଥସଙ୍ଗେ କରନ୍ତି ଗମନ ।
ପ୍ରଭୁ ଜଗନ୍ନାଥ ରଥ କରି ଆରୋହଣ
ଗୁଣ୍ଡିଚା ନବର ପ୍ରତି କରନ୍ତି ଗମନ ।
ଚଉଦ ଭୁବନ କର୍ତ୍ତା ଶ୍ରୀପରମେଶ୍ୱର
ବ୍ରହ୍ମଲୋକୁଁ ଆଗମନ କରନ୍ତି ସତ୍ୱର ।
ସେ କାଳେ ବୈଦିକ ମନ୍ତ୍ର କରି ଉଚ୍ଚାରଣ
ଦେବତାଙ୍କ ଅଗ୍ରେ ଯାଇ କରନ୍ତି ପ୍ରଣାମ ।
ଜଗନ୍ନାଥଙ୍କର ସଙ୍ଗେ ଯଦି ବ୍ରହ୍ମାଙ୍କର
ପ୍ରଭେଦ ନାହିଁ ତଥାପି ଆସି ବେଦବରଂ ।
ପ୍ରଭୁଙ୍କ ରଥ ପଛରେ କରନ୍ତି ଗମନ
ଗୁଣ୍ଡିଚା ଯାତ୍ରା ମହିମା ଅଟଇ ଏସନ ।
ମହାଦେବୀ ମହୋତ୍ସବ ପ୍ରକୃତ ପକ୍ଷରେ
ସର୍ବତୀର୍ଥ ଫଳ ଦେଇ ପାପ ନାଶ କରେ ।
ଏ ଜଗତେ ଏହାଠାରୁ ଶୁଭଯୋଗ ନାହିଁ
ଶୁଣ ଋଷିଗଣ ସର୍ବଶ୍ରେଷ୍ଠ ଯୋଗ ଏହି ।
ଏ କାଳରେ ଯଦି କେହି ବିଷ୍ଣୁଭକ୍ତ ଜନ
ବିଷ୍ଣୁ ଉଦ୍ଦେଶ୍ୟେ କରେ କିଛି ବସ୍ତ୍ର ଦାନ ।
ଅଳ୍ପ ମାତ୍ର ହେଲେ ମଧ୍ୟ ସେହି ବସ୍ତ୍ର ଦାନ
ମେରୁଦାନ ତୁଲ୍ୟଫଳ କରଇ ପ୍ରଦାନ ।
ଗୁଣ୍ଡିଚା ମଣ୍ଡପେ ପ୍ରଭୁ ଗମନ କାଳରେ
ଯଦି କେହି ପୁଣ୍ୟ ଅନୁଷ୍ଠାନ କରିପାରେ ।
ବିବିଧ ପ୍ରକାରେ ଭକ୍ଷ୍ୟ ଭୋଜ୍ୟ ଦ୍ରବ୍ୟମାନ
ଅବା ଉପହାର କିଛି କରେ ସମର୍ପଣ ।
ଶ୍ରୀ ଜଗନ୍ନାଥଙ୍କୁ ଅବା ବ୍ରାହ୍ମଣଙ୍କୁ ଦେବ
ସେ ଜନ ଅକ୍ଷୟ ପୁଣ୍ୟ ନିଶ୍ଚୟ ଲଭିବ ।

Digitized by srujanika@gmail.com

ହରିଙ୍କ ରଥ ସଙ୍ଗରେ ଯେ କରେ ଗମନ
ପ୍ରଭୁଙ୍କ ଶ୍ରୀମୁଖ ଚାହିଁ କରଇ ପ୍ରଣାମ ।
ରଥ ପଥଧୂଳି ପଙ୍କ ଦେହରେ ଲାଗିଲେ
କୋଟିଜନ୍ମ ପାପ ତାର ନାଶ ହୁଏ ଭଲେ ।
ସର୍ବଯଜ୍ଞ ଅନୁଷ୍ଠାନ ସର୍ବତୀର୍ଥେ ସ୍ନାନ
ସର୍ବବିଧ ଦାନେ ଲାଭ ହୁଏ ଯେତେ ପୁଣ୍ୟ ।
ତାହା ଲାଭ କରି ମୋକ୍ଷପଦ ସେହୁ ପାଇ
ଏହାଠାରୁ ଶ୍ରେଷ୍ଠ ମହୋତ୍ସବ ଆଉ ନାହିଁ ।
ବଳରାମ ସୁଭଦ୍ରାଙ୍କ ସହ ଜଗନ୍ନାଥ
ରଥେ ଯାଇଁ ଦଶଦିଗ କରନ୍ତି ପବିତ୍ର ।
ନିଜ ଅଙ୍ଗ ସ୍ପର୍ଶ ପବନରେ ଭଗବାନ
ଦେହଧାରୀଙ୍କର ପାପ କରନ୍ତି ଦହନ ।
ପ୍ରକୃତରେ ଜଗନ୍ନାଥ ପ୍ରଭୁ ମୁକ୍ତିଦାତା
ଅଜ୍ଞଜନେ ଅବିଶ୍ୱାସ କରନ୍ତି ଏକଥା ।
ଏମାନଙ୍କ ମନ କରିବାକୁ ଆକର୍ଷଣ
ରଥଯାତ୍ରା ଆଦି ଲୀଳା କରିଲେ ଭିଆଣ ।
ଏହିରୂପ ଆଡ଼ମ୍ବରେ ଚଳନ୍ତେ ଶ୍ରୀହରି
ମଧ୍ୟାହ୍ନ କାଳରେ ସୂର୍ଯ୍ୟ ତେଜ ଲାଗିକରି ।
ରଥରଜ୍ଜୁ ଆକର୍ଷଣକାରୀ  ଜନଗଣ
କ୍ଲାନ୍ତ ହେବାକଥା ଜାଣିକରି ଭଗବାନ ।
ନିଜର ଧୂସର ଅଙ୍ଗ ମୁଖ ପଦ୍ମ ମ୍ଳାନ
ଅଚଳ ଭାବେ କରନ୍ତି ପଥେ ଅବସ୍ଥାନ ।
ପ୍ରଭୁଙ୍କ ସନ୍ତାପ ଦୂର କରିବା ନିମିତ୍ତ
କର୍ପୂର ପୁଷ୍ପ ମିଶ୍ରିତ ଜଳ ପଞ୍ଚାମୃତ ।
ଦର୍ପଣରେ ଅଭିଷେକ ପ୍ରଭୁଙ୍କୁ କରିବ
ଚନ୍ଦନ କସ୍ତୁରୀ ଆଦି ସର୍ବାଙ୍ଗେ ଲେପିବ ।
ଚାମର କଳାର୍ଦ୍ର ସୂକ୍ଷ୍ମ ବସନେ ବିଞ୍ଚିବ
ସୁଗନ୍ଧ ପୁଷ୍ପ ମାଳାରେ ଶରୀର ମଣ୍ଡିବ ।
ବଳରାମ ସୁଭଦ୍ରା ଶ୍ରୀ ଜଗନ୍ନାଥଙ୍କର
ବିବିଧ ଦ୍ରବ୍ୟରେ ପୂଜା କରିବ ସତ୍ୱର ।
ସୁମଧୁର ପଣା ଖଣ୍ଡ ନିର୍ମିତ ମିଷ୍ଟାନ୍ନ
ଖର୍ଜ୍ଜୁର ପନୀର ରମ୍ଭା ଆଦି ଫଳମାନ ।
ତାଳ ପନସାଦି ରୁଚିକର ଦ୍ରବ୍ୟମାନ
ସର ଛେନା ପାପୁଡ଼ି ଯେ କରିବ ଅର୍ପଣ ।
କର୍ପୂରରେ ସୁବାସିତ ସୁଶୀତଳ ଜଳ
ଏଳା ଲବଙ୍ଗ ସହିତ ଗୁବାକ ତାମ୍ବୁଳ ।
ଯେ ଜନ ସେକାଳେ କରେ ଦର୍ଶନ ଅର୍ଚ୍ଚନ
ସଂସାର ସାଗରେ ତାର ନ ହୁଏ ଜନମ ।
ବ୍ରହ୍ମଲୋକରେ ବସତି କରେ ସେହି ଜନ
ରଥେ ଥାଇଁ ପ୍ରଭୁଙ୍କୁ ଯେ କରେ ପ୍ରଦକ୍ଷିଣ ।
ତିନି ଅବା ଚାରିବାର କିମ୍ବା ସପ୍ତବାର
ତଦନ୍ତେ କରିବ ପ୍ରଣିପାତ ଦଶବାର ।
ପୂର୍ବେ ବ୍ରହ୍ମା ଯେଉଁ ସ୍ତବ ପଢ଼ି ସ୍ତୁତି କଲେ
ତାହା ପଢ଼ି ପ୍ରଭୁଙ୍କୁ ଯେ ଜନ ସ୍ତୁତି କରେ ।
ପୁଣ୍ୟଆତ୍ମା ସେ ମାନବଗଣ ଅନ୍ତକାଳେ
ବ୍ରହ୍ମଲୋକକୁ ଗମନ କରନ୍ତି ସକଳେ ।
ଅପରାହ୍ନ କାଳ ହେଲେ ଭଗବାନଙ୍କର
ଦେହ ଦକ୍ଷିଣା ପବନେ ହୁଅନ୍ତେ ଶୀତଳ ।
ପୁନରପି ରଥଗତି ଆରମ୍ଭ କରିବ
ନୃତ୍ୟ ଗୀତ ବୀଣା ବେଣୁ ଆଦି ବାଦ୍ୟସର୍ବ ।
ପଞ୍ଚମ ସ୍ୱରେ ମହୁରୀ ବଜାଇ ତକ୍ଷଣ
ହସ୍ତରେ ଚାମର ଧରି କରିବ ବ୍ୟଞ୍ଜନ ।
ଏହିପରି ଭଗବାନ କରନ୍ତେ ଗମନ
ସୂର୍ଯ୍ୟଦେବ ଅସ୍ତାଚଳେ ହୋଇଯାନ୍ତେ ଲୀନ ।
ଚତୁର୍ଦ୍ଦିଗେ ଦୀପମାଳା ଆଲୋକ କରିବ
ସେ ଆଲୋକ ଅବଶିଷ୍ଟ ପଥ ବାହିନେବ ।
ଅନନ୍ତର ତିନିଦେବ ରଥୁ ଓହ୍ଲାଇବେ
ମହବେଦୀ ମଣ୍ଡପକୁ ବିଜେ କରିଯିବେ ।
ସେବେଳେ ଦର୍ଶକଗଣ ଅତି କୁତୁହଳେ
ଠେଲା ଠେଲି ହୁଅନ୍ତି ଯେ ଦର୍ଶନ ଆଶାରେ ।
ପୂର୍ବପରି ସୁଶୋଭିତ ମଣ୍ଡପ ମଧ୍ୟରେ
ତିନି ଦେବଙ୍କୁ ଯେ ନେଇ ସ୍ଥାପିବ ବିଧିରେ ।
ସେ ମଣ୍ଡପ ଶୋଭା ଚନ୍ଦ୍ରାତପେ ମନୋହର
ଚାରିଦିଗେ ଲମ୍ବିଥିବ ମାଲ୍ୟ ଓ ଚାମର ।
ସର୍ବସ୍ତମ୍ଭ ହୋଇଥିବ ରତନେ ଖଚିତ
ତାହାର ମଧ୍ୟରେ ସ୍ୱର୍ଣ୍ଣ ବେଦୀ ସୁଶୋଭିତ ।
ଚାରିଦିଗ ପ୍ରାଚୀରରେ ବେଢ଼ା ହୋଇଥିବ
ସର୍ବସ୍ଥାନେ ଚୂର୍ଣ୍ଣଲିପି ଧବଳ କରିବ ।
ସୋପାନ ମାଳାରେ ସେ ମଣ୍ଡପ ବିରାଜିତ
ସୁପ୍ରଶସ୍ତ ଦ୍ୱାର ଚତୁଷ୍ଟୟେ ସୁଶୋଭିତ ।
ତାହାକୁ ଦେଖିଲେ ଲୋକେ ଭାବିବେ ମନରେ
ଏହିସ୍ଥାନେ ଇନ୍ଦ୍ରଦ୍ୟୁମ୍ନ ଯାଗ କରିଥିଲେ ।
ଏହି ମହାବେଦୀରେ ତ ପ୍ରଭୁ ଜଗନ୍ନାଥ
ଦାରୁମୟ ଦେହ ଧରି ହେଲେ ଆବିର୍ଭୂତ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ତ୍ରୟତ୍ରିଂଶ ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ବଳରାମ ସୁଭଦ୍ରା ସେ ଦେବ ଜଗନ୍ନାଥ
ଦାରୁମୟ ଦେହଧରି ହେଲେ ଆବିର୍ଭୂତ ।
ଦୀନ ଅନାଥ ପତିତଜନ ମାନଙ୍କର
ଦୁଃଖ ବିନାଶନ ଅର୍ଥେକରିଲ ବିଚାର ।

Digitized by srujanika@gmail.com

ଯାତ୍ରା ପର୍ବ ମହୋତ୍ସବ କରିଲ ତିଆଣ
ଯାତ୍ରା ଦେଖିବାକୁ କର ଲୋକେ ଆକର୍ଷଣ ।
ଆକୃଷ୍ଟ ହୁଅନ୍ତି ଲୋକେ ଯାତ୍ରା ଦେଖିବାକୁ
ସଦ୍‌ଗତି ଲଭନ୍ତି ନେତ୍ରେ ଦେଖି ଆପଣଙ୍କୁ ।
ପତିତପାବନ ନାମ କରିଛ ଧାରଣ
ପତିତଜନ ମାନଙ୍କୁ କର ଆକର୍ଷଣ ।
ସଚ୍ଚିଦାନନ୍ଦ ସ୍ୱରୂପୀ ଅଟନ୍ତି ଆପଣ
ଏ ଉତ୍ସବ ଆନନ୍ଦରେ କେଉଁ ପ୍ରୟୋଜନ ।
ହେ ପ୍ରଭୁ ସାର୍ଥକ କରୁଅଛ ନିଜ ବ୍ରତ
ତେଣୁ ତିଆଇଛ ବାରମାସେ ତେରଯାତ ।
ଯାତ୍ରା ପର୍ବ ମହୋତ୍ସବ ଦିନରେ ଦର୍ଶନ
କଲେ ସାଯୁଜ୍ୟ ମୁକତି ଲଭେ ସେହି ଜନ ।
ଉତ୍ସବ ମଧ୍ୟରେ ଶ୍ରେଷ୍ଠ ଶ୍ରୀଗୁଣ୍ଡିଚା ଯାତ
ଦର୍ଶନ କରନ୍ତି ଯେଉଁମାନେ ଭାଗ୍ୟବନ୍ତ ।
ପଥଶ୍ରମ କରି ଯିବାପାଇଁ ଭୟ କଲି
କୁଟୁମ୍ବ ପୋଷଣ ବ୍ରତ ସଦା ଆଚରିଲି ।
ବିଶ୍ୱରୂପ ସର୍ବରୂପେ ତୁମ୍ଭରି ପ୍ରକାଶ
ବିଶ୍ୱମୟ ଯେତେରୂପ ତୁମ୍ଭର ସଦୃଶ ।
ଏ ସର୍ବେଶ୍ୱରଙ୍କୁ କିମ୍ପା ନ ଦିଅ ଚିହ୍ନାଇ
ଦାରୁମୟ ଦେହେ ଲୀଳା କରୁଛ ଗୋସାଇଁ ।
ଲୀଳା ଦେଖିବାକୁ ନୀଳାଚଳକୁ ଗମନ
କରନ୍ତି ଶ୍ରଦ୍ଧାରେ ଭକ୍ତଗଣ ପ୍ରତିଦିନ ।
ସେମାନଙ୍କର ସଙ୍ଗେ ମନଭୃଙ୍ଗ ଧାଇଁଯାଉ
ଲୀଳାରସ ପାନ କରି ନୀଳାଚଳେ ଥାଉ ।
ଏତିକି ମାତ୍ର ମାଗୁଣି ଚରଣେ ତୁମ୍ଭର
ଲୀଳାଦେଖି ଜୀବଯାଉ କହେ ହରିହର ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳ ଖଣ୍ଡେ
ତଥା ଗୁଣ୍ଡିଚାଯାତ୍ରା ବର୍ଣ୍ଣନେ
ନାମ ତ୍ରୟୋତ୍ରିଂଶୋଽଧ୍ୟାୟଃ ।



## ଚତୁଃତ୍ରିଂଶ ଅଧ୍ୟାୟ

ଜୈମିନି କହନ୍ତି ଶୁଣ ମୁନିଗଣ ଧୀରେ
ଅଶ୍ୱମେଧ ଯାଗୁଁ ଜାତ ସରୋବର ତୀରେ ।
ଶ୍ରୀ ନୃସିଂହ ଦେବଙ୍କର ଦକ୍ଷିଣ ପାର୍ଶ୍ୱରେ
ଶ୍ରୀ ଗୁଣ୍ଡିଚା ମଣ୍ଡପରେ ପ୍ରଭୁ ବିଜେ କଲେ ।
ଦେଖିଲେ ମନରେ ହୁଏ ଏହି ଭଗବାନ
ପୁନର୍ବାର ନରଦେହେ ହେବେ ଅବତୀର୍ଣ୍ଣ ।
ସେକାଳରେ ଭକ୍ଷ୍ୟ ଭୋଜ୍ୟ ନାନା ଉପଚାର
ଦେଇ ପ୍ରଭୁଙ୍କୁ ଅର୍ଚ୍ଚନା କରିବ ଯେ ନର ।
ନୃତ୍ୟ ଗୀତରେ ପ୍ରଭୁଙ୍କୁ ସନ୍ତୋଷ କରିବ
ବିବିଧ ପ୍ରକାରେ ପୁଷ୍ପ ଉପହାର ଦେବ ।
ସୁଗନ୍ଧ ଚନ୍ଦନ କୃଷ୍ଣାଗୁରୁ ଧୂପ ଦେବ
ସୁବାସ ତୈଳେ ପ୍ରଦୀପମାଳା ସଜାଡ଼ିବ ।
ଏହିପରି ଦେଇ ନାନା ଉପହାର ମାନ
ପ୍ରଭୁଙ୍କ ସନ୍ତୋଷ ପାଇଁ କରିବ ଯତନ ।
ପୂର୍ବକାଳେ ମହାପ୍ରଭୁ ବର ଦେଇଥିଲେ
ଇନ୍ଦ୍ରଦ୍ୟୁମ୍ନ ନୃପତିଙ୍କୁ ପ୍ରତିଷ୍ଠା କାଳରେ ।
ହେ ରାଜେନ୍ଦ୍ର ଆମ୍ଭେ ପ୍ରତିବର୍ଷ ସାତଦିନ
ବିନ୍ଦୁତୀର୍ଥ ତୀରେ କରିବୁ ଯେ ଅବସ୍ଥାନ ।
ଆମ୍ଭଯୋଗେ ପୃଥିବୀର ସମୁଦାୟ ତୀର୍ଥ
ଇନ୍ଦ୍ରଦ୍ୟୁମ୍ନ ସରୋବରେ ହେବ ଉପସ୍ଥିତ ।
ସେ କାଳରେ ଯେଉଁ ଜନ ତୀର୍ଥେ କରି ସ୍ନାନ
ଗୁଣ୍ଡିଚା ମଣ୍ଡପେ ଯାଇଁ କରିବ ଦର୍ଶନ ।
ଆମ୍ଭଙ୍କୁ ଶ୍ରୀ ବଳରାମ ସୁଭଦ୍ରା ସଙ୍ଗରେ
ସାଯୁଜ୍ୟ ମୁକତି ଲାଭ ସେହିଜନ କରେ ।
ସର୍ବତୀର୍ଥ ଫଳ ପ୍ରଦ ପାପ ବିନାଶକ
ବିଷ୍ଣୁ ପ୍ରୀତିକର ମହା ପୁଣ୍ୟର ଜନକ ।
ସେହି ଇନ୍ଦ୍ରଦ୍ୟୁମ୍ନ ସରୋବରେ କରି ସ୍ନାନ
ଦେବତା ପିତୃଗଣଙ୍କୁ କରିବ ତର୍ପଣ ।
ତଦନ୍ତେ ଶ୍ରୀ ନୃସିଂହଙ୍କୁ ଅର୍ଚ୍ଚନ ବନ୍ଦନ
ତହୁଁ ଗୁଣ୍ଡିଚା ମଣ୍ଡପେ କରିବ ଗମନ ।
ଅନ୍ତଃ ଶୁଦ୍ଧି ଅର୍ଥେ କରି ବେଗେ ଆଚମନ
ଭଗବାନଙ୍କୁ କରିବ ଅର୍ଚ୍ଚନ ବନ୍ଦନ ।
ପୁରୁଷ ନାରୀ ବା କେହି ସାତଦିନ କଲେ
ଜନମ ନୁହଇ ଆଉ ମନୁଷ୍ୟ ଦେହରେ ।
ନିଶ୍ଚୟ ସାଯୁଜ୍ୟ ମୁକ୍ତି ଲଭଇ ସେ ଜନ
ମହାବେଦୀରେ ଯେ କରେ ଦିନରେ ଦର୍ଶନ ।
ଯେତେ ପୁଣ୍ୟ ଲାଭ କରେ ରାତ୍ରେ ଦଶଗୁଣ
ପୁଣ୍ୟ ଲାଭ ହୋଇଥାଏ ସନ୍ଦେହ ନ ମଣ ।
ଗୁଣ୍ଡିଚା ମନ୍ଦିର ମଧ୍ୟେ ଯଦି କେହି ଜନ
ସାମାନ୍ୟ ସତ୍କାର୍ଯ୍ୟ କିଛି କରେ ଅନୁଷ୍ଠାନ ।
କୋଟି କୋଟି ଗ୍ରହଫଳ ଲାଭ ସେ କରଇ
ଯେ ବ୍ୟକ୍ତି ତୁଳା ପୁରୁଷ ଦାନ ଦେଇଥାଇ ।
ଅବା କେହୁ ମହାଦାନ ବିପ୍ରଙ୍କୁ ଦିଅଇ
ଏହିପରି ଆଉ ଯେତେ ପୁଣ୍ୟ କରିଥାଇ ।
ଏ ସକଳ ପୁଣ୍ୟଫଳ ଲଭେ ସେହି ଜନ
ମହାବେଦୀ ନିକଟରେ କିଛି କଲେ ଦାନ ।
ମହାବେଦୀକୁ ଶ୍ରୀକୃଷ୍ଣ କରନ୍ତେ ଗମନ
ଅନ୍ନଦାନ ହୁଏ ତହିଁ ମେରୁ ଦାନ ସମ ।

Digitized by srujanika@gmail.com

ସେ ସ୍ଥାନରେ ଦ୍ୱିଜଗଣ ବ୍ୟାସଙ୍କ ସମାନ
ଏ ମହାଯୋଗ ଦୁର୍ଲ୍ଲଭ ଏଥିରୁ ପ୍ରମାଣ ।
ଅର୍ଦ୍ଧୋଦୟ ଯୋଗ କହିଛନ୍ତି ଷଡ଼ାନନ
ମହାବେଦୀ ଯୋଗ କାଳ ସଙ୍ଗେ ନୁହେଁ ସମ ।
ପିତୃ ପିତାମହ କ୍ରମେ ଶତେକ ପୁରଷ
ସ୍ୱର୍ଗରେ ବା ନରକରେ କରୁଥିଲେ ବାସ ।
ନର ବା ପକ୍ଷୀ ଜାତିରେ ହୋଇଥିଲେ ଜନ୍ମ
ଏ ସ୍ଥାନେ ଶ୍ରାଦ୍ଧ କରିବ ବୋଲି ପୁତ୍ରଗଣ ।
ଏହି କଥା ପିତୃଗଣ ମନେ ଭାବାଥାନ୍ତି
ମୁନିଗଣେ ଶୁଣ ତାହା କହୁଛି ସମ୍ପ୍ରତି ।
ପିତୃ ଦଇବତ ମଘା ନକ୍ଷତ୍ର ଦିନରେ
ପିତୃଙ୍କ ଉଦ୍ଦେଶ୍ୟ ପୁତ୍ର ପୁଣ୍ଡ ଦାନ କଲେ ।
ପିତୃଗଣଙ୍କର ହୁଏ ଅତିଶୟ ପ୍ରୀତି
ପଞ୍ଚଦଶ ତିଥି ମଧ୍ୟେ ଯେ ପଞ୍ଚମୀ ତିଥି ।
ପିଣ୍ଡଦାନ ବିଷୟରେ ଅଟଇ ପ୍ରଶସ୍ତ
ମଘା ନକ୍ଷତ୍ରେ ପଞ୍ଚମୀ ଯଦି ହୁଏ ଯୁକ୍ତ ।
ମଘା ପଞ୍ଚମୀରେ ଶ୍ରାଦ୍ଧ ଦାନ ଯେହୁ କରେ
ପ୍ରଭୁଙ୍କ ନିକଟେ ତୀର୍ଥମୟ ଏ ସ୍ଥାନରେ ।
ଶହେ ପୁରୁଷ ତାହାର ହୁଅନ୍ତି ଉଦ୍ଧାର
ମୁନିଗଣ ଏ କଥାରେ ସନ୍ଦେହ ନ କର ।
ଯେ ଜନ ମଘାପଞ୍ଚମୀ ଯୋଗେ ଶ୍ରାଦ୍ଧ କରେ
ନୀଳକଣ୍ଠ ଶ୍ରୀ ନୃସିଂହଦେବ ମଧ୍ୟସ୍ଥଳେ ।
ନିଜର ଶତେ ପୁରୁଷ କରଇ ଉଦ୍ଧାର
ବ୍ରହ୍ମଲୋକକୁ ଗମନ କରେ ସେହୁ ନର ।
ଅଷ୍ଟମ ମୁହୂର୍ତ୍ତେ ସୂର୍ଯ୍ୟ ରଶ୍ମି କ୍ଷୀଣ ହେଲେ
ସେ କାଳକୁ ତପ ବୋଲି କହନ୍ତି ସକଳେ ।
ଏ କାଳରେ ଶ୍ରାଦ୍ଧାରମ୍ଭ ଅଟଇ ପ୍ରଶସ୍ତ
ଯେ ମାନବ ଶ୍ରାଦ୍ଧ କରିବାକୁ ଅସମର୍ଥ ।
ସେହିମାନେ ଶୁଚିହୋଇ ପିତୃଙ୍କ ନିମିତ୍ତ
ଚଣକ ଦାନ କରିବା ଅଟଇ ଉଚିତ ।
ଅବା ବ୍ରାହ୍ମଣମାନଙ୍କୁ ଭୋଜନ ଯେ ଦେବ
କିମ୍ବା ଯଥାବିଧି ତିଳ ତର୍ପଣ କରିବ ।
ଭୋଜ୍ୟ ବସ୍ତୁର ଯେ ମୂଲ୍ୟ କରିବ ପ୍ରଦାନ
ତହିଁ ନ ମିଳିବେ ଯଦି ବହୁତ ବ୍ରାହ୍ମଣ ।
ଏକମାତ୍ର ବ୍ରାହ୍ମଣଙ୍କୁ ସେ ସମସ୍ତ ଦେବ
ଯେତେ ଭୋଜ୍ୟବସ୍ତୁ ଆୟୋଜନ କରିଥିବ ।
ମଘା ପଞ୍ଚମୀ ଯୋଗରେ ବିପ୍ରମାନଙ୍କର
ବିଦ୍ୟା ବିନୟାଦି ଗୁଣ ବିଚାର ନ କର ।
ଏହି ସୁଦୁର୍ଲ୍ଲଭ ଯୋଗେ ସର୍ବଦ୍ୱିଜଗଣ
ଋଷିମାନଙ୍କର ସଙ୍ଗେ ହୁଅନ୍ତି ସମାନ ।

ଆଷାଢ଼ ଶୁକ୍ଳ ପଞ୍ଚମୀ ମଘା ନକ୍ଷତ୍ରରେ
ଭଗବାନ ଥିବେ ଶ୍ରୀଗୁଣ୍ଡିଚା ମଣ୍ଡପରେ ।
ଏହି ତିନି ପାଦତ୍ରୟ ମଘା ପଞ୍ଚମୀର
ତିନି ପାଦ ସଙ୍ଗେ ଯୁକ୍ତ ଇନ୍ଦ୍ରଦ୍ୟୁମ୍ନ ସର ।
ପୂର୍ଣ୍ଣ ଚତୁଷ୍ପାଦ ଯୋଗ ଏହାକୁ କହନ୍ତି
ପିତୃଗଣ ପିଣ୍ଡଦାନେ ମୁକତି ଲଭନ୍ତି ।
ଏ ଯୋଗରେ ଶ୍ରାଦ୍ଧ କରି ପାରେ ଯେଉଁ ଜନ
ଅନ୍ୟ ତୀର୍ଥ ଶ୍ରାଦ୍ଧେ ତାର ନାହିଁ ପ୍ରୟୋଜନ ।
ପ୍ରସଙ୍ଗ କ୍ରମେ ଶ୍ରବଣ କର ଋଷିଗଣ
ଅପର ଶ୍ରାଦ୍ଧ ବିଷୟ କରିବୁ ବର୍ଣ୍ଣନ ।
ଭାଦ୍ରମାସ ଅମାବାସ୍ୟା ଦିନ ଏ ତୀର୍ଥରେ
ଅବା ଚାରିଯୁଗ ଆଦ୍ୟ ଦିନ ମାନଙ୍କରେ ।
ପିତୃଗଣଙ୍କ ନିମିତ୍ତ ଯେହୁ ଶ୍ରାଦ୍ଧ କରେ
ସହସ୍ର ଗୟା ଶ୍ରାଦ୍ଧର ଫଳ ଲାଭ କରେ ।
ଏ ବିଷୟ ବିଚାରେ କି ଆଉ ପ୍ରୟୋଜନ
ଯେ କାଳେ ମହାବେଦୀରେ ଥିବେ ଭଗବାନ ।
ସେ ସାତଦିନ ମଧ୍ୟରେ ତହିଁ ଦାନ ଦେଲେ
ପାପ ନାଶ ହୁଏ ଜପ ହୋମ ଯେ କରିଲେ ।
ପୂର୍ବ ପୂର୍ବ ଦିନଠାରୁ ପର ପରଦିନ
ଏ ତିନି କାର୍ଯ୍ୟ ନିମିତ୍ତ ପ୍ରଶସ୍ତ ଜାଣିମ ।
ଆଷାଢ଼ ଶୁକ୍ଳ ଦ୍ୱିତୀୟା ପ୍ରାତଃକାଳ ସ୍ନାନ
କରେ ଇନ୍ଦ୍ରଦ୍ୟୁମ୍ନ ସରୋବରେ ଯେଉଁ ଜନ ।
ତାର ତୀରେ ପୁଣ୍ୟତମ ନୃସିଂହ କ୍ଷେତ୍ରରେ
ପାପ ତାପ ଶାନ୍ତି ଅର୍ଥେ ସଂକଳପ କରେ ।
ସର୍ବ ବ୍ରତେ ଶ୍ରେଷ୍ଠ ବନ ଜାଗରଣ ନାମ
ଏ ବ୍ରତ ପାଳନ କଲେ ତୋଷ ଭଗବାନ ।
ଏ ବ୍ରତ ନିୟମ ସାତଦିନ ହେବ ମୌନ
ଇନ୍ଦ୍ରଦ୍ୟୁମ୍ନ ସରୋବରେ ତ୍ରିସନ୍ଧ୍ୟାରେ ସ୍ନାନ ।
କଳସେ ଭଗବାନଙ୍କୁ କରିବ ଅର୍ଚ୍ଚନ
ପ୍ରଭୁଙ୍କ ସମ୍ମୁଖେ ଦୀପ ଜାଳି ସାତଦିନ ।
ଅହର୍ନିଶ ଘୃତେ ଅବା ତିଳ ତୈଳ ଦେଇ
ସେ ଦୀପକୁ ଅତିଯତ୍ନେ ରକ୍ଷାକରି ତହିଁ ।
ଏ ବ୍ରତକୁ କଲେ ଦିବସରେ ମୌନ ହେବ
ଉଜାଗର ହୋଇ ରାତ୍ରି ଯାପନ କରିବ ।
ନିତ୍ୟ କୃତ୍ୟ ସାରି ବିଷ୍ଣୁ ମନ୍ତ୍ର ଜପ କରି
ଏ ବ୍ରତରେ ସାତଦିନ ଉପବାସ କରି ।
ଅଷ୍ଟମ ଦିନ ପ୍ରଭାତ କାଳେ କରି ସ୍ନାନ
ଯଥାବିଧିରେ କରିବ ବ୍ରତ ଉଦ୍‌ଯାପନ ।
ପୁନର୍ବାର ଇନ୍ଦ୍ରଦ୍ୟୁମ୍ନ ତୀର୍ଥେ କରି ସ୍ନାନ
ଆନନ୍ଦରେ ସ୍ୱଗୃହକୁ କରିବ ଗମନ ।

Digitized by srujanika@gmail.com

ସର୍ବତୋ ଭଦ୍ର ମଣ୍ଡଳେ ଘଟ ସ୍ଥାପିକରି
ନାନାବିଧ ଉପଚାରେ ପୂଜିବ ଶ୍ରୀହରି ।
ଘଟ ପଶ୍ଚିମେ ମଣ୍ଡଳ କରିବ ନିର୍ମାଣ
ଆଚାର୍ଯ୍ୟଙ୍କଦ୍ୱାରା ଅଗ୍ନି କରାଇ ସ୍ଥାପନ ।
ସମିଧାଜ୍ୟ ଗୁରୁଦ୍ୱାରା ହୋମ କରାଇବ
ଶତେ ସଂଖ୍ୟା ସହସ୍ରେ ବା ଶକ୍ତି ଯେତେ ହେବ ।
ବିଷ୍ଣୁ ଗାୟତ୍ରୀ ମନ୍ତ୍ରରେ କରିବ ଯେ ହୋମ
ଦକ୍ଷିଣା ଦେବ କାଞ୍ଚନ ବସନ ଗୋ ଦାନ ।
ଏ ରୂପ କରିଲେ ତୋଷ ହେବେ ଭଗବାନ
ଶେଷେ କରାଇବ ବହୁ ବ୍ରାହ୍ମଣ ଭୋଜନ ।
ଏ ରୂପେ ବିଧାନେ କଲେ ବନଯାଗ ବ୍ରତ
ମନ ଅଭିଳାଷ ସିଦ୍ଧି ହୁଅଇ ସମସ୍ତ ।
ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ଫଳ
ଦୁର୍ଲ୍ଲଭ ନୁହେ ସେ ଜନ ଲଭଇ କେବଳ ।
ମହାବେଦୀ ମହୋତ୍ସବେ ବ୍ରତ ଆଚରଣ
ନାରୀ ହେଉ ପୁରୁଷ ବା କରିବେ ପାଳନ ।
ରଥଯାତ୍ରାକାରୀ ରାଜା ଯେଉଁ ଫଳ ପାଏ
ବ୍ରତାଚାରୀ ହେଲେ ସେହି ଫଳ ଲାଭ ହୁଏ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ଚତୁଃତ୍ରିଂଶ ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ଜୟକୃଷ୍ଣ ଜଗନ୍ନାଥ ଜୟ ବଳରାମ
ସୁଭଦ୍ରା ଦେବୀଙ୍କ ପଦେ ପଶିଲି ଶରଣ ।
ବ୍ରତ ଉପବାସ କରିବାକୁ ନାହିଁ ବଳ
ନାମଧରି ପାରିହେବି ମାଗେ ହରିହର ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ମହବେଦୀ ମହୋତ୍ସବ ପ୍ରସଙ୍ଗେ
ବନଜାଗରଣ ବ୍ରତ ବର୍ଣ୍ଣନେ
ଚତୁର୍ବିଂଶୋଽଧ୍ୟାୟଃ ।

□□

## ପଞ୍ଚତ୍ରିଂଶ ଅଧ୍ୟାୟ

ଜୈମିନି ମୁନି କହନ୍ତି ଶୁଣ ମୁନିଗଣ
ପ୍ରଭୁଙ୍କର ରଥରକ୍ଷା କରିବା ବିଧାନ ।
ଆକସ୍ମିତ ଦୈବୀ ଦୁର୍ବିପାକ ଭୂତ ପ୍ରେତ
ଉପଦ୍ରବ୍ୟର ଯେ ରକ୍ଷା ପାଇବ ଯେମନ୍ତ ।
ସେ ବିଧାନ କହୁଅଛି ଶୁଣ ମୁନିଗଣ
ରଥଧ୍ୱଜ ସ୍ଥିତ ଦେବ ପୂଜାର ବିଧାନ ।
ଗନ୍ଧ ପୁଷ୍ପ ଧୂପ ଦୀପ ଆଦି ଉପଚାରେ
ନୃତ୍ୟ ଗୀତ ସହପୂଜା କରିବ ବିଧିରେ ।
ଦିକ୍‌ପାଳଙ୍କୁ ପାୟସାନ୍ନ ବଳି ଅରପିବ
ଭୂତ ପ୍ରେତ ପିଶାଚଙ୍କୁ ପ୍ରିୟ ବଳିଦେବ ।

ଏପରି ରଥକୁ ରକ୍ଷା କରିବା ଉଚିତ
ଯେପରି କେହି ମାନବ ଗ୍ରାମ ପଶୁଜାତ ।
ଆରୋହଣ ନ କରିବେ ରଥର ଉପରେ
ଅଶୁଭ ସୂଚକ ପକ୍ଷୀ ନ ବସେ ତହିଁରେ ।
ଦକ୍ଷିଣକୁ ରଥ ମୁଖ ଅଷ୍ଟମ ଦିନରେ
ପୂର୍ବପରି ସଜାଇବ ପତାକା ମାଳାରେ ।
ନବମ ଦିନ ପ୍ରଭାତେ ନିତ୍ୟ କୃତ୍ୟ ସାରି
ପ୍ରଭୁଙ୍କୁ ନେଇ ସ୍ଥାପିବ ରଥେ ପୂର୍ବପରି ।
ଦକ୍ଷିଣାଭିମୁଖେ ଯାତ୍ରା ଜଗନ୍ନାଥଙ୍କର
ଦୁର୍ଲ୍ଲଭ ଏକଥା ସର୍ବେ ମନରେ ବିଚାର ।
ଶ୍ରଦ୍ଧା ଭକ୍ତିରେ ଏ ଯାତ୍ରା କରେ ମୁକ୍ତି ଦାନ
ଯିବା ଆସିବା ଏ ଦୁଇ ଅଟଇ ସମାନ ।
ଯାତ୍ରା ଅର୍ଥେ ପ୍ରଭୁ ଯିବେ ଗୁଣ୍ଡିଚା ଘରକୁ
ଯାତ୍ରା ଶେଷକରି ଆସିବେ ସେ ମନ୍ଦିରକୁ ।
ପଣ୍ଡିତ ଜନେ କହନ୍ତି ଏ ଦୁଇ ସମାନ
ପ୍ରଭୁଙ୍କର ନବଦିନ ଯାତ୍ରା ଏହା ନାମ ।
ଗୁଣ୍ଡିଚା ଯାତ୍ରାର ତିନି ଅଙ୍ଗ ବିଦ୍ୟମାନ
ପ୍ରଥମ ଅଙ୍ଗ ଗୁଣ୍ଡିଚା ମଣ୍ଡପେ ଗମନ ।
ମହାଦେବୀ ଅବସ୍ଥାନ ଦ୍ୱିତୀୟ ଜାଣିଣ
ତୃତୀୟଟି ମନ୍ଦିରକୁ ପୁନରାଗମନ ।
ଯେ ଜନ ଏ ତିନି ଅଙ୍ଗ କରେ ଦରଶନ
ମହାଦେବୀ ମହୋତ୍ସବ ଫଳ ଏହୁ ପୂର୍ଣ୍ଣ ।
ରଥେ ବସି ବଳରାମ ସୁଭଦ୍ରା ସଙ୍ଗରେ
ଜଗନ୍ନାଥ ଆସିଥିବେ ଦକ୍ଷିଣ ମୁଖରେ ।
ଏକାଳରେ ଯେଉଁ ଜନ କରେ ଦରଶନ
ଏ ଭବ ସାଗରୁ ମୁକ୍ତ ହୁଏ ସେହି ଜନ ।
ଉତ୍ତର ମୁଖରେ ଗଲାବେଳେ ଯେଉଁ ଜନ
ରଥରେ ତିନିଦେବଙ୍କୁ କରଇ ଦର୍ଶନ ।
ସେ ଜନର ଲାଭ ହୋଇଥାଏ ଯେତେ ପୁଣ୍ୟ
ତାହା ଲାଭେ ଯେ କରଇ ବାହୁଡ଼ା ଦର୍ଶନ ।
ଦକ୍ଷିଣ ମୁଖରେ ଗଲାବେଳେ ଭଗବାନ
ଯେ ଜନ ରଥ ସଙ୍ଗରେ କରଇ ଗମନ ।
ତା ଜନ୍ମ ସାର୍ଥକ ଯେତେ ପାଦ ଗତି କରେ
ଏତେ ଅଶ୍ୱମେଧ ଯାଗ ଫଳ ତାକୁ ମିଳେ ।
ଦଣ୍ଡାୟମାନ ହୋଇଣ ରଥ ସମ୍ମୁଖରେ
ସ୍ତବ ସ୍ତୋତ୍ର ଆଦି ପାଠ ଯେ କରେ ଭକ୍ତିରେ ।
ବାରମ୍ବାର ପ୍ରଣିପାତ ପୁଷ୍ପ ବରଷଣ
ନୃତ୍ୟ ଗୀତ ନାନାବିଧ ଉପଚାର ମାନ ।
ଆଲଟ ଚାମର ଧରି ବିଞ୍ଚିବ ସଧୀରେ
ଛତ୍ର ଧାରଣ କରିବ ଭକତି ଭାବରେ ।

Digitized by srujanika@gmail.com

ନାନାବିଧ ଉପହାର ଦ୍ରବ୍ୟମାନ ଥୋଇ
ପ୍ରଭୁଙ୍କୁ ସେବା କରିବ କର୍ତ୍ତବ୍ୟ ଯେ ତହିଁ ।
ବାଞ୍ଛା କଳ୍ପତରୁ ମୁକ୍ତିଦାତା ଜଗନ୍ନାଥ
ହଳାୟୁଧ ସୁଭଦ୍ରାଙ୍କ ସହ ବସି ରଥ ।
ଦକ୍ଷିଣ ମୁଖରେ ନୀଳାଚଳେ ଆଗମନ
କଲାବେଳେ ଯେଉଁମାନେ କରନ୍ତି ଦର୍ଶନ ।
ସେ ସକଳ ଜନଗଣ ମହାତ୍ମା ଅଟନ୍ତି
ବିଷ୍ଣୁଙ୍କର ପ୍ରିୟସ୍ଥାନ ବୈକୁଣ୍ଠକୁ ଯାନ୍ତି ।
ମୁନିଗଣ ଶୁଣ ବାଞ୍ଛା କଳ୍ପତରୁ ସମ
ସର୍ବତୀର୍ଥର ଆଧାର ଦେବ ଜନାର୍ଦ୍ଦନ ।
ରଥ ଆରୋହଣ କରି ସମୁଦ୍ର କୂଳରେ
ବାହୁଡ଼ି ଆସିଲା ବେଳେ ଦକ୍ଷିଣ ମୁଖରେ ।
କୃପା ନେତ୍ରେ ଜଗତକୁ କରନ୍ତି ପବିତ୍ର
ଦେଉଳ ନିକଟେ ହେଲାବେଳେ ଉପସ୍ଥିତ ।
ଭାଗ୍ୟବନ୍ତ ଜନମାନେ କରନ୍ତି ପ୍ରଣାମ
ଅବା ପ୍ରଭୁଙ୍କର ସ୍ତୁତି କରନ୍ତ ଗାୟନ ।
ସେମାନେ ସଂସାରେ ଆଉ ନୁହନ୍ତି ଜନମ
ନିଃସନ୍ଦେହେ ବ୍ରହ୍ମଲୋକେ କରନ୍ତି ଗମନ ।
ଗୁଣ୍ଡିଚା ଯାତ୍ରା ବିଧାନ କରିଲେ ଶ୍ରବଣ
ତାପ ଦୂର ହୋଇଯାଏ ଯେ କରେ କୀର୍ତ୍ତନ ।
ଶଯ୍ୟାରୁ ଉଠିଣ ପ୍ରାତଃ କାଳେ ପ୍ରତିଦିନ
ଗୁଣ୍ଡିଚା ଉତ୍ସବ କଥା ଯେ କରେ କୀର୍ତ୍ତନ ।
ଅଥବା ଶୁଦ୍ଧ ମନରେ କରିବ ଶ୍ରବଣ
ସେହିଜନ ଇନ୍ଦ୍ରଲୋକେ କରଇ ଗମନ ।
ଭଗବାନଙ୍କର ଅନ୍ୟମୂର୍ତ୍ତିକୁ ରଥରେ
ବସାଇ ସେ ଜନ ରଥଯାତ୍ରା କରିପାରେ ।
ଭଗବାନଙ୍କର ଅନୁଗ୍ରହରୁ ନିଶ୍ଚୟେ
ଗୁଣ୍ଡିଚା ମଣ୍ଡପ ଉତ୍ସବର ଫଳ ପାଏ ।
ଅନ୍ତେ ବୈକୁଣ୍ଠ ଧାମକୁ କରଇ ଗମନ
ଏକଥାରେ ସନ୍ଦେହ ନ କର ଋଷିଗଣ ।
ଯେଉଁ ଜନର ଯେ ରୂପ ବିଭବ ସମ୍ପତ୍ତି
ଆଉ ତା ମନରେ ଥାଏ ଯେଉଁ ଶ୍ରଦ୍ଧାଭକ୍ତି ।
ସେ ଜନ ଶ୍ରଦ୍ଧାରେ ଯେଉଁ ରୂପକୁ ଇଚ୍ଛଇ
ଏହି ମହୋତ୍ସବେ ସେହିରୂପ ଫଳ ପାଇ ।
ଯେ କରେ ଏ ଯାତ୍ରା ଅନୁଷ୍ଠାନ ବା ଦର୍ଶନ
ସେ ମାନବ ଏ ସଂସାରେ ନ ହୁଏ ଜନମ ।
ପୂର୍ବକାଳେ କହିଥିଲେ ଚତୁର ଆନନ
ସ୍ୱମୁଖରେ ଏ ଉତ୍ସବ ବିଷୟ ବର୍ଣ୍ଣନ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ପଞ୍ଚତ୍ରିଂଶ ଛାନ୍ଦ ଶେଷ ଉତ୍କଳ ଭାଷାରେ ।

ହେ ଜଗତନାଥ ଜଗତ୍ ଗୁରୁ ରୂପ ଧରି
ସହସ୍ରାର ପଦ୍ମେ ନିତ୍ୟ ଲୀଳାରେ ବିହରି ।
ଯେ ଜନ ମାନସ ନେତ୍ରେ କରଇ ଦର୍ଶନ
ତାହାର ନାଶ ହୁଅଇ ଭବଭୟ ମାନ ।
ବେଦାନ୍ତ ଶାସ୍ତ୍ରେ ପ୍ରସିଦ୍ଧ ମୁକତି ଲଭଇ
ସାଧନା ବଳରେ ସିନା ଦର୍ଶନ କରଇ ।
କିନ୍ତୁ ଯେଉଁମାନେ ଅସମର୍ଥ ସାଧନରେ
ତାହାଙ୍କୁ ମୁକତି କଥା ବିଚାରି ମନରେ ।
ନୀଳାଚଳ ଧାମେ ଦାରୁରୂପ ଧରିଅଛ
ଅଧମ ଜନକୁ ଭବ ସାଗରୁ ତାରୁଛ ।
ଏକଥା ତ ଅସମ୍ଭବ ନୁହେଁ କଦାଚନ
ଆପଣ କରନ୍ତି ଦୁର୍ଘଟନାକୁ ଘଟନ ।
କାୟ ମନୋବାକ୍ୟରେ ଯେ ଦର୍ଶନ କରଇ
ସର୍ବସିଦ୍ଧି ଲାଭ କରି ମୁକତି ଲଭଇ ।
ହେ ପ୍ରଭୁ ଭକ୍ତିରେ ଦିନେ ନ କଲି ଦର୍ଶନ
କହେ ହରିହର ପାରି ହୋଇବି କେସନ ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳଖଣ୍ଡେ
ବାହୁଡ଼ା ଯାତ୍ରା ବର୍ଣ୍ଣନେ ନାମ
ପଞ୍ଚତ୍ରିଂଶୋଽଧ୍ୟାୟଃ ।

❑❑

## ଷଟ୍‌ତ୍ରିଂଶ ଅଧ୍ୟାୟ

ଜୈମିନି ମୁନି କହନ୍ତି ଶୁଣ ଋଷିଗଣ
ଶୟନ ଯାତ୍ରା ଉତ୍ସବ କରିବୁ ବର୍ଣ୍ଣନ ।
ସୂର୍ଯ୍ୟ କର୍କଟ ରାଶିକୁ କରନ୍ତେ ଗମନ
ଆଷାଢ଼ ଶୁକଳ ଏକାଦଶୀ ଆଦ୍ୟଦିନ ।
କାର୍ତ୍ତିକ ଶୁକଳ ଏକାଦଶୀ ପରିଯନ୍ତ
ଚାରିମାସ ଭଗବାନ ରହନ୍ତି ନିଦ୍ରିତ ।
ଭଗବାନଙ୍କର ଆରାଧନା ବିଷୟରେ
ଏ ଚାରିମାସ ପ୍ରଶସ୍ତ ପ୍ରତି ସମ୍ବତ୍ସରେ ।
ନାନାବ୍ରତ କରିଥିବ ନିୟମ ପାଳିଣ
କାଶୀଧାମେ ବାସ କଲେ ହୁଏ ଯେତେ ପୁଣ୍ୟ ।
ନୀଳାଚଳେ ଜଗନ୍ନାଥଙ୍କର ନିକଟରେ
ଚାରିମାସ ମଧ୍ୟେ ଏକଦିନ ବାସ କଲେ ।
ସେହି ଫଳ ପ୍ରାପ୍ତ ହୁଏ ନିର୍ମଳ ମନରେ
ଯଦି କେହି କେତେଦିନ ବାସ କରିପାରେ ।
ଯେତେଦିନ ରହେ ଶତେ ଅଶ୍ୱମେଧ ଫଳ
ସେ ଜନ ଲାଭ କରଇ ସନ୍ଦେହ ନ କର ।
ଏହି ଚାତୁର୍ମାସ୍ୟା ବ୍ରତ କରି ଆଚରଣ
ପ୍ରତିଦିନ ସମୁଦ୍ରର ଜଳେ କଲେ ସ୍ନାନ ।

Digitized by srujanika@gmail.com

ଶ୍ରୀଜଗନ୍ନାଥ ପ୍ରଭୁଙ୍କୁ କରଇ ଦର୍ଶନ
ଶୋକଭାଗୀ ନ ହୁଅଇ କେବେ ସେହି ଜନ ।
ଶ୍ରୀ କ୍ଷେତ୍ରରେ ବାସ କରି ଯେବା ବ୍ରତ କରେ
ପ୍ରଭୁଙ୍କର କୃପାଦୃଷ୍ଟି ପଡ଼େ ତା ଉପରେ ।
ଭକ୍ତି ଯୁକ୍ତ କାର୍ଯ୍ୟ ଆଉ ଦେବ ଭଗବାନ
ଏ ଦୁଇ ମଧ୍ୟେ ପାର୍ଥକ୍ୟ ନାହିଁ କଦାଚନ ।
ଶ୍ରୁତିସ୍ମୃତି ଉକ୍ତ ଯେତେ କାର୍ଯ୍ୟ ତ୍ୟାଗ କରି
ଶ୍ରୀକ୍ଷେତ୍ରେ ବାସ କରିବା କର୍ତ୍ତବ୍ୟ ସବୁରି ।
ସର୍ବ ନିୟନ୍ତା ଜଗତ ଗୁରୁ ଭଗବାନ
ଅନନ୍ତ ଶଯ୍ୟାରେ ଯେବେ କରନ୍ତି ଶୟନ ।
ସେ କାଳରେ ଅନ୍ୟପୁଣ୍ୟ କ୍ଷେତ୍ରେ ଭଗବାନ
ରହନ୍ତି ନାହିଁ ଯେ ଶୁଣିଥାଅ ଋଷିଗଣ ।
ଯେପରି ବୈକୁଣ୍ଠପୁରେ ବିଜେ ଭଗବାନ
ଯେପରି ପୁରୁଷୋତ୍ତମ କ୍ଷେତ୍ରେ ବିଦ୍ୟମାନ ।
ସମାନ ଭାବରେ ବିରାଜିତ ବାରମାସ
ଅନ୍ୟମାସ ମଧ୍ୟେ ଶ୍ରେଷ୍ଠ ଏହି ଚାରିମାସ ।
ଏ ଚାରିମାସେ ଯେ କରେ ସ୍ୱକ୍ଷେତ୍ରେ ଦର୍ଶନ
ତାକୁ ମୁକ୍ତି ମିଳିଥାଏ ସନ୍ଦେହ ନ ମଣ ।
ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରେ ଅନ୍ୟ ଅଷ୍ଟମାସ
ଦର୍ଶନ କରି ପ୍ରତ୍ୟହ ଯେ କରଇ ବାସ ।
ଯେତେ ପୁଣ୍ୟ ତାର ହୁଏ ଏ ଚାରିମାସରେ
ଏକା ଦିନକରେ ସେହି ଫଳ ଲାଭ କରେ ।
ପୁରୁଷୋତ୍ତମ କ୍ଷେତ୍ରରେ ଏ ଚାରିମାସରେ
ସାଯୁଜ୍ୟ ମୁକତି ଲାଭ ହୁଏ ବାସ କଲେ ।
ଯେ ବ୍ୟକ୍ତି ଏକ ବରଷ କ୍ଷେତ୍ରେ କରେ ବାସ
ଅନ୍ୟ ପୁଣ୍ୟ କ୍ଷେତ୍ରେ ଫଳ ଲଭଇ ଅବଶ୍ୟ ।
ଯେ ମାନବ ସର୍ବବିଧ ପାପ କାର୍ଯ୍ୟେ ଲିପ୍ତ
ସଦାଚାରମାନଙ୍କରୁ ହୁଅଇ ବଞ୍ଚିତ ।
ଯାବତୀୟ ଧର୍ମ କାର୍ଯ୍ୟରୁ ଯେ ବହିର୍ଭୂତ
ଏ କ୍ଷେତ୍ରେ ବାସ କରିବା ତାହାର ଉଚିତ ।
ନାନାବିଧ ପାପ କରି ଚତୁର୍ମାସ୍ୟା ବ୍ରତ
ଏ କ୍ଷେତ୍ରରେ ବାସ କରି ଥରେ କରେ ମାତ୍ର ।
ସକଳ ପାପ ତାହାର ହୁଅଇ ଦହନ
ନୃସିଂହଙ୍କ ପ୍ରସାଦରେ ବୈକୁଣ୍ଠେ ଗମନ ।
ଏଣୁ ବୁଝାଇ କହୁଛି ଶୁଣ ଋଷିଗଣ
ଭଗବାନ ଚାରି ମାସ କରନ୍ତି ଶୟନ ।
ସେ ଚାରିମାସ ଅଟଇ ପରମ ପବିତ୍ର
ପୁରୁଷୋତ୍ତମରେ ବାସ କରିବା ଉଚିତ ।
ଜନ୍ମ ସଫଳ କରିବା ଇଚ୍ଛାଅଛି ଯାର
ସତ୍‌କାର୍ଯ୍ୟ କରୁ ଅଥବା ନ କରୁ ସେ ନର ।

ଆଷାଢ଼ମାସେ ଶୁକ୍ଳ ଏକାଦଶୀ ଦିନ
ଶ୍ରୀକ୍ଷେତ୍ରେ ଶୟନୋତ୍ସବ କରିବ ଦର୍ଶନ ।
ଭଗବାନଙ୍କ ଶୟନ ଉତ୍ସବ ନିମିତ୍ତ
ଅତି ଯତନେ ମଣ୍ଡପ କରିବ ନିର୍ମିତ ।
ତା ମଧ୍ୟେ ଶୟନ ଗୃହ କରିବ ନିର୍ମାଣ
ରତନ ପଲଙ୍କ ପରେ କୋମଳ ବସନ ।
ଉପାଦାନ ସହ ଶଯ୍ୟା ପ୍ରସ୍ତୁତ କରିବ
କର୍ପୂର ଚୂର୍ଣ୍ଣ ତାହାର ଉପରେ ସିଞ୍ଚିବ ।
ଊର୍ଦ୍ଧ୍ୱଭାଗ ଚନ୍ଦ୍ରାତପେ କରିବ ଶୋଭନ
ଚତୁର୍ଦ୍ଦିଗେ ବେଢ଼ାଇବ କୋମଳ ବସନ ।
ସେହି ଆବରଣ ବସ୍ତ୍ରେ ଚନ୍ଦନ ଲେପିବ
ସେ ଗୃହରେ ଛିଦ୍ରଶୂନ୍ୟ ଦ୍ୱାର ରହିଥିବ ।
ଏହି ଶଯ୍ୟା ଯେଉଁପରି ହେବ ସମତଳ
ନାନାବିଧ ଚିତ୍ରେ ସୁଶୋଭିତ ସୁକୋମଳ ।
ଏ ରୂପେ ନିଶୀଥ କାଳେ ଶୟନ ଗୃହରେ
ସ୍ୱର୍ଣ୍ଣ ରଜତ ପିତ୍ତଳ ଅଥବା କାଷ୍ଠରେ ।
ଶ୍ରଦ୍ଧାରେ ପ୍ରତିମା ତ୍ରୟ କରିବ ନିର୍ମାଣ
ପୂର୍ବା ପୂର୍ବ ଦ୍ରବ୍ୟମାନ ପ୍ରଶସ୍ତ ଜାଣିମ ।
ବଳରାମ ସୁଭଦ୍ରା ଯେ ଜଗନ୍ନାଥଙ୍କର
ପାଦମୂଳ ପ୍ରତିମାଙ୍କୁ ସ୍ଥାପିବ ସକଳ ।
ତିନିଦେବଙ୍କୁ ବିଧିରେ ଅର୍ଚ୍ଚନା କରିବ
ପୂଜା ଶେଷ ଦ୍ରବ୍ୟ ପ୍ରତିମାଙ୍କୁ ଅରପିବ ।
ଏ ରୂପେ ଅର୍ଚ୍ଚନା କରି ଭାବିବ ମନରେ
ଅଭେଦ ପ୍ରତିମାତ୍ରୟ ପ୍ରଭୁଙ୍କୁ ସଙ୍ଗରେ ।
ପ୍ରାର୍ଥନା କରିବ ଦୁଇହାତ ଯୋଡ଼ିକରି
ଆପଣ ଜୀବନ ରୂପେ ଜଗତେ ବିହରି ।
ଜଗତେ ମଙ୍ଗଳ ବୃଦ୍ଧି ନିମିତ୍ତ ଆପଣ
ଆଜିଠାରୁ ଚାରିମାସ କରିବେ ଶୟନ ।
ଶୟନ ଗୃହକୁ ବେଗେ କର ଆଗମନ
ହେ ପ୍ରଭୁ ତହୁଁ ସୁଖରେ କରନ୍ତୁ ଶୟନ ।
ଏପରି ପ୍ରାର୍ଥନା ଶେଷେ ତିନି ଦେବଙ୍କର
ଦେହର ତିନୋଟି ମାଳା ଆଣିବ ସତ୍ୱର ।
ସେହି ତିନି ପ୍ରତିମାଙ୍କ ଦେହରେ ପ୍ରଦାନ
ମଙ୍ଗଳ ସୂଚକ ସ୍ତୁତି କରିବ ଗାୟନ ।
ଶୟନ ଗୃହର ଦ୍ୱାରଦେଶକୁ ଯେ ନେବ
ପୀଠୋପରି ତିନିଦଣ୍ଡ ସ୍ଥାନ ଯେ କରିବ ।
ଶତପଳ ପଞ୍ଚାମୃତେ କରାଇବ ସ୍ନାନ
ତିନିଙ୍କ ଅଙ୍ଗେ ଲେପିବ ସୁଗନ୍ଧ ଚନ୍ଦନ ।
ବସ୍ତ୍ର ଅଳଙ୍କାର ଅଙ୍ଗ କରି ବିଭୂଷଣ
ପ୍ରାର୍ଥନା କରିବ ହସ୍ତ ଦୁଇକୁ ଯୋଡ଼ିଣ ।

Digitized by srujanika@gmail.com

ହେ ଜଗତବନ୍ଧୁ ରକ୍ଷାକର୍ତ୍ତା ଜଗତର
ହେ ଜଗତନାଥ ଜୟ ହେଉ ଯେ ତୁମ୍ଭର ।
ହେ ଈଶ ଜଗତହିତ ନିମିତ୍ତ ଆପଣ
ବର୍ଷାକାଳେ ଚାରିମାସ କରନ୍ତୁ ଶୟନ ।
ଆପଣ ଇନ୍ଦ୍ରସହିତ ହୋଇଣ ପୂଜିତ
ଜଗତେ ସର୍ବ ଅଶୁଭ କର ପ୍ରଶମିତ ।
ଏ କ୍ଷଣେ ଶୟନ ଗୃହେ କର ଆଗମନ
ଏ ଶଯ୍ୟାରେ ନିଦ୍ରାଯାନ୍ତୁ ସୁଖରେ ଆପଣ ।
ଦେବାଧି ରାଜା ପ୍ରଭୁଙ୍କୁ କରଇ ଶୟନ
ଏହି ରୂପରେ ପ୍ରାର୍ଥନା କରିବ ସେ କ୍ଷଣ ।
ଶୟନ ଗୃହର ଦ୍ୱାର ଉତ୍ତମ ପ୍ରକାରେ
ବନ୍ଧନ କରିବ ଅତି ଦୃଢ଼ ଶିକୁଳିରେ ।
ଜନାର୍ଦ୍ଦନ ନିଦ୍ରାଯାନ୍ତି ବର୍ଷା ଚାରିମାସ
ଏ କାଳରେ ନାନାବ୍ରତ କରିବ ଅବଶ୍ୟ ।
ଏ ରୂପରେ କରାଇଲେ ପ୍ରଭୁଙ୍କୁ ଶୟନ
ଉତ୍ତମ ସୁଖକୁ ଲାଭ କରେ ସେହି ଜନ ।
ଯେଉଁ ବିଷ୍ଣୁ ଭକ୍ତ ଜନ ଏହିରୂପେ କରେ
କଳ୍ପ କାଳଯାଏ ବିଷ୍ଣୁଲୋକେ ବାସ କରେ ।
ଏ ସମୟେ ଯେ ପ୍ରକାରେ ବ୍ରତର ନିୟମ
ସେ ବିଧାନ କହୁଅଛି କରନ୍ତୁ ଶ୍ରବଣ ।
ଚାତୁର୍ମାସ୍ୟା ବ୍ରତାଚାରୀ ମଞ୍ଚ ବା ଖଟରେ
ଶୟନ ଯେ ନ କରିବ ଏ ବର୍ଷା କାଳରେ ।
ଋତୁକାଳ ଭିନ୍ନ ଭାର୍ଯ୍ୟା ସମ୍ଭୋଗ ନ କରି
ମାଂସ ମଧୁ ପରଅନ୍ନ ବରଜନ କରି ।
ବାର୍ତ୍ତାକୀ ମୂଳା ପୋଟଳ ନ କରି ଭକ୍ଷଣ
ମସୁର ଶ୍ୱେତ ସର୍ଷପ କରିବ ବର୍ଜ୍ଜନ ।
ଶରତ କାଳର ଧାନ୍ୟ କୁଳତ୍ଥ ଯେ ବିରି
ଶ୍ରାବଣ ମାସରେ ଶାକ ଭୋଜନ ନ କରି ।
ଦଧି ଭ୍ରାଦବ ମାସରେ ଦୁଗ୍ଧ ଆଶ୍ୱିନରେ
ବିରି ବର୍ଜ୍ଜନ କରିବ କାର୍ତ୍ତିକ ମାସରେ ।
ରାଜା ହେଲେ ମଧ୍ୟ ଯତିବ୍ରତ ଆଚରିବ
ଏ ଚାରିମାସେ ପାଦୁକା ପାଦରେ ନ ଦେବ ।
ଚାରିମାସ କରିବାକୁ ହେଲେ ଅସମର୍ଥ
ସେ ପାପର ଶାନ୍ତି ପାଇଁ ଏହି ପ୍ରାୟଶ୍ଚିତ ।
ନିତ୍ୟ କୃତ୍ୟ ତ୍ରିକାଳରେ କରି ସମାପତ
କାର୍ତ୍ତିକ ମାସରେ ବ୍ରତ କରିବ ନିଶ୍ଚିତ ।
କୃଷ୍ଣାୟ ନମଃ ହରୟେ ନମଃ କେଶବାୟ
ନମଃ ସର୍ବ ପାପହାରୀ ନମଃ ନୃସିଂହାୟ ।
ଏ ମନ୍ତ୍ରେ ପ୍ରଣାମ କଲେ ଦେବ ଜନାର୍ଦ୍ଦନ
ତାହାର ସକଳ ପାପ କରନ୍ତି ଦହନ ।
ପ୍ରଜ୍ୱଳିତ ଅଗ୍ନି ତୂଳାରାଶି ଭସ୍ମ କରେ
ପାପପୁଞ୍ଜଦଗ୍ଧ ହୋଇଯାଏ ସେ ପ୍ରକାରେ ।
ନିରାହାରେ ଅବା ଏକାହାରେ କେହି ଜନ
କେବଳ ବିଷ୍ଣୁ ନିର୍ମାଲ୍ୟ କରିଣ ଭୋଜନ ।
ରାତ୍ରିକାଳରେ ଭୋଜନ କରେ ହବିଷ୍ୟାନ୍ନ
ଚାତୁର୍ମାସ୍ୟା ବ୍ରତକାଳେ ଏ ମନ୍ତ୍ରେ ପ୍ରଣାମ ।
ତା ପକ୍ଷରେ ସ୍ୱର୍ଗଲାଭ ସାମାନ୍ୟ ଜାଣିବ
ଦିବାନିଦ୍ରା ମିଥ୍ୟାଭାଷା ତୈଳ ବରଜିବ ।
ଆଷାଢ଼ ମାସରେ ଶୁକ୍ଳ ଏକାଦଶୀ ଦିନ
ଅବା କର୍କଟ ସଂକ୍ରାନ୍ତି ହେବ ଯେଉଁଦିନ ।
ଅଥବା ଆଷାଢ଼ମାସ ପୂର୍ଣ୍ଣିମା ଦିନରେ
ଏ ବ୍ରତ ପାଇଁ କରିବ ସଂକଳ୍ପ ବିଧିରେ ।
ଜଗନ୍ନାଥ ଶ୍ରୀକୃଷ୍ଣଙ୍କୁ କରିବ ଅର୍ଚ୍ଚନ
ପ୍ରଣାମ କରି ପ୍ରାର୍ଥନା କରିବ ଏସନ ।
ହେ ପ୍ରଭୁ ଆପଣଙ୍କର ହେଲା ଅନୁଗ୍ରହ
ଚାତୁର୍ମାସ୍ୟା ବ୍ରତେ ମୋର ବଳିଲା ଆଗ୍ରହ ।
ହେ କେଶବ ସଂକଳପ କଲି ଏହି ବ୍ରତ
ଆପଣଙ୍କ ଅନୁଗ୍ରହେ ହେବ ସମାପତ ।
ଜଗନ୍ନାଥ ଏହି ବ୍ରତ ନ ହେଉ ସମ୍ପୂର୍ଣ୍ଣ
ଯଦି ପରଲୋକେ ମୁହିଁ କରିବି ଗମନ ।
ତଥାପି ତ ଅନୁଗ୍ରହ କରିବେ ଆପଣ
ଯେପରି ଏ ବ୍ରତ ଫଳ ଲଭିବି ସମ୍ପୂର୍ଣ୍ଣ ।
ଦେବ ଦେବ ଜଗନ୍ନାଥ ପ୍ରଭୁଙ୍କ ଚରଣ
ପ୍ରାର୍ଥନା କରି ଏ ବ୍ରତ କରିବି ଗ୍ରହଣ ।
ଚାରିମାସ ପ୍ରଭୁଙ୍କର ପଦେ ରଖି ମନ
ଏହି ବ୍ରତ ଆନନ୍ଦରେ କରି ଉଦ୍‌ଯାପନ ।
ପ୍ରତ୍ୟେକ ମାସ ଶେଷରେ କରିବ ପାରଣ
ଜଗନ୍ନାଥଙ୍କୁ ବିଧିରେ କରିବ ଅର୍ଚ୍ଚନ ।
ବ୍ରାହ୍ମଣ ଭୋଜନ ମିଷ୍ଟାନ୍ନରେ କରାଇବ
ଆଶକ୍ତି ହେଲେ କାର୍ତ୍ତିକ ଶେଷରେ କରିବ ।
ଜଗନ୍ନାଥଙ୍କୁ କାର୍ତ୍ତିକ ପୂର୍ଣ୍ଣମୀର ଦିନ
ପୂଜାଶେଷ କରି ଅଗ୍ନିକୁଣ୍ଡେ ଘୃତ ହୋମ ।
ବ୍ରାହ୍ମଣଙ୍କୁ କରିବ ଯେ ଭଗବାନ ଜ୍ଞାନ
ଶ୍ରଦ୍ଧାରେ ଦେବ ପାୟସ ମିଷ୍ଟାନ୍ନ ଭୋଜନ ।
ଯଥାଶକ୍ତି ପୂର୍ଣ୍ଣ ବସ୍ତ୍ର ଆଦି ଦେବ ଦାନ
ଚାତୁର୍ମାସ୍ୟା ବ୍ରତପ୍ରତି ଅଶକ୍ତ ଯେ ଜନ ।
ସେ କେବଳ କାର୍ତ୍ତିକରେ ବ୍ରତ ଅନୁଷ୍ଠାନ
କଲେ ତାର ଚାତୁର୍ମାସ୍ୟା ବ୍ରତ ହେବ ପୂର୍ଣ୍ଣ ।
ଚାତୁର୍ମାସ୍ୟା ବ୍ରତ ନାନାବିଧ ଅନୁଷ୍ଠାନ
ମୁନିଗଣ କରିବ ଯେ କୃଚ୍ଛ୍ର ଚାନ୍ଦ୍ରାୟଣ ।

Digitized by srujanika@gmail.com

ଏକାନ୍ତର ଏକଦିନ ଅନ୍ତରେ ଭୋଜନ
ଦ୍ୟନ୍ତର ଦିଦିନ ପରେ କରିବ ଭୋଜନ ।
ମାସମାସ ଉପବାସ ନ କରି ଭୋଜନ
ଅଥବା ଅନ୍ନ ଭୋଜନ କରିବ ବର୍ଜନ ।
ଫଳାହାର କରି ଦିନ କରିବ ଯାପନ
କିମ୍ବା ନକ୍ତବ୍ରତ ରାତ୍ରି କାଳରେ ଭୋଜନ ।
ଯବ ଗୋଧୂମକ ଯେଉଁ ବ୍ରତ ଚାନ୍ଦ୍ରାୟଣ
ଅଥବା ପରାଗ ବ୍ରତ କରିବ ପାଳନ ।
ଯେଉଁବ୍ୟକ୍ତି ଚାରିମାସ କରି ଦୁଗ୍ଧ ପାନ
ଅଥବା ଶାକ ଆହାରେ କଟାଇବ ଦିନ ।
ଇହକାଳରେ ପରମ ସୁଖ ସେ ଭୁଞ୍ଜିବ
ଅନ୍ତକାଳରେ ନିର୍ବାଣ ମୁକତି ଲଭିବ ।
କାର୍ତ୍ତିକ ବ୍ରତେ ଆଶକ୍ତ ହେବ ଯେଉଁ ଜନ
ସେ ବକପଞ୍ଚକ ବ୍ରତ କରିବ ପାଳନ ।
କାର୍ତ୍ତିକ ଶୁକଳ ପକ୍ଷ ଶେଷ ପାଞ୍ଚଦିନ
ବନ୍ୟ ବୃତ୍ତିରେ ଜୀବନ କରିବ ଧାରଣ ।
ଯେଉଁଜନ ଏହି ବ୍ରତ କରଇ ପାଳନ
ଜଗନ୍ନାଥଙ୍କର ନୀତି କରେ ସମ୍ପାଦନ ।
ସମଗ୍ର ପାପ ତାହାର ବିଲୁପ୍ତ ହୁଅଇ
ବୈକୁଣ୍ଠ ଭୁବନେ ବାସ କରେ ସେହି ଯାଇ ।
ଦୀର୍ଘାୟୁ ଲଭେ କାମନା ପୂର୍ଣ୍ଣ ହୁଏ ତାର
ସକଳ ବ୍ରତ ମଧ୍ୟରେ ଏହି ବ୍ରତ ସାର ।
ଚାତୁର୍ମାସ୍ୟା ବ୍ରତ ବିଧି କରିଲୁ ବର୍ଣ୍ଣନ
ଅପର ରହସ୍ୟ କଥା କରନ୍ତୁ ଶ୍ରବଣ ।
ଚାତୁର୍ମାସ୍ୟା ବ୍ରତ ଅବା ଆଉ ଅନ୍ୟବ୍ରତ
ଅଭକ୍ତିରେ କଲେ ବ୍ୟର୍ଥ ହୁଅଇ ସମସ୍ତ ।
ମହାଯଜ୍ଞ ସର୍ବତୀର୍ଥ ସର୍ବବିଧ ଦାନ
ତପସ୍ୟା ଆଦି ସାତ୍ତ୍ୱିକୀ କ୍ରିୟା ଅନୁଷ୍ଠାନ ।
ଏକମାତ୍ର ବିଷ୍ଣୁଭକ୍ତି ବଳରେ ସକଳ
କ୍ରିୟା ନିର୍ବିଘ୍ନରେ ଦେଇଥାଏ ପୂର୍ଣ୍ଣଫଳ ।
ଭଗବାନଙ୍କ ଶୟନ ଉତ୍ସବ ଦର୍ଶନ
କହନ୍ତି ଯେଉଁ ସକଳ ମହାତମାଗଣ ।
ଏ ବ୍ରତ ବିଷୟେ ଅପରକୁ ପ୍ରବର୍ତ୍ତାଏ
ଜନନୀ ଗର୍ଭେ ସେ ଆଉ ଜନମ ନ ହୁଏ ।
ଶୟନୋତ୍ସବ ଶେଷରେ ଏ ବ୍ରତାଚରଣ
ପ୍ରଭୁଙ୍କ ନିକଟେ ରହି କରେ ଯେଉଁ ଜନ ।
ଯଥାସମୟରେ ତାହା କରେ ସମାପନ
ନିଃସନ୍ଦେହେ ବ୍ରହ୍ମଲୋକେ କରଇ ଗମନ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ଷଟତ୍ରିଂଶ ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ହେ ପ୍ରଭୁ ଭକତ ବାଞ୍ଛା କଳ୍ପତରୁ ହରି
ଲୋକହିତ ଅର୍ଥେ ଦାରୁରୂପରେ ବିହରି ।
ନୀଳାଚଳେ ନିତ୍ୟଲୋକ ଲୀଳା ଅଭିନୟ
ଦେଉଛ ପାପୀଜନଙ୍କୁ ସର୍ବଦା ଅଭୟ ।
ଆପଣଙ୍କର ନାମକୁ ସ୍ମରଣ ଯେ କରେ
ଭୂତଳରେ ନିତ୍ୟ ଲୀଳା ରସ ଭୋଗ କରେ ।
ନାମ ଜପ କରିବାକୁ ନାହିଁ ସାମରଥ
କହେ ହରିହର ହେବ କିପରି ମୁକତ ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳଖଣ୍ଡେ
ଶୟନୋତ୍ସବ ବର୍ଣ୍ଣନେ
ନାମ ଷଟତ୍ରିଂଶ ଅଧ୍ୟାୟଃ ।



## ସପ୍ତତ୍ରିଂଶ ଅଧ୍ୟାୟ

ମୁନିଗଣ ଏହାପରେ କହୁଅଛି ଶୁଣ
ଯେ ରୂପେ ଦକ୍ଷିଣାୟନ ସଂକ୍ରାନ୍ତି ବିଧାନ ।
ଏ ସଂକ୍ରାନ୍ତି ଚଳନର ପରେ ପୁଣ୍ୟକାଳ
ବିଂଶଦଣ୍ଡ ପରିମାଣ ବୁଝ ହେ ସକଳ ।
ପ୍ରଭୁଙ୍କୁ ପଞ୍ଚାମୃତରେ କରାଇବ ସ୍ନାନ
ଦେହେ ଲେପିବ ଅଗୁରୁ କର୍ପୂର ଚନ୍ଦନ ।
ମନୋହର ବସ୍ତ୍ର ନାନାବିଧ ଅଳଙ୍କାର
ସୁଗନ୍ଧ ପୁଷ୍ପ ମାଳାରେ ମଣ୍ଡିବ ଶରୀର ।
ଦୀପମାଳା ଭକ୍ଷ୍ୟଭୋଜ୍ୟ ଆଦି ଉପଚାରେ
ଶ୍ରୀ ଜଗନ୍ନାଥଙ୍କୁ ପୂଜା କରିବ ବିଧିରେ ।
କର୍ପୂର ଲିପ୍ତ ତାମ୍ବୁଳ ହରିଙ୍କ ମୁଖରେ
ଦେଇ ବନ୍ଦାଇବ ଦୁର୍ବାଙ୍କୁର ସହିତରେ ।
ଯେ ଜନ ଦର୍ଶନ କରେ ଏ ପୂଜା କାଳରେ
ଅଥବା ପୂଜା ଶେଷରେ ଦରଶନ କରେ ।
ଶ୍ରୀ ଜଗନ୍ନାଥ ତାହାଙ୍କୁ ହୁଅନ୍ତି ପ୍ରସନ୍ନ
ଶତଗୁଣେ ପୁଣ୍ୟଫଳ କରନ୍ତି ପ୍ରଦାନ ।
ଦକ୍ଷିଣାୟନ ଅର୍ଚ୍ଚନ କାଳରେ ଯେ ଜନ
ପବିତ୍ର ଚିତ୍ତେ ପ୍ରଭୁଙ୍କୁ କରଇ ଦର୍ଶନ ।
ସମୁଦାୟ ପାପ ରାଶି ହୁଅଇ ଦହନ
ନିଶ୍ଚୟ ବୈକୁଣ୍ଠପୁରେ କରଇ ଗମନ ।
କ୍ଷୁଦ୍ର ବା ବୃହତ ହେଉ ଭଗବାନଙ୍କର
ଉତ୍ସବ ଯେ ମୁକ୍ତିଦାନ କରେ ନିରନ୍ତର ।
ଯେ ଜନ ଉତ୍ସବ ଦିନେ କରଇ ଦର୍ଶନ
ମୁକ୍ତିଲାଭ କରେ ସେହି ସନ୍ଦେହ ନ ମଣ ।
ସ୍ୱୟଂ ଭଗବାନ କୃପା ପରବଶ ହୋଇ
ମୂର୍ଖଙ୍କ ମନେ ବିଶ୍ୱାସ ଜାତ ହେବା ପାଇଁ ।

Digitized by srujanika@gmail.com

ପାପୀଗଣଙ୍କର ପାପ ବିନାଶ ନିମିତ୍ତ
ଉତ୍ସବ କଥା ଶ୍ରୀମୁଖେ କରିଲେ ବ୍ୟକତ ।
ଯେହେତୁ ଏ ମୂର୍ଖ ଲୋକେ କରି ଅବିଶ୍ୱାସ
କ୍ଳେଶ ସହ୍ୟ ଧର୍ମ କାର୍ଯ୍ୟେ ନ ହେବେ ପ୍ରବେଶ ।
ନିତ୍ୟ ଭୋଜନ ନିମିତ୍ତ ଲକ୍ଷ୍ମୀ ପତିଙ୍କର
ପାକଶାଳା ଯେଉଁରୂପେ କରିବ ସଂସ୍କାର ।
ରାଜାଙ୍କ ଦ୍ୱାରା ନିଯୁକ୍ତ ଆଚାର୍ଯ୍ୟ ବ୍ରାହ୍ମଣ
ଶୌଚ ସ୍ମାର୍ତ୍ତ ସର୍ବକ୍ରିୟା ବିଧାନେ ନିପୁଣ ।
ବୈଷ୍ଣବାଗ୍ନି ସଂସ୍ଥାପନ କରିବେ ବିଧିରେ
ଚରୁ ଅନ୍ନକୁ ପ୍ରସ୍ତୁତ କରିବେ ତହିଁରେ ।
ଭଗବାନଙ୍କର ପାକ ସାଧନ କାରଣ
ବୈଶ୍ୟଦେବ ଚରୁବଳି କରିବ ପ୍ରଦାନ ।
ବ୍ରହ୍ମା ବାସ୍ତୁପତି ପ୍ରଜାପତି ବିଷ୍ଣୁ ଦେବ
ବିଶ୍ୱକର୍ତ୍ତାଙ୍କ ଉଦ୍ଦେଶ୍ୟେ ହୋମ ଯେ କରିବ ।
ଚଣ୍ଡ ପ୍ରଚଣ୍ଡଙ୍କୁ ଦ୍ୱାରଦେଶେ ବଳିଦେବ
କ୍ଷେତ୍ର ପାଳଙ୍କର ବଳି ଈଶାନେ କରିବ ।
ବିରୂପ ଖଗପତିଙ୍କୁ ଦକ୍ଷିଣ ଦିଗରେ
ଦୁର୍ଗା ସରସ୍ୱତୀଙ୍କୁ ଯେ ନୈର୍ଋତ କୋଣରେ ।
ପୂର୍ବେ ଲକ୍ଷ୍ମୀ ମହେନ୍ଦ୍ରଙ୍କୁ ଉତ୍ତର ଦିଗରେ
ବିଷ୍ଣୁଙ୍କର ପାରିଷଦ ଶିବଙ୍କ ସଙ୍ଗରେ ।
ପଶ୍ଚିମେ ନାରଦ ଅଗ୍ନିକୋଣେ ହୁତାଶନ
ବାୟବ୍ୟରେ ବିଶ୍ୱସାକ୍ଷୀ ପ୍ରାଣାଦି ପବନ ।
ବିଶ୍ୱକର୍ତ୍ତାଙ୍କୁ ସେ ମଧ୍ୟସ୍ଥଳେ ବଳିଦେବ
ପ୍ରତ୍ୟେକଙ୍କୁ ବଳିଶେଷେ ଉଦକ ଅର୍ପିବ ।
ବଳିଶେଷେ ରାଜା କରାଇବେ ଯେ ଅଗ୍ନିରେ
ଭଗବାନଙ୍କର ପୂଜା ଚରୁ ତ୍ରିସନ୍ଧ୍ୟାରେ ।
ପାକ କରାଇବେ ଅନ୍ନ ବ୍ୟଞ୍ଜନ ବହୁତ
ତ୍ରିକାଳରେ ଭକ୍ଷ ଭୋଜ୍ୟ ଦ୍ରବ୍ୟ ବିଧିମତ ।
ପାକଦ୍ରବ୍ୟ ଯେଉଁପରି ହୋଇବ ପ୍ରସ୍ତୁତ
ବ୍ରାହ୍ମଣାଦି ବର୍ଣ୍ଣତ୍ରୟ ସେ କାର୍ଯ୍ୟେ ନିଯୁକ୍ତ ।
ଅଥବା ବର୍ଣ୍ଣତ୍ରୟର ସେବା ଯେ କରନ୍ତି
ପବିତ୍ର ଶୂଦ୍ରଙ୍କୁ କାର୍ଯ୍ୟେ କରିବ ନିଯୁକ୍ତି ।
ଏ ରୂପ କଥା ଲୋକରେ ଅଛି ପ୍ରଚଳିତ
ସ୍ୱୟଂ ଲକ୍ଷ୍ମୀଦେବୀ ପାକ କରନ୍ତି ପ୍ରସ୍ତୁତ ।
ସାକ୍ଷାତରେ ମୂର୍ତ୍ତିମାନ ସ୍ୱୟଂ ନାରାୟଣ
ଲକ୍ଷ୍ମୀଙ୍କ ହସ୍ତରୁ ଅନ୍ନ କରନ୍ତି ଭୋଜନ ।
ପ୍ରଭୁଙ୍କ ନୈବେଦ୍ୟ ଅନ୍ନ ଅମୃତ ସମାନ
ପାପ ନଷ୍ଟ ହୁଏ ଶିରେ କରିଲେ ଧାରଣ ।
ଭକ୍ଷଣ କଲାମାତ୍ରକେ ମହାପାପ ମାନ
ମଦ୍ୟପାନ ଆଦି ସର୍ବ ହୁଅଇ ବିଲୀନ ।
ଏ ମହାପ୍ରସାଦ ଯେବା କରଇ ଆଘ୍ରାଣ
ସକଳ ମାନସ ପାପ ହୁଅଇ ଦହନ ।
ଦର୍ଶନରେ ଦୃଷ୍ଟିଜାତ ପାପ ହୁଏ ଲୟ
ଆସ୍ୱାଦ ମାତ୍ରକେ ବାଚନିକ ପାପ କ୍ଷୟ ।
ଶ୍ରବଣଜ ପାପ ମିଥ୍ୟା କଥନରୁ ଜାତ
ସର୍ବ ପାପ ସ୍ପର୍ଶକଲେ ହୁଏ ଲୟପ୍ରାପ୍ତ ।
ନୈବେଦ୍ୟ ଅନ୍ନ ଅଙ୍ଗରେ କଲେ ବିଲେପନ
ଶରୀରଜ ସର୍ବପାପ ହୁଅଇ ବିଲୀନ ।
ଦେବକାର୍ଯ୍ୟ ପିତୃକାର୍ଯ୍ୟ କରେ ଯେଉଁ ଜନ
ଶ୍ରୀହରିଙ୍କ ନୈବେଦ୍ୟାନ୍ନ କରେ ନିବେଦନ ।
ତାପ୍ରତି ଦେବତାଗଣ ଆଉ ପିତୃଗଣ
ସନ୍ତୁଷ୍ଟ ହୋଇ ବୈକୁଣ୍ଠେ କରନ୍ତି ଗମନ ।
ମୁନିଗଣ ହବ୍ୟକବ୍ୟ କାର୍ଯ୍ୟମାନଙ୍କରେ
ଯାଠାରୁ ପବିତ୍ର ଦ୍ରବ୍ୟ ନାହିଁ ଭୂତଳରେ ।
ଅଧିକ କି ନରଦେହ ଧରି ଦେବଗଣ
ଏ ମହାପ୍ରସାଦ ନିତି କରନ୍ତି ଭକ୍ଷଣ ।
ମହାପ୍ରସାଦ ବିଷୟେ ଦେବ ଚକ୍ରଧର
ମହାଗୌରବ ମଣନ୍ତି ଶୁଣ ହେ ସକଳ ।
ତ୍ରେତାଯୁଗେ ଶ୍ୱେତନାମେ ଏକ ରାଜା ଥିଲେ
ପୁରୁଷୋତ୍ତମ କ୍ଷେତ୍ରରେ ବ୍ରତ ସେ କରିଲେ ।
ଇନ୍ଦ୍ରଦ୍ୟୁମ୍ନଙ୍କର ମହାଭୋଗ ଅନୁସାରେ
ବିବିଧ ଭୋଗ ବ୍ୟବସ୍ଥା କରିଲେ ବିଧିରେ ।
ଭକ୍ଷଭୋଜ୍ୟ ଦ୍ରବ୍ୟମାନ ସୁଗନ୍ଧ ଚନ୍ଦନ
ମାଲ୍ୟଦାନେ ତ୍ରୁଟି ନ କରନ୍ତି ସେ ରାଜନ ।
ଭଗବାନଙ୍କର ତୃପ୍ତି ହୋଇବା ନିମିତ୍ତ
ନୃତ୍ୟଗୀତ ବାଦ୍ୟ ଆଦି କରନ୍ତି ସମସ୍ତ ।
ଏହିପରି ନାନାବିଧ ଉପଚାରମାନ
ଯାହା ରାଜଯୋଗ୍ୟ ତାହା କରନ୍ତି ଆପଣ ।
ପଣ୍ଡିତଗଣ ସ୍ୱରୂପ ପଦ୍ମ ସମୂହର
ସୂର୍ଯ୍ୟସମ ପ୍ରକାଶକ ଶ୍ୱେତ ନୃପବର ।
ବୈଷ୍ଣବ ଶାସ୍ତ୍ରାନୁସାରେ ବହୁ ଅର୍ଥ ବ୍ୟୟ
କ୍ଳେଶ ସାଧ୍ୟ ନାନାବିଧ ମହାରୋଗ ଚୟ ।
ସେହି ଭୋଗର ବ୍ୟବସ୍ଥା ରାଜା କରିଥିଲେ
ଦିନେ ସକାଳ ଧୂପରେ ଉପସ୍ଥିତ ହେଲେ ।
ସ୍ତବ ପଢ଼ି ପ୍ରଣାମ ଯେ କରିଲେ ରାଜନ
କୃତାଞ୍ଜଳିପୁଟେ ଦ୍ୱାରେ କଲେ ଅବସ୍ଥାନ ।
ନିଜ ବ୍ୟବସ୍ଥାନୁସାରେ ଉପଚାରମାନ
ପ୍ରଭୁଙ୍କର ସମ୍ମୁଖରେ ହୋଇଛି ସ୍ଥାପନ ।
ଉପଚାର ଦ୍ରବ୍ୟ ଆଦି ସକଳ ଦେଖିଲେ
ଧ୍ୟାନସ୍ଥ ହୋଇ ମନରେ ଏ ରୂପ ଚିନ୍ତିଲେ ।

Digitized by srujanika@gmail.com

ଦ୍ୱିବା ଉପଚାରଦ୍ୱାରା ଯାହାର ଅର୍ଚ୍ଚନ
କରିବାକୁ ଅସମର୍ଥ ସଦା ଦେବଗଣ ।
ଭାବ ଦକ୍ଷିତ ଅଟଇ ଏହି ଉପଚାର
ସନ୍ତୋଷ ବିଧାନ ନ କରିବ ହରିଙ୍କର ।
ଯାହାର ଅର୍ଚ୍ଚନା ମାନସିକ ଉପଚାରେ
ଯୋଗୀଗଣ କରିଥାନ୍ତି ସଂଯତ ଚିତ୍ତରେ ।
ମନୁଷ୍ୟ ହସ୍ତେ ନିର୍ମିତ ଭୋଗ୍ୟ ବସ୍ତୁମାନ
ସେ ପ୍ରଭୁ କି ସନ୍ତୁଷ୍ଟରେ କରିବ ଗ୍ରହଣ ।
ଧ୍ୟାନ ନିମିଳିତ ନେତ୍ରେ ଏହା ଚିନ୍ତାକଲେ
ଜ୍ଞାନଦୃଷ୍ଟିରେ ସେ ସ୍ଥାନେ ଏ ରୂପେ ଦେଖିଲେ ।
ଜଗନ୍ନାଥ ପ୍ରଭୁ ଦିବ୍ୟାସନେ ସମାସୀନ
ଅନ୍ନ ବ୍ୟଞ୍ଜନ ସକଳ କରନ୍ତି ଭୋଜନ ।
ଲକ୍ଷ୍ମୀଦେବୀ ଦିବ୍ୟବସ୍ତ୍ର କରି ପରିଧାନ
ଦିବ୍ୟମାଲ୍ୟ ଆଭରଣେ ଶରୀର ମଣ୍ଡିଣ ।
ଅମୂଲ୍ୟ ରତ୍ନ ନୂପୁର ପାଦେ ସୁଶୋଭିତ
ସ୍ୱର୍ଗଲୋକ ହେଉଅଛି ଧ୍ୱନିରେ ପୂରିତ ।
ସୁବର୍ଣ୍ଣ ନିର୍ମିତ ଡଙ୍ଗା ହସ୍ତରେ ଧରିଣ
ପରିବେଷଣ କରନ୍ତି ଷଡ଼ରସ ଅନ୍ନ ।
ଭଗବାନଙ୍କର ପ୍ରତିମୂର୍ତ୍ତି ଛନ୍ତି ଯେତେ
ଭୋଜନ କରନ୍ତି ବେଢ଼ିକରି ସେ ସମସ୍ତେ ।
ସେ ନୃପ ଏହି ଅଦ୍ଭୁତ ବ୍ୟାପାର ଦେଖିଲେ
କୃତାର୍ଥ ହୋଇଲେ ବୋଲି ମନେ ବିଚାରିଲେ ।
ପୁନର୍ବାର ନେତ୍ରଦ୍ୱୟ କଲେ ଉନ୍ମୀଳନ
ପୂର୍ବେ ଯାହା ଦେଖିଥିଲେ କଲେ ନିରୀକ୍ଷଣ ।
ସେହି ଦିନଠାରୁ ରାଜା ପରମ ଭକ୍ତିରେ
ଅନାହାରେ ରହି ବ୍ରତ ଗ୍ରହଣ କରିଲେ ।
ଅକାଳ ମୃତ୍ୟୁ ବିନାଶ ହେବ ପ୍ରଜାଙ୍କର
ମୃତ ବ୍ୟକ୍ତିଗଣ ଯିବେ ବଇକୁଣ୍ଠ ପୁର ।
ଆଶ୍ରିତଗଣର କଳ୍ପ ପାଦପ ସ୍ୱରୂପ
ତପସ୍ୟା କରିଲେ ତହିଁ ମନ୍ତ୍ରରାଜ ଜପ ।
ଏହିରୂପେ ଶତେବର୍ଷ ହୁଅନ୍ତେ ଅତୀତ
ପାପହାରୀ ନୃସିଂହଙ୍କୁ କରିଲେ ସାକ୍ଷାତ ।
ଯୋଗ ପଦ୍ମାସନେ ହୋଇଛନ୍ତି ଅଧିଷ୍ଠିତ
ଲକ୍ଷ୍ମୀଦେବୀ ତାହାଙ୍କର ବାମେ ବିରାଜିତ ।
ମୁଖମଣ୍ଡଳେ ଈଷତ ହାସ୍ୟ ପ୍ରକାଶିତ
ଦେବ ସିଦ୍ଧଗଣେ ସ୍ତୁତି କରନ୍ତି ବହୁତ ।
ଶ୍ୱେତରାଜ ନୃସିଂହଙ୍କୁ କରନ୍ତେ ଦର୍ଶନ
ଭୟେ ବିସ୍ମୟେ କହିଲେ ଗଦ୍‌ଗଦ ବଚନ ।
ହେ ନାଥ ପ୍ରସନ୍ନ ହୁଅ ଏତିକି କହିଲେ
ଭୂମିତଳେ ବିଲୁଣ୍ଠିତ ସେ ସ୍ଥାନେ ହୋଇଲେ ।

ନୃସିଂହଦେବ କହିଲେ ବତ୍ସ ! ବେଗେ ଉଠ
ତୁମ୍ଭର ଭକ୍ତିରେ ଆମ୍ଭେ ହୋଇଲୁ ସନ୍ତୁଷ୍ଟ ।
ଆମ୍ଭ ପ୍ରସନ୍ନେ ଅଲଭ୍ୟ କିଛି ନୁହଇ ତ
ପ୍ରାର୍ଥନା କର ଅଭୀଷ୍ଟ ବର ଏକ୍ଷଣେ ତ ।
ଏହାଶୁଣି ଶ୍ୱେତରାଜା ତକ୍ଷଣେ ଉଠିଲେ
କର ଦୁଇ ଯୋଡ଼ିକରି ବିନୟେ କହିଲେ ।
ହେ ସ୍ୱାମୀ ଯଦ୍ୟପି ତୁମ୍ଭେ ହୋଇଛ ପ୍ରସନ୍ନ
ଦୟାକରି ଏହି ବର କରନ୍ତୁ ପ୍ରଦାନ ।
ଯେପରି ଆପଣଙ୍କର ସାରୂପ୍ୟ ଲଭିବି
ଚିରକାଳ ଆପଣଙ୍କର ନିକଟେ ରହିବି ।
ଯେତେଦିନ କରୁଥିବି ମୁହିଁ ରାଜପଣ
ପ୍ରଜାଙ୍କର ଅକାଳରେ ନୋହିବ ମରଣ ।
ଯଥାକାଳେ ମୋ ପ୍ରଜାଏ ମୃତ୍ୟୁକୁ ଲଭିବେ
ସକଳ ପ୍ରଜା ବୈକୁଣ୍ଠ ଭୁବନକୁ ଯିବେ ।
ଏହାଶୁଣି ନରସିଂହ କହିଲେ ବଚନ
ଶ୍ୱେତରାଜ ତୁମ୍ଭ ମନୋରଥ ହେବ ପୂର୍ଣ୍ଣ ।
ଆମ୍ଭର ଦକ୍ଷିଣ ଦିଗେ ତୁମ୍ଭେ କର ବାସ
ଭୋଗକରେ ନିଜ ରାଜ୍ୟ ସହସ୍ରେ ବରଷ ।
ଆମ୍ଭର ପ୍ରସାଦ ଅନ୍ନ ଭୋଜନ କରିଣ
ତୁମ୍ଭର ସକଳ ପାପ ହୋଇବ ମୋଚନ ।
ନିର୍ମଳ ଅନ୍ତଃକରଣେ ସାରୂପ୍ୟ ଲଭିବ
ବଟ ସାଗର ମଧ୍ୟରେ ଯେ ସ୍ଥାନ ଦୁର୍ଲ୍ଲଭ ।
ମୁକ୍ତିକ୍ଷେତ୍ରେ ଆଦ୍ୟ ଅବତାର ବିଷ୍ଣୁଙ୍କର
ସମ୍ମୁଖରେ ସ୍ୱଚ୍ଛମଣି ସଦୃଶ ଶରୀର ।
ସେହି ସ୍ଥାନରେ ନିବାସ କର ଆନନ୍ଦରେ
ଭୂଲୋକରେ ଖ୍ୟାତଶ୍ୱେତ ମାଧବ ନାମରେ ।
ବିଷ୍ଣୁ ଆଦ୍ୟ ଅବତାର ତୁମ୍ଭ ମଧ୍ୟସ୍ଥଳେ
ନରପକ୍ଷୀ କୀଟ ଆଦି ଜୀବ ମୃତ୍ୟୁ ହେଲେ ।
ସେ ସକଳ ଜୀବଗଣ ମୁକତି ଲଭିବେ
ଏ ସ୍ଥାନେ ମରଣ ଇଚ୍ଛା କରନ୍ତି ଯେ ଦେବେ ।
ତୁମ୍ଭ ନିବାସ ସ୍ଥାନରେ ଉତ୍ତମ ଦିଗରେ
ପାପ ବିନାଶକ ସରୋବରେ ସ୍ନାନ କରେ ।
ତାହାର ଦକ୍ଷିଣ ତଟେ ତୁମ୍ଭ ଦୁହିଙ୍କର
ଦର୍ଶନେ ପବିତ୍ର ହୋଇ ଛାଡ଼ିବ ଶରୀର ।
ନିଶ୍ଚୟ ହୋଇବ ମୁକ୍ତି ସନ୍ଦେହ ନ କର
ଏ କ୍ଷେତ୍ରର ଅନ୍ୟସ୍ଥାନେ ମୃତ୍ୟୁ ହେବ ସାର ।
ମୁକ୍ତି ଲାଭ ହୋଇବ ଯେ ଏକଥା ନିଶ୍ଚିତ
ଏହା ମନେ ରଖିଥାଅ ସର୍ବ ତପୋବନ୍ତ ।
ମୂର୍ଖଙ୍କ ମନେ ବିଶ୍ୱାସ ହୋଇବା ନିମିତ୍ତ
ଏ ସ୍ଥାନଟି ପୁଣ୍ୟତମ ଅତୀବ ପବିତ୍ର ।

Digitized by srujanika@gmail.com

ଶ୍ୱେତରାଜ ତୁମ୍ଭ ରାଜ୍ୟେ ଯେଉଁ ଜନଗଣ
ଆମ୍ଭର ମହାପ୍ରସାଦ କରିବେ ଭୋଜନ ।
କଦାପି ଅକାଳ ମୃତ୍ୟୁ ନ ହେବ ତାଙ୍କର
ଏହି କଥାରେ କଦାପି ସନ୍ଦେହ ନ କର ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ସପ୍ତତ୍ରିଂଶ ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ନାରାୟଣ ଜନାର୍ଦ୍ଦନ ଦେ ପୀତବାସ
ଦାରୁବ୍ରହ୍ମ ରୂପେ ନୀଳାଚଳରେ ପ୍ରକାଶ ।
ଭକତ ଜନଙ୍କ ହିତ କରୁଛ ସାଧନ
ପାପକାରୀମାନଙ୍କୁ ଯେ କର ପରିତ୍ରାଣ ।
ଅନ୍ତିମ କାଳରେ ପ୍ରଭୁ ଦେବ ଦରଶନ
ସେତେବେଳେ ଜିହ୍ୱା ରଟୁଥିବ ତବ ନାମ ।
କର ଦୁଇ ଯୋଡ଼ିକରି ମାଗେ ହରିହର
ପୂର୍ଣ୍ଣ କରିବ ପ୍ରାର୍ଥନା ଏ ଦୀନ ଜନର ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ଶ୍ୱେତରାଜା ଚରିତ ବର୍ଣ୍ଣନେ ନାମ
ସପ୍ତତ୍ରିଂଶୋଽଧ୍ୟାୟଃ ।



## ଅଷ୍ଟତ୍ରିଂଶ ଅଧ୍ୟାୟ

ଜୈମିନି ମୁନି କହିଲେ ଶୁଣ ମୁନିଗଣ
ନୃସିଂହ ମୂର୍ତ୍ତିରେ ବିଜେ ପ୍ରଭୁ ଭଗବାନ ।
ଶ୍ୱେତ ରାଜାଙ୍କୁ ଯେ ଏହିରୂପେ ବର ଦେଲେ
ପ୍ରାସାଦ ମଧ୍ୟରେ ଅନ୍ତର୍ହିତ ହୋଇଗଲେ ।
ଚରାଚର ଜଗତରେ ଯେ ଆଦ୍ୟା ଶକତି
ସୃଷ୍ଟି ପାଳନ ସଂହାର କରି ଯେ ପାରନ୍ତି ।
ଅଦ୍ୱିତୀୟା ବିଷ୍ଣୁଙ୍କର ଅର୍ଦ୍ଧାଙ୍ଗ ସମାନ
ବୈଷ୍ଣବୀ ଶକ୍ତି କମଳା ଦେବୀ ଯାର ନାମ ।
ଅମୃତ ସମାନ ପାକ ସେ ଦେବୀ କରନ୍ତି
ସ୍ୱୟଂ ପ୍ରଭୁ ନାରାୟଣ ଭୋଜନ କରନ୍ତି ।
ଭଗବାନଙ୍କ ଉଚ୍ଛିଷ୍ଟ ଯେ କରେ ଭୋଜନ
ସକଳ ପାପ ତାହାର ହୁଅଇ ମୋଚନ ।
ବାସ୍ତବିକ ଏହି ମହାପ୍ରସାଦ ସମାନ
ଅନ୍ୟବସ୍ତୁ ପୃଥିବୀରେ ନାହିଁ ବିଦ୍ୟମାନ ।
ପଣ୍ଡିତଗଣ କହନ୍ତି ଏ ରୂପ ବଚନ
ପ୍ରଭୁଙ୍କ ପାଦପଦ୍ମକୁ ଯେ କରେ ଦର୍ଶନ
ଅବା ଉପାସନା କରେ ବିଶୁଦ୍ଧ ଚିତ୍ତରେ
ସକଳ ପାପର ପ୍ରାୟଶ୍ଚିତ ସେହୁ କରେ ।
ପୁରୁଷୋତ୍ତମ କ୍ଷେତ୍ରରେ ଯେ ପାପ କରନ୍ତି
ତାହାଙ୍କ ସ୍ପର୍ଶରେ ଦୋଷ ନ ହୁଏ ଉତ୍ପତ୍ତି ।
କମଳା ଦେବୀଙ୍କ ସାନ୍ନିଧ୍ୟରୁ ସେହିମାନେ
ପବିତ୍ର ହୁଅନ୍ତି ଶୁଦ୍ଧ ବ୍ରାହ୍ମଣ ସମାନେ ।
ଯଦି ଏ ମହାପ୍ରସାଦ ଥାଏ ବେଶ୍ୟାଘରେ
କିମ୍ବା ଅସ୍ପୃଶ୍ୟ ପତିତ ଜନଙ୍କ ଗୃହରେ ।
ତଥାପି ଦୂଷିତ ନ ହୁଅଇ ସେହି ଅନ୍ନ
ସାକ୍ଷାତେ ବିଷ୍ଣୁ ସ୍ୱରୂପ ଜାଣ ସେହି ଅନ୍ନ ।
ବର୍ଣ୍ଣାଶ୍ରମୀ ବିଧବା ଯେ ବ୍ରତାଚାରୀ ଗଣ
ଦୀକ୍ଷିତ ଅଥବା ଅଗ୍ନି ହୋତ୍ରୀ ବିପ୍ରଗଣ ।
ଏହି ମହାପ୍ରସାଦକୁ କରିଲେ ଭକ୍ଷଣ
ପବିତ୍ର ହୋଇବେ ଏଥି ସନ୍ଦେହ ନ ମଣ ।
ସ୍ୱଦେଶୀ ବିଦେଶୀ ଗୃହୀ ଦରିଦ୍ର କୃପଣ
ରାଜା ସର୍ବେ ଏ ପ୍ରସାଦ ଭକ୍ଷଣେ ସମାନ ।
ମହାପ୍ରସାଦ ଭକ୍ଷଣେ କେଉଁ ବିଷୟରେ
ଅଭିମାନ ନ କରିବ କଦାପି ମନରେ ।
ଭକତିରେ ଅବା ଲୋଭେ କିମ୍ବା କୌତୁକରେ
ଅବା କ୍ଷୁଧା ଶାନ୍ତି ଅର୍ଥେ କୌଣସି ପ୍ରକାରେ ।
ଆକଣ୍ଠ ଭୋଜନ କରିପାରେ ଯେଉଁ ଜନ
ତାହାର ସକଳ ପାପ ହୁଅଇ ଦହନ ।
ମହାପ୍ରସାଦ ଭକ୍ଷଣେ ସର୍ବ ରୋଗ ହରେ
ବଂଶ ବୃଦ୍ଧି ହୋଇ ଦରିଦ୍ରତା ନାଶ କରେ ।
ଦୀର୍ଘାୟୁ ସମ୍ପତ୍ତି ଲାଭ ହୁଅଇ ତାହାର
ମହାପ୍ରସାଦ ସକଳ ବସ୍ତୁ ମଧ୍ୟେ ସାର ।
ଅତି ତେଜଶାଳୀ ସ୍ୱୟଂ ବିଷ୍ଣୁ ଜଗତ୍‌ପତି
ମହାପ୍ରସାଦକୁ ସଦା ଆଦର କରନ୍ତି ।
ପଣ୍ଡିତାଭିମାନୀ ଯେ ସକଳ ମୂଢ଼ନର
ମହାପ୍ରସାଦର ନିନ୍ଦା କରନ୍ତି ପ୍ରଚାର ।
ଯେ ଅପରାଧକୁ ପ୍ରଭୁ ସହି ନ ପାରନ୍ତି
ସେ ମୂଢ଼ଜନକୁ ଦଣ୍ଡ ବିଧାନ କରନ୍ତି ।
ଯଦି ଇହକାଳେ ଦଣ୍ଡ ନ ପାଏ ସେ ଜନ
ପରକାଳରେ ତା ଭାଗ୍ୟେ ଦୁର୍ଗତି ବିଷମ ।
ମହାଘୋର କୁମ୍ଭୀପାକ ନରକେ ନିବାସ
ବିଷମ ଯାତନା ଭୋଗ କରଇ ଅବଶ୍ୟ ।
ଏ ମହାପ୍ରସାଦ କ୍ରୟ ବିକ୍ରୟ କରିଲେ
ଦୋଷ ହୁଏ ନାହିଁ ମୁନିଗଣ ଶୁଣ ଧୀରେ ।
ପ୍ରଥମେ ମହାପ୍ରସାଦ ନ କରି ଭୋଜନ
ଅନ୍ୟବସ୍ତୁ ନ କରିବ କଦାପି ଭୋଜନ ।
ଏ ରୂପେ ପ୍ରତିଜ୍ଞା କରି ଯେଉଁ ଜନଗଣ
ପ୍ରତ୍ୟହ ମହାପ୍ରସାଦ କରନ୍ତି ଭୋଜନ ।
ସେମାନେ ସକଳ ପାପୁଁ ମୁକ୍ତ ହୋଇଥାନ୍ତି
ପବିତ୍ର ହୋଇ ବୈକୁଣ୍ଠେ ଗମନ କରନ୍ତି ।

Digitized by srujanika@gmail.com

ଏ ମହାପ୍ରସାଦ ବହୁଦିନୁଁ ବାସି ହେଲେ
କିମ୍ବା ଅତିଶୟ ଶୁଷ୍କହୋଇ ରହିଥିଲେ ।
ଅଥବା ଦୂର ଦେଶରୁ ହୋଇଲେ ଆନୀତ
ଭୋଜନ କଲେ କଲ୍ମଷ କ୍ଷୟ ଯେ ନିଶ୍ଚିତ ।
ଏ ମହାପ୍ରସାଦ ସର୍ବ ପାପ ନାଶ କରେ
କୁକ୍‌କୁର ମୁଖରୁ ଯଦି ପଡ଼େ ଭୂତଳରେ ।
ତଥାପି ବ୍ରାହ୍ମଣଗଣ କରିବେଁ ଭକ୍ଷଣ
ଏ ବିଷୟ ବିଚାରରେ ନାହିଁ ପ୍ରୟୋଜନ ।
ଅଶୁଚି ବା ଅନାଚାରୀ ପାପାଚାରୀ ଜନ
ସକଳ ପାଇବା ମାତ୍ରେ କରିବେ ଭକ୍ଷଣ ।
ଏ ପ୍ରସାଦ ଗଙ୍ଗାଜଳ ଉଭୟ ସମାନ
ମନରେ ଚିନ୍ତା କରିବା ଅଥବା ଭକ୍ଷଣ ।
ହସ୍ତରେ ଛୁଇଁବ କିମ୍ବା କରିବ ଦର୍ଶନ
ତାହାର ସକଳ ପାପ ହୋଇବ ଦହନ ।
ଜଗଦ୍ଧାତ୍ରୀ ଲକ୍ଷ୍ମୀଦେବୀ ସ୍ୱୟଂ ଶ୍ରୀହସ୍ତରେ
ପାକ କରନ୍ତି ସଂସ୍କୃତ ବୈଷ୍ଣବା ଅଗ୍ନିରେ ।
ବହୁ ମନ୍ୱନ୍ତର ଯୁଗ ଅତୀତ ହେଲାଣି
ଭୋଜନ କରୁଅଛନ୍ତି ସ୍ୱୟଂ ଚକ୍ରପାଣି ।
ନୀଳାଚଳେ ସନ୍ନିହିତ ପ୍ରଭୁ ପ୍ରତିଦିନ
ସପ୍ତଦ୍ୱୀପା ଅବନୀରେ ନାହିଁ ଅନ୍ୟସ୍ଥାନ ।
ପରଂବ୍ରହ୍ମ ଦାରୁରୂପେ କରିଣ ଧାରଣ
ବିଜେ କରିଅଛନ୍ତି ଯେ ନୀଳାଚଳ ଧାମ ।
ସକଳ ଜନେ ଯେପରି କରନ୍ତି ଦର୍ଶନ
ଅନ୍ୟତ୍ର ଏପରି କେହି ନ କରେ ଦର୍ଶନ ।
ପ୍ରବୃତ୍ତି ରୂପ ପରମ ଆତ୍ମାଙ୍କ ନିମିତ୍ତ
ପ୍ରବୃତ୍ତି ରୂପିଣୀ ଲକ୍ଷ୍ମୀ କରନ୍ତି ପ୍ରସ୍ତୁତ ।
ଘୃତରେ ପାଚିତ ନାନାବିଧ ଦ୍ରବ୍ୟମାନ
ସ୍ୱୟଂ ଜଗନ୍ନାଥ ଦେବ କରନ୍ତି ଭୋଜନ ।
ତାହାଙ୍କ ଉଚ୍ଛିଷ୍ଟ ଅନ୍ନ କରିଲେ ଭୋଜନ
ମୁକ୍ତି ଲାଭ ହୁଏ ପାପ ସକଳ ଦହନ ।
ଯାହାଙ୍କର ପୁଣ୍ୟବଳ ଅଳ୍ପମାତ୍ର ଥାଏ
ତାହାଙ୍କର ଏ କଥାରେ ବିଶ୍ୱାସ ନ ହୁଏ ।
ସତ୍ୟ ତ୍ରେତା ଦ୍ୱାପରରେ ବେଦାଚାର ମତେ
ବୁଝାଇ କହିଲୁ ତୁମ୍ଭମାନଙ୍କ ଅଗ୍ରତେ ।
ବେଦାଚାର ବିହୀନ ଯେ ଏ କଳିକାଳରେ
ମହାପ୍ରସାଦ ମହିମା ଶୁଣ ସୁଚିତ୍ତରେ ।
କଳିଯୁଗରେ ହୋଇବ ଅଧର୍ମ ତ୍ରିପାଦ
ସେତେବେଳେ ରଖିଥିବ ଧର୍ମ ଏକପାଦ ।
ଅଧର୍ମ ବହୁଳ କଳିକାଳ ଧର୍ମେ ଭୟେ
କେହି ଅବା ପୁଣ୍ୟକାର୍ଯ୍ୟ କାହିଁ କରିଥାଏ ।

ସକଳ ମନୁଷ୍ୟ ସଦା ମିଥ୍ୟା କହିଥାନ୍ତି
ସଦାଚାର ହୀନ ଶଠ ଦାମ୍ଭିକ ପ୍ରକୃତି ।
ଜିହ୍ୱା ଉପସ୍ଥିର ତୃପ୍ତି କରନ୍ତି ସାଧନ
କେଉଁକାଳେ ଇଷ୍ଟଦେବ ନ କରନ୍ତି ଧ୍ୟାନ ।
ତପସ୍ୟା ବ୍ରତାଚରଣ କେହି ତ ନ କରେ
ଲୋଭରେ ହିଂସା କରନ୍ତି ମାତି ଅଧର୍ମରେ ।
କେ କାହାକୁ ପରାଭବ ଦିଏ କେଉଁ ସ୍ଥାନେ
ତା ଦେଖିଲେ ପରମ ଆନନ୍ଦ ହୁଏ ମନେ ।
ପ୍ରସଙ୍ଗ ବଶତଃ ଅବା କୌତୁକ ଭାବରେ
ପର କାର୍ଯ୍ୟରେ ବ୍ୟାଘାତ କରନ୍ତି ଯେ ନରେ ।
ନୀଚକାର୍ଯ୍ୟେ ଅଭିଳାଷୀ ହୁଅନ୍ତି ସତତ
ପର ଅନିଷ୍ଟ ଘଟାନ୍ତି ରଖି ନିଜସ୍ୱାର୍ଥ ।
ସକଳ ମାନବ ପଶୁ ବୃତ୍ତିକୁ ଆଚରି
ନିଜ ବଶୀଭୂତା ଧର୍ମପତ୍ନୀ ଛାଡ଼ିକରି ।
ପରସ୍ତ୍ରୀଠାରେ ଆସକ୍ତ ନିର୍ଲ୍ଲଜ ପଣରେ
ସଭାରେ କହନ୍ତି କଥା ଅତି ଆଡ଼ମ୍ବରେ ।
କୌଣସି ପ୍ରକାରେ ହୋମ ଯଜ୍ଞ ଅନୁଷ୍ଠାନ
କିଏ କେତେବେଳେ କରେ ବ୍ରତ ଆଚରଣ ।
ପରଲୋକ ଶୁଭ ଅର୍ଥେ ଅନୁଷ୍ଠିତ ଯାହା
ଜୀବିକା ଉପାୟ ଦ୍ୱିଜଗଣଙ୍କର ତାହା ।
ସେ ସକଳ କାର୍ଯ୍ୟ ଫଳପ୍ରଦ ହୁଏ ନାହିଁ
କାରଣ ଯେ ବ୍ୟକ୍ତି କେବେ ବେଦ ଶୁଣିନାହିଁ ।
କେଉଁକାଳେ କରିନାହିଁ ବେଦ ଅଧ୍ୟୟନ
ଇଦୃଶ ଦ୍ୱିଜ କରଇ କର୍ମ ଅନୁଷ୍ଠାନ ।
ଅନ୍ୟାୟରେ ଉପାର୍ଜିତ ଅର୍ଥ ହୁଏ ବ୍ୟୟ
ବିତ୍ତଶାଠ୍ୟ ଯଜମାନ କରନ୍ତି ନିଶ୍ଚୟ ।
ରାଜାଗଣ ପ୍ରଜାଙ୍କର ରକ୍ଷା ବିଷୟରେ
କେତେ ତତ୍ପର ନୁହନ୍ତି ଏ କଳିଯୁଗରେ ।
ରାଜାଙ୍କ ନିକଟୁ କର ଗ୍ରହଣ କରିଣ
ଚୌର୍ଯ୍ୟ ବୃତ୍ତିରେ କରନ୍ତି ପାପ କାର୍ଯ୍ୟମାନ ।
ସକଳ ବର୍ଣ୍ଣ ସଙ୍କର ଶୂଦ୍ର ଏ କାଳରେ
ରାଜପଣ କରି ଦାତା ବୋଲାନ୍ତି ପୃଥ୍ୱୀରେ ।
ଶୂଦ୍ରଗଣ ରାଜାଙ୍କର ହୁଅନ୍ତି ସେବକ
ଶୌଚ ସ୍ମାର୍ତ୍ତ କର୍ମାଦିରେ ହୁଅନ୍ତି ବିମୁଖ ।
ଏସକଳ ଅନୁଷ୍ଠାନ ଅନ୍ୟଯୁଗ ପରି
ପରଲୋକରେ ମଙ୍ଗଳ ପ୍ରଦାନ ନ କରି ।
ଏ ଯୁଗରେ ଦାନ ଧର୍ମ ଅଟଇ ପ୍ରଧାନ
ପ୍ରଶସ୍ତ ନୁହଇ ଅନ୍ୟଧର୍ମ ଅନୁଷ୍ଠାନ ।
କାୟ ମନବାକ୍ୟରେ ଯେ ଦ୍ୱିଜଗଣଙ୍କର
ହିତସାଧନ କର୍ତ୍ତବ୍ୟ ଜନମାନଙ୍କର ।

Digitized by srujanika@gmail.com

ଏ ହେତୁ ବ୍ରାହ୍ମଣଗଣ ଯା ପ୍ରତି ସନ୍ତୁଷ୍ଟ
ନାରାୟଣ ହୋଇଥାନ୍ତି ତା ପ୍ରତି ସନ୍ତୁଷ୍ଟ ।
ସ୍ୱୟଂ ଭଗବାନ ନିଜ ମୁଖେ କହିଛନ୍ତି
ମୋ ଦେହରୁ ଦ୍ୱିଜଗଣ ପୃଥକ ନୁହନ୍ତି ।
ବ୍ରାହ୍ମଣଗଣ ଯେ ଆଉ ଦେବ ନାରାୟଣ
ଏ ଦୁହିଁଙ୍କି କରିବ ଯେ ସଦା ସମଜ୍ଞାନ ।
ବ୍ରାହ୍ମଣଗଣ କହନ୍ତି ମୁଖେ ଯେ ବଚନ
ଜାଣିବ ତା କହୁଛନ୍ତି ସ୍ୱୟଂ ନାରାୟଣ ।
ସାକ୍ଷାତରେ ପରମାତ୍ମା ରୂପୀ ନାରାୟଣ
କରନ୍ତି ଆଦର ବ୍ରାହ୍ମଣଙ୍କୁ ପ୍ରତିଦିନ ।
ବ୍ରାହ୍ମଣ ସନ୍ତାନ ଯେଉଁ ଅବସ୍ଥାରେ ରହୁ
ଅନ୍ୟ ତିନିବର୍ଣ୍ଣଙ୍କର ପୂଜନୀୟ ସେହୁ ।
ବ୍ରାହ୍ମଣମାନଙ୍କ ହିତସାଧନ ନିମିତ୍ତ
ଅବତାର ହୁଅନ୍ତି ଯେ ଦେବ ଜଗନ୍ନାଥ ।
ବ୍ରାହ୍ମଣମାନଙ୍କୁ ସଦା କରନ୍ତି ପାଳନ
ପ୍ରତିଯୁଗେ ଦୁଷ୍ଟଙ୍କୁ ଯେ କରନ୍ତି ନିଧନ ।
ଚତୁର୍ମୁଖ ଧାତା ସୃଷ୍ଟି ଆରମ୍ଭ କାଳରେ
ପ୍ରଥମରେ ବ୍ରାହ୍ମଣଙ୍କୁ ସୃଷ୍ଟି କରିଥିଲେ ।
ତତ୍ପରେ ପୃଥକ ରୂପେ ଆଉ ଯେତେ ବର୍ଣ୍ଣ
ବ୍ରାହ୍ମଣଙ୍କର ବଂଶରେ ହୋଇଲେ ଜନମ ।
କଳିଯୁଗରେ ବ୍ରାହ୍ମଣ ଆଉ ଭଗବାନ
ସର୍ବଜନଙ୍କର ଗତି ଏ ଦୁହେଁ ପ୍ରମାଣ ।
କିନ୍ତୁ ବ୍ରାହ୍ମଣର ଗତି ଏକା ଭଗବାନ
ଏକଥାରେ କିଛିମାତ୍ର ସନ୍ଦେହ ନ ମଣ ।
ପାପପୂର୍ଣ୍ଣ କଳିଯୁଗେ ଏକାମାତ୍ର ହରି
ସର୍ବଦା ଜଗତ ଜନକୁ ଯେ ରକ୍ଷାକରି ।
ଏ ନିମିତ୍ତ ତାହାଙ୍କର ସ୍ମରଣ କୀର୍ତ୍ତନ
ଅନ୍ୟ ତୀର୍ଥରେ କରନ୍ତି ସର୍ବଜନଗଣ ।
ଶ୍ରୀହରିଙ୍କ ବାସ ପୁଣ୍ୟ କ୍ଷେତ୍ର ନୀଳାଚଳ
ଜୀବନ ସ୍ୱରୂପ ଅଟେ ସକଳ ଜୀବର ।
ଛଳନାରେ ଦାରୁଦେହ କରିଣ ଧାରଣ
ଶଙ୍ଖ ଚକ୍ର ଗଦାଧର ପ୍ରଭୁ ଭଗବାନ ।
ବିଜେ କରିଛନ୍ତି ଲୋକ ଉପକାର ଅର୍ଥେ
ପାପୀଜନଙ୍କର ପାପ ବିନାଶ ନିମନ୍ତେ ।
ସେ ପ୍ରଭୁଙ୍କ ଦର୍ଶନ ବା ସ୍ତୁତି ଯେ କରଇ
ମହାପ୍ରସାଦ ଭକ୍ଷଣେ ମୁକ୍ତି ସେ ଲଭଇ ।
ଜଗନ୍ନାଥଙ୍କ ଉଚ୍ଛିଷ୍ଟ ଅନ୍ନ ଯା ଦେହରେ
ଲେପନ ହୋଇଣ ଥାଇ ଅଙ୍ଗ ପ୍ରତ୍ୟଙ୍ଗରେ ।
ସେ ଦେହରେ ଜୀବ ଆତ୍ମା ହୁଅଇ ମୁକତ
କେଉଁକାଳେ ପାତକରେ ନ ହୁଅଇ ଲିପ୍ତ ।

ଏହି ନିବେଦିତ ଅନ୍ନ ଜଗନ୍ନାଥଙ୍କର
ଅପର ଦେହ ସ୍ୱରୂପ କରିବ ବିଚାର ।
ଏ ନିମିତ୍ତ ଜଗନ୍ନାଥଙ୍କର ଉଚ୍ଛିଷ୍ଟାନ୍ନ
ପରମ ପବିତ୍ର ମୁକ୍ତିପଦ ଯେ ଜାଣିମ ।
ପୁରୁଷୋତ୍ତମ କ୍ଷେତ୍ରରେ ପ୍ରଭୁ ଭଗବାନ
ଭୋଜନ କରନ୍ତି ସାକ୍ଷାତରେ ମୁନିଗଣ ।
ଅନ୍ୟ କ୍ଷେତ୍ରରେ କେବଳ ପ୍ରଭୁ ଭଗବାନ
ଦୃଷ୍ଟିପାତ କରିଥାନ୍ତି ନଇବେଦ୍ୟ ଅନ୍ନ ।
ପରମ ନୈଷ୍ଠିକ ଯୋଗୀଗଣ ପୂର୍ବକାଳେ
ପ୍ରଭୁଙ୍କୁ ଏହି ରୂପରେ ପ୍ରାର୍ଥନା କରିଲେ ।
ହେ ନାଥ ଆପଣଙ୍କର ଉଚ୍ଛିଷ୍ଟ ଭୋଜନ
କଲେ ଆପଣଙ୍କର ମାୟା ରଜ୍ଜୁ ହେବ ଛିନ୍ନ ।
ଅନନ୍ତ କାଳ ପର୍ଯ୍ୟନ୍ତ ଚକ୍ଷୁ ସ୍ଥିର କରି
ଯୋଗ ସାଧନରେ ଆତ୍ମା ସଙ୍ଗରେ ବିହରି ।
ତାଙ୍କୁ ଅନାୟାସେ ମୁକ୍ତି କରିବାକୁ ଦାନ
ଲକ୍ଷ୍ମୀସଙ୍ଗେ ନୀଳାଚଳେ କର ଅବସ୍ଥାନ ।
ଏ ସ୍ଥାନରେ ଭଗବାନଙ୍କର କାର୍ଯ୍ୟମାନ
ଦେବାର୍ଥ ବୋଲି ନିଶ୍ଚୟ କର ମୁନିଗଣ ।
ସେ ପ୍ରଭୁ ବେଦ ମର୍ଯ୍ୟାଦା କରିଣ ଲଙ୍ଘନ
ପ୍ରବୃତ୍ତ ନ ହେବେ ଅନ୍ୟ କାର୍ଯ୍ୟେ କଦାଚନ ।
ଏହି ପ୍ରଭୁ ବେଦ ରକ୍ଷା କରିବା ନିମିତ୍ତ
ଯୁଗେ ଯୁଗେ ନାନା ଅବତାରେ ଆବିର୍ଭୂତ ।
ବେଦ ପ୍ରଣାମ ସ୍ୱରୂପ ଏହି ଭଗବାନ
କିପରି କରିବେ ବେଦ ବିରୁଦ୍ଧାଚରଣ ।
ସେ ପ୍ରଭୁ ବେଦ ବିରୁଦ୍ଧ ଯଦି ଆଚରିବେ
ଜଗତେ ବିରୁଦ୍ଧାଚାରୀ ସକଳେ ହୋଇବେ ।
ଭଗବାନଙ୍କ ଆଚାର କରିଲେ ଦର୍ଶନ
ବେଦାର୍ଥ ନିର୍ଣ୍ଣୟ ହୁଏ ଏ ସୁଧୀ ବଚନ ।
ପୂର୍ବକାଳେ ମଧ୍ୟଦେଶେ କ୍ଷୀର ଦ୍ୱିଜବର
ଶାସ୍ତ୍ରାର୍ଥ ନିପୁଣ ଶାନ୍ତ ଦାନ୍ତ ଯାଗଶୀଳ ।
ପୁରୁଷୋତ୍ତମ କ୍ଷେତ୍ରକୁ କଲେ ଆଗମନ
ଗୃହସ୍ଥ ଆଶ୍ରମେ ରହିଥିଲେ ସେ ବ୍ରାହ୍ମଣ ।
ଦେହ ବାକ୍ୟ ମନରେ ଯେ ଶାନ୍ତି ବିରାଜିତ
ସାତ୍ତ୍ୱିକ ଭାବେ ପ୍ରଭୁଙ୍କୁ ଚିନ୍ତନ୍ତି ସତତ ।
ଏକ ସମୟରେ କ୍ଷେତ୍ରେ ଉପସ୍ଥିତ ହେଲେ
ତୀର୍ଥଯାତ୍ରା ବିଧାନରେ ପ୍ରଭୁଙ୍କୁ ପୂଜିଲେ ।
ସେ କ୍ଷେତ୍ରରେ ତିନିରାତ୍ର କଲେ ଅବସ୍ଥାନ
ଯଜ୍ଞ ଶେଷ ଅନ୍ନ ଗୃହୀ କରିବେ ଭୋଜନ ।
ଶାସ୍ତ୍ରମତେ ଏହି କଥା ବିଚାର କରିଲେ
ଶ୍ରୀମହାପ୍ରସାଦ ଅନ୍ନ ଭୋଜନ ନ କଲେ ।

Digitized by srujanika@gmail.com

ଲକ୍ଷ୍ମଦେବୀ ଯେଉଁ ପାକ ନୀତି କରୁଛନ୍ତି
ବିଚାରିଲେ ଅନ୍ୟଲୋକେ ପାକ କରୁଛନ୍ତି ।
ଦେବଳକ ବିପ୍ରଗଣ ସେ ପାପ କରିବେ
ତାହା ଦେବ ଯୋଗ୍ୟ ହୋଇ ନ ପାରିବେ କେବେ ।
ଜଗନ୍ନାଥ ଦେବଙ୍କର ନଇବେଦ୍ୟ ଅନ୍ନ
କିପରି ଶ୍ରୋତ୍ରିୟଗଣ କରିବେ ଭୋଜନ ।
ସେ ଶ୍ରୋତ୍ରିୟ ଦ୍ୱିଜ ଏହା ମନେ ବିଚାରିଲେ
ଶ୍ରୀମହାପ୍ରସାଦ ଅନ୍ନ ଭୋଜନ ନ କଲେ ।
ତାହାଙ୍କ ସଙ୍ଗତେ ଆଉ ଯେତେ ଆସିଥିଲେ
କେହି ହେଲେ ସେ ପ୍ରସାଦ ଭକ୍ଷଣ ନ କଲେ ।
ଏଣୁ କୁଟୁମ୍ବ ସହିତେ ସେହି ବିପ୍ରବର
ଅପରାଧୀ ହେଲେ ବ୍ୟାଧି ବଢ଼ିଲା ଶରୀର ।
ବାକ୍ୟ ଶକ୍ତି ରୁଦ୍ଧ ହେଲା ସଙ୍ଗୀ ଜନଙ୍କର
ଏହା ଦେଖି ମନେ ବିଚାରିଲେ ଦ୍ୱିଜବର ।
ଅକସ୍ମାତ ଆମ୍ଭ ଅନୁଚରଗଣଙ୍କର
ବ୍ୟାଧି ଜାତ ହୋଇ ପୀଡ଼ା ହୁଅଇ ଶରୀର ।
ଏ ରୂପ ଚିନ୍ତାରେ ତିନିରାତି ଗତ ହେଲା
ମନମଧ୍ୟେ ଏହି ବୁଦ୍ଧି ଉପସ୍ଥିତ ହେଲା ।
ଏ କ୍ଷେତ୍ରରେ କିଛି ଦ୍ରୋହ ଆଚରଣ କଲୁ
ଏ ରୂପ ବ୍ୟାଧିରେ ସର୍ବେ ଆକ୍ରାନ୍ତ ହୋଇଲୁ ।
ଜାଣିକରି କିଛି ଦ୍ରୋହ କରିନାହୁଁ ଆମ୍ଭେ
ଯାହାଯୋଗେ ଏହି ପୀଡ଼ା ଭୋଗିବେ ସରବେ ।
ଏହିପରି ଚିନ୍ତା ସେହି ଦ୍ୱିଜବର କଲେ
ପ୍ରଭୁ ଜଗନ୍ନାଥଙ୍କର ଧ୍ୟାନରେ ବସିଲେ ।
ତାହାଙ୍କର ଧ୍ୟାନ ଶେଷ ହେଲା ଯେତେବେଳେ
ଏହିରୂପେ ସ୍ତବ କରିବାକୁ ଆରମ୍ଭିଲେ ।
ଦୁଇ ହସ୍ତକୁ ଯୋଡ଼ିଣ ଶାଣ୍ଡିଲ୍ୟ ବ୍ରାହ୍ମଣ
ହେ ପ୍ରଭୁ ଧର୍ମ ନିର୍ଣ୍ଣୟ କିରବା କାରଣ ।
ଆପଣଙ୍କର ମୁଖରୁ ହୋଇଛି ନିର୍ଗତ
ଚତୁର୍ଦ୍ଦଶ ବିଦ୍ୟା ଏଥି ସନ୍ଦେହ ନାହିଁ ତ ।
ପୁରାଣ ନ୍ୟାୟ ମୀମାଂସା ସ୍ମୃତି ଚାରିବେଦ
ଷଡ଼ଙ୍ଗ ଏ ଚତୁର୍ଦ୍ଦଶ ବିଦ୍ୟାରେ ପ୍ରସିଦ୍ଧ ।
ଶାସ୍ତ୍ରମାନଙ୍କରେ ଯାହା ହୋଇଛି ନିର୍ଣ୍ଣିତ
ସେ ରୂପେ ନିଜ କର୍ତ୍ତବ୍ୟ କରିବା ଉଚିତ ।
ସେହି ଧର୍ମ ରକ୍ଷାଅର୍ଥେ ପ୍ରତ୍ୟେକ ଯୁଗରେ
ଆପଣଙ୍କ ଅବତାର ହୁଏ ପୃଥିବୀରେ ।
ଯେଉଁ ନର କରେ ଶାସ୍ତ୍ର ବିଧିକୁ ଲଙ୍ଘନ
ଆପଣଙ୍କର ଦ୍ରୋହ ସେ କରେ ଆଚରଣ ।
ହେ ଦେବ ଦେବେଶ ଦେହ ମନ ବଚନରେ
ଧର୍ମ ଶାସ୍ତ୍ରକୁ ଲଙ୍ଘନ ମୁଁ କଲି ହେଳାରେ ।
ଅର୍ଥ କାମ ସାଧନାରେ ପ୍ରବୃତ୍ତ ହେଲି
କେଉଁ ଦୋଷେ ଏ ଦାରୁଣ ପୀଡ଼ା ଭୋଗ କଲି ।
ଆସିଥିଲେ ଆପଣଙ୍କୁ କରିଲେ ଦର୍ଶନ
ସଞ୍ଚିତ ପାପ ଏ ସ୍ଥାନେ ହୋଇବ ଦହନ ।
ଜାଣେ ନାହିଁ କରିଅଛି କେଉଁ ଅପରାଧ
ଯାହା ଆପଣଙ୍କ ଶାସ୍ତ୍ର ପଥର ବିରୁଦ୍ଧ ।
ଯେଣୁ ଏ ଭୀଷଣ ପୀଡ଼ା ଅଙ୍ଗେ ହେଲା ଜାତ
ଅପରାଧ ବିନା ଅନ୍ୟ କାରଣ ନାହିଁ ତ ।
ହେ ମହାସାଗର ଜ୍ଞାନେଅବା ଅଜ୍ଞାନରେ
କରିଅଛି ଅପରାଧ କ୍ଷମାକର ବାରେ ।
ହେ ପ୍ରଭୁ ଯାହାର ପାଦ ଖସଇ ଭୂମିରେ
ଏକମାତ୍ର ସେହି ଭୂମି ତାଙ୍କୁ ରକ୍ଷା କରେ ।
ସେହିପରି ଅପରାଧ ଆପଣଙ୍କ ପ୍ରତି
ଯେ କରନ୍ତି ତାଙ୍କୁ ରକ୍ଷା ଆପଣ କରନ୍ତି ।
ଅପରାଧ ଯୋଗେ ଯେଉଁ ପାପ ହୋଇଅଛି
ଆପଣଙ୍କ ନିକଟରେ କ୍ଷମା ମାଗୁଅଛି ।
ଅଗ୍ନି ସନ୍ତାପରୁ ଜାତ ହୁଏ ଯେଉଁ ବ୍ରଣ
ସେ ଅଗ୍ନି ତାପରେ ତାହା ହୁଏ ପ୍ରଶମନ ।
ହେ ନାଥ ମୋର ପ୍ରାରବ୍ଧ ପାପୁଁ ହେଲା ଜାତ
ଏ ଦୁର୍ଦ୍ଦଶା ନାଶିବାକୁ ଆପଣ ସମର୍ଥ ।
ଅପବର୍ଗ ଲାଭେ ଧନ୍ୟ ହୋନ୍ତି ଭକ୍ତଗଣ
କଟାକ୍ଷପାତେ ମୋ ଦୁଃଖ ହୋଇବ ଦହନ ।
ହେ ଜଗନ୍ନାଥ ମୁଁ ଶୋକ ସାଗରେ ଭାସିଛି
ଉଦ୍ଧାର କରନ୍ତୁ ଶ୍ରୀପଦରେ ମାଗୁଅଛି ।
ଯେ ମାନବ ଆପଣଙ୍କ ଦୃଷ୍ଟିପଥେ ଥାଏ
ଏପରି ଦଶା କି ତାର ଯେବେ ହୋଇଥାଏ ।
ଆପଣ ତ ପ୍ରକୃତରେ ଦୟାର ସାଗର
ଆପଣଙ୍କ ଦୃଷ୍ଟିପଥେ ରହେ ଯେଉଁ ନର ।
ସଦା ବୁଡ଼ି ରହିଥାଏ ଆନନ୍ଦ ସାଗରେ
କିଛି ବସ୍ତୁ ଚାହେଁ ନାହିଁ ସେ ଶୋକ ନର୍କରେ ।
ହେ ଦେବ ମୋହର ଭାଗ୍ୟ ନୁହଇ ସାମାନ୍ୟ
ଆପଣଙ୍କୁ ଧର୍ମ ନେତ୍ରେ କଲା ଦରଶନ ।
ଏହି ଯୋଗେ ମୋର ଭୟ ହେଉଛି ନିଶ୍ଚୟ
ଅପବର୍ଗ ପଥେ ହେବ ଶ୍ରେଷ୍ଠ ଅନ୍ତରାୟ ।
ହେ ଜଗନ୍ନାଥ ଆପଣ ହୁଅନ୍ତୁ ପ୍ରସନ୍ନ
ଏହି ସେବକ ଜନକୁ କର ପରିତ୍ରାଣ ।
ସେବ୍ୟ ସେବକ ସମ୍ବନ୍ଧ ଯହିଁ ବିଦ୍ୟମାନ
ତେଣୁ ଅପରାଧ କ୍ଷମା କରନ୍ତୁ ଆପଣ ।
ଏହିପରି ସ୍ତୁତି ଦ୍ୱିଜ କଲେ ସେ ସ୍ଥାନରେ
ଦେହ ପୀଡ଼ା ଶାନ୍ତ ହୋଇଗଲା ସେ କାଳରେ ।

Digitized by srujanika@gmail.com

ଶ୍ରୀ ନୃସିଂହ ଦେବଙ୍କୁ ଯେ କରିଲେ ସାକ୍ଷାତ
ଦିବ୍ୟ ସିଂହାସନେ ହୋଇଛନ୍ତି ଅଧିଷ୍ଠିତ ।
ଦିବ୍ୟ ଅଳଙ୍କାରେ ବିଭୂଷିତ ହୋଇଛନ୍ତି
ଲକ୍ଷ୍ମୀ ପରଶନ୍ତି ଅନ୍ନ ଭୋଜନ କରନ୍ତି ।
ଭୁକ୍ତି ଶେଷ ଅନ୍ନ ଯାହା ରହଇ ହସ୍ତରେ
ତାହା ପକାଇ ଦିଅନ୍ତି ପାତ୍ର ମାନଙ୍କରେ ।
ଲକ୍ଷ୍ମୀଦେବୀ ହସି ହସି ଯାହାକୁ ଦିଅନ୍ତି
ଆନନ୍ଦରେ ତାହା ପ୍ରଭୁ ଭୋଜନ କରନ୍ତି ।
ସେ ଶାଣ୍ଡିଲ୍ୟ ଦ୍ୱିଜ ଦେଖି ବିସ୍ମୟ ହୋଇଲେ
ପ୍ରସାଦ ନ ଖାଇ ଅପରାଧ ସେ ବୁଝିଲେ ।
ପୁନର୍ବାର କଲେ ଦ୍ୱିଜ ଏହିପରି ସ୍ତବ
ଦୂରଦେଶେ ଘର ଏହା ନ ଜାଣଇ ଦେବ ।
ଆପଣ ସର୍ବଜ୍ଞ ସର୍ବ ତତ୍ତ୍ୱର ଅତୀତ
ଆପଣଙ୍କ ମାୟା ମୂର୍ଖ ଜାଣିବ କେମନ୍ତ ।
ସୃଷ୍ଟି ସଂହାର କରୁଛ ଇଚ୍ଛାରେ ଆପଣ
ଏହା କିପରି ଜାଣିବ ମୁଁ ତ ମୂଢ଼ଜନ ।
ସେ ବ୍ରାହ୍ମଣ ଏହିରୂପେ ସ୍ତୁତି କରୁଥିଲେ
ସ୍ୱୟଂ ଶ୍ରୀ ନୃସିଂହ ଦେବ ଉଚିଷ୍ଟ ହସ୍ତରେ ।
ଭୋଜନର ଶେଷ ଅନ୍ନ ବ୍ରାହ୍ମଣ ଦେହରେ
ଲେପନ କରିଲେ ଦୟାସିନ୍ଧୁ ସେ କାଳରେ ।
ଅମୃତ ସମାନ ଭୁକ୍ତ ଶେଷ ସେହି ଅନ୍ନ
ଦେହେ ଲାଗି ରୋଗମୁକ୍ତ ହେଲେ ସେ ବ୍ରାହ୍ମଣ ।
ଋଷି ସମାନ ପରମ ସୌନ୍ଦର୍ଯ୍ୟ ସମ୍ପନ୍ନ
ଦିବ୍ୟ ଦେହ ଧାରଣ ସେ କଲେ ତତକ୍ଷଣ ।
ବନ୍ଧ୍ୟା ରମଣୀ ପ୍ରସବ ବେଦନା ଯେପରି
ଯେଉଁକାଳେ ଅନୁଭବ କରି ତ ନ ପାରି ।
ସେହିରୂପେ ଭକ୍ତଗଣ କେବଳ ବୁଝନ୍ତି
ଭକ୍ତିରେ ମହିମା ଅନ୍ୟ ବୁଝି ନ ପାରନ୍ତି ।
ଏହାକହି ନିଜକୁ ସେ କୃତାର୍ଥ ମଣିଲେ
ନୃସିଂହଙ୍କର ଉଚ୍ଛିଷ୍ଟ ପାତ୍ରରୁ ଭୁଞ୍ଜିଲେ ।
ଧର୍ମଶାସ୍ତ୍ରରେ ବିଚାର ନାହିଁ ଏ କ୍ଷେତ୍ରରେ
ମନ ମଧ୍ୟରେ ଏ କଥା ଭାବନା କରିଲେ ।
ଏହା ତ ପରମଧର୍ମ ରୂପେ ବିବେଚିତ
ଏହାକୁ ଯେ କରିଛନ୍ତି ସ୍ୱୟଂ ଜଗନ୍ନାଥ ।
ଆଚାରର ପ୍ରଭୁ ଧର୍ମ ଯେ ରୂପେ ବିଖ୍ୟାତ
ସେପରି ଧର୍ମର ପ୍ରଭୁ ସ୍ୱୟଂ ଜଗନ୍ନାଥ ।
ଏହି କଥା ମନରେ ସେ ବିଚାର କରିଲେ
କୁଟୁମ୍ବମାନଙ୍କ ପାଇଁ ମୁଠିଏ ଧଇଲେ ।
ତହୁଁ ଧ୍ୟାନ ଭଙ୍ଗ ହେଲା ବିସ୍ମୟ ମନରେ
ଚିନ୍ତାକରି ଏହିକଥା ନିଶ୍ଚୟ କରିଲେ ।
ଶ୍ରୀ ମହାପ୍ରସାଦ ଅନ୍ନ ନଜାଣିମା ପଣେ
ଭୋଜନ ନ କଲି ଆସି ଏହି କ୍ଷେତ୍ରସ୍ଥାନେ ।
ଜଗନ୍ନାଥଙ୍କର ପ୍ରତି ଦ୍ରୋହ ଆଚରଣ
କରିବା ହେତୁ ପାଇଲି ଏପରି କଷଣ ।
ସ୍ୱୟଂ ବ୍ରହ୍ମା ଚଉଦ ଭୁବନ ଅଧିପତି
ଧର୍ମ ଦ୍ରବ୍ୟ ମୟ ଜଳେ ସେ ପାଦ ଧୁଅନ୍ତି ।
ନିଜକୁ ପବିତ୍ର ସେ ଜଳରେ କରିଛନ୍ତି
ଇନ୍ଦ୍ର ଆଦି ଦେବଗଣ ଯାହାକୁ ପୂଜନ୍ତି ।
ସେହି ନାରାୟଣ ଏହି କ୍ଷେତ୍ରେ ବିଦ୍ୟମାନ
ମନୁଷ୍ୟ କୃତ ଅନ୍ନାଦି କରନ୍ତି ଭୋଜନ ।
ଏପରି ଅଦ୍ଭୁତ କଥା ସ୍ୱପ୍ନରେ ଦେଖିଲେ
ସେହି ବିପ୍ରବର ଅତି ଆଶ୍ଚର୍ଯ୍ୟ ହୋଇଲେ ।
ସେ ନୈବେଦ୍ୟ ଅନ୍ନ ସର୍ବ ପରିଜନଙ୍କର
ଦେହରେ ଲେପନ ଆଣି କରିଲେ ସତ୍ତ୍ୱର ।
ରୋଗଶୂନ୍ୟ ହୋଇ ସର୍ବେ ବଚନ କହିଲେ
ପୁନର୍ଜନ୍ମ ହେଲା ବୋଲି ମନେ ବିଚାରିଲେ ।
ପୁରୁଷୋତ୍ତମ କ୍ଷେତ୍ରର ମହିମା ଗାଇଲେ
ସକୁଟୁମ୍ବ ବନ୍ଧୁ ବର୍ଗ ଆନନ୍ଦ ହୋଇଲେ ।
ପୁରୁଷୋତ୍ତମ କ୍ଷେତ୍ରରେ ଦେବ ଜଗନ୍ନାଥ
ଉଚ୍ଛିଷ୍ଟ ଦେଇ ପାପୀଙ୍କୁ କରନ୍ତି ମୁକତ ।
ସପ୍ତଦ୍ୱୀପା ଅବନୀରେ ଏକ୍ଷେତ୍ର ସମାନ
ଆଉ ନାହିଁ ପୁଣ୍ୟକ୍ଷେତ୍ର ଶୁଣ ଋଷିଗଣ ।
ଯେଉଁସ୍ଥାନେ ଭୋଗ ସ୍ୱର୍ଗ ମୁକ୍ତି କରଗତ
ସେ କ୍ଷେତ୍ର ସମାନ କ୍ଷେତ୍ର ଦୁର୍ଲ୍ଲଭ ନିଶ୍ଚିତ ।
ଏ ଭବ କାନ୍ତାରେ ଭ୍ରମୁଛନ୍ତି ଜୀବଗଣ
ବାରମ୍ବାର ମାତୃଗର୍ଭେ ହୁଅନ୍ତି ଜନମ ।
ସୌଭାଗ୍ୟକୁ ଏହିକ୍ଷେତ୍ରେ ହେଲେ ଉପସ୍ଥିତ
ବିବିଧ ଭୋଗ ଭୁଞ୍ଜିଣ ପାନ୍ତି ମୁକ୍ତିପଥ ।
ଏହିପରି କଥାବାର୍ତ୍ତା ସକଳେ ହୋଇଲେ
ଏକତ୍ରେ ମହାପ୍ରସାଦ ଭୋଜନ କରିଲେ ।
ସେ ବିପ୍ର ସଙ୍ଗରେ ଆସିଥିଲେ ଯେତେ ଜନ
ନିଷ୍ପାପ ହୋଇଣ ସର୍ବେ ହେଲେ ରୋଗଶୂନ୍ୟ ।
ବାଳ ସୂର୍ଯ୍ୟପରି ତେଜ ହୋଇଲା ପ୍ରକାଶ
ଦେହ କାନ୍ତି ଝଟକିଲା ଯେସନେ ତ୍ରିଦଶ ।
ଋଷିଗଣ ତୁମ୍ଭେମାନେ ସର୍ବେ ଶୁଣିଲ ତ
ଶ୍ରୀକ୍ଷେତ୍ର ମହାପ୍ରସାଦ ଭୋଜନ ବୃତ୍ତାନ୍ତ ।
ମହାପାପୀ ଜନ ଯଦି ଶ୍ରବଣ କରଇ
ମହାପାପ କରିଥିଲେ ମୁକତ ହୁଅଇ ।
ବ୍ରହ୍ମରୂପୀ ଭଗବାନ ନିଜର ଦେହରେ
ଲେପନ କରନ୍ତି ମହାପ୍ରସାଦ ହସ୍ତରେ ।

Digitized by srujanika@gmail.com

ସେ ନିର୍ମାଲ୍ୟ ଗ୍ରହଣର ପ୍ରକୃତ ବୃତ୍ତାନ୍ତ
ମୁଖେ କହିବାକୁ ଆମ୍ଭେ ନୋହୁ ସମରଥ ।
ଗନ୍ଧ ପୁଷ୍ପ ମାଳ ଭଗବାନଙ୍କ ଅଙ୍ଗରେ
ଲାଗି ହୋଇ ଯଥାକାଳେ ଉଲାଗି ହୋଇଲେ ।
ତାହାର ନାମ ନିର୍ମାଲ୍ୟ କହନ୍ତି ସକଳେ
ଏହାକୁ ନିଜ ମସ୍ତକେ ଧାରଣ ଯେ କରେ ।
ଅଥବା ନିଜ ଅଙ୍ଗରେ କରଇ ଲେପନ
ସକଳ ତୀର୍ଥର ଫଳ ଲଭଇ ସେ ଜନ ।
ଯେଉଁଜନ କରେ ଏହି ନିର୍ମାଲ୍ୟ ଭୋଜନ
ଗୁରୁତଳ୍ପ ଆଦି ପାପ ହୁଅଇ ଦହନ ।
ନିର୍ମାଲ୍ୟ ଅଟେ ବିଷ୍ଣୁଙ୍କ ଶରୀର ସମାନ
ଶୁଭଫଳ ମିଳେ ଅଙ୍ଗେ କରିଲେ ଲେପନ ।
ପୂର୍ବେ ଇନ୍ଦ୍ରଦ୍ୟୁମ୍ନ ଯେଉଁରୂପେ କରିଥିଲେ
ସେହିରୂପେ ପ୍ରତିଦିନ ପ୍ରଭୁଙ୍କ ଦେହରେ ।
ଚନ୍ଦନାଗୁରୁ କସ୍ତୁରୀ କର୍ପୂର କୁଙ୍କୁମ
ଏ ସକଳ ଏକତ୍ରରେ କରିବ ଲେପନ ।
ବର୍ଷଶେଷେ ଥରେ ତାହାର ଲାଗି କରିବ
ସେ କାଳେ ପ୍ରଭୁଙ୍କୁ ଦରଶନ ନ କରିବ ।
ବର୍ଷମଧ୍ୟେ ଅଙ୍ଗ ଲେପ ହୋଇଲେ ସ୍ଖଳନ
ପୁନର୍ବାର ପିଷ୍ଟଦ୍ରବ୍ୟ କରିବ ଲେପନ ।
ଅନ୍ୟ ଦ୍ରବ୍ୟରେ ଲେପନ ପ୍ରଶସ୍ତ ନୁହଇ
ଉକ୍ତ ଦ୍ରବ୍ୟ ବିଷ୍ଣୁ ଦେହ ସମାନ ଅଟଇ ।
ମୁନିଗଣ ପୂର୍ବକାଳ କଥା କହୁଅଛି
ଏକକାଳେ ମୂଢ଼ମତି ଏକରାଜ ବସି ।
ଜଗନ୍ନାଥ ହେଉଥିଲେ ଚନ୍ଦନ ଚର୍ଚ୍ଚିତ
ତାହା ଦେଖି ସୁବାସରେ ହୋଇଲେ ମୋହିତ ।
ନିଜ ଅଙ୍ଗେ ଲେପିବାକୁ ଇଚ୍ଛା ସେ କରିଲେ
ସେବାକାରୀ ଜନ ଏହି ବିଷୟ ଜାଣିଲେ ।
ରାଜପୁତ୍ରକୁ ସନ୍ତୋଷ କରିବା ନିମିତ୍ତ
ପ୍ରଭୁଙ୍କ ଦେହୁଁ ପୋଛିଲେ ଚନ୍ଦନ ତୁରିତ ।
ରାଜପୁତ୍ରକୁ ଯେ ଆଣିଦେଲେ ତତକ୍ଷଣ
ରାଜପୁତ୍ର ନିଜ ଅଙ୍ଗେ କରିଲେ ଲେପନ ।
ଯେଉଁ ଅଙ୍ଗରେ ଲାଗିଲା ପ୍ରଭୁଙ୍କ ଚନ୍ଦନ
ଧବଳ କୁଷ୍ଠେ ଆକ୍ରାନ୍ତ ହେଲା ସେହି ସ୍ଥାନ ।
ରାଜପୁତ୍ରକୁ ଯେ ଜନ କରିଲା ପ୍ରଦାନ
ତା ଦେହରେ କୁଷ୍ଠବ୍ୟାଧି ଜାତ ତତକ୍ଷଣ ।
ଏଣୁ ପ୍ରଭୁଙ୍କ ଦେହରେ ସେହି ବିଲେପନ
ବର୍ଷେକାଳ ଯାଏ ଥିବ ଅଛି ଏ ନିୟମ ।
ଅନ୍ୟ ନର୍ମାଲ୍ୟ ମଧ୍ୟରେ ଏହି ବିଲେପନ
ଆଘ୍ରାଣ ମାତ୍ରକେ ପାପ ହୁଅଇ ଦହନ ।

ଆଉ ଏକ କଥା କହୁଅଛି ସର୍ବେ ଶୁଣ
ପୂର୍ବେ ଥିଲା ଏକ ଦୈତ୍ୟ ଦମନକ ନାମ ।
ସମୁଦ୍ର ଜଳରେ ସଦା କରେ ସନ୍ତରଣ
ମାୟା ପ୍ରକାଶି ଲୋକଙ୍କୁ ପୀଡ଼େ ପ୍ରତିଦିନ ।
ଭଗବାନଙ୍କୁ ପ୍ରାର୍ଥନା ବିଧାତା କରିଲେ
ମାୟାଧର ଭଗବାନ ମତ୍ସ୍ୟରୂପ ହେଲେ ।
ସାଗର ଜଳରେ ପଶିକଲେ ଅନ୍ୱେଷଣ
ତୀର ଦେଶେ ଆଣି ତାକୁ ବେଗେ କଲେ ଚୂର୍ଣ୍ଣ ।
ଚୈତ୍ରମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଦିନ
ଭଗବାନଙ୍କର ହସ୍ତେ ହୋଇଲା ନିଧନ ।
ଭୂମିରେ ପଡ଼ନ୍ତେ ସେ ଦାନବ ଦେହ ଚୂର୍ଣ୍ଣ
ସୁଗନ୍ଧ ତୃଣ ରୂପରେ ହୋଇଲା ଜନମ ।
ଏହା ଦେଖି ଭଗବାନ ଆଶ୍ଚର୍ଯ୍ୟ ହୋଇଲେ
ଦମନକ ସଙ୍ଗେ ରହେ ଆଉ ଯେତେ ଫୁଲେ ।
ବନମାଳା ସଙ୍ଗତରେ ହୃଦେ ଲମ୍ବାଇଲେ
ତାର ସୁଗନ୍ଧ ବିଷୟ ମନେ ଚିନ୍ତା କଲେ ।
ଦମନକ ନାମରେ ତା ଗ୍ରହଣ କରିଲେ
କେତେକ୍ଷଣେ ନିଜ ଗନ୍ଧ ହରାନ୍ତି ସକଳେ ।
ସେହି ଦମନକ ବର୍ଣ୍ଣ ପୃଥିବୀ ଭୂଷଣ
ଭଗବାନଙ୍କର ବର୍ଣ୍ଣ ସଙ୍ଗରେ ସମାନ ।
ଏହି ହେତୁ ଦମନକ ମାଳା ପ୍ରଭୁଙ୍କର
ସଦାକାଳେ ହୋଇଥାଏ ଅତି ପ୍ରୀତିକର ।
ବାସି ହୋଇକରି ଯଦି ଶୁଷ୍କ ହୋଇଥାଇ
ଦମନକ କେଉଁ କାଳେ ଦୂଷିତ ନୁହଇ ।
ଦମନକ ଅରି ପ୍ରଭୁ ଭଗବାନଙ୍କର
ପ୍ରତି ସାଧନ କର୍ତ୍ତବ୍ୟ ସକଳ ଜନର ।
ଏହି ଦମନକ ମାଳା ଗୁନ୍ଥି ଯତନରେ
ପ୍ରଭୁଙ୍କ ଗଳାରେ ଦେଲେ ମୁକ୍ତିଲାଭ କରେ ।
ପ୍ରଭୁଙ୍କ ଦେହୁଁ ଏ ମାଳା ଉଲାଗି ହୋଇଲେ
ଅଙ୍ଗରେ ଧଇଲେ ଅଶ୍ୱମେଧ ଫଳ ମିଳେ ।
ତୁଳସୀ ମାଳା ପ୍ରଭୁଙ୍କ ଦେହୁ ମୁକ୍ତ ହେଲେ
ଯେ ବ୍ୟକ୍ତି ଧାରଣ କରେ ମସ୍ତକ କଣ୍ଠରେ ।
ସେ ଭୂତଳେ ବାସ କରି ଜୀବନ୍ମୁକ୍ତ ହୁଏ
ଅସଂଖ୍ୟ ଅଶ୍ୱମେଧର ଫଳକୁ ସେ ପାଏ ।
ଭଗବାନଙ୍କ ଅଙ୍ଗରୁ ମୁକ୍ତ ହୋଇଥିବ
ଯେତେ ସଂଖ୍ୟକ ତୁଳସୀ ଭକ୍ଷଣ କରିବ ।
ତୁଳସୀ ପତ୍ର ସଂଖ୍ୟାରେ ସହସ୍ର ବରଷ
ଯେ ଜନ ବିଷ୍ଣୁ ଲୋକରେ କରଇ ନିବାସ ।
ତୁଳସୀ ମିଶ୍ରିତ ନୈବେଦ୍ୟାନ୍ନ ଭକ୍ଷଣରେ
ସୋମରସ ପାନ ଫଳ ମିଳେ ସେ କାଳରେ ।

Digitized by srujanika@gmail.com

ଯାବଜ୍ଜୀବନ ଯେ ଜନ କରଇ ଭୋଜନ
ନିଶ୍ଚୟ ମୋକ୍ଷପଦବୀ ଲଭେ ସେହି ଜନ ।
ଅର୍ଘ୍ୟ ଆଚମନ ସ୍ନାନ ପାଦୋଦକ ଜଳ
ପାନ କଲେ ପାପରାଶି ହୁଅଇ ନିର୍ମୂଳ ।
ତୀର୍ଥସ୍ନାନ ଫଳ ମିଳେ ହୁଏ ଗ୍ରହ ଶାନ୍ତି
ରାକ୍ଷସ ଭୂତ ବେତାଳ ଦୂରକୁ ପଳାନ୍ତି ।
ଶବାଦି ଅମେଧ୍ୟ ବସ୍ତୁ ସ୍ପର୍ଶ ଦୋଷ ନାଶ
ହୁଏ ବ୍ରତଦୀକ୍ଷା ଫଳ ଲଭଇ ଅବଶ୍ୟ ।
ଐଶ୍ୱର୍ଯ୍ୟ ବଢ଼ାଇ ଅପମୃତ୍ୟୁ ନାଶ କରେ
ଦୂରାରୋଗ୍ୟ ବ୍ୟାଧିରାଶି ନାଶ ବେଗେ କରେ ।
ସୁରା ଗୋମାଂସ ଭକ୍ଷଣ ଯଦି କରିଥାଏ
ସେ ପାପରୁ ସେହିଜନ ବେଗେ ମୁକ୍ତ ହୁଏ ।
ଉକ୍ତ ଚତୁର୍ବିଧ ଜଳେ ଅଙ୍ଗ ଆର୍ଦ୍ର ଥିବ
ଆଶୌଚ ବାରତା ଯଦି ଗ୍ରହଣ କରିବ ।
ତଥାପି ଅଶୁଚି ନ ହୋଇବ ସେହି ଜନ
ପୂର୍ବପରି କରିବ ସେ ସକଳ କରମ ।
ସେ ଜନ ପ୍ରତିଜ୍ଞା କରି ଯାବତ ଜୀବନ
ଏ ଜଳ ବହୁତ ଅବା ଅଳପ ପ୍ରମାଣ ।
ଗ୍ରହଣ କରଇ ନିତ୍ୟ ଆନନ୍ଦ ମନରେ
ନିଶ୍ଚୟ ସେ ଜନ ମୁକ୍ତିପଦ ଲାଭ କରେ ।
ଏହିପରି ନୀଳାଚଳ ଧାମେ ଜଗନ୍ନାଥ
ଲୋକମାନଙ୍କୁ ଯେ ଦୟା କରିବା ନିମିତ୍ତ ।
ପୁରୁଷୋତ୍ତମ କ୍ଷେତ୍ରରେ କମଳା ସହିତ
ବିବିଧ ପ୍ରକାରେ ଲୀଳା କରନ୍ତି ସତତ ।
ସକଳ ଜନକୁ ମୁକ୍ତିଦାନ କରୁଛନ୍ତି
ପୁରୁଷୋତ୍ତମ କ୍ଷେତ୍ରରେ ସର୍ବଦା ଅଛନ୍ତି ।
ନିର୍ମାଲ୍ୟ ବା ପାଦୋଦକ ନୈବେଦ୍ୟ ଭୋଜନ
କିମ୍ବା ତାହାଙ୍କୁ ଦର୍ଶନ କଲେ ବା ପ୍ରଣାମ ।
ତାହାଙ୍କୁ ଦୁର୍ଲ୍ଲଭ ମୁକ୍ତି କରନ୍ତି ପ୍ରଦାନ
ସନ୍ଦେହ ନ କର ଏକଥାରେ ମୁନିଗଣ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ଅଷ୍ଟତ୍ରିଂଶ ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ଜଗନ୍ନାଥ ବଳରାମ ସୁଭଦ୍ରା ସଙ୍ଗରେ
ଦାରୁଦେହେ ଲୀଳା କର ନୀଳ ପର୍ବତରେ ।
ସିନ୍ଧୁସୁତା ଅନ୍ନ ରାନ୍ଧି ପରଶୁ ଅଛନ୍ତି
ପ୍ରସାଦ ପାଇ ଭକତ ଜନେ ତୃପ୍ତି ହୋନ୍ତି ।
ସେ ମହାପ୍ରସାଦ ଦେବଗଣଙ୍କ ଦୁର୍ଲ୍ଲଭ
ତାହାର ଅସଂଖ୍ୟ ଗୁଣ କେ କହିପାରିବ ।
ପାପନାଶ ଭୁକ୍ତିମୁକ୍ତି ଫଳକୁ ସେ ଦିଏ
ଦୀନ ହରିହର ମାଗେ ପ୍ରସାଦ ମୁଠିଏ ।

**ଇତି ଶ୍ରୀସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ ମହାପ୍ରସାଦ ମହିମା କଥନେ ନାମ ଅଷ୍ଟତ୍ରିଂଶୋଽଧ୍ୟାୟଃ ।**



## ଊନଚତ୍ୱାରିଂଶ ଅଧ୍ୟାୟ

ଜୈମିନି ମୁନିଙ୍କୁ ପଚାରନ୍ତି ମୁନିଗଣ
ଜଗନ୍ନାଥଙ୍କ ମହିମା କରିଲୁ ଶ୍ରବଣ ।
ନିବେଦିତ ଅନ୍ନ ଆଉ ନିର୍ମାଲ୍ୟ ମହିମା
ବୁଝାଇ କହିଲେ ସର୍ବ ଆହେ ପୁଣ୍ୟତମା ।
ଅନ୍ୟଯାତ୍ରା ମାନଙ୍କରେ ହୁଏ ଯେତେ ଫଳ
ଯଥାର୍ଥ ରୂପେ ବୁଝାଇ କହନ୍ତୁ ସକଳ ।
ଯେଉଁ ଉଦ୍ଦେଶ୍ୟରେ ପ୍ରଭୁ ଯାତ୍ରା ଭିଆଇଲେ
ତାହା ଶୁଣିବାକୁ ଇଚ୍ଛା କରୁଛୁ ସକଳେ ।
ଜୈମିନି ମୁନି କହନ୍ତି ଶୁଣ ମୁନିଗଣ
ଲୋକହିତେ ପ୍ରଭୁ ଯାତ୍ରା କରିଲେ ଭିଆଣ ।
ସେ ପ୍ରଭୁ ବିବିଧ ଗଣ ବିବିଧ ରୂପରେ
ନାନାଚେଷ୍ଟା ନାନାଭାବେ ଲୀଳାରେ ବିହରେ ।
ଅହଙ୍କାର ଭିନ୍ନ କର୍ମଫଳ ଜନ୍ମେ ନାହିଁ
ଅହଙ୍କାର ଯୋଗେ ଜୀବ ବନ୍ଧନେ ପଡ଼ଇ ।
ଅହଙ୍କାର ବୁଦ୍ଧିରେ ଯେ କରିଥାଏ କର୍ମ
ସେ କର୍ମରେ ଶୁଭାଶୁଭ ଫଳ ବିଦ୍ୟମାନ ।
ସତ୍ତ୍ୱାଦି ଗୁଣ ଭେଦରେ ଜନମାନଙ୍କର
ବୁଦ୍ଧି ଯେ ପ୍ରକାଶ ହୁଏ ତିନି ପରକାର ।
ଯାହାର ବୁଦ୍ଧିରେ ସତ୍ତ୍ୱଗୁଣ ପ୍ରକାଶଇ
ଅନ୍ୟକଥା ଛାଡ଼ି ମୋକ୍ଷ ଫଳକୁ ଇଚ୍ଛଇ ।
ଏ ହେତୁ ସେ ଜନମାନେ ଯେ କର୍ମ କରନ୍ତି
ସେ କର୍ମରେ ଭଗବାନ ସନ୍ତୋଷ ହୁଅନ୍ତି ।
ସେ ଜନର ବୁଦ୍ଧି ରଜୋଗୁଣେ ହୁଏ ପୂର୍ଣ୍ଣ
ସେ ଜନ କରନ୍ତି ସେ ସକଳ ପୁଣ୍ୟ କର୍ମ ।
ଲୋକେ କରିବେ ପ୍ରଶଂସା ଯେ କୀର୍ତ୍ତି ରହିବ
ରଜୋଗୁଣୀ ଶ୍ରମ ସହି କର୍ମ ସମ୍ପାଦିବ ।
ତମୋଗୁଣୀ ଇହଲୋକେ ଯେ କର୍ମ କରନ୍ତି
ପ୍ରତ୍ୟକ୍ଷରେ ଫଳ ହେବ ବୋଲି ବିଚାରନ୍ତି ।
ଗତାନୁଗତିକ ଭାବେ ପ୍ରସଙ୍ଗ କ୍ରମରେ
ଫଳ କାମନାରେ ତାମସ ଯେ କର୍ମ କରେ ।
ସାତ୍ତ୍ୱିକ ଗୁଣରେ ପୂର୍ଣ୍ଣ ଯେ ସକଳ ଜନ
ଭଗବାନଙ୍କୁ ମନରେ କରନ୍ତି ସେ ଧ୍ୟାନ ।
ନିତି ଦରଶନ ଅବା ସ୍ମରଣ କରନ୍ତି
ସେମାନଙ୍କୁ ଭଗବାନ ଦିଅନ୍ତି ଯେ ମୁକ୍ତି ।
ରଜ ଅବା ତମୋଗୁଣେ ଯୁକ୍ତ ଯେଉଁ ଜନ
କରନ୍ତି ସେ ଫଳପ୍ରଦ ଉତ୍ସବାଦି କର୍ମ ।
ଏହିମାନେ ମେଳି ହୋଇ କର୍ମ କରିଥାନ୍ତି
ଅଳ୍ପ ଫଳ ଅର୍ଥେ ଲଘୁକର୍ମ ସମ୍ପାଦନ୍ତି ।

Digitized by srujanika@gmail.com

ବହୁଶ୍ରମ ସହି ଦେହେ କଷ୍ଟ ଯେ ପାଆନ୍ତି
ପରମ୍ପରା ରକ୍ଷା ଅର୍ଥେ କର୍ମ ସମ୍ପାଦନ୍ତି ।
ଏହି ମୂଢ଼ ଜନଙ୍କର ଉଦ୍ଧାର ନିମିତ୍ତ
ମନରେ ବିଶ୍ୱାସ ହେବ ଯେଉଁପରି ଜାତ ।
ଏହି ହେତୁ ବର୍ଷ ମଧ୍ୟେ ଦେବ ଜଗନ୍ନାଥ
କରିଛନ୍ତି ବହୁବିଧ ଯାତ୍ରା ପ୍ରବର୍ତ୍ତିତ ।
ସ୍ନାନ ଯାତ୍ରା ମହାବେଦୀ ଉତ୍ସବ ବର୍ଣ୍ଣନ
କରିଅଛୁ ଶୁଣିଛ ତ ପୂର୍ବେ ମୁନିଗଣ ।
ଏ ଦୁଇଯାତ୍ରାର ନାମ କଲେ ଉଚ୍ଚାରଣ
ମନୁଷ୍ୟର ସର୍ବପାପ ହୁଅଇ ଦହନ ।
ଦକ୍ଷିଣ ମୁଖେ ବାହୁଡ଼ା ବିଜୟ ଦର୍ଶନ
ଶୟନୋତ୍ସବ ଦକ୍ଷିଣାୟନର ବିଧାନ ।
ଦର୍ଶନ କରିଲେ ପାପ ହୁଅଇ ଦହନ
ପାର୍ଶ୍ୱ ପରିବର୍ତ୍ତନର ବିଧାନକୁ ଶୁଣ ।
ଭାଦ୍ର ଶୁକ୍ଳ ଏକାଦଶୀ ଯେଉଁଦିନ ହେବ
ଧୀରପଦେ ଶର୍ଯ୍ୟାଦ୍ୱାରେ ପ୍ରବେଶ କରିବ ।
ପଲ୍ୟଙ୍କଶାୟୀ ପ୍ରଭୁଙ୍କୁ କରିଣ ପ୍ରଣାମ
ଆନନ୍ଦେ କରିବ ଧୀରେ ଦ୍ୱାର ଉଦ୍‌ଘାଟନ ।
ନାନାବିଧ ଉପଚାରେ କରିବ ଅର୍ଚ୍ଚନ
ପାଦପଦ୍ମ ଯୁଗଳରେ କରିବ ପ୍ରଣାମ ।
ଗୁହ୍ୟୋପନିଷଦ ପଢ଼ି ସ୍ତୁତି ଆରମ୍ଭିବ
ଉତ୍ତର ମୁଖେ ଏ ମନ୍ତ୍ରେ ସ୍ନାନ କରାଇବ ।
ଜାଗ୍ରତ ସ୍ୱପ୍ନ ସୁଷୁପ୍ତି ଇଚ୍ଛାରେ ହୁଅଇ
ବିଶ୍ୱ ପରିବର୍ତ୍ତନ ସେକାଳେ ହୋଇଥାଇ ।
ଦେବ ଦେବ ଜଗନ୍ନାଥ କରୁଣା ନିଧାନ
କଳ୍ପ ପରିବର୍ତ୍ତନ ହେ କରନ୍ତି ଆପଣ ।
ସମ୍ପ୍ରତି ଜଗତହିତ ନିମିତ୍ତ ଆପଣ
ଶୟନ ଗୃହରେ କରିଅଛନ୍ତି ଶୟନ ।
ପାର୍ଶ୍ୱ ପରିବର୍ତ୍ତନର କାଳ ଉପସ୍ଥିତ
ପାର୍ଶ୍ୱ ପରିବର୍ତ୍ତନ ଯେ କର ଜଗନ୍ନାଥ ।
ଦେବରାଜ ଆପଣଙ୍କ ଆଜ୍ଞା ଅନୁସାରେ
ରହିଛନ୍ତି ଆପଣଙ୍କ ଧ୍ୱଜର ଉପରେ ।
ଆପଣଙ୍କ ପାଦପଦ୍ମ ଦର୍ଶନ ନିମିତ୍ତ
ମସ୍ତକେ ଜଳ ବର୍ଷନ୍ତି ହୋଇ ଆନନ୍ଦିତ ।
ପ୍ରଜା ପାଳନ ନିମିତ୍ତ ଏହି ମହୀତଳ
ଜଳରେ ପ୍ଲାବନ କରୁଅଛନ୍ତି ସକଳ ।
ଏ ରୂପେ ପ୍ରାର୍ଥନା କରି ବିନୟ ବଚନେ
ଜଗନ୍ନାଥଙ୍କୁ ସନ୍ତୁଷ୍ଟ କରିବ ସେକ୍ଷଣେ ।
ଯେଉଁପରି ପ୍ରଭୁଙ୍କର ଦୟା ପ୍ରକାଶିବ
ଆଲଟ ଚାମର ଧରି ବ୍ୟଜନ କରିବ ।
ସୁଗନ୍ଧ ଚନ୍ଦନ ଦେହେ କରିବ ଲେପନ
ଶଯ୍ୟା ଗୃହ ଦ୍ୱାରଦେଶେ କରିବ ସ୍ଥାପନ ।
ଉତ୍ତମ ପାୟସ ଇକ୍ଷୁ ଜାତଦ୍ରବ୍ୟମାନ
ପ୍ରୀତିପ୍ରଦ ଯାବତ ଯେ ନାନାଫଳେ ପୂର୍ଣ୍ଣ ।
ବହୁବିଧ ପିଷ୍ଟକ ଯେ ଘୃତ ସୁପାଚିତ
ଇତ୍ୟାଦି ଉପକରଣ ତାମ୍ବୁଳ ସହିତ ।
ଭକ୍ତିରେ ପ୍ରଭୁଙ୍କୁ ନିବେଦନ କରି ଦେବ
ଯେ ଜନ ଏହି କାଳରେ ଦର୍ଶନ କରିବ ।
ଅଥବା ସ୍ତୁତି କରିବ ଆନନ୍ଦ ଚିତ୍ତରେ
କ୍ଳେଶ ନ ସହିବ କେବେ ଜନନୀ ଗର୍ଭରେ ।
ଏଦିନ ଜଗନ୍ନାଥଙ୍କୁ ଯେ କରେ ଦର୍ଶନ
ମହାଫଳ ଲାଭ କରେ ଶୁଣ ଋଷିଗଣ ।
ଜଗନ୍ନାଥ ପ୍ରଭୁଙ୍କର ପ୍ରୀତି ଉଦ୍ଦେଶ୍ୟରେ
ସ୍ନାନ ଦାନ ଜପ ହୋମ ଯେଉଁଜନ କରେ ।
ପୂଜା କରି ଯେଉଁ ଜନ ରହେ ଜାଗରିତ
ଅକ୍ଷୟ ଫଳ ଲଭଇ ସନ୍ଦେହ ନାହିଁ ତ ।
ଯେଉଁ ଜନ ଏ ସକଳ କରେ ଅନୁଷ୍ଠାନ
ସଂସାରରେ ଆଉଥରେ ନ ହୁଏ ଜନମ ।
ଏ ବ୍ରତ ଶେଷରେ ବ୍ରାହ୍ମଣଙ୍କୁ ଦେବ ଦାନ
ସନ୍ତୋଷ କରିବ ଭୁଞ୍ଜାଇଣ ମିଷ୍ଟଅନ୍ନ ।
ସମୁଦାୟ ଅଙ୍ଗପୂର୍ଣ୍ଣ କରି ଏହି ବ୍ରତ
ଯେ କରଇ ବିଷ୍ଣୁଲୋକ ତାକୁ ହୁଏ ପ୍ରାପ୍ତ ।
ସେ ଜନ ମନରେ ଯାହା କାମନା କରଇ
ସେ ସକଳ କାମନା ଯେ ସିଦ୍ଧ ହୋଇଥାଇ ।
ସ୍ନାନ ଦାନ ଜପ ହୋମ ସହ ଏହି ବ୍ରତ
ଯେ କରେ ତାହାର ହୁଏ ପୂର୍ଣ୍ଣ ମନୋରଥ ।
ସକଳ କାମନା ସିଦ୍ଧି ହୋଇଥାଏ ତାର
ଅନ୍ତକାଳେ ବୈକୁଣ୍ଠକୁ ଯାଏ ସେହି ନର ।
ପାର୍ଶ୍ୱ ପରିବର୍ତ୍ତନର ବିଧାନ ଶୁଣିଲେ
ଅକ୍ଷୟ ସମ୍ପତ୍ତି ସେହି ଜନ ଲାଭ କରେ ।
ଏହାପରେ ଉତ୍ଥାପନ ଉତ୍ସବ ବିଧାନ
ଶ୍ରବଣ କରନ୍ତୁ କହୁଅଛି ଋଷିଗଣ ।
କୁମାର ପୂର୍ଣ୍ଣିମା ଦିନ ଜଗନ୍ନାଥଙ୍କର
ଅର୍ଚ୍ଚନ କରିବା ଯଥା ବିଧାନେ ସତ୍ୱର ।
ଜଳକ୍ରୀଡ଼ା ପୁଷ୍ପମାଲ୍ୟ ଅନୁଲେପନରେ
ପ୍ରଭୁଙ୍କ ପ୍ରୀତି ସାଧନ କରିବ ଭକ୍ତିରେ ।
ପୂର୍ଣ୍ଣିମା ରାତ୍ରି କାଳରେ ଉତ୍ସବ କରିବ
ବିବିଧ ଫଳ ପିଷ୍ଟକେ ଯତନେ ପୂଜିବ ।
ଏହାପରେ ପ୍ରାତଃକାଳ ଉପସ୍ଥିତ ହେଲେ
କାର୍ତ୍ତିକ ବ୍ରତ ସଂକଳ୍ପ କରିବ ବିଧିରେ ।

Digitized by srujanika@gmail.com

ଶୁକ୍ଳପକ୍ଷ ଏକାଦଶୀ ଦିନ ପରିଯନ୍ତ
ବ୍ରତ ଗ୍ରହଣ କରିବ ହୋଇଣ ସଂଯତ ।
ଏକାଦଶୀ ଦିନ ଯଥା ବିଧାନେ ପୂଜିବ
ଶୟନରୁ ଉତ୍‌ଥାପନ ବେଗେ କରାଇବ ।
ଏହିଦିନ ନିଶାକାଳେ ଆନନ୍ଦ ଚିତ୍ତରେ
ମନ୍ତ୍ର ପଢ଼ି ଉଠାଇବ ପ୍ରଭୁଙ୍କୁ ବିଧିରେ ।
ହେ ଦେବଦେବେଶ ଜଗଜ୍ଜ୍ୟୋତି ତେଜୋରାଶି
ବେଗେ ଉଠ ଶୟନରୁ କରୁଣା ପ୍ରକାଶି ।
ତୁମ୍ଭ ମାୟାରେ ପ୍ରସୁପ୍ତ ସକଳ ଜଗତ
ଶୟନରୁ ବେଗେ ଉଠିକର ଦୃଷ୍ଟିପାତ ।
ପ୍ରସ୍ଫୁଟିତ ପଦ୍ମସମ ଶୋଭିତ ନୟନ
ଚାହିଁଲେ ପବିତ୍ର ହେବେ ସକଳ ଭୁବନ ।
ଶ୍ରୁତିସ୍ମୃତି ଭକ୍ତି କ୍ରିୟା ବିଧିରେ ପ୍ରବୃତ୍ତ
ବିଶ୍ୱବାସୀ ସର୍ବେ ହେବେ ସନ୍ଦେହ ନାହିଁ ତ ।
ଏମନ୍ତ ପଢ଼ିବ ବୀଣା ବେଣୁ ବଜାଇଣ
ମଙ୍ଗଳ ଗାନ କରିବେ ସୂତ ବନ୍ଦିଗଣ ।
ଶଙ୍ଖ କାହାଳ ମୁରଜ ଆଦି ବାଦ୍ୟଧ୍ୱନି
ସ୍ତୋତ୍ରପାଠ ସହ ନୃତ୍ୟ ଗୀତ ଜୟଧ୍ୱନି ।
ଏ ରୂପେ ଜଗନ୍ନାଥଙ୍କୁ ବେଗେ ଉଠାଇବ
ପ୍ରଭୁଙ୍କ ଅଙ୍ଗରେ ତୈଳ ମର୍ଦ୍ଦନ କରିବ ।
ନୃତ୍ୟ ମଣ୍ଡପରେ ଆଣି ସ୍ଥାପନ କରିବ
ପଞ୍ଚାମୃତ ଫଳୋଦକେ ସ୍ନାନ କରାଇବ ।
ଯବ କଳକ ଆମଳକୀ ଚୂର୍ଣ୍ଣକୁ ଲେପିବ
ସର୍ବାଙ୍ଗେ ତୁଳସୀ ଚୂର୍ଣ୍ଣ ଘର୍ଷଣ କରିବ ।
ଉତ୍ତମ ଗନ୍ଧ ଚନ୍ଦନ ସର୍ବ ଶରୀରରେ
ଲେପନ କରିବ ଆଣି ଶ୍ରଦ୍ଧା ଭକତିରେ ।
ଅନନ୍ତର କ୍ରମେ ପୁଷ୍ପ ବାସିତ ଜଳରେ
କର୍ପୂର ମିଶ୍ରିତ ଜଳ କୁଶ ଉଦକରେ ।
ରତ୍ନୋଦକ ଗନ୍ଧୋଦକ ପୃଥକ କରିଣ
ସେ ସ୍ଥାନେ ଭଗବାନଙ୍କ କରାଇବ ସ୍ନାନ ।
ସେ କାଳେ ଜଗନ୍ନାଥଙ୍କୁ ଯେ କରେ ଦର୍ଶନ
ପାପ ଶୂନ୍ୟ ହୋଇଯାଏ ବୈକୁଣ୍ଠ ଭୁବନ ।
ଆଉ କି ଅଧିକ ଶୁଣିଥାଅ ଋଷିଗଣ
ସାକ୍ଷାତ କମଳା ଦେବୀ କରି ଆଗମନ ।
ନିଷ୍ପାପ ସେହି ଜନକୁ ଧରିଣ ହସ୍ତରେ
ସ୍ଥାପନ କରନ୍ତି ନେଇ ପ୍ରଭୁଙ୍କ କୋଳରେ ।
କୁଙ୍କୁମାଗୁରୁ କସ୍ତୁରୀ କର୍ପୂର ଚନ୍ଦନ
ତୀର୍ଥୋଦକେ ଗୋଳି ଅଙ୍ଗେ କରିବ ଲେପନ ।
ବାଳାଗୁରୁ ରସେ ସିକ୍ତ କର୍ପୂର ମିଶ୍ରିତ
ମାଳତୀ ମାଳ କଣ୍ଠରେ ଲମ୍ବାଇ ଦେବ ତ ।

ନାନାବିଧ ଉପଚାର ଦେଇଣ ପୂଜିବ
ପୂଜାଶେଷେ ନିରାଜନ ବିଧିରେ କରିବ ।
ଏହାପରେ ଦୁଇକର ଯୋଡ଼ି ଆନନ୍ଦରେ
ପ୍ରାର୍ଥନା କରିବ ଜଗନ୍ନାଥଙ୍କ ପୟରେ ।
ହେ ପ୍ରଭୁ ହେ ଚରାଚର ବିଶ୍ୱ ରକ୍ଷାକାରୀ
ହେ ଜଗତଗୁରୁ ଜୀବଗଣେ ଦୟାକରି ।
ଅମୃତ ଦୃଷ୍ଟିରେ ସଦା ନିରୀକ୍ଷଣ କର
ସଂସାର ସାଗରୁ ଜଗନ୍ନାଥ ପାରିକର ।
ଅନନ୍ତର ନୃତ୍ୟ ଗୀତ ଆଦି କଉତୁକେ
ରାତ୍ରି ଯାପନ କରିବ ପରମ ଉତ୍ସୁକେ ।
ଏହିକାଳେ ଯେଉଁଜନ କରନ୍ତି ଦର୍ଶନ
ମୋହନିଦ୍ରା ତେଜିଯାନ୍ତି ବୈକୁଣ୍ଠ ଭୁବନ ।
ଏହି ଜନମାନଙ୍କର କାମନା ସକଳ
ପୂର୍ଣ୍ଣ ହୋଇଥାଏ ଏଥି ସନ୍ଦେହ ନ କର ।
ପ୍ରାପ୍ତ ହୁଏ ସହସ୍ରାଶ୍ୱମେଧ ଯାଗଫଳ
କୋଟିଏ କପିଳା ଧେନୁ ଦାନ ସଙ୍ଗେ ତୁଲ ।
ପୃଥିବୀର ସର୍ବତୀର୍ଥ ସ୍ନାନ ଯେତେ ଫଳ
ତାହା ଲାଭକରେ ସେହି ଜନଟି କେବଳ ।
ମୁନିଗଣ ଚାତୁର୍ମାସ୍ୟା ବ୍ରତର ପାରଣ
କରିବ କାର୍ତ୍ତିକ ଶୁକ୍ଳ ପୂର୍ଣ୍ଣିମାର ଦିନ ।
ଚାତୁର୍ମାସ୍ୟା ବ୍ରତକାଳେ ହୋଇଣ ସଂଯତ
ଆଠମାସ ସୁବର୍ଣ୍ଣରେ କରିବ ନିର୍ମିତ ।
ଅବା ଶକ୍ତି ଅନୁସାରେ ଭଗବାନଙ୍କର
ପ୍ରତିମା ଗଠନ କରିବେ ଯେ ବ୍ରତୀନର ।
କିମ୍ବା ଶାଳଗ୍ରାମ ଶିଳା କରିଣ ସ୍ଥାପନ
ବିଷ୍ଣୁଙ୍କର ଚତୁର୍ମୂର୍ତ୍ତି କରିବ ଅର୍ଚ୍ଚନ ।
ଏହି ପୂଜା ସୁଧାଲିପା ମଣ୍ଡପେ କରିବ
ଅଥବା ଗୃହ କୋଣକୁ ସଜାଇ ମଣ୍ଡିବ ।
ଚନ୍ଦ୍ରାତପ ପୁଷ୍ପମାଳା ଚାମର ଶୋଭିତ
ଭିତ୍ତି ସକଳ ହୋଇବ ସୁଧା ଧବଳିତ ।
ସ୍ତମ୍ଭମାନଙ୍କର ନାନା ଚିତ୍ର ବିଭୂଷିତ
କାଳାଗୁରୁ ଧୂପେ ହେଉଥିବ ସୁବାସିତ ।
ତନ୍ମଧ୍ୟେ ପଞ୍ଚବର୍ଣ୍ଣରେ ମଣ୍ଡଳ ଆଙ୍କିବ
ତଦୁପରି ହସ୍ତୀଦନ୍ତ ପଲଙ୍କ ସ୍ଥାପିବ ।
ସେ ପଲଙ୍କେ ପଚ୍ଚରାଦୀ କରିବ ସ୍ଥାପନ
ତହିଁରେ ଦମୋଦରଙ୍କୁ କରିବ ଅର୍ଚ୍ଚନ ।
ଏ ରୂପେ ଦାମୋଦରଙ୍କୁ କରିବ ନିର୍ମାଣ
ଲକ୍ଷ୍ମୀଙ୍କୁ କରିବ ବାମ କରେ ଆଲିଙ୍ଗନ ।
ଅନ୍ୟ ଦକ୍ଷିଣ କରରେ ବର ମୁଦ୍ରା ଥିବ
ଭକ୍ତଗଣ ମନୋବାଞ୍ଛା ପୂରଣ ହୋଇବ ।

Digitized by srujanika@gmail.com

ନାସିକା ଲଲାଟ ନେତ୍ରଦ୍ୱୟ କର୍ଣ୍ଣଦ୍ୱୟ
ସୁନ୍ଦର ରୂପେ ଗଠନ କରିବ ନିଶ୍ଚୟ ।
ବକ୍ଷସ୍ଥଳ ସୁବିସ୍ତୃତ ସମସ୍ତ ଶରୀର
ଲାବଣ୍ୟରେ ପୂର୍ଣ୍ଣହୋଇ ଅତି ମନୋହର ।
ଲକ୍ଷ୍ମୀଙ୍କର ଏକହସ୍ତେ ସ୍ୱର୍ଣ୍ଣ ପଦ୍ମ ଦେବ
ପ୍ରଭୁଙ୍କ ପାଇଁ ତାମ୍ବୁଳ ଅନ୍ୟହସ୍ତେ ଥିବ ।
ପଞ୍ଚାମୃତେ ସ୍ନାନକରି ବସ୍ତ୍ର ପିନ୍ଧାଇବ
ଯଥାଶକ୍ତି ଉପଚାରେ ଅର୍ଚ୍ଚନା କରିବ ।
ପୂଜା ଶେଷରେ ପ୍ରଭୁଙ୍କୁ କରିବ ଅର୍ପଣ
ତାମ୍ରମୟ ମୃଣ୍ମୟ ବା ଦୀପାବଳି ମାନ ।
ଗତସଂଖ୍ୟା ଦୀପବୃକ୍ଷ ଗବ୍ୟଘୃତ ଦେଇ
ଅବା ତିଳ ତୈଳେ ଜଳାଇବ ବେଗେ ତହିଁ ।
ଏ ସମୟେ ବ୍ରହ୍ମା ନାରଦାଦି ଋଷିଗଣେ
ଏମାନଙ୍କୁ ଯଥାବିଧି କରିବ ଅର୍ଚ୍ଚନ ।
ବସ୍ତ୍ର ମାଲ୍ୟ ଭକ୍ଷ୍ୟ ଆଦି ଉପଚାରମାନ
ଦାମୋଦରଙ୍କୁ ପୂଜିଣ ବିପ୍ରେ ଦେବ ଦାନ ।
ତୀର୍ଥରାଜା ସ୍ନାନକାଳେ ଯେପରି ବିଧିରେ
ପୂଜା କଲେ ଏହିସ୍ଥାନେ ସେପରି ବିଧିରେ ।
ତଦ୍‌ବିଷ୍ଣୋ ଇତ୍ୟାଦି ମନ୍ତ୍ର କରି ଉଚ୍ଚାରଣ
ବ୍ରହ୍ମା ଆଦି ଦେବତାଙ୍କୁ କରିବ ଅର୍ଚ୍ଚନ ।
ଗୀତ ବାଦ୍ୟ ପୁରାଣେ ପଠନ ମହୋତ୍ସବ
କରି ଉଜାଗରେ ରାତ୍ରି ଯାପନ କରିବ ।
ଅନନ୍ତର ରାତ୍ରି ଶେଷେ ସ୍ନାନାଦି କରିବ
ବୈଷ୍ଣବ ଅଗ୍ନି ସ୍ଥାପନ ବିଧିରେ କରିବ ।
ଅଷ୍ଟାକ୍ଷର ମନ୍ତ୍ରେ ଦାମୋଦର ପ୍ରୀତି ଅର୍ଥେ
ଅଗ୍ନିରେ ଦେବ ସମିଧ ଘୃତ ଚରୁଯୁକ୍ତେ ।
ଲକ୍ଷ୍ମୀଙ୍କର ଉଦ୍ଦେଶ୍ୟରେ ଶ୍ରୀସୂକ୍ତ ମନ୍ତ୍ରରେ
ମଧୁଲାଜା ଶଏଆଠ ଆହୂତି ଅଗ୍ନିରେ ।
ନାମ ମନ୍ତ୍ରେ ପ୍ରତ୍ୟେକଙ୍କୁ ଅଷ୍ଟସଂଖ୍ୟା ହୋମ
ବ୍ରହ୍ମା ନାରଦ ବଶିଷ୍ଠ ଦକ୍ଷ ଗଉତମ ।
ସନତ କୁମାର ଅତ୍ରି ଭରଦ୍ୱାଜ ମୁନି
କଶ୍ୟପ ଦୁର୍ବାସା ଅଗସ୍ତ୍ୟ ଯେ ଏତେ ଘେନି ।
ଏହାପରେ ମହଦେବୀଙ୍କର ଉଦ୍ଦେଶ୍ୟରେ
ଶହେ ଆଠ ତିଳାହୁତି କରିବ ଅଗ୍ନିରେ ।
ଏ ସକଳ ଋଷିଗଣ ବୈଷ୍ଣବ ପ୍ରଧାନ
ବିଷ୍ଣୁ ସ୍ୱରୂପେ ସାକ୍ଷାତେ ସନ୍ଦେହ ନମଣ ।
ଏମାନଙ୍କୁ ପୂଜା ଯେହୁ କରଇ ଭକ୍ତିରେ
ସନ୍ତୋଷ ହୁଅନ୍ତି ଦାମୋଦର ତାହାଠାରେ ।
ଏହାପରେ ଆଚାର୍ଯ୍ୟଙ୍କୁ କରାଇ ଭୋଜନ
ସ୍ୱର୍ଣ୍ଣଧେନୁ ବସ୍ତ୍ର ଧାନ୍ୟ ଆଦି ଦେବ ଦାନ ।
ଭଗବାନ ବାସୁଦେବ ସନ୍ତୋଷ ନିମିତ୍ତ
ବ୍ରାହ୍ମଣମାନଙ୍କୁ ଦେବ ମିଷ୍ଟାନ୍ନ ବହୁତ ।
ଦାମୋଦର ପ୍ରତିମାକୁ ଉପଚାର ସହ
ଆଚାର୍ଯ୍ୟଙ୍କୁ ଦେଇଦେବ ହୋଇଣ ବିନୟ ।
ଦାମୋଦର ଜଗନ୍ନାଥ ହୁଅନ୍ତୁ ପ୍ରସନ୍ନ
ସମଗ୍ର ଜଗତରୂପୀ ଅଟନ୍ତି ଆପଣ ।
ହେ ବିଶ୍ୱ ଆଧାର ପ୍ରାଣୀମାନଙ୍କର ଧର୍ମ
ଦୟାକରି ମୋର ବ୍ରତ କରନ୍ତୁ ସମ୍ପୂର୍ଣ୍ଣ ।
ଦେବ ଦାମୋଦର ମୂର୍ତ୍ତି କରୁଛି ପ୍ରଦାନ
ଏହାର ପ୍ରଦାତା ସ୍ୱୟଂ ଦାମୋଦର ଜାଣ ।
ବୃଷଭ ଧ୍ୱଜ ଗ୍ରହୀତା ଆହେ ଜନାର୍ଦ୍ଦନ
ଆପଣ ମୋ ପ୍ରତି ବେଗେ ହୁଅନ୍ତୁ ପ୍ରସନ୍ନ ।
ଏହିମନ୍ତ୍ରେ ପ୍ରତିମାକୁ କରିଦେବ ଦାନ
ଆଚାର୍ଯ୍ୟକୁ ମନ କରି ସ୍ୱୟଂ ଭଗବାନ ।
ଏ ମନ୍ତ୍ରରେ ପ୍ରତିମାକୁ ଆଚାର୍ଯ୍ୟଙ୍କୁ ଦେବ
ସ୍ୱୟଂ ଭଗବାନ ବୋଲି ମନେ ବିଚାରିବ ।
ଏହିରୂପେ ନିଜ ବ୍ରତ କରି ସମାପନ
ବିପ୍ରଙ୍କୁ ତୋଷିବ କହି ବିନୟ ବଚନ ।
ଯେହେତୁ ଆଚାର୍ଯ୍ୟ ଦେବ ହୋଇଲେ ସନ୍ତୋଷ
ନାରାୟଣ ସନ୍ତୁଷ୍ଟ ଯେ ହୁଅନ୍ତି ଅବଶ୍ୟ ।
ଅବଶିଷ୍ଟ ଦ୍ରବ୍ୟମାନ ବିପ୍ରେ ଦେବ ଦାନ
ପ୍ରିୟବନ୍ଧୁଗଣ ସହ କରିବ ଭୋଜନ ।
ଚାତୁର୍ମାସ୍ୟା ବ୍ରତକୁ ଯେ ବିଧାନେ କରଇ
ଇହଲୋକେ ସୁଖଭୁଞ୍ଜି ବୈକୁଣ୍ଠକୁ ଯାଇ ।
ଶ୍ରୁତି ସ୍ମୃତି ପୁରାଣରେ ହୋଇଛି ଉକତ
ଏହି ବ୍ରତଠାରୁ ନାହିଁ ଶ୍ରେଷ୍ଠ ଅନ୍ୟବ୍ରତ ।
ଦ୍ୱିଜଗଣ ବିଷ୍ଣୁଙ୍କର ପ୍ରିୟ ଏହି ବ୍ରତ
ତୁଳନା ନୁହଇ ଏହାସଙ୍ଗେ ଅନ୍ୟବ୍ରତ ।
ସହସ୍ର ସହସ୍ର ତିଳ ପୂର୍ଣ୍ଣ ପାତ୍ର ଦାନ
ଅଯୁତ ସଂଖ୍ୟାରେ କନ୍ୟା କରିବ ପ୍ରଦାନ ।
ଶତ ଶତ କୃଷ୍ଣାଜିନ ବିପ୍ରେ ଦେବ ଦାନ
ଅୟୁତ ସଂଖ୍ୟାରେ ଅଶ୍ୱ କରିବ ପ୍ରଦାନ ।
ଏ ସକଳ ଦାନ କଲେ ଯେତେ ଫଳ ମିଳେ
ସେ ସକଳ ଫଳ ଲଭେ ଏହି ବ୍ରତ କଲେ ।
ସାର୍ଦ୍ଧ ତ୍ରିକୋଟି ତୀର୍ଥରେ ସ୍ନାନେ ଯେତେ ଫଳ
ସର୍ବାଭୀଷ୍ଟ ଲାଭ ହୁଏ ଏ ବ୍ରତେ କେବଳ ।
ଚିଦାନନ୍ଦମୟ ପ୍ରଭୁ ହେଲେ ପରିଚିତ
ନିଃସନ୍ଦେହ ସେହି ଜନ ହୁଅଇ ମୁକତ ।
ଶ୍ରୀସ୍କନ୍ଦ ପୁରାଣେ ଉକ୍ତ ଉତ୍କଳ ଖଣ୍ଡରେ
ଉନଚତ୍ୱାରିଂଶ ଛାନ୍ଦ ଉତ୍କଳ ଭାଷାରେ

Digitized by srujanika@gmail.com

ଆହେ ପ୍ରଭୁ ବକ ପଞ୍ଚମରେ ନୀଳାଚଳେ
ଲୀଳା କରୁଅଛ ସ୍ୱର୍ଣ୍ଣ କେତକୀ ବେଶରେ ।
ପଞ୍ଚଦିନେ ପଞ୍ଚବେଶ ହୁଏ ମହାବାହୁ
ମାନସ ପଟରେ ସେହି ବେଶ ଲାଗିରହୁ ।
ସେହିବେଶ ଦେଖୁଥିବ ମାନସ ନେତ୍ରରେ
ଦୀନ ହରିହର ମାଗେ କରଯୋଡ଼ି ଶିରେ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ଉତ୍‌ଥାପନ ବିଧି ବର୍ଣ୍ଣନେ ଚାତୁର୍ମାସ୍ୟା
ବ୍ରତ ଉପାକ୍ଷନ ବର୍ଣ୍ଣନେ ନାମ
ଊନଚତ୍ୱାରିଂଶୋଽଧ୍ୟାୟଃ ।

□□

## ଚତ୍ୱାରିଂଶ ଅଧ୍ୟାୟ

ଜୈମିନି ମୁନି କହନ୍ତି ଶୁଣ ଋଷିଗଣ
ମାର୍ଗଶିର ମାସ ଶୁକ୍ଳପକ୍ଷ ଷଷ୍ଠୀ ଦିନ ।
ପ୍ରାବରଣୋତ୍ସବ ପ୍ରଭୁ ଭଗବାନଙ୍କର
ଯେ କରେ ସେ ଜନ ଯାଏ ବଇକୁଣ୍ଠପୁର ।
ତାହାର ବିଧାନ କହୁଅଛି ସର୍ବେ ଶୁଣ
ପାବରଣୋତ୍ସବ ବସ୍ତ୍ର କରି ଆୟୋଜନ ।
ପଞ୍ଚମୀ ଦିନ ରାତ୍ରରେ ଅଧିବାସ କରି
କର୍ମଜ୍ଞ ବ୍ରାହ୍ମଣ ମନେ ବିଷ୍ଣୁଙ୍କୁ ସୁମରି ।
ଅନନ୍ତର ଦେବଙ୍କର ସମ୍ମୁଖେ ମଣ୍ଡଳ
ପଞ୍ଚବର୍ଣ୍ଣ ମୁରୁଜରେ କରି ଅଷ୍ଟଦଳ ।
ମଣ୍ଡଳର ଦଶଦିଗେ ଦଶ ଦିଗପାଳ
ବହିର୍ଭାଗ ଚାରିଦିଗେ ପୂଜିବ ସକଳ ।
ପୂର୍ବେ କ୍ଷେତ୍ରପାଳ ପଶ୍ଚିମରେ ଗଣନାଥ
ଉତ୍ତରେ ଚଣ୍ଡୀ ପଶ୍ଚିମେ ପ୍ରଚଣ୍ଡ ବିଖ୍ୟାତ ।
ମଣ୍ଡଳ ମଧ୍ୟରେ ବସ୍ତ୍ର ରଖିବା ନିମିତ୍ତ
ଏକମାତ୍ର ଉଷ୍ଣ ବାରି କରିଣ ପ୍ରୋକ୍ଷିତ ।
ଦ୍ୱିଜାନ୍ ସ୍ୱେନେତି ମନ୍ତ୍ରକୁ କରିଣ ପଠନ
ବସ୍ତ୍ରରେ କରିବ ସେହି ପାତ୍ର ଆଚ୍ଛାଦନ ।
ଗନ୍ଧ ଦ୍ରବ୍ୟେ ସୁବାସିତ ଏକବିଂଶ ବସ୍ତ୍ର
ସେ ପାତ୍ରେ ବୈଷ୍ଣବ ମନ୍ତ୍ରେ ରଖିବ ତୁରିତ ।
ଅପର ପାତ୍ରରେ ତାହା କରି ଆଚ୍ଛାଦନ
ବିଷ୍ଣୁ ସ୍ମରି ଏହି ମନ୍ତ୍ର କରିବ ପଠନ ।
ଯେ ପ୍ରଭୁ ସ୍ୱତେଜେ ଜଗତର ଆଲୋକିତ
ସେହି ପ୍ରଭୁଙ୍କର ବସ୍ତ୍ର ହେବ ଆଚ୍ଛାଦିତ ।
ହେ ଜଗତ ପତି ତୁମ୍ଭେ ଏ ବସ୍ତ୍ର ମଧ୍ୟରେ
ବାସ କର ଶୀତକାଳେ ଅତି ଆନନ୍ଦରେ ।
ଇନ୍ଦ୍ର ଘୋଗସ୍ତା ଇତ୍ୟାଦି ମନ୍ତ୍ରେ ରକ୍ଷାକରି
ସେ ବସ୍ତ୍ରକୁ ଗନ୍ଧ ପୁଷ୍ପ ଦେଇ ପୂଜା କରି ।
ଅନନ୍ତର ପ୍ରଭୁଙ୍କୁ ଯେ ପୂଜିବ ବିଧିରେ
ଗନ୍ଧ ଲେପନ କରିବ ପ୍ରଭୁଙ୍କ ଅଙ୍ଗରେ ।
ନୃତ୍ୟ ଗୀତ କରି ରାତ୍ରି ଯାପନ କରିବ
ପ୍ରଭାତେ ସ୍ନାନ ସନ୍ଧ୍ୟାଦି ସକଳ ସାରିବ ।
ପୂର୍ବପରି ପୁନର୍ବାର କରିବ ଅର୍ଚ୍ଚନ
ଯଥାବିଧିରେ କରିବ ବସ୍ତ୍ରକୁ ପ୍ରୋକ୍ଷଣ ।
କାର୍ପାସ କ୍ଷୋମ ପଟ୍ଟାଦି ବସ୍ତ୍ରେ ଆଚ୍ଛାଦନ
କରି ଆଣିବ ପ୍ରଭୁଙ୍କୁ ବାହାରେ ତକ୍ଷଣ ।
ଚତୁର୍ଦ୍ଦିଗେ ଧ୍ୱଜମାଳା କରି ଉତ୍ତୋଳନ
ପ୍ରଭୁଙ୍କ ମସ୍ତକେ ଚକ୍ର କରିବ ଧାରଣ ।
ଉଭୟ ପାର୍ଶ୍ୱେ କରିବ ଚାମର ବ୍ୟଜନ
ସମ୍ମୁଖରେ ପୁଷ୍ପ ରାଜି କରିବ କର୍ଷଣ ।
ନୃତ୍ୟ ଗୀତ ସହ ଦେବ ଗୃହ ପ୍ରଦକ୍ଷିଣ
ତିନିବାର କରି ପ୍ରଥମରେ ଯଜମାନ ।
ତାପରେ ପ୍ରଭୁଙ୍କୁ ପ୍ରଦକ୍ଷିଣ କରାଇବ
ତିନିବାର କରିସାରି ଭିତରୁକ ନେବ ।
ବସ୍ତ୍ରରାଜି ବୀକ୍ଷଣାଦି ସଂସ୍କାର କରିବ
ତିନିଠାକୁରଙ୍କୁ ସେହି ବସ୍ତ୍ର ପିନ୍ଧାଇବ ।
ମୁଖଭିନ୍ନ ସର୍ବଅଙ୍ଗ କରି ଆଚ୍ଛାଦନ
ପ୍ରତ୍ୟେକଙ୍କୁ ସପ୍ତସଂଖ୍ୟା କରି ବସ୍ତ୍ର ଦାନ ।
ତାପରେ କର୍ପୂର ଯୁକ୍ତ ତାମ୍ବୁଳ ଅର୍ପଣ
ଦୂର୍ବାକ୍ଷତ ଦେଇ ବନ୍ଦାଇବ ତତକ୍ଷଣ ।
ମୁନିଗଣ ଶୀତଋତୁ କାଳେ ଯେଉଁ ଜନ
ଶ୍ରୀ ଜଗନ୍ନାଥଙ୍କୁ କରେ ବସ୍ତ୍ରେ ଆଚ୍ଛାଦନ ।
ଏହି ପ୍ରାବରଣୋତ୍ସବ ଯେ କରେ ଦର୍ଶନ
ତାର ଦୂର ହୁଏ ଜୀବନର ଆବରଣ ।
ଶୀତୋଷ୍ଣାଦି ଦ୍ୱନ୍ଦ୍ୱ ଦୁଃଖ ଭୋଗ ନ କରଇ
ସକଳ ଅଭୀଷ୍ଟ ତାର ପୂରଣ ହୁଅଇ ।
ତାହାପରେ ପ୍ରଭୁଙ୍କର ପ୍ରୀତି ଉଦ୍ଦେଶ୍ୟରେ
ଅନ୍ୟାନ୍ୟ ଦେବ ପ୍ରତିମା ଗୁରୁଙ୍କ ସଙ୍ଗରେ ।
ବ୍ରାହ୍ମଣ ଅଥବା ଦୀନ ଦୁଃଖୀ ଯେଉଁ ଜନ
ଏମାନଙ୍କୁ ଶୀତବସ୍ତ୍ର କରିବ ପ୍ରଦାନ ।
ଏହା କଲେ ଭଗବାନ ସନ୍ତୁଷ୍ଟ ହୁଅନ୍ତି
ଶୀତବସ୍ତ୍ର ଦାତାର ଯେ ମଙ୍ଗଳ କରନ୍ତି ।
ବ୍ରହ୍ମା ପୂର୍ବେ କରିଥିଲେ ଯେ ରୂପେ ବର୍ଣ୍ଣନ
ପୁଷ୍ୟା ସ୍ନାନୋତ୍ସବ ବିଧି କହୁଅଛି ଶୁଣ ।
ପୁଷ୍ୟା ନକ୍ଷତ୍ରରେ ଯୁକ୍ତ ପୌଷ ପୂର୍ଣ୍ଣିମାରେ
ପୁଷ୍ୟା ସ୍ନାନୋତ୍ସବ ହୁଏ ବିଧି ଅନୁସାରେ ।
ପୂର୍ବ ଏକାଦଶୀ ଦିନ ଐଶାନ୍ୟ କୋଣରେ
ଅଙ୍କୁରାର୍ପଣ କରିବ ଯଥା ବିଧାନରେ ।

Digitized by srujanika@gmail.com

ସେହିଦିନୁ ପ୍ରଭୁଙ୍କର ଗୃହେ ପ୍ରତିଦିନ
ନୃତ୍ୟ ଗୀତାଦି ଉତ୍ସବେ କରିବ ପୂଜନ ।
ଚତୁର୍ଦ୍ଦଶୀ ରାତ୍ରେ ଅଧିବାସ ଯେ କରିବ
ଏକାଅଶୀ ସଂଖ୍ୟା କୁମ୍ଭ ସ୍ଥାପନ କରିବ ।
ଗବ୍ୟଘୃତେ ପୂର୍ଣ୍ଣ ଏକବିଂଶ ସ୍ୱର୍ଣ୍ଣକୁମ୍ଭ
ହରିଙ୍କ ସମ୍ମୁଖେ ଭଦ୍ର ମଣ୍ଡଳ ସ୍ଥାପିବ ।
ସେ ମଣ୍ଡଳେ ଅତିବଡ଼ ଅତି ମନୋରମ
ଦର୍ପଣ ଗୋଟିଏ ନେଇ କରିବ ସ୍ଥାପନ ।
କୁଣ୍ଡଳ ମଧ୍ୟରେ ଘୃତ ପୂର୍ଣ୍ଣ କୁମ୍ଭମାନ
ସ୍ଥାପନ କରିବ ଅଧିବାସର ବିଧାନ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱରଙ୍କର ଉଦ୍ଦେଶ୍ୟରେ
ପଲାଶ ସମିଧ ଘୃତ ଚରୁ ସହିତରେ ।
ପ୍ରତ୍ୟେକଙ୍କୁ ନିଜମନ୍ତ୍ରେ ସହସ୍ର ସଂଖ୍ୟାରେ
ଆହୁତି ଦାନ କରିବ ବୈଷ୍ଣବ ଅଗ୍ନିରେ ।
ଦର୍ପଣେ ପ୍ରତି ବିମ୍ବିତ ଜଗନ୍ନାଥଙ୍କର
ପୂଜା କରିବ ବିଧିରେ ଦେଇ ଉପଚାର ।
ପୂର୍ବରୁ ସ୍ଥାପିତ ଜଳପୂର୍ଣ୍ଣ କୁମ୍ଭମାନ
ପୁରୁଷ ସୂକ୍ତ ମନ୍ତ୍ରରେ କରିବ ପ୍ରୋକ୍ଷଣ ।
ଅଛିଦ୍ର ଜଳ ଧାରାରେ ଦର୍ପଣ ମଧ୍ୟରେ
ସ୍ନାନ କରାଇବ ତିନି ଦେବଙ୍କୁ ବିଧିରେ ।
ପାବମାନୀ ମନ୍ତ୍ର ଆଉ ଶ୍ରୀସୂକ୍ତ ପଢ଼ିବ
ଘୃତକୁମ୍ଭକୁ ଗାୟତ୍ରୀ ମନ୍ତ୍ରରେ ଶୋଧିବ ।
ଗୋଟି ଗୋଟି କରି ପ୍ରଭୁଙ୍କର ମସ୍ତକରେ
ଘୃତାଭିଷେକ କରିବ ମନ୍ତ୍ର ସହିତରେ ।
ଏହାପରେ ଜଗତର ମଙ୍ଗଳ ନିଦାନ
ପ୍ରଭୁଙ୍କୁ ପଞ୍ଚାମୃତରେ କରାଇବ ସ୍ନାନ ।
ଦ୍ୱିଜଗଣ ବେଦପାଠ ଏକାଳେ କରିବେ
ଉତ୍ତାନାଦିସ୍ୱରେ ପୁଷ୍ୟାଭିଷେକ ଉତ୍ସବେ ।
ବୈଷ୍ଣବୀ ମନ୍ତ୍ର ବା ଶକ୍ର ସୂକ୍ତ ଇତ୍ୟାଦିରେ
ଚନ୍ଦନ ମିଶ୍ରିତ ଜଳ ସହସ୍ର ଧାରାରେ ।
ଜଗନ୍ନାଥଙ୍କର ଅଭିଷେକ କରାଇବ
ଅଙ୍ଗରୁ ନିର୍ମାଲ୍ୟ କାଢ଼ି ଚନ୍ଦନ ଲେପିବେ ।
ତାପରେ ପ୍ରଭୁଙ୍କ ଦେହ କରିବ ଭୂଷଣ
ବସ୍ତ୍ର ପିନ୍ଧାଇଣ ଦେବ ଅଳଙ୍କାରମାନ ।
ଅନନ୍ତର ଭଗବାନଙ୍କର ସମ୍ମୁଖରେ
ଚକ୍ରାଦି ଅଷ୍ଟ ଆୟୁଧ ରଖିବ ବିଧିରେ ।
ରତନେ ଖଚିତ ଛତ୍ର ଶିରରେ ଧରିବ
ଲକ୍ଷ୍ମୀସହ ନାରାୟଣ ଅର୍ଚ୍ଚନା କରିବ ।
ନାନବିଧ ଉପଚାର ଯୋଗାଇଣ ଦେବ
ସେ କାଳେ ଅତି ମଧୁରେ ଶଙ୍ଖ ବାଜୁଥିବ ।।
ପରମ ରୂପସୀ ବାର ବିଳାସିନୀ ଗଣ
ଚାମର ଧରି ବ୍ୟଜନ କରିବେ ତକ୍ଷଣ ।
ନର୍ତ୍ତକ ନୃତ୍ୟ କରିବେ ଗାୟକ ଗାଇବେ
ବନ୍ଦିଗଣ ସ୍ତୁତି ପାଠ ସେ କାଳେ କରିବେ ।
ସର୍ବେ ମିଳି ଜୟ ଜୟ ଧ୍ୱନି ପ୍ରଭୁଙ୍କର
ଗାଇବେ ସୁଖେ ରହନ୍ତୁ ବିଶ୍ୱବାସୀ ନର ।
ଦୂର୍ବାକ୍ଷତ ଯୁକ୍ତ ପୁଷ୍ପାଞ୍ଜଳି କରି ଦାନ
ଶ୍ରୀ ଜଗନ୍ନାଥ ଦେବଙ୍କୁ କରିବ ଅର୍ଚ୍ଚନ ।
କର୍ପୂର ମିଶ୍ରିତ ସିତ ତଣ୍ଡୁଳ ବିଞ୍ଚିବ
ସ୍ୱର୍ଣ୍ଣପାତ୍ରେ ଦୀପମାଳ ଧରି ବନ୍ଦାଇବ ।
ପ୍ରତ୍ୟେକ ଠାକୁରଙ୍କର ମୁଖ ନିକଟରେ
ସ୍ୱର୍ଣ୍ଣ ପାତ୍ରସ୍ଥ ତାମ୍ବୁଳ ଅର୍ପିବ ବିଧିରେ ।
ଏହାପରେ ଗୁହ୍ୟୋପନିଷଦକୁ ପଢ଼ିଣ
ପ୍ରଭୁଙ୍କୁ କରିବ ଚାରିବାର ପ୍ରଦକ୍ଷିଣ ।
କ୍ଷିତିତଳେ ଦଣ୍ଡବତ ପ୍ରଣାମ କରିବ
ବ୍ରାହ୍ମଣ ବୈଷ୍ଣବ ଗଣ ଶ୍ରଦ୍ଧାରେ ପୂଜିବ ।
ଆଚାର୍ଯ୍ୟକୁ ଯଥାଯୋଗ୍ୟ ଦକ୍ଷିଣା ପ୍ରଦାନେ
ସନ୍ତୋଷ କରିବ ବ୍ରାହ୍ମଣଙ୍କୁ ଭୋଜ୍ୟ ଦାନେ ।
ପୁଷ୍ୟା ଅଭିଷେକୋତ୍ସବ ଯେ କରେ ଦର୍ଶନ
ତାହାର ମନ କାମନା ହୁଅଇ ଯେ ପୂର୍ଣ୍ଣ ।
ଅନ୍ତକାଳେ ବିଷ୍ଣୁପଦ ଲଭଇ ସେ ଜନ
ରାଜ୍ୟ ଭ୍ରଷ୍ଟ ରାଜା ଯଦି କରଇ ଦର୍ଶନ ।
ପୁନର୍ବାର ହୃତ ରାଜ୍ୟ ହୁଅଇ ସେ ପ୍ରାପ୍ତ
ଅପୁତ୍ରୀ ରମଣୀ ଲଭେ ଦୀର୍ଘାୟୁଷ ପୁତ୍ର ।
ମୁନିଗଣ ପୁଷ୍ୟାସ୍ନାନ ଉତ୍ସବ ଶୁଣିଲେ
ଦରିଦ୍ରତା ନାଶ ହୁଏ ବ୍ରହ୍ମତେଜ ମିଳେ ।
ପୁଷ୍ୟାଭିଷେକ ଉତ୍ସବ କରିଲୁ ବର୍ଣ୍ଣନ
ଉତ୍ତରାୟଣ ବିଧାନ କହୁଅଛି ଶୁଣ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ଚତ୍ୱାରିଂଶ ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ଜୟ ଜୟ ଜଗନ୍ନାଥ ଲକ୍ଷ୍ମୀଦେବୀ କାନ୍ତ
ଜୟ ବଳରାମ ବିଶ୍ୱଧାରଣେ ସମର୍ଥ ।
ଜୟ ମା ସୁଭଦ୍ରା ଦେବୀ କରିଲେ କରୁଣା
ବିଲିନ ହୋଇବ ମୋର ବିଷୟ ବାସନା ।
ଜଞ୍ଜାଳ ଜାଲେ ଆବଦ୍ଧ ହୋଇ ରାତ୍ରଦିନ
ଦୀନ ହରିହର ମାଗେ ଫିଟିବ ବନ୍ଧନ ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳଖଣ୍ଡେ
ପ୍ରାବରଣୋତ୍ସବ ପୁଷ୍ୟାଭିଷେକ ଉତ୍ସବେ
ବର୍ଣ୍ଣନେ ନାମ ଚତ୍ୱାରିଂଶୋଽଧ୍ୟାୟଃ ।



Digitized by srujanika@gmail.com

## ଏକ ଚତ୍ୱାରିଂଶ ଅଧ୍ୟାୟ

ଜୈମିନି ମୁନି କହିଲେ ଉତ୍ତରାୟଣରେ
ମକର ରାଶିକୁ ସୂର୍ଯ୍ୟ ଯିବେ ସେ କାଳରେ ।
ଉତ୍ତରାୟଣ ସଂକ୍ରାନ୍ତି ବିଂଶ ଦଣ୍ଡଯାଏ
ପୁଣ୍ୟକାଳ ନାମରେ ସେ ପରିଚିତ ହୁଏ ।
ପିତୃ ଦେବତା ବ୍ରାହ୍ମଣଗଣଙ୍କର ପ୍ରିୟ
ଏକାଳେ ସମୁଦ୍ରସ୍ନାନ କରିବ ନିଶ୍ଚୟ ।
କଳ୍ପ ବୃକ୍ଷକୁ ପ୍ରଣାମ କରିବ ବିଧିରେ
ପ୍ରବେଶ ହୋଇବ ଯାଇ ଦେବ ମନ୍ଦିରରେ ।
ବୀରତ୍ରୟ ପ୍ରଦକ୍ଷିଣ କରିବ ପ୍ରଭୁଙ୍କୁ
ଅଥର୍ବଣ ମନ୍ତ୍ରେ ପୂଜା ଶ୍ରୀ ଜଗନ୍ନାଥଙ୍କୁ ।
ବଳରାମ ସୁଭଦ୍ରାଙ୍କୁ ସ୍ୱମନ୍ତ୍ରେ ପୂଜିବ
ଏକାଳେ ଯେବେ ପ୍ରଭୁଙ୍କୁ ଦର୍ଶନ କରିବ ।
ଦେହ ବନ୍ଧନରୁ ମୁକ୍ତ ହେବ ସେହି ଜନ
ମକର ଯାତ୍ରା ବିଧାନ କହୁଅଛି ଶୁଣ ।
ସଂକ୍ରାନ୍ତିର ପୂର୍ବଦିନ ପ୍ରସାଦ ପୂର୍ବରେ
କୁଟିତ ଶାଳି ତୁଣ୍ଡୁଳ ରଖିବ ବିଧିରେ ।
ନୂତନ ବସ୍ତ୍ରରେ ତାହାକରି ଆଚ୍ଛାଦାନ
କୁସୁମ ଦୁର୍ବା ସର୍ଷପ ବୁଣିବ ସେ ସ୍ଥାନ ।
କୃଷ୍ଣ ତୁମ୍ଭଙ୍କୁ ଯେ ରକ୍ଷା କରନ୍ତୁ ବୋଲିବ
ତଣ୍ଡୁଳ ନିକଟେ ଏହି ପ୍ରାର୍ଥନା କରିବ ।
ରାତ୍ରି ପ୍ରଭାତରେ ଦେବ ଜଗନ୍ନାଥଙ୍କର
ସମୀପେ ଦେବ ଚଳନ୍ତି ପ୍ରତିମା ସତ୍ୱର ।
ଜଗନ୍ନାଥଙ୍କର ସହ ଅଭେଦ ଜ୍ଞାନରେ
ଅର୍ଚ୍ଚନା କରିବ ନାନାବିଧ ଉପଚାରେ ।
ପୂଜା ଶେଷ ଉପଚାର ପ୍ରତିମାକୁ ଦେବ
ପ୍ରଭୁଙ୍କର ବସ୍ତ୍ର ମାଲ୍ୟଆଣି ପିନ୍ଧାଇବ ।
ଏହାପରେ ପ୍ରତିମାଙ୍କୁ ମହା ଆଡ଼ମ୍ବରେ
ଜଗନ୍ନାଥ ଦେବଙ୍କର ଚତୁର ଦିଗରେ ।
ତିନିବାର ପ୍ରଦକ୍ଷିଣ ବେଗେ କରାଇବ
ହାନ୍ଦୋଳାରେ ପ୍ରାସାଦାଦି ଦ୍ୱାରକୁ ଆଣିବ ।
ତହୁଁ ମନ୍ଦିରକୁ ତିନିବାର ପ୍ରଦକ୍ଷିଣ
କରାଇବ ନାନାବିଧ ବାଦ୍ୟ ବାଜାଇଣ ।
ଲୋକେ ଦେଖି ବିଚାରିବେ ବାମନାବତାରେ
ପାଦରେ ତିନି ଭୁବନ ଆକ୍ରମିଣ ଥିଲେ ।
ସେହି ଲୀଳା ପୁନର୍ବାର କରୁଛନ୍ତି ଏବେ
ଏ ରୂପେ ତ୍ରିବାର ପ୍ରଦକ୍ଷିଣ କରାଇବେ ।
ଏହାପରେ ଧୀରେ ଧୀରେ ପୁଣି ପ୍ରଦକ୍ଷିଣ
ଏକଥର କରାଇବ ସମାରୋହେ ପୂର୍ଣ୍ଣର ।
ଏ ସମୟେ ଶତଶତ ଦିହୁଡ଼ି ମାଳାରେ
ଅନ୍ଧକାର ନ ରହିବ ତିଳେ ସେ ସ୍ଥାନରେ ।
ନୃତ୍ୟ ଗୀତ ସହିତରେ ବାଦ୍ୟ ବଜାଇବ
ପତାକା ଶ୍ରେଣୀ ଚତୁର ଦିଗେ ଉଡୁଥିବ ।
ବିବିଧ ରଙ୍ଗର ଛତ୍ର କରିବ ଧାରଣ
ଏ ଲୀଳା ଦେଖିଲେ ପାପ ହୋଇବ ମୋଚନ ।
ପ୍ରକାଶ ହୋଇବ ନୂଆ ନୂଆ ଭାଗ୍ୟ ଚିହ୍ନ
ତେଣୁ ନବାଙ୍ଗ ଭ୍ରମଣ ଅଟେ ଏହା ନାମ ।
ପ୍ରଭୁଙ୍କର ଏହି ଲୀଳା ଦର୍ଶନର ଫଳ
କହିବାକୁ ଅସମର୍ଥ ବିବୁଧ ସକଳ ।
ତାହା ମଧ୍ୟ କହୁଅଛି ଶୁଣ ମୁନିଗଣ
ମାୟାତୀତ ମାୟାଧୀଶ ଶ୍ରୀମଧୁସୂଦନ ।
ମନ୍ଦିରକୁ ପ୍ରଦକ୍ଷିଣ କରୁଥିବାବେଳେ
ଯେ ଜନ ଗମନ କରେ ପ୍ରଭୁଙ୍କ ସଙ୍ଗରେ ।
ପଦରେ ଗମନ ଯେତେ ସଂଖ୍ୟାରେ କରିବ
ତେତେ ଅଶ୍ୱମେଧ ଯାଗ ଫଳକୁ ଲଭିବ ।
ଭଗବାନଙ୍କର ଆଦ୍ୟ ଭ୍ରମଣ ଦର୍ଶନ
କରିଲେ ପଞ୍ଚପାତକୁ ହୁଅଇ ମୋଚନ ।
ନିନ୍ଦିତ ପାପ ଦ୍ୱିତୀୟବାର ଦର୍ଶନରେ
ଅଗମ୍ୟାଗମନ ପାପ କ୍ଷୟ ତୃତୀୟରେ ।
ଚତୁର୍ଥବାର ଭ୍ରମଣ କରିଲେ ଦର୍ଶନ
ବିନାଶ ହୁଅଇ ଉତପାତକାଦି ମାନ ।
ଅତଃପର ପୁନର୍ବାର ପ୍ରଭାତ କାଳରେ
ସୁଗନ୍ଧ ଚନ୍ଦନ ଲେପି ପ୍ରଭୁଙ୍କ ଦେହରେ ।
ବସ୍ତ୍ର ଅଳଙ୍କାର ପୁଷ୍ପ ମାଳାରେ ଭୂଷଣ
କରିବ ଯଥାଶକ୍ତିରେ ଉପଚାର ଦାନ ।
ମହା ସମାରୋହେ ପୂଜା ଆରତି କରିବ
ଅଧିବାସ କରିଥିବ ତଣ୍ଡୁଳ ଆଣିବ ।
ଦଧି ଘୃତ ଖଣ୍ଡ ଅଦା ଆଉ ନାରିକେଳ
ସୁବର୍ଣ୍ଣ ଥାଳିରେ ଭରି ଦେବ ଏ ସକଳ ।
ତିନିବାର ମନ୍ଦିରକୁ କରି ପ୍ରଦକ୍ଷିଣ
ପ୍ରଭୁଙ୍କ ସମ୍ମୁଖେ ନେଇ କରିବ ସ୍ଥାପନ ।
ଚନ୍ଦନ ପୁଷ୍ପ ଅକ୍ଷତ ସ୍ଥାଳୀର ସଙ୍ଗରେ
ପଂକ୍ତି କ୍ରମରେ ରଖିବ ପ୍ରଭୁଙ୍କ ଆଗରେ ।
ହେ ଜଗତ ଗୁରୁ ସର୍ବଭୂତର ଜୀବନ
ସର୍ବ ପ୍ରାଣୀଙ୍କ ଜୀବନ ଅଟନ୍ତି ଆପଣ ।
ଆପଣଙ୍କର ସ୍ୱରୂପ ତଣ୍ଡୁଳ ସକଳ
ତଣ୍ଡୁଳର ଉତ୍ପାଦକ ଆପଣ କେବଳ ।
ହେ ଜଗତ ନାଥ ଲୋକ ଅନୁଗ୍ରହ ଅର୍ଥେ
ବିଚିତ୍ର ଦେହ ଧାରଣ କରିଛ ଯୁକତେ

Digitized by srujanika@gmail.com

ତଣ୍ଡୁଳ ଆଦି ସକଳ କରନ୍ତୁ ଗ୍ରହଣ
ଆପଣଙ୍କ ପ୍ରୀତି ଅର୍ଥେ କରି ନିବେଦନ ।
ଜଗନ୍ନାଥ ଆପଣ ତ ହୋଇଲେ ସନ୍ତୋଷ
ଜଗତରେ ପୂର୍ଣ୍ଣ ହୋଇଯିବ ଅନ୍ନରସ ।
ସ୍ୱର୍ଗବାସୀ ମାନଙ୍କର ଏ ଧରା ତଳରେ
ତୃପ୍ତି ହେବ ସ୍ୱାହା ସ୍ୱଧା ଆଦି ବଷଟ୍‌କାରେ ।
ଚରାଚର ଏ ଜଗତ ହେବ ଅପ୍ୟାୟିତ
ସନ୍ଦେହ ନାହିଁ ଏଥିରେ ଆହେ ଜଗନ୍ନାଥ ।
ଆପଣଙ୍କୁ ଆତ୍ମାରୂପ ଏହି ଚରାଚର
ଜଗତକୁ କୃପା ନେତ୍ରେ ଚାହିଁ ରକ୍ଷାକର ।
ଏ ରୂପେ ପ୍ରାର୍ଥନା କରି ପ୍ରଭୁଙ୍କ ଚରଣ
ଶାଳି ତଣ୍ଡୁଳକୁ କରି ଦେବ ନିବେଦନ ।
ତଣ୍ଡୁଳରୁ ଜାତ ଭକ୍ଷ୍ୟ ଭୋଜ୍ୟ ଦ୍ରବ୍ୟମାନ
କର୍ପୂର, ଖଣ୍ଡ ମରିଚ ଚୂର୍ଣ୍ଣ ମିଶାଇଣ ।
ସୁଗନ୍ଧ ଦଧି ସହିତ କରି ନିବେଦନ
ପ୍ରଭୁଙ୍କ ସମ୍ମୁଖେ ଦେବ ବିପ୍ରଙ୍କୁ ଭୋଜନ ।
ବିପ୍ରଙ୍କୁ ମନେ କରିବ ପ୍ରଭୁ ଭଗବାନ
ଗନ୍ଧ ପୁଷ୍ପ ବସ୍ତ୍ର ଦେଇ କରିବ ଅର୍ଚ୍ଚନ ।
ପ୍ରଭୁଙ୍କ ଜଙ୍ଗମ ଦେହ ଅଟନ୍ତି ବ୍ରାହ୍ମଣ
ଏହି କଥା ମନେ ରଖିଥାଅ ଋଷିଗଣ ।
ସନ୍ତୁଷ୍ଟ ହୋଇବେ ଯଦି ସେ ବ୍ରାହ୍ମଣଗଣ
ତେବେ ସନ୍ତୋଷ ହୋଇବେ ପ୍ରଭୁ ନାରାୟଣ ।
ପ୍ରଭୁଙ୍କ ଯେ ଉପଚାରେ ଅର୍ଚ୍ଚନା କରିବ
ବ୍ରାହ୍ମଣଙ୍କୁ ସେହି ଉପଚାରରେ ପୂଜିବ ।
ଏହା ହେଲେ ସେହି ଉପଚାରେ ଭଗବାନ
ସନ୍ତୋଷ ହେବେ ତତ୍‌କ୍ଷଣ ସନ୍ଦେହ ନ ମଣ ।
ପୂର୍ବ କଳ୍ପରେ କଶ୍ୟପ ସୃଷ୍ଟି ଆରମ୍ଭିଲେ
ଭଗବାନ ତୋଷ ଅର୍ଥେ ଏ ଉତ୍ସବ କଲେ ।
ମହର୍ଷି କଶ୍ୟପ କୃତ ଏହି ମହୋତ୍ସବ
ଦର୍ଶନ କରିଲେ ମନୋରଥ ପୂର୍ଣ୍ଣ ହେବ ।
ସଂସାରରେ ରହି ଆଉ ଶୋକ ନ କରିବ
ସ୍ୱର୍ଗେ ବାସ କରି ମୋକ୍ଷ ପଦବୀ ଲଭିବ ।
ପ୍ରତିଦିନ ପାକଶାଳା ମାର୍ଜ୍ଜନା କରିଣ
ବୈଶ୍ୱଦେବ ଅର୍ଥେ ଅଗ୍ନି କରିବ ସ୍ଥାପନ ।
ସାଧାରଣ ଜନଙ୍କର ଅଦୃଶ୍ୟ ରୂପରେ
କମଳା କରନ୍ତି ପାକ ବୈଷ୍ଣବ ଅଗ୍ନିରେ ।
ପ୍ରଭୁ ଜଗନ୍ନାଥ ସ୍ୱୟଂ ଭୋଜନ କରନ୍ତି
ନିର୍ବିକାରେ ସେ ପ୍ରସାଦ ସକଳ ଭୁଞ୍ଜନ୍ତି ।
ପରମାତ୍ମା ରୂପୀ ଦେବ ଜଗନ୍ନାଥଙ୍କର
ଉତ୍ତରାୟଣ ଉତ୍ସବ ଅତି ପୁଣ୍ୟ କର ।

ତୁଳା ପୁରୁଷାଦି ଦାନ କରେ ଯେଉଁ ଜନ
ତାର ହୋଇଥାଏ କୋଟି କୋଟି ଗୁଣେ ପୁଣ୍ୟ ।
ସ୍ନାନ ଦାନ ଜପ ହୋମ ସ୍ୱାଧ୍ୟାୟ ତର୍ପଣ
ଏ ଦିନ ଯେ କରେ ହୁଏ ତାର ବହୁ ପୁଣ୍ୟ ।
ମୁନିଗଣ ପଚାରନ୍ତି ଆହେ ମହାଶୟ
ବୁଝାଇ କହନ୍ତୁ ଅଗ୍ନି ସଂସ୍କାର ବିଷୟ ।
ଯେ ଅଗ୍ନିରେ ପ୍ରଭୁଙ୍କର ପାକ ସିଦ୍ଧି ହୋଇ
କହନ୍ତୁ ତାର ବିଧାନେ ସକଳ ବୁଝାଇ ।
ଏହା ଶୁଣନ୍ତେ ଜୈମିନି ମୁନି କହୁଛନ୍ତି
ଯେଉଁ କାର୍ଯ୍ୟେ ଭଗବାନ ସନ୍ତୋଷ ହୁଅନ୍ତି ।
ଯେ ଅଗ୍ନିରେ ସନ୍ତୋଷ ହୁଅନ୍ତି ଦେବଗଣ
କହୁଅଛି ବୈଷ୍ଣବାଗ୍ନି ସଂସ୍କାର ବିଧାନ ।
କର୍ମକର୍ତ୍ତା ପୂର୍ବମୁଖେ ପବିତ୍ର ସ୍ଥାନରେ
ଅଗ୍ନି ସ୍ଥାପନ କରିବ କୁଣ୍ଡ ବା ସ୍ଥଣ୍ଡିଳେ ।
ଯେଉଁସ୍ଥାନେ ଶୁଭଫଳ ମାନ ଘଟୁଥିବ
ସେ ସ୍ଥାନେ ବୈଷ୍ଣବ ଅଗ୍ନି ସଂସ୍କାର କରିବ ।
ପ୍ରଥମରେ କୁଣ୍ଡ ମଧ୍ୟେ ବାଲୁକା ରଖିବ
ପ୍ରଣବରେ ସମତଳ ତାହାକୁ କରିବ ।
ପୂର୍ବାଗ୍ରତେ ତିନିରେଖା କୁଶରେ କରିବ
ସେହିପରି ଉତ୍ତରାଗ୍ରେ ତ୍ରିରେଖା ଆଙ୍କିବ ।
ପ୍ରଣବରେ ରେଖାମାନଙ୍କର ଚାରିଦିଗେ
ଜଳଧାରାରେ ବେଷ୍ଟନ କରିଦେବ ବେଗେ ।
ଦ୍ୱାଦଶାକ୍ଷର ମନ୍ତ୍ରରେ ବୀକ୍ଷଣାଦି କରି
କୁଣ୍ଡ ଶରୀର ଷଡ଼ଙ୍ଗ ମନ୍ତ୍ରକୁ ଉଚ୍ଚାରି ।
ଅସ୍ତ୍ର ମନ୍ତ୍ରେ କୁଣ୍ଡୋଦର ସଂସ୍କାର କରିବ
ତା ମଧ୍ୟେ କୁଶ ବିଷ୍ଟର ସ୍ଥାପନ କରିବ ।
ଲକ୍ଷ୍ମୀଦେବୀ ଋତୁ ସ୍ନାତା ମନରେ ଭାବିବ
ନିଜର ହୃଦୟ ମଧ୍ୟେ ଅର୍ଚ୍ଚନା କରିବ ।
ଶ୍ରୋତ୍ରିୟ ଗୃହରୁ କରି ଅଗ୍ନି ଆନୟନ
ମଣି ବା କାଷ୍ଠ ଘର୍ଷଣେ କରିବ ଉତ୍ପନ୍ନ ।
ଯଜ୍ଞ କାଷ୍ଠେ ପ୍ରଜ୍ୱଳିତ ସେ ଅଗ୍ନି କରିବ
ତାମ୍ରପାତ୍ରେ ବିଷ୍ଣୁ ବୀର୍ଯ୍ୟ ରୂପରେ ଭାବିବ ।
ବାରତ୍ରୟ କୁଣ୍ଡ ପ୍ରଦକ୍ଷିଣ କରାଇବ
ନିଜକୁ ବିଷ୍ଣୁ ରୂପରେ ଭାବନା କରିବ ।
ଲକ୍ଷ୍ମୀଙ୍କର ଯୋନିରୂପେ କୁଣ୍ଡକୁ ଭାବିବ
କୁଣ୍ଡ ମଧ୍ୟରେ ଅଗ୍ନିକୁ ନିକ୍ଷେପ କରିବ ।
ନିଜେ ଆଚମନ କରି ଲକ୍ଷ୍ମୀଙ୍କୁ ଯେ ଦେବ
ଆଚମନ ପରେ ଆଣି ତାମ୍ବୁଳ ଅର୍ପିବ ।
ପୂର୍ବାଗ୍ର ଉତ୍ତରାଂଶରେ କୁଶମାନ ଥୋଇ
କୁଣ୍ଡ ଚାରିଦିଗେ ସମ୍ମାର୍ଜନ କରି ତହିଁ ।

Digitized by srujanika@gmail.com

ହେମା ପାତ୍ର ଯଜ୍ଞକାଷ୍ଠ ସମିଧ ରଖିବ
ପ୍ରାଦେଶ କମାଣ କୁଶ ମୁଠିଏ ଥୋଇବ ।
ସେ କୁଶରେ ଅସ୍ତ୍ର ମନ୍ତ୍ର କରି ଉଚ୍ଚାରଣ
ଶ୍ରୁବାଦି ସକଳ ପାତ୍ର କରିବ ପ୍ରୋକ୍ଷଣ ।
ପ୍ରୋକ୍ଷଣ ପାତ୍ରେ ପବିତ୍ର ସ୍ଥାପନ କରିବ
ତଦୁପରି ଗନ୍ଧପୁଷ୍ପେ ବିଷ୍ଣୁଙ୍କୁ ପୂଜିବ ।
ଆଘାର ଯେ ଆଜ୍ୟ ଭାଗ ହୋମ ସମ୍ପାଦିବ
ଅଗ୍ନି ଦେବଙ୍କର ଧ୍ୟାନ ଏ ରୂପେ କରିବ ।
ଅଗ୍ନି ଦେବ ସୁବର୍ଣ୍ଣ ବର୍ଣ୍ଣରେ ଦୀପ୍ୟମାନ
ଉଜ୍ଜ୍ୱଳ ଜଟା ମୁକୁଟେ ଶିର ବିଭୂଷଣ ।
ସ୍ୱସ୍ତିକ ଅଭୟ ଇଷ୍ଟ ଶକ୍ତି ଚାରିହାତେ
ଧାରଣ କରି ଅଛନ୍ତି ଚିନ୍ତିବ ଏମନ୍ତେ ।
ଗର୍ଭା ଧାନରୁ ଆରମ୍ଭି ବିବାହ ପର୍ଯ୍ୟନ୍ତ
ଇତ୍ୟାଦି କର୍ମ କରିବା ଅଟଇ ଉଚିତ ।
ଦ୍ୱାଦଶ ଦ୍ୱାଦଶ ସଂଖ୍ୟା ପ୍ରତ୍ୟେକ କର୍ମରେ
ଆହୁତି ଦାନ କରିବ ପୃଥକ ଭାବରେ ।
ଜାତ ବେଦ ଅଗ୍ନିଙ୍କର କର୍ମ ବିଶେଷରେ
ନାମକରଣ କରିବ ପୃଥକ ଭାବରେ ।
ଓଁ ବୈଷ୍ଣବାଗ୍ନୟେ ନମଃ ମନ୍ତ୍ର ଉଚ୍ଚାରିଣ
ଗନ୍ଧାଦି ଦେଇ ଅଗ୍ନିଙ୍କୁ କରିବ ଅର୍ଚ୍ଚନ ।
ଏହାପରେ ଚାରିବାର ଘୃତ ପୂର୍ଣ୍ଣ କରି
ଶ୍ରୁବରେ ଆଣି ଶ୍ରୁଚର ମଧ୍ୟେ ଦେବ ଭରି ।
କର୍ମରେ ଅଧିକ ଫଳ ହୋଇବା ନିମିତ୍ତ
ପୂର୍ଣ୍ଣାହୁତି ହୋମ ଅଗ୍ନିକୁଣ୍ଡେ କରିବ ତ ।
ଋଷିଗଣ ଅଗ୍ନି ଦେବଙ୍କୁ ଯେ ଯେତେବେଳେ
ବିଷ୍ଣୁଙ୍କଠାରୁ ପୃଥକ ନ ଭାବିବ ହେଲେ ।
ଅଖିଳ ଜଗତ ଅନ୍ତର୍ଯ୍ୟାମୀ ନାରାୟଣ
ସର୍ବ ନିୟନ୍ତା ଜୀବ ସ୍ୱରୂପ ସନାତନ ।
ସକଳ କାର୍ଯ୍ୟରେ ଅଗ୍ନି ରୂପେ ବିଦ୍ୟମାନ
ଘୃତ ଚରୁ ସମିଧାଦି କରନ୍ତି ଗ୍ରହଣ ।
କର୍ମକର୍ତ୍ତାରୁ କର୍ମକୁ ସଫଳ କରନ୍ତି
ଧର୍ମ ଅର୍ଥ କାମ ମୋକ୍ଷ ଫଳ ଦେଇଥାନ୍ତି ।
ଶାକ୍ତ ଶୈବ ସୌର ଆଦି ସକଳ କାର୍ଯ୍ୟରେ
ଅଗ୍ନି ସଂସ୍କାର କରିବ ଏହି ବିଧାନରେ ।
ମୁନିଗଣ ସର୍ବରୂପେ ବିଷ୍ଣୁ ବିଦ୍ୟମାନ
ଦ୍ୱାଦଶ ଅକ୍ଷର ମନ୍ତ୍ର ଏକମାତ୍ର ଜାଣ ।
ବିଷ୍ଣୁଙ୍କର ଶକ୍ତି ଲକ୍ଷ୍ମୀ ଦେବୀଙ୍କୁ ସକଳେ
ସର୍ବଦା ଧ୍ୟାନ କରିବେ ହୃଦୟ କମଳେ ।
ବିଷ୍ଣୁ ଲକ୍ଷ୍ମୀ ଦ୍ୱାଦଶ ଅକ୍ଷର ମନ୍ତ୍ର ତିନି
ଜଗତରେ ଶ୍ରେଷ୍ଠବସ୍ତୁ ରୂପେ ପରିମାଣି ।
ସତ୍ୟ କହୁଅଛି ଏହି ତିନି ଜଗତରେ
ମୂଳ କାରଣ ଯେ ସୃଷ୍ଟି ସ୍ଥିତି ଜଗତରେ ।
ଏହି ତିନି ଜଗତରେ ମଙ୍ଗଳ କରନ୍ତି
ମନର ଯେ ଅଭିଳାଷ ପୂରଣ କରନ୍ତି ।
ମୁନିଗଣ ଏହିରୂପେ କରିବ ସଂସ୍କାର
ପ୍ରତିଦିନ ପାକଶାଳେ ଅଗ୍ନି ଦେବଙ୍କର ।
ଅନ୍ନାଦି ସକଳ ପାକ କରି ସେ ଅଗ୍ନିରେ
ନିବେଦନ କରିଦେବ ପ୍ରଭୁଙ୍କୁ ଭକ୍ତିରେ ।
ଏହା ହେଲେ ସନ୍ତୋଷ ହୁଅନ୍ତି ଭଗବାନ
ନିଶ୍ଚୟ ଉତ୍ତମ ବର କରନ୍ତି ପ୍ରଦାନ ।
ଯାହାର ଯେ ରୂପ ଇଚ୍ଛା ମନମଧ୍ୟେ ଥାଏ
ସେହି ସକଳ କାମନା ପୂର୍ଣ୍ଣ ହୋଇଯାଏ ।
ମୁନିଗଣ ତୁମ୍ଭଙ୍କୁ ଯେ କହିଲୁ ଏମନ୍ତ
ଯେ କାର୍ଯ୍ୟରେ ଭଗବାନ ହୋଇଥାନ୍ତି ତୃପ୍ତ ।
ବିଷ୍ଣୁ ପ୍ରୀତିକର କାର୍ଯ୍ୟ ଯେ ସ୍ଥାନେ କରିବ
ସେ ସ୍ଥାନରେ ଏହି ବିଧି ବିଧାନରେ ହେବ ।
ବହ୍ନି ସଂସ୍କାର ପାକର ଅଙ୍ଗ ରୂପେ ଜାଣ
ଏପରି ଅଗ୍ନି ସଂସ୍କାର କରି ପ୍ରତିଦିନ ।
ଏକ ଅହୋରାତ୍ର ମଧ୍ୟେ ଯେତେ କାର୍ଯ୍ୟ ହୁଏ
ସେ ସକଳ ଏକ କାର୍ଯ୍ୟ ରୂପେ ଗଣାଯାଏ ।
ଏହି ହେତୁ ଯେତେଥର ପାକ କରାଯିବ
ପୁନର୍ବାର ଅଗ୍ନି ସଂସ୍କାର ଯେ ନ କରିବ ।
ସ୍କନ୍ଦ ପୁରାଣ ଉକତ ଉତ୍କଳ ଖଣ୍ଡରେ
ଏକ ଚତ୍ୱାରିଂଶ ଛାନ୍ଦ ଉତ୍କଳ ଭାଷାରେ ।
ଦୀନବନ୍ଧୁ କୃପାସିନ୍ଧୁ ସିନ୍ଧୁ ସୁତା ବନ୍ଧୁ
ଅନାଥ ଜନର ପରା ଏକମାତ୍ର ବନ୍ଧୁ ।
ଦୟାକରି ଦୟାସିନ୍ଧୁ ନାମକୁ ବହିଛ
ଦୟା ନ କରି କିମ୍ପାଇ ନିର୍ଦ୍ଦୟ ହେଉଛ ।
ନିର୍ଦ୍ଦୟ ହୋଇଲେ ଦୟାସିନ୍ଧୁ ଶୁଷ୍କ ହେବ
ଦୀନବନ୍ଧୁ ନାମ ଆଉ କିଏ ବା ଡାକିବ ।
ଏତିକି ମାତ୍ର ଭରସା ରହିଛି ମୁନରେ
ଜଳ କେବେ ଶୁଷ୍କ ହୁଏ ନାହିଁ ସମୁଦ୍ରରେ ।
ନାନାବିଧ ଦୁର୍ଘଟଣା ଘଟନେ ସମର୍ଥ
ମୋ ଯୋଗେ ନ କର ପ୍ରଭୁ ନିଜପଣ ବ୍ୟର୍ଥ ।
ଚରଣ ତଳରେ ମାଗୁଅଛି ଏହି ଭିକ୍ଷା
ଦ୍ୱିଜ ହରିହରଙ୍କୁ ଯେ ବେଗେ କର ରକ୍ଷା ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ମକର ଯାତ୍ରା ବୈଷ୍ଣବାଗ୍ନି ସଂସ୍କାର ବିଧି
କଥନେ ନାମ ଏକଚତ୍ୱାରିଂଶୋଽଧ୍ୟାୟଃ ।



Digitized by srujanika@gmail.com

## ଦ୍ୱିଚତ୍ୱାରିଂଶ ଅଧ୍ୟାୟ

ଜୈମିନି ମୁନି କହିଲେ ଫାଲ୍‌ଗୁନ ମାସରେ
ପ୍ରଭୁଙ୍କ ଦୋଳ ଉତ୍ସବ କରିବ ବିଧିରେ ।
ମନୁଷ୍ୟମାନଙ୍କୁ ଅନୁଗ୍ରହ କରିବାକୁ
ଗୋବିନ୍ଦ କରନ୍ତି ବଜେ ଦୋଳାରୋହଣକୁ ।
କରିବ ଫାଲଗୁନ ମାସେ ଏ ଦୋଳ ଉତ୍ସବ
ଗୋବିନ୍ଦଙ୍କ ପ୍ରତିମୂର୍ତ୍ତି ନିର୍ମାଣ କରିବ ।
ପ୍ରଭୁଙ୍କ ମନ୍ଦିର ସିଂହଦ୍ୱାର ନିକଟରେ
ଦୋଳ ମଣ୍ଡପ ନିର୍ମାଣ କରିବ ବିଧିରେ ।
ଚତୁର୍ଦ୍ଦିଗେ ଚାରିଦ୍ୱାର ଷୋଳଗୋଟି ସ୍ତମ୍ଭ
ମଧ୍ୟସ୍ଥଳରେ ବେଦିକା ଶୋଭା ପାଉଥିବ ।
ଚତୁଃଷ୍କୋଣ ଅତି ଉଚ୍ଚ ସେ ମଣ୍ଡପ ହେବ
ଊର୍ଦ୍ଧ୍ୱଦେଶେ ଚନ୍ଦ୍ରାତପ ଶୋଭା ପାଉଥିବ ।
ଚାରିପାଖ ଧ୍ୱଜାମାଳା ଚାମର ଶୋଭିତ
ବେଦୀ ମଧରେ ଶ୍ରୀପର୍ଣ୍ଣି କାଷ୍ଠରେ ନିର୍ମିତ ।
ଭଦ୍ରାସନ ଫଲଗୁ ଉତ୍ସବରେ ସଜାଇବ
ତ୍ରିଦିନ ବା ପଞ୍ଚଦିନ ଉତ୍ସବ କରିବ ।
ଚତୁର୍ଦ୍ଦଶୀ ଦିନ ସାୟଂ କାଳରେ କରିବ
ଦୋଳ ମଣ୍ଡପର ପୂର୍ବଭାଗେ ବହ୍ନ୍ୟୁତ୍ସବ ।
ଏ ଦୋଳ ଯାତ୍ରାର ଅଙ୍ଗ ଏ ବହ୍ନି ଉତ୍ସବ
ଗୋବିନ୍ଦଙ୍କ ପ୍ରିୟ ବୋଲି ଏହାକୁ ବୁଝିବ ।
ପ୍ରଥମରେ ଆଚାର୍ଯ୍ୟଙ୍କୁ କରିବ ବରଣ
ଅଗ୍ନି ଉତ୍ପନ୍ନ କରିବ କାଷ୍ଠକୁ ଘର୍ଷିଣ ।
ପଞ୍ଚ ଭୂସଂସ୍କାର କରି ଯଥା ବିଧାନରେ
ମେଷ ସ୍ଥାପନ କରିବ ତୃଣ କୁଟୀରରେ ।
କାଷ୍ଠ ଜାତ ଅଗ୍ନିକୁ ସେ ତୃଣେ ପକାଇବ
ଅଗ୍ନି ଦେବଙ୍କୁ ବିଧାନେ ଅର୍ଚ୍ଚନା କରିବ ।
କୁଷ୍ମାଣ୍ଡ ବିଧିରେ ହୋମ ଅବଶ୍ୟ କରିବ
ଏହାପରେ ଗୋବିନ୍ଦଙ୍କୁ ମନ୍ତ୍ରରେ ପୂଜିବ ।
ସାତଘେରା ବୁଲାଇବ ପ୍ରଭୁଙ୍କୁ ସେ ସ୍ଥାନେ
ଯାତ୍ରା ଶେଷଯାଏ ଅଗ୍ନି ରଖିବ ଯତନେ ।
ଏହିକାଳେ ଗୋବିନ୍ଦଙ୍କୁ କରିଲେ ଦର୍ଶନ
ସକଳ ପାପରୁ ମୁକ୍ତ ହୁଏ ସେହି ସ୍ଥାନ ।
ଚତୁର୍ଦ୍ଦଶୀ ଦିନ ରାତ୍ର ଚତୁର୍ଥ ପ୍ରହରେ
ପ୍ରଭୁଙ୍କୁ ପୂଜିବ ଗୋବିନ୍ଦଙ୍କ ସହିତରେ ।
ଅବଶିଷ୍ଟ ଉପଚାର ଗୋବିନ୍ଦଙ୍କୁ ଦେବ
ପ୍ରଭୁଙ୍କ ଦେହରୁ ମାଲ୍ୟ ବସନ ଆଣିବ ।
ଜ୍ୟୋତିର୍ମୟ ରୂପ ମନମଧ୍ୟେ କରି ଧ୍ୟାନ
ଗୋବିନ୍ଦଙ୍କୁ ପିନ୍ଧାଇବ ମାଳ ଓ ବସନ ।
ଏ ରୂପେ ପୂଜିତ ହୋଇ ସେ ଗୋବିନ୍ଦ ମୂର୍ତ୍ତି
ସାକ୍ଷାତରେ ଜଗନ୍ନାଥ ରୂପେ ଶୋଭାପାନ୍ତି ।
ରତନ ଦୋଳାରେ ବସାଇଣ ଏହାପରେ
ସ୍ଥାପନ କରିବ ନେଇ ସ୍ନାନ ମଣ୍ଡପରେ ।
ଶଙ୍ଖ ଧ୍ୱନି ସହ ନାନା ବାଦ୍ୟ ବଜାଇବ
ଜୟଗାନ ପୁଷ୍ପବୃଷ୍ଟି ଆଦି କରାଇବ ।
ଛତ୍ରଧ୍ୱଜା ପତାକାଦି କରି ଉତ୍ତୋଳନ
ଚାମର ଆଲଟ ଧରି କରିବ ବ୍ୟଜନ ।
ଧାଡ଼ି ଧାଡ଼ି ଦୀପମାଳା ନିବିଡ଼ ଭାବରେ
ମହୋତ୍ସବ କରାଇବ ଏହି ବିଧାନରେ ।
ଗୋବିନ୍ଦଙ୍କ ମହୋତ୍ସବ କରିବେ ଦର୍ଶନ
ଗୋପନେ ଆସନ୍ତି ବ୍ରହ୍ମା ଋଷି ଦେବଗଣ ।
ଗୋବିନ୍ଦଙ୍କୁ ଭଦ୍ରାସନୋପରେ ବସାଇଣ
ଯଥାବିଧି ଉପଚାରେ କରିବ ଅର୍ଚ୍ଚନ ।
ମହାସ୍ନାନ ବିଧାନରେ ପଞ୍ଚାମୃତାଦିରେ
ସ୍ନାନ ଅଭିଷେକ କରି ଚନ୍ଦନ ଜଳରେ ।
ସେ କାଳେ ଶ୍ରୀ ସୂକ୍ତ ପଢ଼ି ଅଙ୍ଗ ପୋଛିଦେବ
ବସ୍ତ୍ର ଅଳଙ୍କାର ମାଲ୍ୟ ଆଦି ପିନ୍ଧାଇବ ।
ମନ୍ଦିର ବାହାରେ ସାତଥର ବୁଲାଇବ
ଘଣ୍ଟ ଘଣ୍ଟି ମଦିରା ଯେ ବାଜା ବାଜୁଥିବ ।
ପତାକାଦିରେ ଶୋଭିତ ନିର୍ମଳ ପଥରେ
ଗୋବିନ୍ଦଙ୍କୁ ନେଇଯିବ ରତନ ଦୋଳାରେ ।
ପ୍ରଦକ୍ଷିଣ ସାତବାର ମଣ୍ଡପ ତଳରେ
ସାତଥର ବୁଲାଇବ ମଣ୍ଡପ ଉପରେ ।
ସାତଥର କରାଇବ ବେଦୀ ପ୍ରଦକ୍ଷିଣ
ଯାତ୍ରାଶେଷେ ପ୍ରଦକ୍ଷିଣ ଏହି ପରିମାଣ ।
ଆଦ୍ୟେ ଏକବିଂଶ ଶେଷେ ଏକବିଂଶ ବାର
ବୟାଳିଶ ବାର ପ୍ରଦକ୍ଷିଣ ପ୍ରଭୁଙ୍କର ।
ଏହି ଲୀଳା ସ୍ୱମୁଖରେ ବ୍ରହ୍ମା କହିଥିଲେ
ଇନ୍ଦ୍ରଦ୍ୟୁମ୍ନ ଏହି ବିଧାନରେ କରିଥିଲେ ।
ଭକ୍ତଗଣ ସେ ସ୍ଥାନରେ କରିବେ ଏମନ୍ତ
ଫଳ ପୁଷ୍ପାକ୍ଷତ ତରୁ ରାଜିରେ ଶୋଭିତ ।
ମଧୁ ଗନ୍ଧରେ ଉନ୍ମତ୍ତ ସକଳ ଭ୍ରମରେ
ଗୁଣ୍ଣୁ ଗୁଣୁ ଧ୍ୱନି କରୁଥିବେ ସେ ସ୍ଥାନରେ ।
କର୍ଣ୍ଣ ସୁଖକର କୋକିଳର କୁହୁସ୍ୱର
ନିରନ୍ତର ପକ୍ଷୀ ଧ୍ୱନି ମନ ମୁଗ୍ଧକର ।
ଉତ୍ତମ ଦ୍ରବ୍ୟରେ ସେହି ସ୍ଥାନ ସଜାଇବ
ମାଳାଗୁରୁ ଧୂପ ଗନ୍ଧେ ମହକି ଉଠିବ ।
ବୃନ୍ଦାବନ ପରି ଶୋଭା ପାଇବ ସେ ସ୍ଥାନ
କେତକୀ କୁସୁମ ଗନ୍ଧ ଚଉଦିଗେ ପୂର୍ଣ୍ଣ ।

Digitized by srujanika@gmail.com

ମଲ୍ଲି ଅଶୋକ ଚମ୍ପକ ପୁନ୍ନାଗବୃକ୍ଷରେ
ପୁଷ୍ପରାଜି ଶୋଭା ପାଉଥିବ ସେ ସ୍ଥାନରେ ।
ଏହିପରି ବିରଚିତ ଉଦ୍ୟାନ ମଧ୍ୟରେ
ପତାକା ତୋରଣାଦିରେ ଶୋଭା ମଣ୍ଡପରେ ।
ଦୋଳନ ପୀଠେ ସଜ୍ଜିତ ରତନ ଖଟରେ
ପ୍ରଭୁଙ୍କୁ ବସାଇ ଝୁଲାଇବ ଧୀରେ ଧୀରେ ।
ପ୍ରଭୁଙ୍କ ଶିରେ ମୁକୁଟ କର୍ଣ୍ଣରେ କୁଣ୍ଡଳ
ରତ୍ନହାରେ ଶୋଭା ପାଉଥିବ ବକ୍ଷସ୍ଥଳ ।
ଯେ ଭୂଷଣ ଯେଉଁ ଅଙ୍ଗେ ଦିଶଇ ସୁନ୍ଦର
ସେ ଅଙ୍ଗରେ ପିନ୍ଧାଇବ ସେହି ଅଳଙ୍କାର ।
ବିଶ୍ୱ ପାଳନ କାରିଣୀ କମଳା ସାଙ୍ଗରେ
ଉପବିଷ୍ଟ ପ୍ରସ୍ଫୁଟିତ ପଦ୍ମ ଆସନରେ ।
ଶଙ୍ଖ ଚକ୍ର ଗଦା ପଦ୍ମ ହସ୍ତରେ ଧରିଣ
ଗଳଦେଶେ ବନମାଳା ଦିଶଇ ଶୋଭନ ।
ଶାନ୍ତ ମୂର୍ତ୍ତି ଭ୍ରୂନାସିକା ଦିଶଇ ସୁନ୍ଦର
ସୁପ୍ରଶସ୍ତ ବକ୍ଷସ୍ଥଳ ଅତି ମନୋହର ।
ଦ୍ୱାରଦେଶେ ଦେବଗଣ କରି ଅବସ୍ଥାନ
କରଯୋଡ଼ି ଯୋଡ଼ି କରୁଛନ୍ତି ଜୟଗାନ ।
ସ୍ୱର୍ଗ ଗାୟକ ଗନ୍ଧର୍ବ ଅପ୍ସରା ସକଳ
ସିଦ୍ଧ ଚାରଣ କିନ୍ନର ସର୍ବେ ହୋଇ ଠୁଳ ।
ପ୍ରଭୁଙ୍କ ପଦ୍ମଚରଣ କରନ୍ତି ଅର୍ଚ୍ଚନ
ସହସ୍ର ସହସ୍ର ନେତ୍ରପଦ୍ମକୁ ଦେଇଣ ।
ଚାରିଆଡ଼େ ଘେରି ସର୍ବେ ହୋଇ ଆଗଭର
ସୁଗନ୍ଧ ଚନ୍ଦନ ରଜ ଫିଙ୍ଗନ୍ତି ଶରୀର ।
ଏହିପରି ଚିନ୍ତା ମନ ମଧ୍ୟରେ କରିବ
ରତନ ଦୋଳାରେ ଗୋବିନ୍ଦଙ୍କୁ ବସାଇବ ।
ନାନାବିଧ ଉପଚାର ଦେଇଣ ପୂଜିବ
ପୂଜା ଶେଷେ ଏହିପରି ଭାବନା କରିବ ।
ଶ୍ରୀ ଗୋବିନ୍ଦ ବୃନ୍ଦାବନେ କଦମ୍ବ ମୂଳରେ
ଗୋପୀଗଣରେ ବେଷ୍ଟିତ ଯମୁନା କୂଳରେ ।
ହାସ୍ୟ ପରିହାସ ସହ କ୍ରୀଡ଼ା କରୁଛନ୍ତି
ବହୁ ଗୋପାଳ ଗୋପିକା ରୁଣ୍ଡ ହୋଇଛନ୍ତି ।
କରୁଛନ୍ତି ଧୀରେ ଧୀରେ ଦୋଳ ସଂଚାଳନ
ଏହିପରି ମନମଧ୍ୟେ ଚିନ୍ତିବ ସେକ୍ଷଣ ।
କର୍ପୂର ମିଶାଇ ଗନ୍ଧ ଦ୍ରବ୍ୟ କରି ଚୂର୍ଣ୍ଣ
ପ୍ରଭୁଙ୍କର ଶ୍ରୀଅଙ୍ଗକୁ କରିବ କ୍ଷେପଣ ।
ଚାରିଆଡ଼େ ଉଡୁଥିବ ପତାକା ସକଳ
ନାନାରଙ୍ଗେ ରକ୍ତପୀତ ହରିତ ସକଳ ।
ଦିବ୍ୟ ଧୂପ ଗନ୍ଧେ ସ୍ଥାନ ଅତି ସୁବାସିତ
ଚାମର ଧରି ଆନନ୍ଦେ ଗାଇବ ସଂଗୀତ ।
ଗୁଣଗାନେ ପ୍ରଭୁଙ୍କର ମନକୁ ତୋଷିବ
ଧୀରେ ଧୀରେ ସପ୍ତବାର ଦୋଳା ଝୁଲାଇବ ।
ସେ କାଳରେ ଯେଉଁ ଜନ କରଇ ଦର୍ଶନ
ଦୋଳ ମଞ୍ଚରେ ଗୋବିନ୍ଦଙ୍କର ଆରୋହଣ ।
ବ୍ରହ୍ମହତ୍ୟା ଆଦି ପଞ୍ଚ ମହାପାତକରୁ
ମୁକ୍ତ ହୋଇ ତରିଯାଏ ସଂସାର ସାଗରୁ ।
ଯେ ପ୍ରଭୁ ସକଳ ପାପ ହରଣ କରନ୍ତି
ଯେ ଭକ୍ତମାନଙ୍କୁ ଅନୁଗ୍ରହ କରିଥାନ୍ତି ।
ଭୋଗ ମୋକ୍ଷର କାରଣ ଭଗବାନଙ୍କର
ପୁନର୍ବାର ଦୋଳା ଝୁଲାଇବ ତିନିବାର ।
ଭଗବାନଙ୍କର ଲୀଳା ପ୍ରକୃତ ବା ହେଉ
ଅଥବା ସେ ଲୀଳା ଅପ୍ରାକୃତ ହୋଇଥାଉ ।
ଯେପରି ହେଉ ସେପରି କରିଲେ ଦର୍ଶନ
ପାପକ୍ଷୟ ହୋଇଯାଏ ସନ୍ଦେହ ନ ମଣ ।
ଦୋଳ ମଞ୍ଚେ ଆରୋହଣ ଆବର ଦର୍ଶନ
ଏ ଦୁଇଦୋଳ ଯାତ୍ରାର ଅଙ୍ଗରୂପେ ଜାଣ ।
ସକଳ ଉପପାତକ ହୁଅଇ ଦହନ ।
ପ୍ରଭୁଙ୍କ ଦୋଳନ କରେ ଦର୍ଶନ ଯେ ଜନ
ତାହାର ଅଶେଷ ପାପ ହୁଅଇ ଦହନ ।
ପ୍ରଭୁଙ୍କୁ ଦୋଳ ଉପରେ ଯେ କରେ ଦର୍ଶନ
ତ୍ରିବିଧ ପାପରୁ ମୁକ୍ତ ହୁଏ ସେହି ଜନ ।
ବ୍ରାହ୍ମଣ ଯଦ୍ୟପି ଦୋଳ ଉତ୍ସବ କରିବ
ଜ୍ଞାନ ଲଭି ଚାରିବେଦେ ପାରଗ ହୋଇବ ।
କ୍ଷତ୍ରିୟ କରିଲେ ଚକ୍ରବର୍ତ୍ତୀ ରାଜା ହେବ
ଏକଥା ନିଶ୍ଚୟ ବୈଶ୍ୟା ଧନଶାଳୀ ହେବ ।
ଶୂଦ୍ରଜାତି ପାତକରୁ ହୋଇବେ ମୁକତ
ସନ୍ଦେହ ନ କର ଏହି କଥା ଅଟେ ସତ୍ୟ ।
ଶ୍ରୀସ୍କନ୍ଦ ପୁରାଣେ ଉକ୍ତ ଉତ୍କଳ ଖଣ୍ଡରେ
ବୟାଳିଶ ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ଲୀଳାମୟ ନିଜ ଇଚ୍ଛା କରିବାକୁ ପୂର୍ଣ୍ଣ
ଆନନ୍ଦ ଧାମରୁ ଜୀବରୂପେ ଅବତୀର୍ଣ୍ଣ ।
ଜୀବରୂପେ ଧରି ପ୍ରଭୁ ଅତି ଆନନ୍ଦରେ
ନିତି ଲୀଳା କରୁଅଛ ବିଷୟ ଆଶାରେ ।
ଜୀବର ବିଷୟ ଆଶା କରିବାକୁ ନାଶ
ନୀଳାଚଳ ଧାମେ ଲୀଳା କରୁଛ ଅଶେଷ ।
ଜୟ ଜୟ ଜଗନ୍ନାଥ ଲକ୍ଷ୍ମୀଦେବୀ କାନ୍ତ
ଆପଣଙ୍କ ଲୀଳା ଦେଖି ଜୀବ ହୁଏ ମୁକ୍ତ ।
ନିତି ଧାଇଁଛନ୍ତି ଦୂର ଦେଶୁ ନର ନାରୀ
ଦୀନ ହରିହର ମାଗେ ଭବୁ କରି ପାରି ।

**ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳଖଣ୍ଡେ ଦୋଳଯାତ୍ରା ମହୋତ୍ସବ ବର୍ଣ୍ଣନନେ ନାମ ଦ୍ୱିଚତ୍ୱାରିଂଶୋଽଧ୍ୟାୟଃ ।**



Digitized by srujanika@gmail.com

## ତ୍ରିଚତ୍ୱାରିଂଶ ଅଧ୍ୟାୟ

କହନ୍ତି ଜୈମିନି ମୁନି ଶୁଣ ଋଷିଗଣ
କହୁଅଛି ସମ୍ବତ୍ସର ବ୍ରତର ବିଧାନ ।
ଫାଲଗୁନ ପୂର୍ଣ୍ଣମା ସମ୍ବତ୍ସର ଆଦ୍ୟଦିନେ
ସମ୍ବତ୍ସର ବ୍ରତାରମ୍ଭ କରିବ ବିଧାନେ ।
ଦ୍ୱାଦଶ ମାସରେ ବିଷ୍ଣୁଙ୍କର ବାର ନାମ
ନାମ ଅନୁସାରେ ମୂର୍ତ୍ତି କରିବ ଗଠନ ।
ଫାଲଗୁନ ମାସେ ଆରମ୍ଭ କରି ପ୍ରତିଦିନ
ଯେ ମାସରେ ଯେଉଁ ମୂର୍ତ୍ତି କରିବ ଅର୍ଚ୍ଚନ ।
ପ୍ରତ୍ୟେକ ମାସରେ ପୁଷ୍ପ ଫଳ ଭିନ୍ନ ଭିନ୍ନ
କହୁଅଛି ଯଥାକ୍ରମେ ପୁଷ୍ପ ଫଳ ନାମ ।
ଅଶୋକ ମଲ୍ଲୀ ପାଟଳୀ ନୀପ କରବୀର
ଜାତି ପୁଷ୍ପେ ମାଳତୀ ଯେ କମଳ ଉତ୍ପଳ ।
ବାସନ୍ତୀ କୁନ୍ଦ ପୁନ୍ନାଗ ଦ୍ୱାଦଶ ମାସରେ
ଫଳ ନାମ କହୁଅଛି ଶୁଣ ମନ ସ୍ଥିରେ ।
ଡାଳିମ୍ବ ନଡ଼ିଆ ତାମ୍ର ପନସ ଖର୍ଜୁର
ପକ୍ୱତାଳ ପକ୍ୱ ଆମଳକ ଯେ ଶ୍ରୀଫଳ ।
ନାରଦ ଗୁବାକ କରମଙ୍ଗା ଜାତି ଫଳେ
ଅର୍ଚ୍ଚନା କରିବ ଏକମାସ ଏକଫଳେ ।
ପ୍ରତିଦିନ ସୁମଧୁର ଭଙ୍ଗୀ ଭୋଜ୍ୟମାନ
ଲେହ୍ୟଚୋଷ୍ୟ ପ୍ରଭୃତିରେ କରିବ ଅର୍ଚ୍ଚନ ।
ଆସାନାଦି ଉପଚାର ଦେଇଣ ପୂଜିବ
ଜଗଦ୍‌ଗୁରୁ ପ୍ରଭୁଙ୍କୁ ଯେ ପ୍ରାର୍ଥନା କରିବ ।
ସର୍ବବ୍ୟାପୀ ତ୍ରିକାଳର ପ୍ରଭୁ ଜଗନ୍ନାଥ
ଅଘଟ ଘଟନା କରିବାରେ ସମରଥ ।
ହେ ବିଷ୍ଣୁ ପୁଣ୍ଡରୀକାକ୍ଷ ସଂସାର ସାଗର
ପାରି କରିବାକୁ ତୁମ୍ଭେ ଏକାକର୍ଣ୍ଣଧାର ।
ବିଶ୍ୱ ଏକାର୍ଣ୍ଣବ ହୋଇଥିଲା ଯେତେବେଳେ
କାହିଁ କିଛି ଆଶ୍ରୟ ତ ନ ଥିଲା ସେକାଳେ ।
କଲ ଭୟଙ୍କର ଯୁଦ୍ଧ ବିଶ୍ୱ ରକ୍ଷା ଅର୍ଥେ
ମଧୁ ଦୈତ୍ୟକୁ ବିନାଶ କରିଲେ ସ୍ୱହସ୍ତେ ।
ହେ ମଧୁସୂଦନ ମୋତେ କର ପରିତ୍ରାଣ
ହେ ପ୍ରଭୁ ବାମନ ରୂପ କରିଣ ଧାରଣ ।
ତୁମ୍ଭର ହୃଦୟେ ଚତୁଃବେଦ ବିଦ୍ୟମାନ
ଭୃଗୁଙ୍କୁ ମୋହିଲ ନିଜ ମାୟା ପ୍ରକାଶିଣ ।
ନାଭିରୁ ପାଦଗୋଟି ଯେ ଉତ୍ପତ୍ତି କରିଲ
ତ୍ରିପାଦରେ ତ୍ରିଭୁବନ ଆକ୍ରମଣ କଲ ।
ତ୍ରୈଲୋକ୍ୟ ରକ୍ଷାର୍ଥେ ଦୈତ୍ୟ କରିଲ ସଂହାର
ହେ ମାୟାବୀ ତ୍ରିବିକ୍ରମ କରେ ନମସ୍କାର ।
ଦେବ ତବ ହୃଦ ଶ୍ରୀ ଦେବୀଙ୍କ ଅଧିଷ୍ଠାନ
ଭକ୍ତଗଣଙ୍କୁ କରୁଛ ସର୍ବଦା ଶ୍ରୀ ଦାନ ।
ଏହି ହେତୁ ଆପଣଙ୍କ ନାମ ଯେ ଶ୍ରୀଧର
ହେ ଶ୍ରୀଧର ଆପଣଙ୍କ ପଦେ ନମସ୍କାର ।
ହେ ଦେବ ଆପଣ ମୁକ୍ତି ଲାଭର କାରଣ
ପ୍ରାଣୀଙ୍କର ଇନ୍ଦ୍ରିୟ ତୁମ୍ଭର ଅଧିଷ୍ଠାନ ।
ତେଣୁ ହୃଷୀକେଶ ନାମ ଅଟଇ ତୁମ୍ଭର
ହୃଷୀକେଶ ଆପଣଙ୍କ ପଦେ ନମସ୍କାର ।
ପ୍ରଭୋ ନାଭୀ କମଳରୁ ଜାତ ଚରାଚର
ଯେ ନାଭି ପଦ୍ମ ଆସନ ଅଟେ ବ୍ରହ୍ମାଙ୍କର ।
ଏହି ହେତୁ ପଦ୍ମନାଭ ନାମ ଯେ ତୁମ୍ଭର
ପଦ୍ମନାଭ ଆପଣଙ୍କ ପଦେ ନମସ୍କାର ।
ସତ୍ତ୍ୱାଦି ତ୍ରିଗୁଣ ନିଜ ଅଙ୍ଗୁ କରି ଜାତ
ତ୍ରିଗୁଣେ ବାନ୍ଧି ରଖିଛ ଏ ଜୀବ ଜଗତ ।
ବାନ୍ଧିଥିଲେ କୌତୁକରେ ଯଶୋଦା ରଜ୍ଜୁରେ
ତେଣୁ ଦାମୋଦର ନାମେ ଖ୍ୟାତ ଅବନୀରେ ।
ଦାମୋଦର ଆପଣଙ୍କୁ କରେ ନମସ୍କାର
ହେ ପ୍ରଭୁ ଆପଣ ସର୍ବ ସୁଖର ଆଧାର ।
ତ୍ରିଲୋକ ବିପ୍ଲବକାରୀ କେଶୀ ନାମେ ଦୈତ୍ୟ
ଲୀଳାକରି ଅନାୟାସେ ତାକୁ କଲ ହତ ।
ଯେଣୁ କେଶବ ନାମରେ ଲୋକେ ପରିଚିତ
ହେ କେଶବ ରକ୍ଷାକର ପଦେ ପ୍ରଣିପାତ ।
ହେ ନାଥ ପ୍ରାଣୀମାନଙ୍କୁ କରିଛ ସୃଜନ
ଏହି ଜଗତରେ ଆଦି କାରଣ ଆପଣ ।
ଆପଣଙ୍କର ମହିମା ଚିନ୍ତାର ଅତୀତ
ନାରାୟଣ ଆପଣଙ୍କ ପଦେ ପ୍ରଣିପାତ ।
ଯାର ଅନାଦି ମାୟାରେ ବିଶ୍ୱ ବିମୋହିତ
ବିଶ୍ୱରୂପୀ ମାଧବଙ୍କ ପଦେ ପ୍ରଣିପାତ ।
ହେ ପ୍ରଭୁ ମୁଁ ଜାଣିନାହିଁ ଆପଣଙ୍କ ତତ୍ତ୍ୱ
ଜ୍ଞାନୀଗଣ ଜ୍ଞାନନେତ୍ରେ କରନ୍ତି ସାକ୍ଷାତ ।
ଅରକ୍ଷ ଜନରକ୍ଷକ ଅଟନ୍ତି ଆପଣ
ହେ ଗୋବିନ୍ଦ ଦୟାକଲେ ବ୍ରତ ହେବ ପୂର୍ଣ୍ଣ ।
ପ୍ରତିମାସ ପୂଜାଶେଷେ ଏମନ୍ତ ପଢ଼ିବ
ଗୋବିନ୍ଦଙ୍କ ନିକଟରେ ପ୍ରାର୍ଥନା କରିବ ।
ଏ ବିଧିରେ ସମ୍ବତ୍ସର କାଳ ବିତାଇଣ
ଏ ମୂର୍ତ୍ତି ପଞ୍ଚର ବ୍ରତ କରି ଉଦ୍ୟାପନ ।
ବ୍ରତ ପ୍ରତିଷ୍ଠିତେ ଜଳ କଳଶ ଉପରେ
ତାମ୍ରପାତ୍ରେ ପଦ୍ମାକ୍ଷତ ରଖିବ ବିଧିରେ ।
ବାରଗୋଟି କଳଶରେ ବସ୍ତ୍ର ଆଚ୍ଛାଦିବ
ପୂର୍ବ ସୁବର୍ଣ୍ଣ ପ୍ରତିମା ତାପରେ ଥୋଇବ ।

Digitized by srujanika@gmail.com

ଭଦ୍ରମଣ୍ଡଳ କରିବ ମଣ୍ଡଳ ଚୂର୍ଣ୍ଣରେ
ଅଷ୍ଟଦିଗେ ଅଷ୍ଟକୁମ୍ଭ ମୂର୍ତ୍ତି ସହିତରେ ।
ଚତୁର୍ଦ୍ଦିଗେ ଅନ୍ୟ ଚାରି କୁମ୍ଭକୁ ସ୍ଥାପିବ
ବିଷ୍ଣୁ ମନ୍ତ୍ରରେ ଅର୍ଚ୍ଚନା ବିଧିରେ କରିବ ।
ପ୍ରତି କଳଶ ଦ୍ୱାଦଶ ଅକ୍ଷର ମନ୍ତ୍ରରେ
ପୂଜା କରିବ ପୃଥକ୍ ରୂପେ ଉପଚାରେ ।
ପଞ୍ଚାମୃତେ ଏକେ ଏକେ କରାଇବ ସ୍ନାନ
ଗୋଟି ଗୋଟି କରି କ୍ରମେ କରିବ ଅର୍ଚ୍ଚନ ।
ସକଳ ମୂର୍ତ୍ତିର ପ୍ରତି ନିମିତ୍ତ କରିବ
ନୃତ୍ୟ ଗୀତେ ବାଦ୍ୟେ ବ୍ରାହ୍ମଣଙ୍କୁ ତୋଷାଇବ ।
ପ୍ରତ୍ୟେକ ମୂର୍ତ୍ତି ନିକଟେ ବସନ ଯୁଗଳ
ବ୍ୟଜନ କଳଶ ଶଯ୍ୟା ଚନ୍ଦନ ତାମ୍ବୁଳ ।
ମୁଦ୍ରିକା କୁଣ୍ଡଳ ଆଦି ଅର୍ପଣ କରିବ
ପୃଥକ ରୂପେ ପୂର୍ବରୁ ସଞ୍ଚ ରଖିଥିବ ।
ଦ୍ୱାଦଶ ପ୍ରଦୀପ ପ୍ରତିଦିନ ରାତ୍ରକାଳେ
ଗବ୍ୟଘୃତେ ପୂର୍ଣ୍ଣକରି ଜାଳିବ ଭକ୍ତିରେ ।
ଏ ରୂପେ ରାତ୍ର ପାଳନ କରି ପ୍ରଭାତରେ
ଅଗ୍ନି ସ୍ଥାପନ କରିବ ଯଥା ବିଧାନରେ ।
ପ୍ରତ୍ୟେକ ଦେବତାଙ୍କର ପ୍ରୀତି ଉଦ୍ଦେଶ୍ୟରେ
ତ୍ରିଶତ ସମିଧ ପାଦ୍ୟଚରୁ ସହିତରେ ।
ପୂର୍ବଉତ୍ତର ସହସ୍ର ତିଳାହୁତି ଦାନ
ଆଚାର୍ଯ୍ୟଙ୍କୁ ଏ ସକଳ ଦକ୍ଷିଣା ପ୍ରଦାନ ।
ଦ୍ୱାଦଶ କପିଳା ଧେନୁ ମଣ୍ଡି ଅଳଙ୍କାରେ
ପ୍ରଦାନ କରିବ ଘଟ ପ୍ରତିମା ସାଙ୍ଗରେ ।
ଉପଚାର ଦ୍ରବ୍ୟ ଆଦି କରି ସମ୍ପ୍ରଦାନ
ଚାରି କିମ୍ବା ଏକ ବିପ୍ରେ କରାଇ ଭୋଜନ ।
ଏହିପରି ସମ୍ବତ୍ସର ବ୍ରତ ଉଦ୍ୟାପନ
ଯେ କରେ ତା ମନ ଅଭିଳାଷ ହୁଏ ପୂର୍ଣ୍ଣ ।
ଗୁଣ୍ଡିଚା ଉତ୍ସବ ଆଦି ଦ୍ୱାଦଶ ଉତ୍ସବ
ଦର୍ଶନରେ ଯେତେ ପୁଣ୍ୟ ଫଳ ଲାଭ ହେବ ।
ଏକମାତ୍ର ଏହି ବ୍ରତ କଲେ ଅନୁଷ୍ଠାନ
ସେ ସକଳ ପୁଣ୍ୟ ଲାଭ କରେ ସେହିଦିନ ।
ଯେଉଁଜନ କରେ ଏହି ବ୍ରତ ଅନୁଷ୍ଠାନ
ତାଙ୍କୁ ଅନୁଗ୍ରହ କରିଥାନ୍ତି ଭଗବାନ ।
ସାର୍ବଭୌମ ଚକ୍ରବର୍ତ୍ତୀ ଇନ୍ଦ୍ରତ୍ୱ ସହିତ
ଅଷ୍ଟୈଶ୍ୱର୍ଯ୍ୟ ଲାଭ କରେ ସନ୍ଦେହ ନାହିଁ ତ ।
ନାରଦ ମହର୍ଷି କରିଥିଲେ ଏହି ବ୍ରତ
ବାରବର୍ଷ କରି ହୋଇଛନ୍ତି ଜୀବନ୍ମୁକ୍ତ ।
ପୂର୍ବେ ଆଉ କେତେ ଏହି ବ୍ରତ କରିଥିଲେ
ଏ ଧରା ମଣ୍ଡଳେ ଜୀବନ୍ମୁକ୍ତ ହୋଇଥିଲେ ।
ଭଗବାନଙ୍କର ଏହି ବ୍ରତ ପ୍ରିୟତମ
ଏହାଠାରୁ ନାହିଁ ଆଉ ବ୍ରତ ପୁଣ୍ୟତମ ।
ଯେଉଁଜନ କରେ ଏହି ବ୍ରତ ଅନୁଷ୍ଠାନ
ବ୍ରହ୍ମତେଜ ଲଭି ବଂଶ ହୁଅଇ ବର୍ଦ୍ଧନ ।
ଯଶ ବୃଦ୍ଧି ହୋଇ ଆୟୁ ବୃଦ୍ଧି ହୋଇଥାଏ
ସଞ୍ଚିତ ଚିତ୍ତରେ ଯେଉଁଜନ ବର୍ଷେ ରହେ ।
ଅତଏବ ମୁନିଗଣ ସଞ୍ଚିତ ଚିତ୍ତରେ
ଏହି ବ୍ରତ ଅନୁଷ୍ଠାନ କର ବିଧାନରେ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ତେୟାଳିଶ ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ଏ ବ୍ରତକୁ ଅନୁଧ୍ୟାନ କରିନାହିଁ ମୁହିଁ
ବ୍ରତର ବିଧାନ ମୋତେ ମିଳିବ ତ କାହିଁ ।
ଏକଳି କାଳରେ ନାହିଁ ଦେହରେ ତ ଶକ୍ତି
ଉଦର ଚିନ୍ତାରେ ଯାଉଅଛି ଦିନ ରାତି ।
ଏତିକି ମାତ୍ର କରୁଣା କର ମହାବାହୁ
ତବ ନାମ ରଟି ରଟି ଏ ଜୀବନ ଯାଉ ।
କେଶବ କଂସାରି ରାମ ଶ୍ରୀ ମଧୁସୂଦନ
ଗୋବିନ୍ଦ ପୁଣ୍ଡରୀକାକ୍ଷ ନୃସିଂହ ବାମନ ।
କରଯୋଡ଼ି ମାଗୁଅଛି ହରିହର ଦୀନ
ଅନ୍ତିମ କାଳରେ ରଟୁଥିବି ଏହି ନାମ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ସମ୍ବତ୍ସର ବ୍ରତ ବିଧାନ ବର୍ଣ୍ଣନେ
ନାମ ତ୍ରିଚତ୍ୱାରିଂଶୋଽଧ୍ୟାୟଃ ।

□□

## ଚତୁଷ୍ଚତ୍ୱାରିଂଶ ଅଧ୍ୟାୟ

ଆନନ୍ଦରେ ପଚାରନ୍ତି ସର୍ବ ଋଷିଗଣ
ଶୁଣିଲୁ ମୂର୍ତ୍ତି ପଞ୍ଚର ବ୍ରତର ବିଧାନ ।
ସେ ବ୍ରତ ମହତ୍ୱ କର୍ଣ୍ଣେ ଶ୍ରବଣ କରିଲେ
ପ୍ରମୋଦ ହୁଅଇ ଜାତ ହୃଦୟ କନ୍ଦରେ ।
ମହାମୁନି ପୂର୍ବେ ବାରଯାତ୍ରା କରିଥିଲେ
ଦଶଯାତ୍ରା ଶ୍ରୀମୁଖରେ ବୁଝାଇ କହିଲେ ।
ଅବଶିଷ୍ଟ ଦୁଇଗୋଟି କରନ୍ତୁ ପ୍ରକାଶ
ପ୍ରଭୁଙ୍କ ଲୀଳା ଶ୍ରବଣେ ପୂରିବ ମାନସ ।
ଜୈମିନି ମୁନି କହନ୍ତି ଶୁଣ ଋଷିଗଣ
ଦମନ ଭଞ୍ଜିକା ଯାତ୍ରା କରୁଛି ବର୍ଣ୍ଣନ ।
ଭକତିରେ କଲେ ଏହି ଯାତ୍ରା ଅନୁଷ୍ଠାନ
ଦର୍ଶନ କଲେ ସନ୍ତୋଷ ହୋନ୍ତି ଭଗବାନ ।
ଦମନକ ତୃଣ ଜାତ କରିଛ ଶ୍ରବଣ
ଚୈତ୍ରମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ଦିନ ।

Digitized by srujanika@gmail.com

ପ୍ରଭୁଙ୍କର ସମ୍ମୁଖରେ ମଣ୍ଡପ କରିବ
ମଣ୍ଡପ ଉପରେ ବାଲି ବିଛାଇଣ ଦେବ ।
ମୂଳ ଉପାଡ଼ି ଆଣିବ ଦମନକ ଘାସ
ମଣ୍ଡପ ଚାରିଦିଗରେ ରୋପିବ ଅବଶ୍ୟ ।
ମଣ୍ଡପ ମଧ୍ୟରେ ପଦ୍ମମଣ୍ଡଳ କରିବ
ଲକ୍ଷ୍ମୀ ସତ୍ୟଭାମା ବିଷ୍ଣୁ ମଣ୍ଡଳେ ପୂଜିବ ।
ଦମନକ ଯାତ୍ରା କାଳ ଅଟଇ ନିଶୀଥ
ସନ୍ତୋଷ ହୁଅଇ ଏହିକାଳେ ଜଗନ୍ନାଥ ।
ଯେହେତୁ ପୂର୍ବକାଳରେ ପ୍ରଭୁ ଭଗବାନ
ରାତ୍ରିରେ କରଇ ଦମନାସୁରକୁ ନିଧନ ।
ସେ କାଳେ ସନ୍ତୋଷ ହୋଇଥିଲେ ଜଗନ୍ନାଥ
ଅସୁର ଦେହରୁ ତୃଣ ହୋଇଛି ସମ୍ଭୂତ ।
ଚୈତ୍ରମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ଦିନ
ନିଶୀଥ କାଳରେ ହେଲା ଅସୁର ନିଧନ ।
ସେ ଦୈତ୍ୟରୂପେ ଏହାକୁ ଭାବନା କରିବ
କରଯୋଡ଼ି ପ୍ରଭୁଙ୍କୁ ଯେ ପ୍ରାର୍ଥନା କରିବ ।
ହେ ପ୍ରଭୁ ପୂର୍ବକାଳରେ କରିଲ ସଂହାର
ତିନି ଭୁବନ କଣ୍ଟକ ଦମନକାସୁର ।
ସେ ଦାନବ ତୃଣ ଘାସରୂପେ ହୋଇ ଜାତ
ଆପଣଙ୍କ ସମ୍ମୁଖରେ ଆସି ଉପସ୍ଥିତ ।
ଯେପରି ସନ୍ତୋଷ ହେଲେ ଉତ୍ପତ୍ତି କାଳରେ
ସେପରି ସନ୍ତୋଷ ହେବେ ଏ ତୃଣ ଭାଙ୍ଗିଲେ ।
ଏହାକହି ପ୍ରଭୁଙ୍କର ହସ୍ତରେ ଅର୍ପଣ
କରିଦେବ ଏକ ଗଛ ଦମନକ ତୃଣ ।
ଏହାପରେ ନୃତ୍ୟ ଗୀତ ଆଦି କଉତୁକେ
ରାତ୍ରିଯାପନ କରିବ ପରମ ଉତ୍ସୁକେ ।
ଅନନ୍ତର ରାତ୍ରିଶେଷେ ଅରୁଣ ଉଇଁଲେ
ଭିତରେ ପ୍ରତିମା ନେବ ତୃଣ ସହିତରେ ।
ପ୍ରଭୁ ଜଗନ୍ନାଥଙ୍କର ନିକଟରେ ଦେବ
ଯଥାବିଧି ଉପଚାରେ ପ୍ରଭୁଙ୍କୁ ପୂଜିବ ।
ପୂଜାଶେଷେ ଏହିରୂପ ପ୍ରାର୍ଥନା କରିବ
ପୂର୍ବେ ହିରଣ୍ୟକଶିପୁ ବିନାଶିଲ ଦେବ ।
ତା ଦେହରେ ତନ୍ତ୍ରିମାଳା କଣ୍ଠେ ଲମ୍ବାଇଣ
ଯେପରି ମନେ ସନ୍ତୋଷ ହେଲେ ସେହିଦିନ ।
ସେପରି ସନ୍ତୋଷ ହେବ ପ୍ରଭୁଙ୍କ ମନରେ
ଏହି ଦମନକ ତୃଣ ଦେଉଛି ଶିରରେ ।
ଗ୍ରହଣ କରନ୍ତୁ ଦୟାକରି ମୋ ଉପରେ
ସେ କାଳରେ ଯେ ମାନବ ଦରଶନ କରେ ।
ଭଗବାନଙ୍କର ପ୍ରୀତି ପ୍ରଫୁଲ୍ଲ ବଦନ
ଏ ଭବ ସାଗରୁ ପାରି ହୁଏ ସେହି ଜନ ।

ଅନୁପମ ସୁଖ ତାକୁ ହୁଅଇ ପ୍ରାପତ
ଅନ୍ତକାଳେ ତାର ଜୀବ ହୁଅଇ ମୁକତ ।
ଭଗବାନଙ୍କର ମସ୍ତକରୁ ସେହି ତୃଣ
ଆଣି ନିଜ ମସ୍ତକରେ ଯେ କରେ ଧାରଣ ।
ସର୍ବବିଧ ପାପରୁ ସେ ହୁଅଇ ମୁକତ
ବିଷ୍ଣୁଲୋକେ ବାସ କରେ ସନ୍ଦେହ ନାହିଁ ତ ।
ଏହାପରେ କହୁଅଛି ମନଦେଇ ଶୁଣ
ମୋକ୍ଷଦାୟିନୀ ଅକ୍ଷୟ ତୃତୀୟା ବିଧାନ ।
ବାସନା କଳୁଷ ଚିତ୍ତ ମୂଢ଼ ଜନଙ୍କର
ଅନାୟାସେ ମୁକ୍ତି ଲାଭ ହେବ ଯେ ପ୍ରକାର ।
ବୈଶାଖ ଶୁକ୍ଳ ଦ୍ୱିତୀୟା ରାତ୍ର ଅର୍ଦ୍ଧକାଳେ
ସୁଧାଲିପା ମନୋହର ବେଦିକା ଉପରେ ।
ରମଣୀୟ ଚନ୍ଦ୍ରାତାପ ଟାଣିବ ଉପରେ
ଚତୁଷ୍ପାର୍ଶ୍ୱ ସଜାଇବ ବିତାନ ମାଳାରେ ।
ସୁନ୍ଦର ରୂପେ ମଣ୍ଡପ ପ୍ରସ୍ତୁତ କରିଣ
ଧୌତବସ୍ତ୍ରେ ଚତୁଷ୍ପାର୍ଶ୍ୱ କରି ଆଚ୍ଛାଦନ ।
ତା ମଧ୍ୟେ ରତ୍ନ ଖଚିତ ରମ୍ୟ ଭଦ୍ରାସନ
ତା ଉପରେ ବିଛାଇବ ସୁନ୍ଦର ବସନ ।
ତଦୁପରି ସ୍ୱର୍ଣ୍ଣପାତ୍ର କରିବ ସ୍ଥାପନ
ବସିବେ ପଶ୍ଚିମ ଦିଗେ ପୂଜିବ ବ୍ରାହ୍ମଣ ।
ବିଂଶପଳ ପରିମାଣ ଚନ୍ଦନ ଘଷିଣ
ଅନ୍ୟ ଧାତୁ ପାତ୍ରରେ ଯେ କରିବ ସ୍ଥାପନ ।
ଷଟ୍‌ପଳ ଅଗୁରୁ ତାର ଅର୍ଦ୍ଧେକ କୁଙ୍କୁମ
କୁଙ୍କୁମରୁ ଅଧେ ଗୋରଚନା ମିଶାଇଣ ।
ଗୋରଚନା ଯେତେ ତେତେ କସ୍ତୁରୀ କର୍ପୂର
ପଞ୍ଚତୀର୍ଥ ଜଳେ ଆଣି ଗୋଳିବ ନିକର ।
ଦିପଳ ଅଗୁରୁତ ତୈଳ ମିଶାଇ ତହିଁରେ
ଭରିବ ପୂର୍ବ ସ୍ଥାପିତ ସୁବର୍ଣ୍ଣ ପାତ୍ରରେ ।
ତାହାକୁ କେତକୀ ପତ୍ରେ କରି ଆଚ୍ଛାଦନ
ନୀଳହସ୍ତେ ଯେ ପାତ୍ରକୁ କରିବ ବେଷ୍ଟନ ।
ସୋମମନ୍ତ୍ର ପାଠ କରି ଗରୁଡ଼ ମୁଦ୍ରାରେ
ସେ ପାତ୍ର ରକ୍ଷା କରିବ ଯଥା ବିଧାନରେ ।
ମଣ୍ଡଳରେ ଗନ୍ଧ ଦ୍ରବ୍ୟ କରିଣ ସ୍ଥାପନ
ଏ ରୂପେ କରିବ ଅଧିବାସ ସମ୍ପାଦନ ।
ଅରୁଣୋଦୟ ହୁଅନ୍ତେ ସେ ଦ୍ରବ୍ୟ ସକଳ
ନିକଟକୁ ନେଇଯିବ ଜଗନ୍ନାଥଙ୍କର ।
ନେଲାବେଳେ ଚକ୍ରଧରି ସହର ଭ୍ରମଣ
କରାଇବ ଶଙ୍ଖଧ୍ୱନି ଚାମର ବ୍ୟଜନ ।
ଜଗନ୍ନାଥଙ୍କ ସମ୍ମୁଖେ କରିଣ ସ୍ଥାପନ
କରିବ ଯଥା ବିଧାନେ ପ୍ରଭୁଙ୍କ ଅର୍ଚ୍ଚନ ।

Digitized by srujanika@gmail.com

ଗନ୍ଧ ପାତ୍ରରେ ବେଷ୍ଟିତ ବସ୍ତ୍ର ଉଦ୍‌ଘାଟନ
ଦିବ୍ୟ ଦୃଷ୍ଟିରେ ଚନ୍ଦନ କରିବ ଈକ୍ଷଣ ।
ପ୍ରୋକ୍ଷଣାଦି କ୍ରିୟା ମନ୍ତ୍ରରାଜ ପାଠ କରି
ଗନ୍ଧ ପୁଷ୍ପାକ୍ଷତେ ଦ୍ରବ୍ୟ ଅରଚନ କରି ।
ଶ୍ରୀସୂକ୍ତାଦି ମନ୍ତ୍ରମାନ କରିଣ ଗଠନ
ପ୍ରଭୁଙ୍କ ସର୍ବାଙ୍ଗେ ଗନ୍ଧ କରିଣ ଲେପନ ।
ସୂକ୍ତ ଉପନିଷଦାଦି ପଠନ କରିଣ
ସ୍ତୁତି କରିବେ ଏକାଳେ ପଣ୍ଡିତ ବ୍ରାହ୍ମଣ ।
ସେହିସ୍ଥାନେ ଉପସ୍ଥିତ ବଇଷ୍ଣବଗଣ
ଜୟଧ୍ୱନି ସହ ନାମ କରିବେ କୀର୍ତ୍ତନ ।
ତୃତୀୟ ତିଥିରେ ଆଦ୍ୟଭାଗେ ଏହିପରି
ପ୍ରଭୁଙ୍କ ଅଙ୍ଗେ ଚନ୍ଦନ ବିଲୋପନ କରି ।
ବେଣୁ ବୀଣା ଆଦି ବାଦ୍ୟ ସହ ନୃତ୍ୟ ଗୀତ
ଛତ୍ର ଚାମରାଦି ଉପଚାର ଯଥୋଚିତ ।
ଦେବ ଜଗନ୍ନାଥଙ୍କର ସନ୍ତୋଷ ବିଧାନ
କରାଇବ ପଦ୍ମ ପାଦେ ପ୍ରଣାମ କରିଣ ।
ଅକ୍ଷୟ ତୃତୀୟା ତିଥି ପ୍ରଥମ ଭାଗରେ
ଏ ରୂପରେ ବିଲେପନ କରିବ ଭକ୍ତିରେ ।
ଯାହାର ସ୍ମରଣ କଲେ ପ୍ରାଣୀମାନଙ୍କର
ଆଧ୍ୟାତ୍ମିକ ଆଦି ପାପ ହୋଇଥାଏ ଦୂର ।
ଅକ୍ଷୟ ତୃତୀୟା ଦିନ କରିଲେ ଦର୍ଶନ
ତ୍ରିତାପ ନାଶ ହୋଇବ ଆଶ୍ଚର୍ଯ୍ୟ କ୍ରମେଣ ।
ପ୍ରକୃତରେ ସର୍ବକାଳେ ସକଳ ପ୍ରକାରେ
ପ୍ରଭୁଙ୍କ ମହିମା ବୁଝି ନ ହୁଏ ମନରେ ।
ଏହାପରେ ସୂକ୍ଷ୍ମ ବସ୍ତ୍ର ମାଲ୍ୟାଦି ଦେଇଣ
ଗବ୍ୟଘୃତେ ପାକ କରି ପିଷ୍ଟକାଦି ମାନ ।
ଭକ୍ଷ୍ୟ ଭୋଜ୍ୟ ପେୟ ଦ୍ରବ୍ୟ କରିବ ଭୋଜନ
କର୍ପୂର ଦେଇ ତାମ୍ବୁଳ କରି ସମର୍ପଣ ।
ସେ କାଳେ ଯେ ଜନ କରେ ପ୍ରଭୁଙ୍କୁ ଦର୍ଶନ
ଶତକୋଟି କଳ୍ପେ ସେହି ନ ହୁଏ ଜନମ ।
ବିଷ୍ଣୁଙ୍କ ସ୍ୱରୂପ ସେହି ଲାଭ କରେ ଜନ
ବୈକୁଣ୍ଠରେ ବାସ କରେ ନ ହୁଏ ପତନ ।
ଏକଳି କାଳରେ ଜନଙ୍କର ଅଧୋଗତି
ନୟନେ ଦେଖିଲେ ପୂର୍ବେ ଦକ୍ଷ ପ୍ରଜାପତି ।
ସର୍ବଦା ହୁଅନ୍ତି ପ୍ରପୀଡ଼ିତ ତ୍ରିତାପରେ
ତେଣୁ ଉପସ୍ଥିତ ହେଲେ ଦକ୍ଷ ଶ୍ରୀକ୍ଷେତ୍ରରେ ।
ଯେ ରୂପେ କ୍ଷେତ୍ର ମହିମା ପ୍ରକାଶ କରିଲେ
ଋଷିଗଣ ପୂର୍ବେ ତାହା କହିଅଛୁ ଭଲେ ।
ଦକ୍ଷ ପ୍ରଜାପତି ଜଗନ୍ନାଥଙ୍କ ଅଙ୍ଗରେ
ଚନ୍ଦନ ଲେପିଲେ ଏହି ତୃତୀୟା ତିଥିରେ ।

ପ୍ରଭୁଙ୍କୁ ସେ ରୂପେ ସ୍ତୁତି ସେ କାଳେ କରିଲେ
କହୁଅଛି ଋଷିଗଣ ଶୁଣନ୍ତୁ ଶ୍ରଦ୍ଧାରେ ।
ଦେବ ଦେବ ଜଗନ୍ନାଥ ନିର୍ମଳ ଶରୀର
ଅନନ୍ଦମୟ ସ୍ୱରୂପ ପରମ ଈଶ୍ୱର ।
ସଂସାର ସାଗର ମଗ୍ନ ଜନମାନଙ୍କର
ପରିତ୍ରାଣ କର୍ତ୍ତା ଅଟ ମୋତେ ରକ୍ଷାକର ।
ହେ ନୀଳମାଧବ ବେଗେ ହୁଅନ୍ତୁ ସଦୟ
ସଂସାର ତାପେ ତାପିତ ଶୁଷ୍କ ତୃଣ ପ୍ରାୟ ।
ଏ ବିଶ୍ୱଜନମାନଙ୍କୁ କରୁଣା କରନ୍ତୁ
ଅମୃତ ଦୃଷ୍ଟିରେ ଚାହିଁ ଦୁଃଖ ବିନାଶନ୍ତୁ ।
ହେ ଅଖିଳ ଜଗତପ୍ରଭୃତି ଶୂନ୍ୟରୁ ସମ୍ଭୁତ
ଜୀବମାନଙ୍କୁ ଉଦ୍ଧାର କରିବା ନିମିତ୍ତ ।
ଏ ନୀଳାଚଳ ଗୁହାରେ ହେଲା ଅବତୀର୍ଣ୍ଣ
ଆପଣଙ୍କ ପଦ୍ମପାଦେ କରୁଛି ପ୍ରଣାମ ।
ବହୁ କଳ୍ପରୁ ମୋ ପାପ ହୋଇଛି ବର୍ଦ୍ଧିତ
ତା ମୂଳ ଉପାଡ଼ିବାକୁ ଆପଣ ସମର୍ଥ ।
ତୁମ୍ଭର ଦର୍ଶନ ମିଳେ ଯୋଗ ସିଦ୍ଧି ହେଲେ
ଅଷ୍ଟାଙ୍ଗ ଯୋଗରେ ସିଦ୍ଧି ହୁଅଇ ଶରୀରେ ।
ତେଣୁ ଯୋଗ ସାଧନରେ ନବଳଇ ଚିତ୍ତ
କିପରି ଆପଣଙ୍କର ପାଇବି ସାକ୍ଷାତ ।
ତୁମ୍ଭର ଦର୍ଶନ ଚତୁର୍ବର୍ଗର କାରଣ
ଏ ମହାଯୋଗରେ ଶ୍ରଦ୍ଧା ହୁଏ ଯାର ମନ ।
ସେ ମହାଜନ ଏ ଭବ ଅରଣ୍ୟ ମଧ୍ୟରେ
ଶୋକ ନ କରଇ ଆଉ କୌଣସି କାଳରେ ।
ତବ କର୍ମ ବିନା ପ୍ରଭୁ ଜ୍ଞାନ ନୁହେଁ ଜାତ
ବିନା ଜ୍ଞାନେ ପରମାତ୍ମା ନୁହଇ ବିଦିତ ।
ଆପଣଙ୍କ ଶ୍ରୀଚରଣ କରିଲେ ଦର୍ଶନ
ବିନାଯୋଗେ ସ୍ୱରୂପକୁ ଲଭଇ ସେ ଜନ ।
ହେ କୃଷ୍ଣ ଆପଣ ମୋତେ ହୁଅନ୍ତୁ ପ୍ରସନ୍ନ
ଅତି ଦୀନ ମୂଢ଼ ହତଜ୍ଞାନ ଜୀବଗଣ ।
ଏମାନଙ୍କ ପ୍ରତି ଦୟା କରନ୍ତୁ ପ୍ରକାଶ
ହେ ଈଶାନ ହେ ଅକ୍ଷୟ ଅବ୍ୟୟ ପୁରୁଷ ।
ହେ ଈଶ ପ୍ରସନ୍ନ ହୁଅ ବୋଲି ଜଣାଇଲେ
ଦକ୍ଷ ପ୍ରଜାପତି ଏହିରୂପେ ସ୍ତୁତି କଲେ ।
ଭଗବାନଙ୍କର ପାଦପଦ୍ମେ ଦଣ୍ଡବତ
ପ୍ରଣାମ କରିବେ ଭୂତଳରେ ପ୍ରଜାନାଥ ।
ଅନନ୍ତର ଭଗବାନ ମଧୁର ସ୍ୱରରେ
ବଚନ କହିଲେ ପ୍ରଜାପତିଙ୍କୁ ସେ କାଳେ ।
ହେ ବତ୍ସ ଉଠ ତୁମ୍ଭର ପ୍ରାର୍ଥିତ ବିଷୟ
ତୁମ୍ଭଙ୍କୁ ଦାନ କରିବୁ ଏକଥା ନିଶ୍ଚୟ ।

Digitized by srujanika@gmail.com

ଏ ଯେଉଁ ଦୁର୍ଲ୍ଲଭ ବର ପ୍ରାର୍ଥନା କରିଲ
ଆମ୍ଭ ଅନୁଗ୍ରହେ ତାହା ହୋଇବ ସଫଳ ।
ବତ୍ସ ତୁମ୍ଭେ ଜାଣିଅଛ ପୁଣ୍ୟ ହୀନ ଜନ
ଅନୁଗ୍ରହ ପାଇବାକୁ ନ ହେବ ଭାଜନ ।
ଆମ୍ଭର ଦେହ ସ୍ୱରୂପ ଚତୁର ଆନନ
ତାଙ୍କଠାରୁ ତୁମ୍ଭେ ପରା ହୋଇଅଛ ଜନ୍ମ ।
ଚନ୍ଦନ ଉତ୍ସବ କଲ ହୋଇଲୁ ସନ୍ତୋଷ
ଆମ୍ଭ ନିକଟେ ପ୍ରାର୍ଥନା କରୁଛୁ ଅବଶ୍ୟ ।
ନିଶ୍ଚୟ ସେହି ପ୍ରାର୍ଥନା କରିବୁ ପୂରଣ
ପ୍ରଜାପତି ଏହିକଥା ରଖିଥାଅ ମନ ।
ଯେ ଜନ ଅକ୍ଷୟ ଯାତ୍ରା କରିବ ଦର୍ଶନ
ତାହାର ସକଳ ମନୋବାଞ୍ଛା ହେବ ପୂର୍ଣ୍ଣ ।
ନିଜ ଦେହରେ ଚନ୍ଦନ କରିଲେ ଲେପନ
ଦେହର ସନ୍ତାପ ନାଶ ହୁଏ ତତକ୍ଷଣ ।
ସେହିପରି ଏ ଉତ୍ସବ ଯେ କରେ ଦର୍ଶନ
ସେ ଜନର ନାଶ ହୁଏ ତାପ ତ୍ରୟମାନ ।
ହେ ବତ୍ସ ତୁମ୍ଭ ମନରେ ଜନ୍ମାଇଲୁ ଭାବ
ତେଣୁ ତୁମ୍ଭେ କରିଅଛ ଚନ୍ଦନ ଉତ୍ସବ ।
ଦୀନଜନମାନଙ୍କର ଉଦ୍ଧାର କାରଣ
ଏ ଯେଉଁ ସଂକଳ୍ପ ତୁମ୍ଭ ମନେ ହେଲା ଜନ୍ମ ।
ପ୍ରଜାପତି ତୁମ୍ଭର ଏ ମନୋବାଞ୍ଛା ପୂର୍ଣ୍ଣ
ନିଶ୍ଚୟ କରିବୁ ମନେ ସନ୍ଦେହ ନ ମଣ ।
ହେ ବତ୍ସ ଗୁଣ୍ଡିଚାଠାରୁ ଦ୍ୱାଦଶ ପ୍ରକାର
ମହାଯାତ୍ରା ପ୍ରତ୍ୟେକଟି ପବିତ୍ରତା କର ।
ପ୍ରତିଯାତ୍ରା ଦର୍ଶନରେ ମୁକତି ମିଳଇ
ଧର୍ମ୍ମାର୍ଥ କାମ ତ୍ରିବର୍ଗ ପ୍ରଦାନ କରଇ ।
ଦ୍ୱାଦଶ ଯାତ୍ରାରୁ ଏକମାତ୍ର ଯେଉଁ ଜନ
ଆନନ୍ଦ ମନେ ଭକ୍ତିରେ କରିବ ଦର୍ଶନ ।
ଏକଯାତ୍ରା ଦର୍ଶନର ଫଳେ ସେହି ଜନ
ଭୂତଳରୁ ବୈକୁଣ୍ଠକୁ କରଇ ଗମନ ।
ଏହାକହି ଜଗନ୍ନାଥ ହେଲେ ଅନ୍ତର୍ଦ୍ଧାନ
ପ୍ରଜାପତି ନୀଳାଚଳେ କଲେ ତବସ୍ଥାନ ।
ବର୍ଷେକାଳ ରହି ଯାତ୍ରା ସକଳ ଦେଖିଲେ
କେତେକାଳ ପରେକୋଷବଂଶେ ଜନ୍ମ ହେଲେ ।
ବ୍ରାହ୍ମଣ ରୂପରେ ବୁଲି କରିଲେ ପ୍ରଚାର
ଜଗନ୍ନାଥଙ୍କର ଯାତ୍ରା ଦ୍ୱାଦଶ ପ୍ରକାର ।
ଯାତ୍ରା ଉତ୍ସବ ଯେପରି ବର୍ଣ୍ଣନ ହୋଇଛି
ଅଜ୍ଞ ବୁଦ୍ଧ ଜନ ମଧ୍ୟ ବିଶ୍ୱାସ କରୁଛି ।
ଜଗଦ୍‌ଗୁରୁ ଜଗନ୍ନାଥ ଚତୁର ଆନନ
ଲୋକହିତ ଅର୍ଥେ କରିଛନ୍ତି ସମର୍ଥନ ।

ଯେ କୌଣସି ସମୟରେ ପ୍ରଭୁଙ୍କୁ ଦର୍ଶନ
ଯେ କରେ ତାକୁ ଦିଅନ୍ତି ପ୍ରଭୁ ମୁକ୍ତି ଦାନ ।
ଯାତ୍ରା ଉତ୍ସବ ଯେ ଜନ କରେ ଅନୁଷ୍ଠାନ
ସେ ଜନର ମନୋବାଞ୍ଛା ହୋଇଥାଏ ପୂର୍ଣ୍ଣ ।
ମୁନିଗଣ ଶୁଣି ଯାର କଲେ ଦରଶନ
ଭବସାଗର ଦୁଃଖରୁ ମିଳେ ପରିତ୍ରାଣ ।
ତ୍ରିକାଳରେ ମିଥ୍ୟା ନୁହେଁ ଯାହାର ବଚନ
ସେ ପ୍ରଭୁ କରନ୍ତି ନୀଳାଚଳେ ଅବସ୍ଥାନ ।
ଏଣୁ ବହୁବିଧ ବ୍ରତ ତପସ୍ୟା ଦାନରେ
ତୀର୍ଥଯାତ୍ରା ଯଜ୍ଞ ଆଉ ଯୋଗ ସାଧନରେ ।
କିଛି ପ୍ରୟୋଜନ ନାହିଁ ମୁକତି ନିମିତ୍ତ
ପୁରୁଷୋତ୍ତମ କ୍ଷେତ୍ରରେ ହୋଇ ଉପସ୍ଥିତ ।
ତୀର୍ଥରାଜା ଜଳେ ସ୍ନାନ କରି-ବଟମୂଳେ
ଦାରୁ ବ୍ରହ୍ମକୁ ଦର୍ଶନ ଯେଉଁ ଜନକରେ ।
ସେ ଜନର ଚର୍ମ୍ମ ଚକ୍ଷୁ ହୁଅଇ ପବିତ୍ର
ଭବ ବନ୍ଧନରୁ ସେହି ହୋଇଥାଏ ମୁକ୍ତ
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ଚାରି ଚାରି ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ଜୟ ଜୟ ଜଗନ୍ନାଥ ଜୟ ବଳରାମ
ଜୟମା ସୁଭଦ୍ରା ଦେବୀ କରୁଛି ପ୍ରଣାମ ।
ବର୍ଷ ମଧ୍ୟେ ବାରଯାତ୍ରା ଯେ କରେ ଦର୍ଶନ
ସୁଖ ଭୋଗ କରିଯାଏ ବୈକୁଣ୍ଠ ଭୁବନ ।
ଯାତ୍ରା ଦେଖି ଯିବାପାଇଁ ଦେହେ ନାହିଁ ବଳ
କେଉଁଠାରୁ ପାଇବି ମୁଁ ସେହି ମୁକ୍ତିଫଳ ।
ଏକଳି କାଳରେ ନାମ କରିଲେ କୀର୍ତ୍ତନ
ଚତୁର୍ବର୍ଗ ପ୍ରାପ୍ତ ହୁଏ ଏ ଶାସ୍ତ୍ର ବଚନ ।
ଉତ୍ସବ କାଳରେ ନାମ କରିଲେ କୀର୍ତ୍ତନ
ଦୀନ ହରିହର ମାଗେ ପ୍ରଭୁଙ୍କ ଚରଣ ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳ ଖଣ୍ଡେ
ଚନ୍ଦନ ଯାତ୍ରା ବର୍ଣ୍ଣନେ ନାମ
ଚତୁଶ୍ଚତ୍ୱାରିଂଶୋଽଧ୍ୟାୟଃ ।



## ପଞ୍ଚଚତ୍ୱାରିଂଶ ଅଧ୍ୟାୟ

ପ୍ରଭୁଙ୍କ ଯାତ୍ରା ଉତ୍ସବ କରିଣ ଶ୍ରବଣ
ଜୈମିନି ମୁନିଙ୍କୁ ପଚାରନ୍ତି ମୁନିଗଣ ।
ହେ ସର୍ବ ଶାସ୍ତ୍ରଜ୍ଞ ମୁନି ତବ ଶ୍ରୀମୁଖରୁ
ଅତ୍ୟାଶ୍ଚର୍ଯ୍ୟ ପାପନାଶ ବୃତ୍ତାନ୍ତ ଶୁଣିଲୁ ।
ସକାମ ମାନବଗଣ ବିବିଧ ପ୍ରକାର
ସମ୍ପତ୍ତି ଲାଭ ନିମିତ୍ତ ସର୍ବଦା ଆତୁର ।

Digitized by srujanika@gmail.com

କାମନାର ଫଳଦାତା ଜଗନ୍ନାଥଙ୍କର
କିପରି କରିବେ ପୂଜା କହ ମୁନିବର ।
ଯେହେତୁ ସେ ଭଗବାନ ସକଳ ବିଭୂତି
ଶ୍ରଦ୍ଧାରେ ଅର୍ଚ୍ଚନା କଲେ ପ୍ରଦାନ କରନ୍ତି ।
ଏହା ଶୁଣି ଜଇମିନି କହନ୍ତି ବଚନ
ଚରାଚର ଜଗତରେ ଯାହା ବିଦ୍ୟମାନ ।
ସେ ସକଳ ବିଷ୍ଣୁଙ୍କର ବିଭୂତି ପ୍ରକାଶ
ବିଷ୍ଣୁଙ୍କ ବ୍ୟତୀତ କିଛି ନ ହୁଅଇ ଦୃଶ୍ୟ ।
ମାନବ ଯେଉଁ ରୂପରେ ଆରାଧନା କରେ
ସେପରି ଐଶ୍ୱର୍ଯ୍ୟ ରୂପେ ସେ ପ୍ରଭୁ ବିହରେ ।
ତାହାର ମହିମା କେହି ବୁଝି ନ ପାରନ୍ତି
କାମ ଅନୁରୂପ ଫଳ ପ୍ରଦାନ କରନ୍ତି ।
ଧର୍ମ ଅର୍ଥ କାମ ମୋକ୍ଷ ଏ ଚାରି ବର୍ଗର
ସାଧନା ପଥ ଅଟଇ ଏକଇ ପ୍ରକାର ।
କିନ୍ତୁ ଧର୍ମପଟ ଅଟେ ଅତ୍ୟନ୍ତ ଗହନ
ବିବିଧ ନିୟମ ଯୋଗେ ହୋଇଛି ସଂକୀର୍ଣ୍ଣ ।
ଏହି ହେତୁ ଜନଗଣ ଧର୍ମ ସାଧନାର
ପ୍ରକୃତ ତତ୍ତ୍ୱ ନ ବୁଝି କରନ୍ତି ବିଚାର ।
ପ୍ରଥମରେ ଧର୍ମ ତାର ପରେ ଅର୍ଥ କାମ
ଏହି ତ୍ରିବର୍ଗକୁ ବିଷ୍ଣୁ କରନ୍ତି ପ୍ରଦାନ ।
ସକଳ ନିୟନ୍ତା ହର୍ତ୍ତାକର୍ତ୍ତା ଭଗବାନ
ଧର୍ମର ସ୍ୱରୂପ ଏକା ବିଷ୍ଣୁ ବିଦ୍ୟମାନ ।
ଚରାଚର ଜଗତର ମୂଳ ଏକ ଧର୍ମ
ଧର୍ମ ଜଗତର ପ୍ରଭୁ ସେହି ଭଗବାନ ।
ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ଚୟ
ଭଗବାନଙ୍କୁ ଯେ ଜନ କରଇ ଆଶ୍ରୟ ।
ତାହାଙ୍କ ପାଦ ପଦ୍ମରେ ଭକ୍ତି ଥାଏ ଯାର
ଆତ୍ମାତୃପ୍ତିରେ କାମନା ପୂର୍ଣ୍ଣ ହୁଏ ତାର ।
ସଂସାର ଦୁଃଖରେ ସେହି ଶୋକ ନ କରଇ
ଜଡ଼ବସ୍ତୁ ପାଇବାକୁ ଆଗ୍ରହ ନ ଥାଇ ।
ତାହାକୁ ଶତ୍ରୁରୂପରେ ଉପାସନା କଲେ
ତ୍ରୈଲୋକ୍ୟ ଐଶ୍ୱର୍ଯ୍ୟଦାନ କରନ୍ତି ସେ ଭଲେ ।
ପୃଥୁରୂପେ ଉପାସନା ଯେ ଜନ କରଇ
ଭୁସମ୍ପତ୍ତି ସେ ଜନକୁ ପ୍ରାପତ ହୁଅଇ ।
ଧାତା ରୂପରେ ତାହାଙ୍କୁ କଲେ ଉପାସନା
ସେ ଜନର ବଂଶବୃଦ୍ଧି ହୋଇଥାଏ ସିନା ।
ସନତକୁମାର ରୂପେ ଉପାସନା କଲେ
ହୁଅଇ ଦୀର୍ଘାୟୁ ଲାଭ ରହେ କୁଶଳରେ ।
ଉପାସନା କରେ ସେହି ସମୁଦ୍ର ରୂପରେ
ଗଙ୍ଗା ଆଦି ତୀର୍ଥସ୍ନାନ ଫଳ ତାକୁ ମିଳେ ।

ଭାସ୍କର ରୂପରେ ଉପାସନା ଯେ କରଇ
ଅନ୍ତଃକରଣ ଅଜ୍ଞାନ ତାର ନାଶ ଯାଇ ।
ଚନ୍ଦ୍ରମା ମୂର୍ତ୍ତିରେ ତାର କଲେ ଉପାସନା
ଅତୁଳ ଐଶ୍ୱର୍ଯ୍ୟ ଦାନ କରନ୍ତି ସେ ସିନା ।
ବୃହସ୍ପତି ରୂପରେ ଯେ ଉପାସନା କରେ
ସେ ଅଷ୍ଟାଦଶ ବିଦ୍ୟାର ତତ୍ତ୍ୱ ବୁଝିପାରେ ।
ଯଜ୍ଞେଶ୍ୱର ରୂପେ ତାଙ୍କୁ ଭାବନା କରିଲେ
ଅଶ୍ୱମେଧ ଯଜ୍ଞଫଳ ସେ ଜନକୁ ମିଳେ ।
ଧନପତି ସ୍ୱରୂପରେ ଯେ କରଇ ଧ୍ୟାନ
ଅତୁଳ ଧନ ସମ୍ପତ୍ତି ଲଭେ ସେହି ଜନ ।
ଏହିରୂପେ ଦୟାସିନ୍ଧୁ ସେହି ଭଗବାନ
କପଟରେ ଦାରୁରୂପ କରିଛି ଧାରଣ ।
ଦୀନ ଅନାଥ ଜନଙ୍କୁ ହୋଇବେ ସଦୟ
ନୀଳାଚଳେ ଗୁହା କରିଛନ୍ତି ସେ ଆଶ୍ରୟ ।
ବିପ୍ରଗଣ ବେଗେ ନୀଳାଚଳେ ଚଳିଯାଅ
ପୁରୁଷୋତ୍ତମ କ୍ଷେତ୍ରରେ ବାସ କରି ରହ ।
ତହିଁ ସମାହିତ ଚିତ୍ତେ ଜଗନ୍ନାଥଙ୍କର
ପାଦପଦ୍ମେ ଆତ୍ମସମର୍ପଣ ଯାଇଁ କର ।
ଇହକାଳର ବା ହେଉ ଅବା ପରକାଳ
ମନୋବାଞ୍ଛା ପୂର୍ଣ୍ଣ ହେବ ତୁମ୍ଭମାନଙ୍କର ।
ଯଦି କରିଅଛ ଇଚ୍ଛା କୈବଲ୍ୟ ମୁକ୍ତିରେ
ବିଶ୍ୱହିତ ଚିନ୍ତା ଅବା ରହିଛି ମନରେ ।
ସକଳ ପ୍ରାର୍ଥନା ସେହିସ୍ଥାନେ ହେବ ପୂର୍ଣ୍ଣ
ଇଚ୍ଛା ଅନୁସାରେ ଏହା ସନ୍ଦେହ ନ ମଣ ।
ଏହା ଶୁଣି ମୁକ୍ତିଗଣ ବେଗେ ପଚାରିଲେ
ମନ୍ଦିର ପ୍ରତିଷ୍ଠା ଇନ୍ଦ୍ରଦ୍ୟୁମ୍ନ ରାଜା କଲେ ।
ସେ କାଳରେ ଭଗବାନ ଯେଉଁ ବର ଦେଲେ
ଦ୍ୱାଦଶ ଯାତ୍ରା ବିଷୟ ବୁଝାଇ କହିଲେ ।
ଆପଣଙ୍କ ଶ୍ରୀମୁଖରୁ କଲୁ ତା ଶ୍ରବଣ
ବିଷ୍ଣୁ ଭକ୍ତି ଯତୀଶ୍ୱର ରାଜା ଇନ୍ଦ୍ରଦ୍ୟୁମ୍ନ ।
ପୁରୁଷୋତ୍ତମ କ୍ଷେତ୍ରରେ ଏହି କି କହିଲେ
ତାହା ଶୁଣିବାକୁ ଇଚ୍ଛା ହେଉଅଛି ମୋରେ ।
ଜୈମିନି ଋଷି କହନ୍ତି ଶୁଣ ମୁନିଗଣ
ସେ ସ୍ଥାନରେ ନୃପ ଶ୍ରେଷ୍ଠ ରାଜା ଇନ୍ଦ୍ରଦ୍ୟୁମ୍ନ ।
ଦାରୁରୂପୀ ଜଗନ୍ନାଥ ଦେବଙ୍କ ପୟରେ
ଭକ୍ତି କରି ଇଚ୍ଛାବର ଲାଭ କଲାପରେ ।
କୃତକୃତ୍ୟ ହୋଇ ପ୍ରଭୁଙ୍କର ଆଦେଶରେ
ପୁଣ୍ୟ ମୋକ୍ଷପଦ ଯାତ୍ରା ସମସ୍ତ କରିଲେ ।
ଶ୍ରୀ ଜଗନ୍ନାଥଙ୍କର ବହୁବିଧ ଉପଚାରେ
ଅର୍ଚ୍ଚନା କରିଲେ ଯଥାବିଧି ବିଧାନରେ ।

Digitized by srujanika@gmail.com

ଧର୍ମିଷ୍ଠ ଗାଲ ରାଜାଙ୍କୁ ଡକାଇ କହିଲେ
ଭଗବାନ ପୂର୍ବେ ଯେଉଁ ଆଜ୍ଞା ଦେଇଥିଲେ ।
ହେ ରାଜନ ଆପଣ ବହୁତ ଜ୍ଞାନବାନ
ଭଗବାନଙ୍କର ଭକ୍ତ ସ୍ୱଧର୍ମେ ନିପୁଣ ।
ଆପଣ ଜାଣନ୍ତି ଭଗବାନ କେତେବେଳେ
ଉପଦେଶ ଜଣକୁ ତ ନ ଦିଅନ୍ତି ହେଲେ ।
ଜଗଦ୍‌ଗୁରୁ ରୂପେ ଯେଉଁ ଆଜ୍ଞା ସେ ଦିଅନ୍ତି
ବିଶ୍ୱବାସୀ ଜନେ ତାହା ପାଳନ କରନ୍ତି ।
ଦେଖନ୍ତୁ ଏ ଭଗବାନ ହୋଇ ଅବତୀର୍ଣ୍ଣ
ଅମ୍ଭପ୍ରତି ଅନୁଗ୍ରହ କରିଲେ ଯେସନ ।
ମୂଢ଼ମତି ଜନଙ୍କର ଉଦ୍ଧାର ନିମିତ୍ତ
ଚିରକାଳ ନୀଳାଚଳେ ହେଲେ ଅବସ୍ଥିତ ।
ହେ ଭୂମିପ ଶ୍ରଦ୍ଧାଭକ୍ତି ଚିତ୍ତେ ପ୍ରଭୁଙ୍କର
ଆଦେଶାନୁରୂପ ଯାତ୍ରା ଅନୁଷ୍ଠାନ କର ।
କଦାଚନ କାଷ୍ଠ ପ୍ରତିମା ବୋଲି ନ ଭାବିବ
ପ୍ରତିଷ୍ଠା କାଳରେ ତୁମ୍ଭେ ଦେଖୁଅଛ ସର୍ବ ।
ତ୍ରିଲୋକବାସୀ ସକଳେ ଆସି ଏ ସ୍ଥାନକୁ
ସିଂହାସନେ ବସାଇଲେ ଶ୍ରୀ ଜଗନ୍ନାଥଙ୍କୁ ।
ବ୍ରହ୍ମାଦି ଅମରଗଣ ଆସି ଏକକାଳେ
ଉପସ୍ଥିତ ହୋଇଥିଲେ ଏହି ନୀଳାଚଳେ ।
ଆମ୍ଭେମାନେ ବିଶ୍ୱମୂର୍ତ୍ତି ଦେଖିଲୁ ଯେ ବେଳେ
ଅଚେତନ ହୋଇ ପଡ଼ିଗଲୁ ଏ ଭୂମିରେ ।
ଏହି ହେତୁ ଏହି ଦାରୁରୂପୀ ଭଗବାନ
ଚରାଚରମୟ ବ୍ରହ୍ମ ସ୍ୱରୂପ ଜାଣିମ ।
ଏ ପ୍ରଭୁଙ୍କୁ କଳ୍ପ ବୃକ୍ଷ ସମ କରଜ୍ଞାନ
ମନ କାମନା ସକଳ କରିବେ ପୂରଣ ।
ଯେ ଜନ ଯେଉଁ ରୂପରେ ଭାବନା କରିବ
ତା ମନ କାମନା ସେହିରୂପେ ପୂର୍ଣ୍ଣ ହେବ ।
ଅଷ୍ଟାଙ୍ଗ ଯୋଗ ସାଧନା କରି ଯତିଗଣ
ଅଜ୍ଞାନର ପରପାପେ ସ୍ଥିତି ଭଗବାନ ।
ଅନିର୍ବଚନୀୟ ଜ୍ୟୋତିର୍ମୟ ସ୍ୱରୂପକୁ
ଚିହ୍ନି ନ ପାରନ୍ତି କେତେବେଳେ ଏ ପ୍ରଭୁଙ୍କୁ ।
ବ୍ରହ୍ମନିଷ୍ଠ ଯତି ଊର୍ଦ୍ଧ୍ୱରେତା ସିଦ୍ଧଗଣ
ଯାହାଙ୍କ ମନ ଅଚଳା ଭକତିରେ ପୂର୍ଣ୍ଣ ।
ଶ୍ରେଷ୍ଠ ଯୋଗୀଗଣ ଯେଉଁ ପଦକୁ ଇଚ୍ଛନ୍ତି
ଏ ସକଳ ଏକା ଭଗବାନଙ୍କୁ ପାଆନ୍ତି ।
ଗ୍ରୀଷ୍ମ କାଳେ ଶୀତଳ ଜଳରେ ବୁଡ଼ିଲେ
ଜୀବଗଣଙ୍କର ଶାନ୍ତି ହୁଏ ଯେ ପ୍ରକାରେ ।
ସେ ରୂପ ଶାନ୍ତି ଯେ ଜନ ଲାଭ କରିପାରେ
ପୁରୁଷୋତ୍ତମ ନାମକ କରୁଣା ସାଗରେ ।
ଆଧ୍ୟାତ୍ମିକାଦି ତ୍ରିତାପ ଦୁଃଖରୁ ନିଶ୍ଚୟ
ପରିତ୍ରାଣ ପାଇବ ସେ ନ କର ସଂଶୟ ।
ଏ ପ୍ରଭୁ ଶରଣାଗତ ଦୀନାର୍ତ୍ତ ବ୍ୟକ୍ତିର
ଯେ ରୂପେ କରନ୍ତି ପ୍ରତିଦିନ ଉପକାର ।
ସେ ରୂପରେ ମିତ୍ର ପୁତ୍ର ପତ୍ନୀ ପିତାମାତା
ଏ କିହେ ନୁହନ୍ତି ଜୀବ ଦୁଃଖ ନାଶ କର୍ତ୍ତା ।
ଏଣୁ ତୁମ୍ଭେ ଜଗନ୍ନାଥ ମହାପ୍ରଭୁଙ୍କର
ପ୍ରତିଦିନ ସେବା ଅତି ଆନନ୍ଦରେ କର ।
ପୁରବାସୀ ପ୍ରଜାଗଣଙ୍କର ସହିତରେ
ଯାତ୍ରା ଉତ୍ସବାଦି କର ଅତି ଆଡ଼ମ୍ବରେ ।
ରାଜା ରକ୍ଷାକରେ ସାଧାରଣ ଧର୍ମପଥ
ପୂର୍ବରୁ ଯେଉଁ ନିୟମ ହୋଇଛି ସ୍ଥାପିତ ।
ତାହା ପରବର୍ତ୍ତୀ ରାଜା ପାଳନ କରିବେ
ହେ ଶ୍ୱେତ ରାଜନ କହୁଅଛି ତାହା ଏବେ ।
ନୃସିଂହ ଦେବଙ୍କୁ ପ୍ରତିଦିନ ପୂଜା କର
ତ୍ରିସନ୍ଧ୍ୟାରେ ଯଥାବିଧି ଦେଇ ଉପଚାର ।
ତାହାଙ୍କୁ ଯଥାବିଧିରେ କରିଲେ ଅର୍ଚ୍ଚନ
ପରମ ନିର୍ବାଣ ମୁକ୍ତି ପାଏ ସେହି ଜନ ।
ପୂର୍ବକାଳରୁ ମନିଷୀଗଣ କହିଛନ୍ତି
ନିଜେ କୀର୍ତ୍ତି ଅନୁଷ୍ଠାନ କଲେ ନାହିଁ ଖ୍ୟାତି ।
ଯେ ଜନ ପରକୀର୍ତ୍ତିକୁ ରକ୍ଷା କରିପାରେ
ପରଦତ୍ତ ସମ୍ପତ୍ତିକୁ ରଖେ ଯତନରେ ।
ତାହାର ଏପରି କର୍ମ ଅଟେ ଶ୍ରେଷ୍ଠତମ
ନିଜ କଲା କୀର୍ତ୍ତିଠାରୁ ପ୍ରଶସ୍ତ ଜାଣିମ ।
ଜୈମିନି କହନ୍ତି ସର୍ବ ମୁନିଗଣ ଶୁଣ
ଇନ୍ଦ୍ରଦ୍ୟୁମ୍ନ ବାକ୍ୟ ଶୁଣି ସେ ଶ୍ୱେତ ରାଜନ ।
ସୂତ୍ର ଗୁନ୍ଥାମାଳା ପରି ଅତି ଆନନ୍ଦରେ
ଆଦେଶ ଗ୍ରହଣ କଲେ ନିଜ ମସ୍ତକରେ ।
ଏହାପରେ ଇନ୍ଦ୍ରଦ୍ୟୁମ୍ନ ରାଜର୍ଷି ପ୍ରଧାନ
ପୂଜାରେ ଜଗନ୍ନାଥଙ୍କୁ କରିଲେ ପ୍ରସନ୍ନ ।
ମହର୍ଷି ନାରଦଙ୍କର ସଙ୍ଗେ ଚଳିଗଲେ
ବ୍ରହ୍ମଲୋକେ ଆନନ୍ଦରେ ପ୍ରବେଶ ହୋଇଲେ ।
ମୁନିଗଣ ତୁମ୍ଭେମାନେ ଆନନ୍ଦେ ପୁଚ୍ଛିଲ
ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ଶୁଣିଲ ।
ନିତ୍ୟ ନିରଞ୍ଜନ ଦାରୁବ୍ରହ୍ମ ସନାତନ
ଶ୍ରୀ ଜଗନ୍ନାଥ ପ୍ରଭୁଙ୍କ ମହିମା ଏସନ ।
ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ଯେ ଶୁଣେ
ବ୍ରାହ୍ମଣ ମୁଖରୁ ଅତି ଆନନ୍ଦିତ ମନେ ।
ସହସ୍ରେକ ଅଶ୍ୱମେଧ ଯାଗଫଳ ପାଏ
ଇହଲୋକେ ସୁଖ ପରଲୋକେ ମୁକ୍ତ ହୁଏ ।

Digitized by srujanika@gmail.com

ପୂର୍ବେ କାର୍ତ୍ତିକେୟ ଅର୍ଦ୍ଧଯୋଗ ସ୍ନାନଫଳ
କହିଥିଲେ ଋଷିଗଣ ଶୁଣିଛ ସକଳ ।
ତାହାଠାରୁ ହୁଏ କୋଟିଗୁଣ ପୁଣ୍ୟଲାଭ
କ୍ଷେତ୍ର ମାହାତ୍ମ୍ୟ ଶ୍ରବଣ କରେ ଯେ ମାନବ ।
ଯେ ବ୍ୟକ୍ତି ପ୍ରଭାତ କାଳେ ଭଗବାନଙ୍କର
ପବିତ୍ର ମହିମାଗାନ କରଇ କେବଳ ।
ଶତେକ କପିଳା ଧେନୁ କରିଥିଲେ ଦାନ
ଅବା ଗଙ୍ଗା ପୁଷ୍କରାଦି ତୀର୍ଥଜଳେ ସ୍ନାନ ।
ଏ ସକଳ ପୁଣ୍ୟଫଳେ ହୁଏ ଅଧିକାରୀ
ଯଶ ଆୟୁଷ ସନ୍ତାନ ବଢ଼ଇ ତାହାରି ।
ପୁଣ୍ୟ ଲାଭକରି ସ୍ୱର୍ଗେ କରଇ ଗମନ
ପାପ ଦୂର ହୁଏ ତାର ସାର୍ଥକ ଜୀବନ ।
ମୁନିଗଣ ଯେ ବିଷୟ କରିଲ ଶ୍ରବଣ
ଅନ୍ୟ ପୁରାଣରେ ଗୁପ୍ତ ଏ ବିଷୟ ମାନ ।
ବିଷ୍ଣୁଭକ୍ତ ଯେ ନୁହଇ ତାହା ନିକଟରେ
ପ୍ରକାଶ କରିବ ନାହିଁ କୌଣସି କାଳରେ ।
ଯାହାର ଅନ୍ତକରଣ କୁତର୍କରେ ପୂର୍ଣ୍ଣ
ଶ୍ରୁତିସ୍ମୃତି ପୁରାଣାଦି ଶାସ୍ତ୍ରେ ନାହିଁ ଜ୍ଞାନ ।
ନାସ୍ତିକ ଦାମ୍ଭିକ ପର ଦୋଷ ଯେ ଦେଖଇ
ବିଷ୍ଣୁଭକ୍ତ ନିନ୍ଦା କରି ଜୀବନ ଯାପଇ ।
ଇଦୃଶ ଜନ ନିକଟେ କରିବ ଗୁପତ
ପୁରୁଷୋତ୍ତମ କ୍ଷେତ୍ରର ନିର୍ଣ୍ଣୟ ବୃତ୍ତାନ୍ତ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ପାଞ୍ଚ ଚାରି ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ଜଗନ୍ନାଥ ତୁମ୍ଭେ ନୀଳାଚଳେ କରି ବାସ
ପାପୀଜନ ଉଦ୍ଧାରିବ କରିଛ ସାହସ ।
ପତିତପାବନ ବ୍ରତ ଅଛଇ ତୁମ୍ଭର
ତେଣୁ ପାପ କରିବାକୁ ମନେ ନାହିଁ ଡର ।
ମୋପରି ପାତକୀ ଯଦି ନ ହେବ ମୁକତ
ପତିତପାବନ ବ୍ରତ ହେବ ସିନା ବ୍ୟର୍ଥ ।
ଥରେ ତବ ନାମ କରିନାହିଁ ଉଚ୍ଚାରଣ
କରିନାହିଁ ଦିନେ ମାତ୍ର ଶ୍ରୀପଦେ ପ୍ରଣାମ ।
ତେଣୁ ମୁକ୍ତିପଥ ମୋତେ ଆଉ ଦିଶୁନାହିଁ
ପତିତପାବନ ବ୍ରତ କରିଛ ଗୋସାଇଁ ।
ବ୍ରତ ଛିଣ୍ଡାଇବ କିମ୍ବା ମୋ ପାପ ନାଶିବ
ବ୍ରତ ଛିଣ୍ଡିଗଲେ ତିନିଲୋକେ ନିନ୍ଦା ହେବ ।
ଏହି ହେତୁ ପ୍ରଭୁ ମନେ କରନ୍ତୁ ବିଚାର
ପାପ କଳ୍ମଷ ନାଶିବ କହେ ହରିହର ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମଲୋକ ଗମନେ ନାମ ପଞ୍ଚଚତ୍ୱାରିଂଶ ଅଧ୍ୟାୟଃ

## ଷଟ୍ ଚତ୍ୱାରିଂଶ ଅଧ୍ୟାୟ

କାର୍ତ୍ତିକ କହନ୍ତି ଶୌନକାଦି ମୁନିଗଣ
ଜୈମିନି ଋଷିଙ୍କଠାରୁ କରିଲେ ଶ୍ରବଣ ।
ଦାରୁବ୍ରହ୍ମଙ୍କର ଗୁପ୍ତ ଚରିତ ସକଳ
ଶୁଣନ୍ତେ ପରମାନନ୍ଦ ଲଭିଲେ ତତ୍କାଳ ।
ବିସ୍ମୟେ ଉତ୍ଫୁଲ୍ଲ ନେତ୍ରେ ରୋମାଞ୍ଚ ଶରୀର
ଜୀବନକୁ କୃତ୍ୟ କୃତ୍ୟ ମଣିଲେ ସକଳେ ।
ଏ ପୁରୁଷୋତ୍ତମ କ୍ଷେତ୍ର ଆଶ୍ଚର୍ଯ୍ୟ ରୂପରେ
ମୁକ୍ତିଦାନ କରେ ଏହା ଭାବିଲେ ମନରେ ।
ଏ କ୍ଷେତ୍ରର ଗୁପ୍ତକଥା ଜାଣି ତ ନ ଥିଲୁ
ଭାଗ୍ୟବଳୁ ଜୈମିନିଙ୍କ ମୁଖରୁ ଶୁଣିଲୁ ।
ସାକ୍ଷାତରେ ବିଷ୍ଣୁତୁଲ୍ୟ ଜୈମିନି ମହର୍ଷି
ବିସ୍ତାରି କହିଲେ ସର୍ବ ସମକ୍ଷରେ ବସି ।
ଏ କ୍ଷେତ୍ରରେ ଦାରୁବ୍ରହ୍ମ ସଦା ବିଦ୍ୟମାନ
ମୁକ୍ତି ପ୍ରଦାନ କରନ୍ତି ହୋଇଲେ ମରଣ ।
କେଉଁ ହେତୁ ଭ୍ରମ ହୋଇ ସର୍ବ ଜନଗଣ
ଦୁଃଖ ଭୋଗୀ ଯମାଳୟେ କରନ୍ତି ଗମନ ।
ଭଗବାନଙ୍କର ମାୟା ଅଟଇ ବିଚିତ୍ର
ସେହିପରି ଆଶ୍ଚର୍ଯ୍ୟ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ।
ବ୍ରହ୍ମରୂପୀ ଭଗବାନଙ୍କର ପ୍ରିୟତମ
ସର୍ବକ୍ଷେତ୍ର ମଧ୍ୟେ ଶ୍ରେଷ୍ଠ ଶ୍ରୀପୁରୁଷୋତ୍ତମ ।
ମିଳି ସର୍ବ ଋଷିଗଣ ବେଗେ ଚାଲିଯିବା
ପୁରୁଷୋତ୍ତମ କ୍ଷେତ୍ରରେ ବସତି କରିବା ।
ପଞ୍ଚଭୂତରେ ବିକାର ଏ ଦେହ ପିଣ୍ଡରେ
ପ୍ରବେଶ କରିବା ନାହିଁ କସ୍ମିନ କାଳରେ ।
ଯେକୌଣସି ଜୀବ ଏହି କ୍ଷେତ୍ରର ମଧ୍ୟରେ
ପ୍ରାଣ ତ୍ୟାଗ କରେ ଯାଏ ବଇକୁଣ୍ଠପୁରେ ।
ତେଣୁ ଅତି ପୁଣ୍ୟତମ ଆଶ୍ଚର୍ଯ୍ୟ ଏ କ୍ଷେତ୍ର
ଏକ ଜନ୍ମେ ଯୋଗୀଗଣ କେଉଁସ୍ଥାନେ ମୁକ୍ତ ।
ଅଷ୍ଟାଙ୍ଗ ଯୋଗରେ ଆଉ ନାହିଁ ପ୍ରୟୋଜନ
ନିଶ୍ଚୟ ଏ କ୍ଷେତ୍ର ମୁକ୍ତି କରଇ ପ୍ରଦାନ ।
ମୁନିଗଣ ମନେ ଏହା କରନ୍ତି ବିଚାର
ଜୈମିନିଙ୍କ ଶିଷ୍ୟ ଉଦ୍ଦାଳକ ଋଷିବର ।
ଜୈମିନି ମୁନିଙ୍କ ବାକ୍ୟ କରିଣ ଶ୍ରବଣ
ତାହାଙ୍କର ପରିତୃପ୍ତି ହେଲାନାହିଁ ମନ ।
ସାଷ୍ଟାଙ୍ଗ ପ୍ରଣାମ କରି ମୁନିଙ୍କ ପୟରେ
କୃତାଞ୍ଜଳି ପୁଟେ ପଚାରିଲେ ନତଶିରେ ।
ହେ ମୁନି ଆମ୍ଭଙ୍କୁ ଯେଣୁ କଲ ଅନୁଗ୍ରହ
ତେଣୁ ପ୍ରଶ୍ନ ପୁଛିବାକୁ ବଳୁଛି ଆଗ୍ରହ ।



Digitized by srujanika@gmail.com

ଗୁରୁଦେବ ପୂର୍ବେ ମୋତେ ଅନୁଗ୍ରହ କଲେ
ମୀମାଂସା ଶାସ୍ତ୍ର ଜାଣିଲି ଉତ୍ତମ ରୂପରେ ।
ବ୍ୟାସମୁନି ଅଷ୍ଟାଦଶ ବିଦ୍ୟାର ମଧ୍ୟରେ
ବେଦ ବିଭାଗ କରିଲେ ସହସ୍ର ଶାଖାରେ ।
ସେହି ବେଦ ନାନାଶାସ୍ତ୍ରେ ହୋଇ ପରିଣତ
ଅଳ୍ପ ବୁଦ୍ଧି ଲୋକେ ବୁଝିବାକୁ ଅସମର୍ଥ ।
କର୍ତ୍ତବ୍ୟା କର୍ତ୍ତବ୍ୟ କରିବାକୁ ନିରୂପଣ
ସାଧାରଣରେ ଅବୋଧ୍ୟ ଅତ୍ୟନ୍ତ କଠିନ ।
ଏଣୁ କର୍ମକାଣ୍ଡ ପ୍ରତି ଶ୍ରଦ୍ଧା କମିଗଲା
ବେଦ ପଢ଼ିବାକୁ ମନେ ଉତ୍ସାହ ନ ହେଲା ।
ପରମ ଜ୍ଞାନ ସମ୍ପନ୍ନ ଅଟନ୍ତି ଆପଣ
କର୍ମ କାଣ୍ଡର ମୀମାଂସା କଲେ ପ୍ରଣୟନ ।
ଆପଣଙ୍କ ପ୍ରଚାରିତ ମୀମାଂସା ଶାସ୍ତ୍ରରେ
ମନ୍ତ୍ରାତ୍ମକ ବେଦ ଅଛି କେତେକ ସ୍ଥାନରେ ।
ବେଦର କେତେକ ମନ୍ତ୍ର କର୍ମର ସାଧକ
ସେହି ମନ୍ତ୍ର କେତେ ସ୍ଥାନେ କର୍ମ ପ୍ରବର୍ତ୍ତକ ।
ସେ ବେଦର କେତେ ଅଂଶ ନିନ୍ଦାସ୍ତୁତି ହୀନ
ସ୍ତବକ ସ୍ୱରୂପ ଅର୍ଘ୍ୟ ଅତି ମନୋରମ ।
ବେଦର ପ୍ରମାଣ ରୂପେ ଏ ସକଳ ଗ୍ରନ୍ଥ
କର୍ମ ସାଧନତା ହେତୁ ବେଦରୂପେ ଖ୍ୟାତ ।
ଏ ରୂପେ ବେଦରୁ କରି ମନ୍ତ୍ର ନିର୍ବାଚନ
ମନ୍ତ୍ରାତ୍ମା ମୀମାଂସା ଶାସ୍ତ୍ର କଲ ପ୍ରଣୟନ ।
ଶାସ୍ତ୍ରୋକ୍ତ ସକଳ ମନ୍ତ୍ର ଉପାସନା କଲେ
ଧର୍ମ ଅର୍ଥ କାମ ମୋକ୍ଷ ମିଳେ ତତକାଳେ ।
ସ୍ତୁତ୍ୟାତ୍ମକ ବେଦ ସ୍ତୁତି ଅର୍ଥରେ କେବଳ
ପ୍ରବୃତ୍ତି ମାର୍ଗରେ ଦେଇଥାଏ ଇଷ୍ଟଫଳ ।
ବିଧାନ ବାଦ ମନ୍ତ୍ରରେ ହୁଅଇ ସାଧନ
ଅଗ୍ନିଷ୍ଟୋମ ଯାଗେ ପୂଜା ଉପହାର ଦାନ ।
ଗୁରୁଦେବ ଆପଣ ତ ବୁଦ୍ଧିମାନ ବ୍ୟକ୍ତି
ବେଦକୁ ବିଭାଗ କଲେ ମନେ ବହି ପ୍ରୀତି ।
ଜୀବଗଣ ଯେଉଁ ବିଧି କଲେ ଆଚରଣ
ଶୁଭଫଳ ଲାଭ କରିଥାନ୍ତି ତତକ୍ଷଣ ।
ଏହିରୂପେ କର୍ମ ମାର୍ଗ କରି ପ୍ରବର୍ତ୍ତନ
ବେଦାଚାର ଶିଖାଇଲେ ଲୋକଙ୍କୁ ଆପଣ ।
ବେଦ ମର୍ଯ୍ୟାଦା ରହିଲା ମୀମାଂସା ଶାସ୍ତ୍ରରେ
ଏ ସଂସାର ଭ୍ରମ ଦୂର ହେବ ଯେ ପ୍ରକାରେ ।
ସିଦ୍ଧିବାଦ ଅର୍ଥବାଦ ମୂଳକ ବେଦାନ୍ତ
ଶ୍ରବଣ ମାତ୍ରେ ସ୍ୱରୂପ ହୁଅଇ ପ୍ରାପତ ।
ଅନାଦି କାଳୁ ଅବିଦ୍ୟା ସମ୍ଭୁତ ଅଜ୍ଞାନ
ଦେହ ଇନ୍ଦ୍ରିୟ ବିଷୟେ ରତ ଅନୁଦିନ ।
ବେଦାନ୍ତ ଶ୍ରବଣ ମାତ୍ରେ ହୁଅଇ ବିଲୀନ
ମୁକ୍ତ ସ୍ୱରୂପରେ କରେ ନିତ୍ୟ ଅବସ୍ଥାନ ।
ମନ୍ତ୍ରାତ୍ମକ ଶାସ୍ତ୍ରେ ଉକ୍ତ ଅଛି ଯେତେ ମନ୍ତ୍ର
ଉପାସନା କଲେ ସିଦ୍ଧି ଲାଭ ନିଶ୍ଚୟ ତ ।
କେବଳ ପୁରୁଷୋତ୍ତମ କ୍ଷେତ୍ରେ ମୃତ୍ୟୁ ହେଲେ
ମୁକ୍ତିଲାଭ ହେବ ବୋଲି ଆପଣ କହିଲେ ।
ଆପଣଙ୍କର ଏକଥା ଅର୍ଥବାଦ ସମ
ଏପରି ସଂଶୟ ଜନ୍ମିଅଛି ମୋର ମନ ।
ଭଗବାନଙ୍କ ସହିତ ବହୁଳ ପ୍ରକାରେ
ଲାଭ ହୁଏ ଉପାସନା କଲା ମାତ୍ରକରେ ।
ଏହା ବେଦମାନ ଆଉ ସକଳ ଶାସ୍ତ୍ରରେ
ସ୍ଥିର କରାଯାଇ ଅଛି ବିଶଦ ଭାବରେ ।
କେବଳ ପୁରୁଷୋତ୍ତମ କ୍ଷେତ୍ରେ ମୃତ୍ୟୁ ହେଲେ
ହେ ମୁନି ମୁକତି ଲାଭ ହେବ କି ପ୍ରକାରେ ।
ଜୈମିନି କହିଲେ ବତ୍ସ ମନ ଦେଇ ଶୁଣ
ବେଦୋକ୍ତ କର୍ମ ସକଳ କଲେ ଆଚରଣ ।
ପୁନଃ ପୁନଃ ସଂସାରକୁ କରେ ଯାତୟାତ
ଜାଣିଛ ତ ଭିନ୍ନ ନୁହେ ବ୍ରହ୍ମ ଏହି କ୍ଷେତ୍ର ।
ତଥାପି ଏ ରୂପ ଭାବ ମନେ ହେଲା ଜାତ
ପରଂବ୍ରହ୍ମ ସଙ୍ଗେ କ୍ଷେତ୍ର ପୃଥକ ନୁହେଁ ତ ।
ହେ ବତ୍ସ ଯେ ରୂପେ ବ୍ରହ୍ମ ଅଟଇ ଗୁପତ
ସେହିରୂପେ ଏ ପୁରୁଷୋତ୍ତମ କ୍ଷେତ୍ର ଗୁପ୍ତ ।
ଏ କ୍ଷେତ୍ର ଅଟଇ ସାକ୍ଷାତରେ ବିଷ୍ଣୁରୂପ
ପରଂବ୍ରହ୍ମଙ୍କର ଅଛି ଦ୍ୱିବିଧ ସ୍ୱରୂପ ।
ଶବ୍ଦବ୍ରହ୍ମ ପରଂବ୍ରହ୍ମ ଏ ଦୁଇ ରୂପରେ
ଶବ୍ଦ ବ୍ରହ୍ମ ନାନା ଅର୍ଥ ରୂପରେ ବିହରେ ।
ଶବ୍ଦବ୍ରହ୍ମ ଚରାଚର ଜଗତ ସମ୍ଭୁତ
ଶବ୍ଦବ୍ରହ୍ମ ଦାରୁରୂପେ ହୁଏ ପରିଚିତ ।
ଦେହରେ ଜୀବାତ୍ମାପରି ସେ ଏହି କ୍ଷେତ୍ରରେ
ବାସ କରିଛି ସଂଶୟ ନ କର ମନରେ ।
କେବଳ ସଂଯତ ଚିତ୍ତେ ଦର୍ଶନ କରିଲେ
ଦେହରୁ ପାପ କଞ୍ଚୁକ ଦୂର ହୁଏ ଭଲେ ।
ଯେହେତୁ ଦର୍ଶନ କଲେ ତା ପାପ ବିନାଶ
ଯୋଗୀ ସମାନରେ ବୈକୁଣ୍ଠରେ କରେ ବାସ ।
ଦର୍ଶନ ହେତୁ ଏହାକୁ ଗୌଣ ଫଳ କହି
ମୁଖ୍ୟ ଫଳ ଆଉ ଯାହା ଶୁଣ ମନଦେଇ ।
ବିଷ୍ଠା ଭୋଜି କୁକୁର ଯେ ଚଣ୍ଡାଳ ଗୃହରେ
ମୃତ୍ୟୁ ହେଲେ ମୁକ୍ତିଲାଭ ହୁଏ ଏ କ୍ଷେତ୍ରରେ ।
ଏହି ହେତୁ ଅଳ୍ପ ଭାଗ୍ୟବାନ୍ତ ଯେଉଁ ଜନ
ପୁରୁଷୋତ୍ତମରେ ହୁଏ ନାହିଁ ତା ମରଣ ।

Digitized by srujanika@gmail.com

ଯେ ବ୍ୟକ୍ତି ସହସ୍ରେ ଜନ୍ମ କରି ନାନା ଯତ୍ନ
ସକଳ ପାତକ ରାଶି ହୁଅଇ ବିଲୀନ ।
ଶ୍ରୀକ୍ଷେତ୍ରକୁ ସେହି ବ୍ୟକ୍ତି କରଇ ଗମନ
ଏହି କଥାରେ ସଂଶୟ ମନରେ ନ ଘେନ ।
ସଂଯତ ଆତ୍ମା ବିଚାରବନ୍ତ ଯେଉଁଜନ
ଶ୍ରୀ କ୍ଷେତ୍ରରେ ହୋଇଥାଏ ତାହାର ମରଣ ।
ଏ କ୍ଷେତ୍ର ମାହାତ୍ମ୍ୟ ଜାଣିକରି ଯେଉଁ ବ୍ୟକ୍ତି
ପ୍ରଭୁଙ୍କ ଚରଣେ କରୁଥାଏ ନିତି ଭକ୍ତି ।
ସେ ଜନ ଏ କ୍ଷେତ୍ରେ ପ୍ରାଣତ୍ୟାଗ କଲାବେଳେ
ଆତ୍ମଜ୍ଞାନ ପ୍ରକାଶଇ ତା ହୃଦ କମଳେ ।
ଦୀନାର୍ତ୍ତ ନାଶନ ଲକ୍ଷ୍ମୀକାନ୍ତ ଏ କ୍ଷେତ୍ରରେ
ମୃତ୍ୟୁ କେବଳ ଜୀବଗଣଙ୍କ କର୍ଣ୍ଣମୂଳେ ।
ସ୍ୱୟଂ ଆସି ବ୍ରହ୍ମବିଦ୍ୟା କରନ୍ତି କୀର୍ତ୍ତନ
ସନ୍ଦେହ ନ କର ଏ କଥାରେ କଦାଚନ ।
ବ୍ରହ୍ମଜ୍ଞାନ ଲାଭ ହେତୁ ମୁମୁର୍ଷୁ ଜନର
ସେହିକାଳେ ମୋହ ଆଚରଣ ହୁଏ ଦୂର ।
ପ୍ରଭୁଙ୍କୁ ସାକ୍ଷାତେ କରେ ସେହି ଦରଶନ
ଏ ସ୍ଥାନକୁ ଏକବାର କରିଲେ ଗମନ ।
ଜନନୀ ଜଠରେ ଆଉ ନ ହୁଏ ଜନମ
ମୁମୁର୍ଷୁ ମାନବ ଯଦି ଆସେ ଏହିସ୍ଥାନ ।
ଜଳେ ଜଳକଣା ଯେହ୍ନେ ମିଶଇ ତକ୍ଷଣ
ବ୍ରହ୍ମରୂପେ କରେ ବିଶ୍ୱମଧ୍ୟେ ବିଚରଣ ।
ପ୍ରକୃତରେ ବ୍ରହ୍ମଜ୍ଞାନ ବିନା ମୁକ୍ତି ନାହିଁ
କିନ୍ତୁ ଜ୍ଞାନ ଜ୍ଞେୟ ରୂପ ବିଘ୍ନ ଅଛି ତହିଁ ।
ଆତ୍ମଜ୍ଞାନ ଲାଭଅର୍ଥେ ବହୁତ ଜନ୍ମରେ
ଦୁଃଖ ଭୋଗୀ ଯୋଗୀଗଣ ରତ ସାଧନରେ ।
ଦେହଧାରୀ ଜନଗଣ ଅବ୍ୟକ୍ତୋପାସନା
କରିବାକୁ ଅସମର୍ଥ ସଦାକାଳେ ସିନା ।
କେହି କେହି ଗୁରୁମୁଖୁଁ ସାଧନା ବିଷୟ
ଶୁଣନ୍ତେ ବିରତ ହୋନ୍ତି ମନେ କରି ଭୟ ।
ଆଉ କେହି ଯୋଗାଭ୍ୟାସ ଆରମ୍ଭ କରନ୍ତି
ଅସମ୍ଭବ ଦୁଃଖ ଭୋଗୀ ନିବୃତ୍ତ ହୁଅନ୍ତି ।
ବିଶେଷତଃ ଗୁରୁ ସେବା ବିଷୟେ ଯାହାର
ଶ୍ରଦ୍ଧା ନ ହୁଅଇ ସିଦ୍ଧି ନ ହୁଏ ତାହାର ।
ମତ୍ତହସ୍ତୀ ପରି ଏହି ମନକୁ ଯେ ଜନ
ଅଷ୍ଟାଙ୍ଗ ଯୋଗ ଅଭ୍ୟାସେ କରଇ ଅଧୀନ ।
ଆତ୍ମଜ୍ଞାନ ଲାଭ ବିଷୟରେ ସେହି ଜନ
ଅଧିକାରୀ ହୋଇଥାଏ ଏ ଶାସ୍ତ୍ର ବଚନ ।
ବହୁ ଜନ୍ମ ଏହିରୂପେ ସାଧନା କରିଲେ
ମନ ନିଶ୍ଚୟ ହୁଅଇ-ଭାଗ୍ୟୋଦୟ ହେଲେ ।
ଆତ୍ମ ବୃତ୍ତି ଲଭି ମନ ହୁଅଇ ନିର୍ମଳ
ମୋକ୍ଷଲାଭେ ଅଧିକାରୀ ହୁଏ ସେ କେବଳ ।
ଅନ୍ୟ ଉପାୟରେ ମୋକ୍ଷ ଲାଭ ହୁଏ ନାହିଁ
ବତ୍ସ ଉଦ୍ଦାଳକ ଏବେ ଶୁଣ ମନ ଦେଇ ।
ମୋକ୍ଷର ସ୍ୱରୂପ ଏବେ କରୁଛି ବର୍ଣ୍ଣନ
ଯେ ବିଷୟେ ଭ୍ରମ ହୋଇଥାନ୍ତି ମୁନିଗଣ ।
ବିଶଦ କରି କହୁଛି ଶୁଣ ସେ ବିଷୟ
ତୁମ୍ଭ ମନେ ନ ରହିବ ଆଉ ଯେ ସଂଶୟ ।
ଶ୍ରୀସ୍କନ୍ଦ ପୁରାଣେ ଉକ୍ତ ଉତ୍କଳ ଖଣ୍ଡରେ
ଷଟ ଚାରି ଛାନ୍ଦଶେଷ ଉତ୍କଳ ଭାଷାରେ ।
ଜୟ ଜୟ ଜଗନ୍ନାଥ କରୁଣା ନିଧାନ
ପାପ ନାଶକାରୀ ନାମ ପତିତପାବନ ।
ପତିତପାବନ ବାନା ଉଡ଼େ ଦେଉଳରେ
ପାପୀଗଣେ ମୁକ୍ତି ହୋନ୍ତି ଦେଖି ନୟନରେ ।
ଦୂରକୁ ପଳାଇ ଯାନ୍ତି ଯମଦୂତ ଗଣ
ପ୍ରସିଦ୍ଧି ଲଭିଛି ନାମ ପତିତପାବନ ।
ଭକ୍ତଗଣଙ୍କୁ ଉଦ୍ଧାର କରୁଅଛ ନିତି
ଗ୍ରହଣ କରନ୍ତୁ ହରିହରର ପ୍ରଣତି ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳ ଖଣ୍ଡେ
କ୍ଷେତ୍ର ମହିମା ବର୍ଣ୍ଣନେ ନାମ
ଷଟ୍‌ଚତ୍ୱାରିଂଶୋଽଧ୍ୟାୟଃ ।

□□

## ସପ୍ତଚତ୍ୱାରିଂଶ ଅଧ୍ୟାୟ

ଜୈମିନି କହନ୍ତି ବତ୍ସ ସର୍ବ ଜୀବଗଣ
ଆତ୍ମଜ୍ଞାନରେ କରନ୍ତି ସଦା ବିଚରଣ ।
ପ୍ରତ୍ୟେକ କରନ୍ତି ଆନନ୍ଦରେ ଅବସ୍ଥାନ
ଆତ୍ମା କୁଟସ୍ଥ ନିର୍ମଳ ଆଦି ଅନ୍ତ ଶୂନ୍ୟ ।
ନିତ୍ୟ ସନାତନ ସର୍ବୋପାଧି ବିବର୍ଜିତ
ସର୍ବଗତ ସୂକ୍ଷ୍ମ ବିଭୁ ନିଷ୍କ୍ରିୟ ଶ୍ରୀବନ୍ତ ।
ଶୋକ ମୋହ ଜରା ବ୍ୟାଧି କ୍ଷୁଧା ତୃଷ୍ଣାଶୂନ୍ୟ
ପଞ୍ଚ କ୍ଳେଶ ହୀନ ଆତ୍ମା ସର୍ବଦା ସମାନ ।
ଅନାଦି ଅବିଦ୍ୟା ଜାତ ବାସନା ବଳରେ
ଅହଙ୍କାର ଯୁକ୍ତ ଚିତ୍ତ ବୃତ୍ତି ସହିତରେ ।
ମିଳିତ ହୋଇଲେ ଆତ୍ମା ଭ୍ରମରେ ପଡ଼ଇ
ଦେହ ଧରି ରକ୍ତ ମାଂସେ ଭ୍ରମଣ କରଇ ।
ସେ କାଳେ ଆତ୍ମା ତ୍ରିଗୁଣେ ହୁଅଇ ବନ୍ଧନ
ଅବଶ ହୋଇ ପଡ଼ଇ ନ ଥାଏ ସ୍ୱାଧୀନ ।
ଗନ୍ଧର୍ବ ନଗରୋପମ ଏ ମାୟା ଜଗତ
ମିଥ୍ୟାନୁହେଁ ମନେ କରେ ପ୍ରକୃତ ଏ ସତ୍ୟ ।

Digitized by srujanika@gmail.com

ଯେହେତୁ ପଞ୍ଚବିଂଶତି ତତ୍ତ୍ୱେ ଯୁକ୍ତ ହୋଇ
ପଞ୍ଚଭୌତିକ ଦେହରେ ଆଶ୍ରୟ ନିଅଇ ।
ଅବିକାରୀ ଆତ୍ମା ବିକାରକୁ ପ୍ରାପ୍ତ ହୋଇ
ଶୋକ ମୋହାଦିରେ ଦୁଃଖାର୍ଣ୍ଣବେ ନିମଜ୍ଜଇ ।
ଭୂତ ଲାଗିଲେ ମନୁଷ୍ୟ ଯେଉଁପରି ହୋନ୍ତି
ଅଜ୍ଞାନ ମୋହରେ ଆତ୍ମା ହୁଏ ସେହିମତି ।
ନିଜର ସଚିଦାନନ୍ଦ ରୂପ ଭୁଲି ଯାଏ
ମନଇଚ୍ଛା ଅନୁସାରେ କାର୍ଯ୍ୟ କରିଥାଏ ।
ଆତ୍ମା ଯେ ରୂପେ ଦୁଃଖରୁ ହୋଇବ ମୁକତ
ସେ ରୂପେ କାର୍ଯ୍ୟ ସାଧନ କରିବା ଉଚିତ ।
ମୋକ୍ଷ ଅର୍ଥେ ନିଜେ କାର୍ଯ୍ୟ କରି ନ ପାରିଲେ
ଆତ୍ମତତ୍ତ୍ୱଲାଭ ନୁହେଁ କେବଳ ଶୁଣିଲେ ।
ଯେତେବେଳେ ଭ୍ରାନ୍ତି ଆବରଣ ଦୂର ହୋଇ
ନିର୍ମଳ ଆକାଶପରି ଆତ୍ମା ପ୍ରକାଶଇ ।
ସେ କାଳେ ସ୍ୱରୂପେ ଆତ୍ମା କରେ ଅବସ୍ଥାନ
ଯେ ରୂପେ ନଭୋମଣ୍ଡଳ କଲେ ଦରଶନ ।
ନୟନରେ ଦେଖାଯାଏ ସିନା ସେହି ବର୍ଣ୍ଣ
କିନ୍ତୁ ଆକାଶ ନୁହଇ କେବେ ନୀଳବର୍ଣ୍ଣ ।
ନିରୂପାନ୍ତରାତ୍ମା ସେହିପରି ହୋଇଥାଇ
ଭ୍ରାନ୍ତି ଯୋଗେ ସୂକ୍ଷ୍ମଜୀବ ରୂପେ ଦେଖାଯାଇ ।
ନିର୍ମଳ ନିର୍ଗୁଣ ନିରାକରଣ ଆତ୍ମାରେ
ଆନନ୍ଦ ମନ କେବଳ ବୋଧ ସ୍ୱରୂପରେ ।
ଅବିଦ୍ୟା ହେତୁ କିପରି ଜାତ ହେଲା ଭ୍ରାନ୍ତି
ପ୍ରତ୍ୟକ୍ଷ ବସ୍ତୁରେ ସିନା ଭ୍ରାନ୍ତିର ଉତ୍ପତ୍ତି ।
ଯେପରି ନିଜର କଣ୍ଠାଭରଣ ମାଳାରେ
ସର୍ପଜ୍ଞାନ ଜନ୍ମିଥାଏ ଭ୍ରମ ବଶତରେ ।
ସେ ରୂପେ ନିଜ ପ୍ରତ୍ୟକ୍ଷ ବିଷୟେ ଆତ୍ମାର
ଭ୍ରାନ୍ତି ଜାତ ହୋଇଥାଏ ମନରେ ବିଚାର ।
ଜ୍ଞାନ ବ୍ୟତୀତ କର୍ମରେ କୌଣସି ପ୍ରକାରେ
ଆତ୍ମାର ମୋକ୍ଷସାଧନ ହୋଇ ଯେ ନ ପାରେ ।
ଆତ୍ମତତ୍ତ୍ୱ ଅନ୍ୱେଷଣ ଜ୍ଞାନରେ କରିଲେ
ଦୁର୍ଲ୍ଲଭ ଯେ ଆତ୍ମତତ୍ତ୍ୱ ଲାଭ ହୋଇପାରେ ।
ବସ୍ତ ଏହି କୁରୁକ୍ଷେତ୍ର ପୁରୁଷୋତ୍ତମରେ
ମରଣ ପଥେ ଗମନ ଯେଉଁ ଜୀବଙ୍କରେ ।
ଭଗବାନଙ୍କ ଦୟାରେ ହୁଏ ଜ୍ଞାନୋଦୟ
ପ୍ରାଣୀମାନଙ୍କ ପକ୍ଷେ ସୁଲଭ ନିଶ୍ଚୟ ।
ଏ କ୍ଷେତ୍ରେ ମରଣ ଇଚ୍ଛା କରେ ଯେଉଁ ଜନ
ତାଙ୍କୁ ପ୍ରଭୁ ଜଗନ୍ନାଥ ହୁଅନ୍ତି ପ୍ରସନ୍ନ ।
ଦାରୁରୂପୀ ଜଗନ୍ନାଥଙ୍କର ଏ କ୍ଷେତ୍ରରେ
ଶେଷକାଳେ ପ୍ରାଣ ତ୍ୟାଗ ଯେ କରି ନ ପାରେ ।
ମୁକ୍ତିଲାଭ ଅର୍ଥେ କରିଥାଏ ଯେତେ କର୍ମ
ପ୍ରକୃତ କର୍ମ ରୂପରେ ନ ହୁଏ ଗଣନ ।
ମୁକ୍ତିର ମୂଳ ସାଧନ ଏକ ଆତ୍ମା ତତ୍ତ୍ୱ
ଶ୍ରବଣ ଭଜନ ନିଦିଧ୍ୟାସନରୁ ଜାତ ।
ତଦ୍ରୂପ ଏହି କ୍ଷେତ୍ରରେ ହୋଇଲେ ମରଣ
ସାକ୍ଷାତେ ମୁକ୍ତି ସାଧନ ରୂପରେ ଜାଣିମ ।
ଅଭୟାସ୍କାନ୍ତ ମଣି ଅତି ବୃହତ ପାଷାଣ
ସମାନ ଲୋକପିଣ୍ଡକୁ କରେ ଆକର୍ଷଣ ।
ସେହିପରି ପ୍ରାଣୀଙ୍କର ଜନ୍ମାନ୍ତର କର୍ମ
ନିର୍ବୀଜ ହୁଅଇ କ୍ଷେତ୍ରେ ହୋଇଲେ ମରଣ ।
କର୍ମର ଶୁଭ ଅଶୁଭ ଫଳ ନାଶ ହେଲେ
ଆତ୍ମାର ନିଜ ସ୍ୱରୂପ ପ୍ରକାଶ ସେ କାଳେ ।
କର୍ମ ଫଳରେ ଆବଦ୍ଧ ଜୀବଯେବେ ହୁଏ
ଶୃଙ୍ଖଳା ବଦ୍ଧ ବୟସ ପରି ଭ୍ରମୁଥାଏ ।
ବତାସେ କାଳ ଯେ ରୂପେ ଆକାଶ ମଣ୍ଡଳେ
ଭ୍ରମର କରେ ଅନ୍ୟତ୍ର ବସା ନ ପାଇଲେ ।
ନିଜର ପୂର୍ବସ୍ଥାନରେ ନିଶ୍ଚଳେ ବସଇ
ସେ ରୂପେ ବାସନା ବଶେ ଆତ୍ମା ଭ୍ରମୁଥାଇ ।
ପଞ୍ଚବିଂଶ ତତ୍ତ୍ୱାତ୍ମକ ଏ ଦେହ ପିଣ୍ଡରେ
ସଦା ଆବଦ୍ଧ ସତ୍ତ୍ୱାଦି ତ୍ରିଗୁଣ ସୂତ୍ରରେ ।
ଏ ପୁରୁଷୋତ୍ତମ କ୍ଷେତ୍ରେ ପ୍ରାଣତ୍ୟାଗ ହେଲେ
ପ୍ରଭୁଙ୍କର ଦୟାକ୍ଷେତ୍ରେ ମାହାତ୍ମ୍ୟ ବଳରେ ।
ଜୀବର ବାସନା ରଜ୍ଜୁ କ୍ଷୟ ହୋଇଯାଏ
ସେହି ଜୀବ ବିଷ୍ଣୁଙ୍କର ସ୍ୱରୂପକୁ ପାଏ ।
ଯେଉଁ ସ୍ଥାନକୁ ଗମନ କଲେ ପୁନର୍ବାର
ଆଉ ଦେହ ବନ୍ଧନରେ ନ ପଡ଼ନ୍ତି ନର ।
ବିଷ୍ଣୁଙ୍କ ପରମ ପଦ ଲାଭ ସେହି କରେ
ଉଦ୍ଦାଳକ ଏହିକଥା ବିଚାର ମନରେ ।
ଏହା ଅର୍ଥବାଦ ବୋଲି ଆଶଙ୍କା ନ କର
ଏ କ୍ଷେତ୍ରେ ଦେହ ବନ୍ଧନ ଛିଡ଼ଇ ଆତ୍ମାର ।
ବନ୍ଧନ ଛିଡ଼ିଲେ ଆତ୍ମା ପୁଣି ଆଉଥରେ
ଦେହ ରୂପ ବନ୍ଧନରେ ନ ପଡ଼େ ସଂସାରେ ।
ଏ ଆତ୍ମା ସନ୍ନ୍ୟାସ ଯୋଗ ଯୋଗୀଙ୍କ ପକ୍ଷରେ
ଦୁର୍ଲ୍ଲଭ ଅଟଇ ଏହି କ୍ଷେତ୍ରର ମଧ୍ୟରେ ।
ବୃତ୍ତି ନରୋଧ ଏ କ୍ଷେତ୍ରେ ଦେହ ବିସର୍ଜନ
ଏ ଦୁଇ ଅଟଇ ଏକା ମୁକ୍ତିର ସାଧନ ।
ଏ ଦୁଇ ବ୍ୟତୀତ ଆଉ ଅନ୍ୟ ଉପାୟରେ
ମୁକ୍ତିଲାଭ ହୁଏ ନାହିଁ କୌଣସି ପ୍ରକାରେ ।
କାଶୀ ଧାମରେ ମୁମୁର୍ଷୁ ବ୍ୟକ୍ତିକୁ ସନ୍ଦେଶ
ଦିଅନ୍ତି ପ୍ରକୃତ ବ୍ରହ୍ମଜ୍ଞାନ ଉପଦେଶ ।

Digitized by srujanika@gmail.com

ଏହା ସତ୍ୟକଥା ଜୀବ ସେ ଜ୍ଞାନ ବଳରେ
ଯୋଗ ସାଧି ଶୁଭାଶୁଭ କର୍ମ କ୍ଷୟ କରେ ।
ତଦନ୍ତରେ ମୁକ୍ତିଲାଭ ତାହାଂର ନିଶ୍ଚିତ
ପୂର୍ବକାଳରୁ ଏକଥା ସକଳେ ବିଦିତ ।
କିନ୍ତୁ ବହୁଦିନ ପୂର୍ବେ ସେହି କାଶୀତୀର୍ଥ
ଗଣେଶଙ୍କ ଭୟେ ହୋଇଅଛି ଅନ୍ତର୍ହିତ ।
ମୁନିଗଣ ମୁଁ ତୁମ୍ଭଙ୍କୁ କହିଅଛି ପୂର୍ବେ
ମହାଦେବ ତ୍ୟାଗ କଲେ କାଶୀଧାମ ଯେବେ ।
ସେହି ମହାଦେବ କାଶୀରାଜାଙ୍କ ନିମିତ୍ତ
ଭଗବାନଙ୍କରଠାରୁ ହୋଇଲେ ଲାଞ୍ଛିତ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ସାତ ଚାରି ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ହେ ପ୍ରଭୁ ପୂର୍ବରେ କେଉଁ ଦୋଷ କରିଥିଲି
ଯେଉଁ ହେତୁ ନିତିପ୍ରତି ଲାଞ୍ଛନା ଭୋଗିଲି ।
ଆପଣ ହୃଦୟେ ରହି ପ୍ରେରଣା ଦିଅନ୍ତି
ଶୁଭାଶୁଭ ବିଚାର ଯେ ନ କରଇ ମତି ।
କର୍ତ୍ତବ୍ୟ ଜ୍ଞାନରେକର୍ମ ସାଧନ କରୁଛି
କର୍ମଦ୍ୱାରା କର୍ମ କ୍ଷୟହୁଏ ଶୁଣିଅଛି ।
ଭୂତପରି ଶୁଭାଶୁଭ ବିଚାର ନ କରେ
କର୍ମ ସାଧନରେ ରତ ରାତ୍ର ଦିବସରେ ।
ଇତର ଜନ ଦେଖିଲେ ବିଦ୍ରୁପ କରନ୍ତି
ଯାହା ମନଗତ ଭାବ ତାହା ନ ବୁଝନ୍ତି ।
ଦୀନବନ୍ଧୁ ଦୟାସିନ୍ଧୁ ବେଗେ ଦୟା କର
ଏ ଦୁଃଖ ସାଗରେ ଭାସୁଅଛି ପାରିକର ।
ପ୍ରାଣୀମାନଙ୍କର ଦୁଃଖରୁ କରନ୍ତୁ ଉଦ୍ଧାର
କରଯୋଡ଼ି ଜଣାଉଛି ଦୀନ ହରିହର ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳଖଣ୍ଡେ କ୍ଷେତ୍ର
ମାହାତ୍ମ୍ୟ ବର୍ଣ୍ଣନ ପ୍ରସଙ୍ଗେ ଜୈମିନି ମୁନି
ଉଦ୍ଦାଳକ ଋଷି ସମ୍ବାଦେ ନାମ
ସପ୍ତଚତ୍ୱାରିଂଶୋଽଧ୍ୟାୟଃ ।

❑❑

## ଅଷ୍ଟଚତ୍ୱାରିଂଶ ଅଧ୍ୟାୟ

ଜୈମିନି ମୁନି କହିଲେ ଋଷିଗଣ ଶୁଣ
ସେ କାଶୀ ଧାମର କଥା କହୁଅଛି ପୁଣ ।
ଅଦ୍ୟାପି ବୃଷଭ ଧ୍ୱଜ ସେ କାଶୀ ଧାମରେ
ଅବସ୍ଥିତ ରହିଛନ୍ତି ପ୍ରକୃତ ରୂପରେ ।
ସତ୍ୟ ତ୍ରେତୟା ଦ୍ୱାପର ଏ ତିନିଯୁଗରେ
ଶିବ ବାସ କରିଥାନ୍ତି ସେ କାଶୀ ଧାମରେ ।
ଘୋ କଳିଯୁଗ ଆସି ହେଲେ ଉପସ୍ଥିତ
କାଶୀଧାମ ସହ ଶିବ ହେଲେ ଅନ୍ତର୍ହିତ ।

ଅନ୍ୟାନ୍ୟ ତୀର୍ଥ ସକଳ ଏ କଳିକାଳରେ
ଯଥୋଚିତ ଫଳ ଦାନ ନ କରନ୍ତି ହେଲେ ।
ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଚାରିଯୁଗେ ସତ୍ୟ
ଫଳ ଦାନ ବିଷୟରେ ସର୍ବଦା ସମର୍ଥ ।
ସେ ସ୍ଥାନେ କୌଣସି ପାପ ପ୍ରବେଶ ନ କରେ
ଧର୍ମ ସ୍ରଷ୍ଟା ଭଗବାନ ସ୍ୱୟଂ ସେ କ୍ଷେତ୍ରରେ ।
ଜୀବଗଣଙ୍କର ନାଶୁଅଛନ୍ତି ଅଜ୍ଞାନ
ତତ୍ତ୍ୱଜ୍ଞାନ ଦେବାଅର୍ଥେ ସଦା ସାବଧାନ ।
ପ୍ରାଣୀମାନଙ୍କର ଅନାୟାସେ ସେହି କ୍ଷେତ୍ର
ଚତୁର୍ବର୍ଗ ସାଧନାରେ ସର୍ବଦା ସମର୍ଥ ।
ଏ ହେତୁ ପୁରୁଷୋତ୍ତମ କ୍ଷେତ୍ରେ ଜୀବଗଣ
ବାସ କରିବା କର୍ତ୍ତବ୍ୟ ରୂପରେ ଗଣନ ।
ଅତି ଦୁର୍ମତି ଅଶୁଚି ପାପିଷ୍ଠ ଚଣ୍ଡାଳ
ଅନ୍ତ୍ୟଜ ଦ୍ୱିଜ ବିଦ୍ୱାନ ଧାର୍ମିକ ସକଳ ।
ବସବାସ କରିବାକୁ ସେ କ୍ଷେତ୍ରେ ସମାନ
ସେ ସ୍ଥାନରେ ଦେବଗଣ ଇଚ୍ଛନ୍ତି ମରଣ ।
ଏ କ୍ଷେତ୍ରେ ମରଣ ହେଲେ ଆତ୍ମା ସାକ୍ଷାତ୍କାର
ଲାଭ କଲେ ମୁକ୍ତି ହୁଏ ସକଳ ପ୍ରକାର ।
ଏହିକଥା ବିଧିବାଦ ଅର୍ଥବାଦ ଦୁଇ
କେବଳ ବିଧି ବା ଅର୍ଥବାଦ ଯେ ନୁହଇ ।
ନିନ୍ଦା ବା ପ୍ରଶଂସା ରୂପ ଅଟେ ଅର୍ଥବାଦ
କର୍ତ୍ତବ୍ୟ ରୂପରେ ପରିଚିତ ବିଧିବାଦ ।
କାଳାଧୀନ ମୃତ୍ୟୁଯୋଗେ ମୋକ୍ଷଲାଭ ହୁଏ
ଏଣୁ ବିଧିବାଦ ଅର୍ଥେବାଦ ମୋକ୍ଷ ନୁହେଁ ।
ମୋକ୍ଷ ବିଧିବାଦ ଅର୍ଥବାଦର ପୃଥକ
ଜୀବମାନଙ୍କ ପକ୍ଷରେ ଏହା ବାସ୍ତବିକ ।
ବସ୍ତ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ମରଣ
ବିଷୟରେ ସନ୍ଦେହ ତ ମନରେ ନ ଆଣ ।
ଯେ ଜନ ସଂସାର କାର୍ଯ୍ୟେ ସର୍ବଦା ଆସକ୍ତ
ତା ମନେ ବିଶ୍ୱାସ ହେବ ନାହିଁ କଦାଚିତ ।
ଅନାଦି ଅବିଦ୍ୟା ଜାତ ସଂସାର ପ୍ରକୃତି
ମନରେ ଥିଲେ ଏ କ୍ଷେତ୍ର ଗୁପ୍ତ ତାହାପ୍ରତି ।
ଆତ୍ମା ସାକ୍ଷାତର ମୁକ୍ତି ପ୍ରସିଦ୍ଧବେଦରେ
ଯୋଗୀଏ ଯତ୍ନ କରନ୍ତି ସେହି ବିଷୟରେ ।
ଆତ୍ମ ଦର୍ଶନ ନିମିତ୍ତ କରନ୍ତି ଉଦ୍ୟମ
ଯବ ବ୍ରୀହି ରୂପେ ପୃଥକ୍ ମୁକ୍ତି ଓ ଦର୍ଶନ ।
ଏତିକି ପାର୍ଥକ୍ୟ ଯଦି ବିଘ୍ନ ନ ଘଟଇ
ଯୋଗବଳରେ ମୁକତି ଅବଶ୍ୟ ମିଳଇ ।
ମହ୍ୟକତ୍ୟରାଦି ଚତୁଷ୍ଟୟର ମଧ୍ୟରେ
ପ୍ରାଣତ୍ୟାଗ କଲେ ମୁକ୍ତି ଲାଭ ନିର୍ବିଘ୍ନରେ ।

Digitized by srujanika@gmail.com

ପୁରୁଷୋତ୍ତମ କ୍ଷେତ୍ରରେ ଯେତେ ଅବତାର
ପ୍ରଥମରେ ହେଲେ ମୂର୍ତ୍ତି ମତ୍ସ୍ୟ ଅବତାର ।
ଅବତୀର୍ଣ୍ଣ ହୋଇ ପୂର୍ବଦିଗେ ଅବସ୍ଥିତ
ଶ୍ୱେତ ମାଧବ ନାମରେ ପଶ୍ଚିମରେ ଖ୍ୟାତ ।
ଏ କ୍ଷେତ୍ରରେ କଳ୍ପବଟ ସାଗର ମଧ୍ୟରେ
ଚତୁର୍ମଧ୍ୟ ସ୍ଥଳ ବୋଲି ପ୍ରସିଦ୍ଧ ସଂସାରେ ।
ଏହି ଚତୁର୍ମଧ୍ୟ ସ୍ଥଳେ ପ୍ରାଣତ୍ୟାଗ କଲେ
ମୁକତି ଲଭନ୍ତି ଜୀବଗଣ ନିର୍ବିଘ୍ନରେ ।
ଏ ଚାରି ସ୍ଥଳକୁ ସ୍ୱର୍ଗଦ୍ୱାର ବୋଲି କହି
ପୂର୍ବକାଳ କଥା କହେ ଶୁଣ ମନଦେଇ ।
ମୁନିବର ଦୁର୍ବାସା ଯେ ଏକଦିନେ ଗଲେ
ବ୍ରହ୍ମାଙ୍କର ସମ୍ମୁଖରେ ଯାଇ ଜଣାଇଲେ ।
ଦୁର୍ବାସା ମୁନି ରୁଦ୍ରଙ୍କ ଅଂଶେ ଅବତୀର୍ଣ୍ଣ
ଶୈଶବ କାଳରୁ ଲଭୁଥିଲେ ବ୍ରହ୍ମଜ୍ଞାନ ।
ତପସ୍ୟାରେ ରତ ସଦା ଏକ ସମୟରେ
ସ୍ୱଇଚ୍ଛାରେ ଚତୁର୍ଦ୍ଦଶ ଭୁବନ ବୁଲିଲେ ।
ମନୁଷ୍ୟଙ୍କର ଆଚାର ଏହି ପୃଥିବୀରେ
ଦେଖିବାକୁ ଇଚ୍ଛା ହେଲା ତାହାଙ୍କ ମନରେ ।
ମଧ୍ୟ ଦେଶରେ ଦେଖିଲେ ଦୁଇଟି ବ୍ରାହ୍ମଣ
ତପୋନିଷ୍ଠ ସଦାଚାରୀ ଗୃହୀ ଏକ ଜଣ ।
ଅନ୍ୟ ବିପ୍ରେ ପ୍ରତିଦିନ ରହି ସଦାଚାରେ
ବିଷ୍ଣୁଙ୍କ ଭଜନ କରେ ନିଷ୍କାମ ଭାବରେ ।
କିନ୍ତୁ ବିଷ୍ଣୁଭକ୍ତ ବିପ୍ର କେତେ କାଳପରେ
ବୌଦ୍ଧନାସ୍ତିକର ବାକ୍ୟେ ପଡ଼ିଲା ଲୋଭରେ ।
ଶାସ୍ତ୍ରାଚାର ଛାଡ଼ି ଦେଲା ଧନ ଲାଳସାରେ
ସର୍ବଦା ଆସକ୍ତ ହେଲା ବିଷୟ ଭୋଗରେ ।
ଏହିପରି କେତେକାଳ ହୋଇଲା ଅତୀତ
ଧନାର୍ଥୀ ଜ୍ୟୋତିଷ ଏକ ସମୀପେ ଆଗତ ।
ତାହାକୁ ସେ ଦୁଇବିପ୍ର ଆଦର କରିଲେ
ନିଜ ନିଜର ଆୟୁଷ କଥା ପଚାରିଲେ ।
ସେ ଗଣକ ଏହା ଶୁଣି ଗଣନା କରିଲେ
ଦୁଇଙ୍କର ମୃତ୍ୟୁ ପଞ୍ଚତ୍ରିଂଶ ଦିନପରେ ।
ଗଣକର ବାକ୍ୟ ଶୁଣି ସେ ଦୁଇ ବ୍ରାହ୍ମଣ
ପୁନର୍ବାର ପଚାରିଲେ ହେ ଗଣକ ଶୁଣ ।
ମୃତ୍ୟୁ ହେବ ମୁକ୍ତିକ୍ଷେତ୍ରେ ବା ଅନ୍ୟ କ୍ଷେତ୍ରରେ
ସ୍ୱଗୃହରେ କିବା ଆଉ କୌଣସି ସ୍ଥାନରେ ।
କି ରୂପେ ମରଣ ହେବ କହ ମହାଶୟ
ବିଚାରି କହ ଯେପରି ଛାଡ଼ିବ ସଂଶୟ ।
ଏହା ଶୁଣି ସେ ଗଣକ ବିଚାରି କହିଲେ
ଗୃହସ୍ଥକୁ ମୃତ୍ୟୁ ହେବ ନଦୀର ସ୍ରୋତରେ ।
ଉତ୍ତମ ଗତି ଦେବତ୍ୱ ଲଭିବେ ନିଶ୍ଚୟ
ସ୍ୱର୍ଗ ଭୁବନେ ରହିବ ନ କର ସଂଶୟ ।
ଦ୍ୱିତୀୟକୁ ହସି ହସି କହିଲେ ବଚନ
ହେ ବିପ୍ର ଆପଣ ପ୍ରକୃତରେ ଭାଗ୍ୟବାନ ।
ନିଧନ ସ୍ଥାନରେ ଉଚ୍ଚ ହୋଇ ବୃହସ୍ପତି
ଆପଣଙ୍କୁ ପ୍ରାପ୍ତି ହେବ ନିର୍ବାଣ ମୁକତି ।
ହେ ବିପ୍ର ଯେଉଁ ସ୍ଥାନରେ ହେବ ଉପସ୍ଥିତ
ମାନବର ପାପରାଶି ହୁଏ ଧ୍ୱଂସ ପ୍ରାପ୍ତ ।
ସେହି ପରମ ପବିତ୍ର ପୁରୁଷୋତ୍ତମରେ
ଆପଣଙ୍କ ମୃତ୍ୟୁ ହେବ ରଖନ୍ତୁ ମନରେ ।
ସେ ସ୍ଥାନରେ ଦାରୁଦେହ ଧରି ଭଗବାନ
ମୁମୂର୍ଷ ଜନକୁ କରୁଛନ୍ତି ମୁକ୍ତି ଦାନ ।
ଗଣକଠାରୁ ଏକଥା ଶୁଣି ବିପ୍ରବର
ନିଜ ଭାଗ୍ୟକୁ ପ୍ରଶଂସା କରିଲେ ଅପାର ।
ପୁନର୍ବାର ବିଷ୍ଣୁଭକ୍ତ ହେବାକୁ ଇଚ୍ଛିଲେ
ତାଙ୍କର ଆତ୍ମା ପବିତ୍ର ହେଲା ସେ କାଳରେ ।
ନିର୍ଲୋଭରେ ଗଣକକୁ ଧନରତ୍ନ ଦେଲେ
ଆନନ୍ଦେ ପାଛୋଟି ଯାଇ ବିଦାୟ କରିଲେ ।
ପୁରୁଷୋତ୍ତମ କ୍ଷେତ୍ରକୁ କରିବେ ଗମନ
କେଉଁପଥେ କେଉଁରୂପେ ଭାବିଲେ ତକ୍ଷଣ ।
ଶ୍ରୀସ୍କନ୍ଦ ପୁରାଣେ ଉକ୍ତ ଉତ୍କଳ ଖଣ୍ଡରେ
ଆଠ ଚାରି ଛାନ୍ଦ ଶେଷ ଉତ୍କଳ ଭାଷାରେ ।
କଂସକେଶୀ ନିସୂଦନ ପାଣ୍ଡବ ଶରଣ
ବୃନ୍ଦାବନ ଚନ୍ଦ୍ରକୃଷ୍ଣ ଯଶୋଦା ନନ୍ଦନ ।
ହେ ଦୁଃଖୀ ଜନସୋଦର ସଙ୍କଟୁ ଉଦ୍ଧର
ହେ ପ୍ରଭୁ ମୋ ଡାକ ଶୁଣି ବେଗେ ଦୟା କର ।
ମମତା ପାଶକୁ ବେଗେ କରନ୍ତୁ ଛେଦନ
ଶ୍ରୀଚରଣେ ହରିହର ମାଗୁଛି ଶରଣ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
କ୍ଷେତ୍ରବାସ ଫଳ ବର୍ଣ୍ଣନେ
ଅଷ୍ଟଚତ୍ୱାରିଂଶୋଽଧ୍ୟାୟଃ ।

□□

## ଏକନୋପଞ୍ଚଶତ ଅଧ୍ୟାୟ

ଜୈମିନି କହିଲେ ବତ୍ସ ସାବଧାନେ ଶୁଣ
ସେ ଦ୍ୱିଜ ପୁରୁଷୋତ୍ତମ କରିବେ ଗମନ ।
କିପରି ଯିବେ ଏ ଚିନ୍ତା କରନ୍ତି ମନରେ
ଦୁର୍ବାସା ଋଷି ମିଳିଲେ ବିପ୍ର ନିକଟରେ ।
ଦେଖିବା ମାତ୍ରେ ଦୁର୍ବାସା ଋଷିକୁ ବ୍ରାହ୍ମଣ
ପାଦ୍ୟ ଆସନ ଦେଇଣ କରିଲେ ଅର୍ଚ୍ଚନ ।

Digitized by srujanika@gmail.com

ମୁନିବର ଆସନରେ ଆନନ୍ଦେ ବସିଲେ
ସେ ଦ୍ୱିଜ ବିନୟେ ନମ୍ର ବଚନ କହିଲେ ।
ହେ ମୁନି ଆପଣ ମୋର ଗୃହେ ଉପସ୍ଥିତ
ତେଣୁ ମୋର ଭାଗ୍ୟବଳ ବଢ଼ିଛି ବହୁତ ।
କୃତାର୍ଥ ହୋଇଛି ଏଣୁ ମୋର ଏ ଜନମ
ଧର୍ମ ସ୍ୱରୂପ ସାକ୍ଷାତେ ଅଟନ୍ତି ଆପଣ ।
କେବେହେଲେ ଅଳ୍ପ ଭାଗ୍ୟଶାଳୀ ଜନଗଣ
ଆପଣଙ୍କର ଦର୍ଶନେ ନୁହନ୍ତି ଭାଜନ ।
ହେ ଋଷି ପବିତ୍ର ହେଲି କରିଣ ଦର୍ଶନ
ଦିଅନ୍ତୁ ଆଦେଶ ତାହା କରିବି ପାଳନ ।
ଏହିରୂପେ ସେ ବ୍ରାହ୍ମଣ କହନ୍ତେ ବଚନ
ହସି ହସି କହିଲେ ସେ ବ୍ରହ୍ମାଙ୍କ ନନ୍ଦନ ।
ହେ ବିପ୍ର ମୁଁ ଯୋଗୀବର ନୁହେଁ ପ୍ରକୃତରେ
କି ହେତୁ ଏପରି କଥା କହ ମୋ ଆଗରେ ।
ଏକମାସ ପରେ ତୁମ୍ଭେ ଆମ୍ଭମାନଙ୍କର
ନମସ୍କରଣୀୟ ହେବ ଆହେ ଦ୍ୱିଜବର ।
ବେଦୋକ୍ତ ସାଧନାମାନ ନ କରି ସାଧନ
ଅବିଳମ୍ୱେ ମୋକ୍ଷପଦ ଲଭିବ ବ୍ରାହ୍ମଣ ।
ଦୁର୍ବାସା ଋଷି କହିଲେ ଏ ରୂପେ ବଚନ
ଏହା ଶୁଣି ପଚାରିଲେ ସେ ବିପ୍ର ନନ୍ଦନ ।
ହେ ମୁନି ଆପଣ ସଦା ସତ୍ୟ କହିଥାନ୍ତି
ସ୍ୱପନରେ ମଧ୍ୟ ମିଥ୍ୟା କଥା ନ କହନ୍ତି ।
ଏ ଦାସ ଜନକୁ ପରିହାସ କର ନାହିଁ
ଏହାକି ପ୍ରକୃତ ସତ୍ୟ କହନ୍ତୁ ବୁଝାଇ ।
ଆପଣ କରନ୍ତୁ ମୋତେ ଅଭୟ ପ୍ରଦାନ
ବିବେକହୀନ ମୁଁ ସ୍ୱେଚ୍ଛାଚାରୀ ପାପୀଜନ ।
ଦୃଢ଼ରୂପେ କାମନାରେ ଆବଦ୍ଧ ମୋ ମନ
ତ୍ୟାଗ କରିନାହିଁ କରୁଅଛି ଗୃହଧର୍ମ ।
ବିଷୟ ଭୋଗର ଇଚ୍ଛା କ୍ଷଣକାଳ ପାଇଁ
ମୋ ମନରୁ କେବେ ଅନ୍ତର୍ହିତ ହୋଇନାହିଁ ।
ବୁଦ୍ଧଗଣ କହୁଛନ୍ତି ମାନବ ମନରେ
ଜୀବନ ଧାରଣେ ଭିନ୍ନ କାମନା ନ ଥିଲେ ।
ଉଭୟ ଭୋଗରେ ଫଳ କାମନା ନ ଥିବ
ମୁକ୍ତିଲାଭେ ଅଧିକାର ତେବେ ସିନା ହେବ ।
ମମତା ରହିଛି ମୋର ପାର୍ଥିବ ବସ୍ତୁରେ
ଭକ୍ତିଲାଭ କରିବି ମୁଁ କେବଣ ପ୍ରକାରେ ।
ତେବେ ଅବଶ୍ୟ ଜୀବର ବନ୍ଧନ ଫିଟିବ
ଅଶେଷ ଜନ୍ମର ପାପମାନ ବିନାଶିବ ।
ହେ ମୁନି କହନ୍ତୁ ମୋତେ ଏକଥା ବୁଝାଇ
ଦୁର୍ବାସା କହନ୍ତି ବ୍ରାହ୍ମଣର ମୁଖ ଚାହିଁ ।

ହେ ବିପ୍ର ଯାହା କହିଲ ତାହା ମିଥ୍ୟା ନୁହେଁ
ଯେ ରୂପେ ହୋଇବ ମୋକ୍ଷ ଶୁଣ ତାହା କହେ ।
ପୂର୍ବଜନ୍ମେ ଥିଲ ତୁମ୍ଭେ ଶ୍ରେଷ୍ଠ ବିଷ୍ଣୁଭକ୍ତ
ତୀର୍ଥଯାତ୍ରା କଲ ବନ୍ଧୁବାନ୍ଧବ ସହିତ ।
ଲୋକେ ପ୍ରସିଦ୍ଧ ପୁରୁଷୋତ୍ତମ କ୍ଷେତ୍ରବରେ
ପ୍ରବେଶ ହୋଇଲ ଯାଇଁ ମକର ମାସରେ ।
ନିଷ୍ପାପ ହୋଇଣ ସ୍ନାନ କରି ସମୁଦ୍ରରେ
ଏକାଦଶୀ ଦିନ ବିଷ୍ଣୁ ପ୍ରୀତି ଉଦ୍ଦେଶ୍ୟରେ ।
ପ୍ରଭୁଙ୍କୁ ପୂଜିଲେ ନାନାବିଧ ଉପଚାରେ
କୁନ୍ଦପୁଷ୍ପ ମାଳା ଦେଇ ରାତ୍ରି ଉଜାଗରେ ।
ସେ ଦିନକ ଉପବାସ କରି ପ୍ରଭାତରେ
ପ୍ରଭୁଙ୍କୁ ପୂଜିଲ ପୁଣି ଭକତି ଭାବରେ ।
ଜଗନ୍ନାଥଙ୍କର ପ୍ରୀତି ଅର୍ଥେ କଲ ଦାନ
ବ୍ରାହ୍ମଣମାନଙ୍କୁ ଭୋଜ୍ୟ ଆସନ ବସନ ।
ବନ୍ଧୁଗଣ ସଙ୍ଗେ ଗୃହେ କଲ ଆଗମନ
ମୋକ୍ଷଲାଭେ ଅଧିକାରୀ ହୋଇଛ ବ୍ରାହ୍ମଣ ।
ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଉତ୍କଳ ଦେଶରେ
ରହିଛି ଦକ୍ଷିଣ ମହୋଦଧିଚି କୂଳରେ ।
ଅଳ୍ପ ଭାଗ୍ୟଶାଳୀ ପକ୍ଷେ ଦୁଷ୍ପ୍ରାପ୍ୟ ଅଟଇ
ତା ତତ୍ତ୍ୱ ବ୍ରହ୍ମା ଶଙ୍କର ନ ଜାଣନ୍ତି କେହି ।
ସେ ତୀର୍ଥେ ଜନମ କରି ନିଷ୍ପାପୀ ହୋଇଛ
କର୍ମକ୍ଷୟ ଅର୍ଥେ ଏହି ଦେହ ଧରିଅଛ ।
ସେ କର୍ମ ଫଳରୁ ତୁମ୍ଭେ ହୋଇବ ମୁକତ
ଗୃହେ ରହି ସଙ୍ଗ ଦୋଷେ ହୋଇବ ଦୂଷିତ ।
ପାଷାଣ୍ଡ ସଙ୍ଗକୁ ତୁମ୍ଭେ କରିଲେ ତ୍ୟକତ
ମହାପ୍ରସାଦ ଭୋଜନେ ହୋଇବ ପବିତ୍ର ।
ସମ୍ପ୍ରତି ପୁରୁଷୋତ୍ତମ କରନ୍ତୁ ଗମନ
ଭଗବାନଙ୍କ ଚରଣେ ଯାଆନ୍ତୁ ଶରଣ ।
ଗୃହରେ ସଞ୍ଚୟ କରିଅଛ ଯେତେ ଧନ
ତାହା କୁଟୁମ୍ବମାନଙ୍କୁ କରନ୍ତୁ ପ୍ରଦାନ ।
ଜୈମିନି କହନ୍ତି ମୁନି ଦୁର୍ବାସା କହିଲେ
ସେ ବିପ୍ର ଶୁଣି ମନରେ ଆନନ୍ଦ ଲଭିଲେ ।
ତକ୍ଷଣ ମନରେ ଜ୍ଞାନ ଉଦୟ ହୋଇଲା
ଗୃହ ଧନ ବନ୍ଧୁ ମିତ୍ର ମମତା ଛାଡ଼ିଲା ।
ଅତି ଶୀଘ୍ର ସେହି ବିପ୍ର ଘରୁ ବାହାରିଲେ
ଦୁର୍ବାସା ମୁନିଙ୍କ ସଙ୍ଗେ ଶ୍ରୀକ୍ଷେତ୍ରେ ଚଳିଲେ ।
ପରଦିନ ଚିତ୍ତଶୁଦ୍ଧ ପରୀକ୍ଷା ନିମିତ୍ତ
ପଥେ ଯାଉଁ ଯାଉଁ ମୁନି ହେଲେ ଅନ୍ତର୍ହିତ ।
ସେହି ବିପ୍ର କେତେ ପଦ ଗମନ କରିଲେ
ଦୁର୍ବାସା ମୁନିଙ୍କୁ ଆଉ ଦେଖି ନ ପାରିଲେ ।

Digitized by srujanika@gmail.com

କାତର ମନେ ଭୟରେ କଲେ ପଳାୟନ
ଭାବିଲେ ଏକାକୀ ହୋଇଯିବି ମୁଁ କେସନ ।
ବୃକ୍ଷଶୂନ୍ୟ ଦୂରପଥେ କିଛି ଚିହ୍ନ ନାହିଁ
ଅନ୍ତର ହୋଇଲେ ମୁନି କିଛି ତ ନ କହି ।
ସାଧୁଙ୍କର ଆଚରଣ ନୁହେଁ ତ ଏପରି
ଦୁର୍ଗମ ପଥେ ଏକାକୀ ଯିବି ମୁଁ କିପରି ।
ମୁନିଙ୍କ ଆଶ୍ରମ କେଉଁସ୍ଥାନେ ଜାଣେ ନାହିଁ
କେଉଁଆଡ଼େ ଗଲେ ମୋତେ କିଛି ଯେ ନ କହି ।
ନ କହିଣ ଚାଲିଯିବା ସାଧୁଙ୍କ ପକ୍ଷରେ
କେବେ ଉଚିତ ନୁହଇ କୌଣସି କାଳରେ ।
ଦୁଃଖର କଥା ଏ ମୋର ଆତ୍ମୀୟ ସ୍ୱଜନ
ପରିତ୍ୟାଗ କଲି ଗୃହ ବସ୍ତ୍ର ଧନ ଧାନ୍ୟ ।
ପୁରୁଷୋତ୍ତମ କ୍ଷେତ୍ରକୁ ଯାଇ ନ ପାରିଲି
ଆଜି ଏ ଦୁର୍ଗମ ପଥେ ବିନାଶ ଲଭିଲି ।
ଭିକ୍ଷାର୍ଥୀ ଗଣକ ନିତ୍ୟ ଗଣନା କରିଣ
ବୃଦ୍ଧ ହେଲେଣି ତ ମିଥ୍ୟା ନ ହେବ ବଚନ ।
ମନୁଷ୍ୟକୁ ହିଂସା କରି ମାୟାବୀ ରାକ୍ଷସ
ଧାରଣ କରନ୍ତି ଛଦ୍ମ ମୁନିଙ୍କର ବେଶ ।
ମାୟାକରି ମନୁଷ୍ୟକୁ ସଙ୍ଗରେ ନିଅନ୍ତି
ଦୂର ପ୍ରଦେଶରେ ଯାଇଁ ବିନାଶ କରନ୍ତି ।
ପ୍ରଥମରୁ ନ କରିଲି ବିଚାର ମନରେ
ସୁଖ ପ୍ରଦ ବସ୍ତୁ ଲାଭ ହେବ ଏ ଲକ୍ଷ୍ୟରେ ।
ବିଚାର ନ କରି ମନେ କରିଛି ଅନ୍ୟାୟ
ଶ୍ରେୟ ଲାଭ ହେବ ନାହିଁ ଏ ପଥେ ନିଶ୍ଚୟ ।
ଦୈବ ବଳରୁ ବଞ୍ଚିତ ହେଲି ଯେତେବେଳେ
ମଙ୍ଗଳ ଲାଭ ତ ନାହିଁ ମୋହର କପାଳେ ।
ଆତ୍ମୀୟଜନ ବିରହେ ଆକୁଳ ହେଉଛି
ଆକାଶେ ତ୍ରିଶଙ୍କୁ ପରି ଅର୍ଦ୍ଧପଥେ ଅଛି ।
ମୋ ଇଚ୍ଛାରେ କଲି କେତେ ଧନ ଉପାର୍ଜନ
ଘରେ ସଞ୍ଚୟ କରିଛି ଭୋଗ୍ୟ ବସ୍ତୁମାନ ।
ସେହି ବିଭବ ଏକ୍ଷଣି ତ୍ୟାଗ କରିଅଛି
ଚୋରପରି ଏ ଦୁର୍ଗମ ପଥେ ଯାଉଅଛି ।
କେଉଁପଥେ ଯିବି ସ୍ଥିର କରି ନ ପାରଇ
ବିପ୍ର ଏ ଚିନ୍ତାରେ ଦୀର୍ଘ ନିଃଶ୍ୱାସ ଛାଡ଼ଇ ।
ସେ କାଳେ ଦେଖିଲେ ଏକ ପତିବ୍ରତା ନାରୀ
ଭୟରେ ଦେହ କମ୍ପଇ ସର୍ବାଙ୍ଗ ସୁନ୍ଦରୀ ।
ଲାବଣ୍ୟ ସିନ୍ଧୁର ରତ୍ନ ପରି ଶୋଭାମାନ
କାମ ଦେବଙ୍କର ସମ୍ମୋହନ ଅସ୍ତ୍ର ସମ ।
ନାରୀଗଣ ସୌନ୍ଦର୍ଯ୍ୟର ଶେଷ ସୀମାପରି
ସ୍ତ୍ରୀ ରତ୍ନ ମଧ୍ୟରେ ଶ୍ରେଷ୍ଠ ଏକା ସେହି ନାରୀ ।।

ସେ ନାରୀକୁ ଦେଖି ବିପ୍ର ଚିନ୍ତିଲେ ମନରେ
ଏପରି ନାରୀ ରତନ ନାହିଁ ସ୍ୱର୍ଗପୁରେ ।
ବିଶାଳ ନଗର କେତେ କରିଛି ଭ୍ରମଣ
ଏପରି ରମଣୀ କାହିଁ ନ କରି ଦର୍ଶନ ।
ରାଜାମାନଙ୍କର ଅନ୍ତପୁରର ମଧ୍ୟରେ
ଏପରି ରମଣୀ ରତ୍ନ ନାହିଁ ତିନିପୁରେ ।
ଏ ନାରୀ ଦେହ ସୌନ୍ଦର୍ଯ୍ୟ ଯେପରି ଦିଶଇ
ଦେବ ଲୋକରେ ଦୁର୍ଲ୍ଲଭ ପରି ମନେ ହୋଇ ।
ଏକାକିନୀ ଆସି ଏ ସ୍ଥାନରେ ଉପସ୍ଥିତ
ଦୁର୍ଗମ କାନ୍ତାର ପଥ କରୁଛି ଭୂଷିତ ।
ମୋ ଦୃଷ୍ଟିପଥରେ ରହିଅଛି ଏ ରମଣୀ
ମୋ ଚିତ୍ତ ବୃତ୍ତିକୁ ବେଗେ ନେଉଅଛି ଟାଣି ।
ଏ ନାରୀ ସଙ୍ଗରେ କରିବାକୁ ସହବାସ
ଉତ୍କଣ୍ଠା ଜାତ ହୋଇବ ମନରେ ଅବଶ୍ୟ ।
ବ୍ରାହ୍ମଣ ଏପରି ଚିନ୍ତା କରନ୍ତି ମନରେ
ସେ ନାରୀ ଆସି ମିଳିଲା ତାଙ୍କ ନିକଟରେ ।
ଭୟ ଛାଡ଼ି ଲଜ୍ଜାରେ ସେ ରହିଲା ମଉନ
ସ୍ନେହ ଦୃଷ୍ଟିରେ ବିପ୍ରଙ୍କୁ କଲା ନିରୀକ୍ଷଣ ।
ସେ ବ୍ରାହ୍ମଣ କାମଶରେ ହୋଇଣ ପୀଡ଼ିତ
ବ୍ୟାକୁଳ ଚିତ୍ତେ ନାରୀକୁ ପୁଚ୍ଛିଲେ ଏମନ୍ତ ।
ହେ ମୁଗ୍ଧ ତୁମ୍ଭେ କିଏ କାନ୍ତାର ପଥରେ
ଏକାକିନୀ ଯାଉଅଛ କେଉଁ ନିମିତ୍ତରେ ।
ଭୟରେ ହୋଇଛ ଭୀତ ଆଉ ଅସହାୟ
ସ୍ୱର୍ଗର ଅପ୍‌ସରା ପରି ଦିଶୁଛ ନିଶ୍ଚୟ ।
ସେ ବ୍ରାହ୍ମଣ କାମବଶେ ଏ ରୂପେ କହିଲେ
ସେ ନାରୀ ଉତ୍ତର ଦେଲେ ମଧୁର ବାକ୍ୟରେ ।
ହେ କାନ୍ତ ପର ପୁରୁଷ ସଂସର୍ଗେ ଦୂଷିତ
କି ନିମନ୍ତେ ଏହିକଥା ମନେ ଭାବିଛ ତ ।
ଆପଣଙ୍କ ଧର୍ମ ପତ୍ନୀ ମୁଁ ପୂର୍ବ କାଳରେ
ଦୁର୍ଦ୍ଦୈବେ ଯୋଗେ ଛାଡ଼ିଲି ଶୈଶବ ବେଳରେ ।
ପରିତ୍ୟାଗ କଲ ତୁମ୍ଭେ ମୋତେ ଯେଉଁଦିନ
ସେ ଦିନୁ ପିତାଙ୍କ ଘରେ କାଟୁଛି ଜୀବନ ।
ଦିବାରାତ୍ରି ଆପଣଙ୍କୁ କରଇ ମୁଁ ଧ୍ୟାନ
ହେ ନାଥ ବିଫଳ ହୋଇଯାଉଛି ଯୌବନ ।
ଅଛି ନିକଟରେ ମୋର ପିତାଙ୍କ ସଦନ
ଘର ଛାଡ଼ି ଯାଉଅଛ କରିଲି ଶ୍ରବଣ ।
ତେଣୁ ଏକାକିନୀ ହୋଇ ସଭୟ ଚିତ୍ତରେ
ଆସି ଉପସ୍ଥିତ ଆପଣଙ୍କ ସମ୍ମୁଖରେ ।
ଆଜି ତ ମୋଠାରେ ନାଥ ହୁଅନ୍ତୁ ସଦୟ
ଏ ଦୀନା ନାରୀ ଜୀବନ ରଖନ୍ତୁ ନିଶ୍ଚୟ ।

Digitized by srujanika@gmail.com

ବିବାହିତା ଯୁବତୀକୁ ପରିତ୍ୟାଗ କଲେ
ଅତି ଅସୁଖରେ ସେହି ଜୀବନ ସମ୍ଭାଳେ ।
କିନ୍ତୁ ସେ ପୁରୁଷ ନର୍କେ କରଇ ଗମନ
ଶାସ୍ତ୍ରମାନଙ୍କରେ ଅଛି ଏ କଥା ପ୍ରମାଣ ।
ହେ ନାଥ ଆସନ୍ତୁ ଏବେ ମୋର ସଙ୍ଗତରେ
ଗମନ କରନ୍ତୁ ମୋର ପିତାଙ୍କର ଘରେ ।
ହେ ପ୍ରଭୁ ସେ ସ୍ଥାନେ ଆମ୍ଭେ ଦୁହେଁ ସଙ୍ଗ ହୋଇ
ଚିରକାଳ ରହିବା ଯେ ଆନନ୍ଦିତେ ତହିଁ ।
ସେ ପ୍ରମଦା ଏହିରୂପେ ବଚନ କହନ୍ତେ
ବ୍ରାହ୍ମଣ ଆନନ୍ଦେ ଗଲେ ତାହାର ସଙ୍ଗତେ ।
ସ୍ୱାମୀ ପତ୍ନୀ ପିତାଗୃହେ କରିଲେ ଗମନ
ଶ୍ୱଶୁର ତାଙ୍କୁ କରିଲେ ଆଦର ସମ୍ମାନ ।
ସମୁଦାୟ ଭୋଗ୍ୟବସ୍ତୁ ମାନ ଅରପିଲେ
ନିଜ ଗୃହ ମଧ୍ୟରେ ତ ବାସସ୍ଥାନ ଦେଲେ ।
ସେ କାଳେ ବ୍ରାହ୍ମଣ ନିଜ ପତ୍ନୀ ସହିତରେ
ଏକମାସ କାଳ କଟାଇଲେ ଆନନ୍ଦରେ ।
ଏହା ଦୁର୍ବାସାଙ୍କ ମାୟା ବୁଝି ନ ପାରିଲେ
ମାସକ ପରେ ପୁରୁଷୋତ୍ତମକୁ ଚାଲିଲେ ।
ପୁରୁଷୋତ୍ତମ କ୍ଷେତ୍ରରେ ହେଲେ ଉପସ୍ଥିତ
ତହିଁ ପ୍ରାଣତ୍ୟାଗ କରି ହୋଇବେ ମୁକତ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ନବ ଚାରି ଅଧ୍ୟାଶେଷ ଉତ୍କଳ ଭାଷାରେ ।
ଜୟ ବଳରାମ ଜୟ ଜୟ ଜଗନ୍ନାଥ
ସୁଭଦ୍ରା ଦେବୀ ଚରଣେ କୋଟିଏ ଦଣ୍ଡବତ ।
ପ୍ରଥମ ବୟସେ ନାହିଁ ଦେବ ଅଧ୍ୟୟନ
ଦ୍ୱିତୀୟେ ଖୋଜି ବସିଲି କାମିନୀ କାଞ୍ଚନ ।
ତୃତୀୟ ବୟସେ ଯୋଗାଭ୍ୟାସନକରିଲି
ଚତୁର୍ଥେ କିସ କରିବି ଏମନ୍ତ ଜପିଲି ।
ସଂସାର ଜଞ୍ଜାଳ ଜାଲେ ହୁଏ ଛଟପଟ
ଯମଦ୍ୱାରେ ଥିବା ବୃକ୍ଷ ହେଲାଣି ନିକଟ ।
ଏତିକି ବେଳରେ ପ୍ରଭୁ କରନ୍ତୁ ସୁଦୟା
ଏ ମାୟା ସଂସାର ପ୍ରତି ତୁଟିଯାଉ ମାୟା ।
ମମତା ପାଶକୁ ବେଗେ କରନ୍ତୁ ଛେଦନ
ଶ୍ରୀଚରଣେ ହରିହର ମାଗୁଛି ଶରଣ ।
ହେ ପ୍ରଭୁ ମୋ ଡାକ ଶୁଣି ବେଗେ ଦୟା କର
ହେ ଦୁଃଖୀ ଜନସୋଦର ସଙ୍କଟୁ ଉଦ୍ଧାର ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ଶ୍ରୀ କ୍ଷେତ୍ର ଗମନ କାଳେ ବ୍ରାହ୍ମଣ ଧର୍ମପତ୍ନୀ
ଲାଭକରଣେ ଏକନୋପଞ୍ଚଶତ ଅଧ୍ୟାୟଃ ।

୦୦

# ପଞ୍ଚାଶତ ଅଧ୍ୟାୟ

ଜୈମିନି ମୁନି କହନ୍ତି ଶୁଣ ମୁନିଗଣ
ପୁରୁଷୋତ୍ତମ କ୍ଷେତ୍ରରେ ମିଳିଲେ ବ୍ରାହ୍ମଣ ।
ମତ୍ସ୍ୟାବତାରାଦି ଚତୁଃ ସୀମାକୁ ଗମନ
ଯେଦିନ କରିବେ ଜ୍ୱର ହେଲା ପୂର୍ବଦିନ ।
ଚତୁଃସୀମା ନିକଟରେ ଚକ୍ର ସୁଦର୍ଶନ
ସଙ୍ଗତରେ ରହିଛନ୍ତି ବିଷ୍ଣୁଦୂତ ଗଣ ।
ଭୀଷଣ ମୂରତି ଧରି ଯମଦୂତ ଗଣ
ମିଳିଲେ ପାଶାଦି ଅସ୍ତ୍ର କରିଣ ଧାରଣ ।
ବିଷ୍ଣୁଦୂତ ଯମଦୂତ ଏକ ସମୟରେ
ପ୍ରବେଶ ହେଲେ ବ୍ରାହ୍ମଣ ଥିଲେ ଯେ ଗୃହରେ ।
ଯମଦୂତ କହୁଛନ୍ତି ସାବଧାନେ ଶୁଣ
ବିଷ୍ଣୁଦୂତ ଗଣ କିମ୍ପା ଆସିଛ ଏ ସ୍ଥାନ ।
ଆପଣମାନେ କି ଏହି ପାପିଷ୍ଠ ଦ୍ୱିଜକୁ
ମନରେ ଭାବିଛ ନେବ ବୈକୁଣ୍ଠ ପୁରକୁ ।
କିନ୍ତୁ ଏ ଦୁରାତ୍ମା କେଉଁ ପାପ ନ କରିଛି
ଏହାକୁ ରଖିବା ଅର୍ଥେ ଚକ୍ର ଆସିଅଛି ।
ଏ ଚକ୍ର ଦୁଷ୍ଟଜନଙ୍କୁ କରଇ ସଂହାର
ଆପଣମାନେ ତ ପାରିଷଦ ବିଷ୍ଣୁଙ୍କର ।
ସୁକୃତବନ୍ତ ପବିତ୍ର ଆତ୍ମା ତୁମ୍ଭେମାନେ
ଏ ପାପୀ ନିକଟେ ଆସିଅଛ ମୂର୍ଖପଣେ ।
ଯମଦୂତଙ୍କର ବାକ୍ୟ କରନ୍ତେ ଶ୍ରବଣ
ତକ୍ଷଣେ ଉତ୍ତର ଦେଲେ ବିଷ୍ଣୁଦୂତ ଗଣ ।
ତୁମ୍ଭେମାନେ ଅତି ମୂର୍ଖ ଦୁରାତ୍ମା ହିଂସ୍ରକ
ନ ଜାଣି କିଏ ସେ ପାପୀ କିଏ ବା ଧାର୍ମିକ ।
କିଏ ମୋକ୍ଷ ଅଧିକାରୀ କିଏ ମୋକ୍ଷଦାତା
ଶୁଣ ଏହି ବ୍ରାହ୍ମଣର ପୂର୍ବଜନ୍ମ କଥା ।
ଏ ଅତି ଧାର୍ମିକ ସଦାଚାର ପରାୟଣ
ସୁନିର୍ମଳ ଚେତା ଯାଗକାରୀ ଦିଏ ଦାନ ।
ସତ୍ୟବାଦୀ କର୍ମ ଦକ୍ଷ ବୈଷ୍ଣବ ପ୍ରଧାନ
ସେ କାଳେ ନ ଥିଲେ କେହି ଏହାର ସମାନ ।
ଏପରି ଏ ମହାଶୟ ଜଣେ ଶ୍ରେଷ୍ଠ ବ୍ୟକ୍ତି
କାମନା ମନରେକରି ଦେହ ଧରିଛନ୍ତି ।
ଜ୍ୱରରେ ଆକ୍ରାନ୍ତ ହୋଇ ଏକ୍ଷଣି ମୂର୍ଚ୍ଛିତ
ଯମଦୂତଗଣ ତୁମ୍ଭେ କିମ୍ପା ଉପସ୍ଥିତ ।
ଏ ବ୍ରାହ୍ମଣ କରିଅଛି ସଂକଳ୍ପ ମନରେ
ବ୍ରାହ୍ମଣକୁ ନେବାକୁ କି ଭାବିଛ ମନରେ ।
ମତ୍ସ୍ୟାବତାରାଦି ଚତୁଃସୀମାର ମଧ୍ୟରେ
ପ୍ରାଣ ତ୍ୟାଗ କରିବ ସେ ପୁରୁଷୋତ୍ତମରେ ।

Digitized by srujanika@gmail.com

ଯେଉଁ କାଳେ ଏ ବ୍ରାହ୍ମଣ ଘରୁ ଆସିଛନ୍ତି
ସେ କାଳରେ ଚକ୍ରଧର ଆଜ୍ଞା ଦେଇଛନ୍ତି ।
ସେହିଦିନଠାରୁ ଆମ୍ଭେ ଜଗିଛୁ ଏହାକୁ
ତୁମ୍ଭେମାନେ କିମ୍ପା ନେବ ଏହି ବ୍ରାହ୍ମଣକୁ ।
ଉଚିତ ନୁହେଁ ଏ ସ୍ଥାନେ ରହିବା ତୁମ୍ଭର
ପଳାୟନ ଏ ସ୍ଥାନରୁ ଯଦିଚ ନ କର ।
ତେବେ ଆମ୍ଭେମାନେ ଗଦା ପ୍ରହାର କରିଣ
ତୁମ୍ଭମାନଙ୍କର ମୁଣ୍ଡ କରିଦେବୁ ଚୂର୍ଣ୍ଣ ।
ଯମଦୂତ ବିଷ୍ଣୁ ଦୂତଗଣ ପରସ୍ପରେ
ଏପରି କଳହ କରୁଥିଲେ ଯେ କାଳରେ ।
ସେ କାଳରେ ବିଭାବରୀ ହୋଇଲା ପ୍ରଭାତ
ବ୍ରାହ୍ମଣର ମୂର୍ଚ୍ଛା ଭଙ୍ଗ ହେଲା ସେ କ୍ଷଣେ ତ ।
ସେ ସ୍ଥାନେ ଦୁର୍ବାସା ଋଷି ଉପସ୍ଥିତ ହେଲେ
ବ୍ରାହ୍ମଣ ସଙ୍ଗରେ ଚତୁଃସୀମାକୁ ଚଳିଲେ ।
ଏ ସମୟେ ଦ୍ୱିଜବର ମନରେ ଚିନ୍ତିଲେ
ଆଶ୍ଚର୍ଯ୍ୟ ବିଷୟ କେତେ ଦେଖିଲି ସ୍ୱପ୍ନରେ ।
ଅନ୍ତର ହୋଇଲେ ମୁନି ଦୁର୍ଗମ ପଥରେ
ଏପରି ସ୍ୱପ୍ନ ବୃତ୍ତାନ୍ତ ମନରେ ଭାବିଲେ ।
ଧର୍ମ ପତ୍ନୀକୁ ପଥରେ ଯେ ରୂପେ ଦେଖିଲେ
ମୋହିତ ହୋଇ ଚଳିଲେ ତାର ସଙ୍ଗତରେ ।
ଦର୍ଶନ ମାତ୍ରକେ କଲେ ସ୍ନେହ ଆଲିଙ୍ଗନ
ପତ୍ନୀ ଶ୍ୱଶୁର ଏ ଦୁହେଁ କରିଲେ କ୍ରନ୍ଦନ ।
ଏପରି କେତେ ଆଶ୍ଚର୍ଯ୍ୟ ସ୍ୱପ୍ନରେ ଦେଖିଲି
ଭଗବାନଙ୍କର ମାୟା ବୁଝି ନ ପାରିଲି ।
ଘର ମାୟା ତ୍ୟାଗ କରି ମୁନିଙ୍କ ସହିତ
ଆସନ୍ତେ ପଥରେ ଦୁଃଖ ଭୋଗିଲି ବହୁତ ।
ଏତେ ଦୁଃଖ ଏ ଜୀବନେ ଭୋଗି ତ ନ ଥିଲି
ଯାହାହେଉ କ୍ଷେତ୍ରେ ଆସି ଉପସ୍ଥିତ ହେଲି ।
ପୂର୍ବେ ଦୁର୍ବାସା ମହର୍ଷି କହିଲେ ଯେମନ୍ତ
ମୁକ୍ତି ଅର୍ଥେ କି ଉପାୟ କରିବି କେମନ୍ତ ।
ସେ ବ୍ରାହ୍ମଣ ଏହିରୂପ ଚିନ୍ତା କରୁଥିଲେ
ଦେଖିଲେ ଦୁର୍ବାସା ମୁନି ଆସନ୍ତି ପଛରେ ।
ସେ ବିପ୍ର ଦୁର୍ବଳ ଦେହେ ପ୍ରଣାମ କରିଲେ
ଶୟନ କଲେ ମୁନିଙ୍କ ଚରଣ ତଳରେ ।
ଏହା ଦେଖି ଯମଦୂତଗଣ ଫେରିଗଲେ
ସକଳ ବୃତ୍ତାନ୍ତ ଯମ ରାଜାଙ୍କୁ କହିଲେ ।
ଯମରାଜା ଶୁଣି କ୍ରୋଧେ ପ୍ରଜ୍ୱଳିତ ହେଲେ
ଭୟଙ୍କର ମହିଷର ଉପରେ ବସିଲେ ।
ହସ୍ତରେ ଧଇଲେ କୂଟ ପାଶ ମୁଦ୍ଗର
ଖଡ୍‌ଗ ଦଣ୍ଡ ପଟିଶାଦି ଆୟୁଧ ସକଳ ।

ଦନ୍ତ କଡ଼ମଡ଼ କରି ଆସନ୍ତି ସଙ୍ଗରେ
ଭୃତ୍ୟଗଣ ମୃତ୍ୟୁକାଳ ଅତ୍ୟନ୍ତ କ୍ରୋଧରେ ।
ଦୂରରୁ କହନ୍ତି ମାର ମାର ଧର ଧର
ଉପସ୍ଥିତ ହେଲେ ଯମରାଜା ସେ ସ୍ଥାନର ।
ଏ ବାକ୍ୟ ଶୁଣି କ୍ରୋଧରେ ବିଷ୍ଣୁ ଦୂତଗଣ
କହିଲେ ହେ ଯମ କର ମର୍ଯ୍ୟାଦା ଲଙ୍ଘନ ।
ଉଚ୍ଚରେ କହିଲେ ଆରେ ଯମରାଜା ଶୁଣ
ପ୍ରେତପୁରେ ଅଧିକାର କେ କଲା ପ୍ରଦାନ ।
ହେ ଯମ ମନ ମଧ୍ୟରେ ବିବେଚନା କର
ଆମ୍ଭର ପ୍ରଭୁ ତୁମ୍ଭଙ୍କୁ ଦେଲେ ଅଧିକାର ।
ପ୍ରେତତ୍ୱ ଲାଭ କରିବେ ଯେଉଁ ଜନଗଣ
ସେମାନଙ୍କ ନିକଟକୁ କରିବ ଗମନ ।
ନିଶ୍ଚୟ କରି କହୁଛୁ ଆମ୍ଭକଥା ଶୁଣ
ପ୍ରେତମାନଙ୍କ ନିକଟେ କରନ୍ତୁ ଗମନ ।
ଯେ ମୁକ୍ତ ପୁରୁଷ ତୁମ୍ଭେ ତାର ନିକଟରେ
ଉପସ୍ଥିତ କିମ୍ପା ହେବ ଅଜ୍ଞତା ପଣରେ ।
ଏ ବ୍ରାହ୍ମଣ ହୋଇଅଛି ପ୍ରେତତ୍ୱରୁ ମୁକ୍ତ
ତେଣୁ ଭଗବାନଙ୍କର ଅଟେ ପ୍ରିୟପାତ୍ର ।
ବଟ ସାଗର ମଧ୍ୟରେ ମତ୍ସ୍ୟ ଅବତାର
ଶ୍ୱେତ ମାଧବ ଅଛନ୍ତି ଉଭୟ ପାର୍ଶ୍ୱର ।
ମୁକ୍ତିପଦ ଶ୍ରୀପୁରୁଷୋତ୍ତମ କ୍ଷେତ୍ରବରେ
ଚତୁର୍ମଧ୍ୟସ୍ଥଳେ ମୁକ୍ତି ମିଳେ ବିଶେଷରେ ।
ସ୍ୱୟଂ ଭଗବାନ ଦାରୁ ଦେହରେ ଅଛନ୍ତି
ଏ ସ୍ଥାନେ ଜୀବଗଣଙ୍କୁ ମୁକତି ଦିଅନ୍ତି ।
ଯାହାଙ୍କର ପାପ ପୁଣ୍ୟ ହୋଇଅଛି କ୍ଷୟ
ତାହାଙ୍କର ଏହି ସ୍ଥାନେ ହୁଏ ଆୟୁ କ୍ଷୟ ।
ହେ ଯମ ତୁମ୍ଭେ ଏ କ୍ଷେତ୍ର ମହିମା ନ ଜାଣ
କେଉଁ ହେତୁ କରୁଅଛ ବୃଥା ଏ ଗର୍ଜନ ।
ଏ କ୍ଷେତ୍ରରେ ବିଜେ କରିଛନ୍ତି ଭଗବାନ
ତାହାଙ୍କର ମୁଖପଦ୍ମ ସର୍ବଦା ପ୍ରସନ୍ନ ।
ଦୁଇବାହୁ ଟେକି କରୁଛନ୍ତି ମୁକ୍ତିଦାନ
ଦୀନ ଜନଙ୍କର ଦୁଃଖ କରନ୍ତି ହରଣ ।
ପ୍ରଭୁଙ୍କ ଦେହ ସ୍ୱରୂପ ଏ କ୍ଷେତ୍ର ମଧ୍ୟରେ
ଯେକୌଣସି ସ୍ଥାନେ ଯଦି ଦେହତ୍ୟାଗ କରେ ।
ସେ ଜନଗଣଙ୍କୁ ସଦା ମୁକତି ପ୍ରଦାନ
ସାକ୍ଷାତେ କରନ୍ତି ସ୍ୱୟଂ ପ୍ରଭୁ ଭଗବାନ ।
ପୂର୍ବକାଳ କଥା କିମ୍ପା ନ କର ସ୍ମରଣ
ଏ ସ୍ଥାନରେ ନୀଳମଣିମୟ ଭଗବାନ ।
ତୁମ୍ଭଙ୍କୁ ସକଳ କଥା କହିଲେ ବୁଝାଇ
କାକପକ୍ଷୀ ମୁକ୍ତ ହେଲା ଦେଖିଛ ତ ରହି ।

Digitized by srujanika@gmail.com

ସେ ସକଳ କଥା କିମ୍ବା ମନୁ ପାସୋରିଲ
ସେହି ପ୍ରଭୁ ଦାରୁରୂପେ ବିଜେ ନୀଳାଚଳ ।
ବୈଷ୍ଣବ ପ୍ରଧାନ ମହାରାଜା ଇନ୍ଦ୍ରଦ୍ୟୁମ୍ନ
ସହସ୍ରାଶ୍ୱମେଧ ଯାଗ କଲେ ଏହିସ୍ଥାନ ।
ତ୍ରିଲୋକବାସୀ ସକଳେ ହେଲେ ଉପସ୍ଥିତ
ଦେବରଷି ସିଦ୍ଧଯତି ରାଜାଙ୍କ ସହିତ ।
ସ୍ୱୟଂ ବ୍ରହ୍ମା ଉପସ୍ଥିତ ହେଲେ ଏ ସ୍ଥାନରେ
ଦାରୁ ରୂପରେ ପ୍ରଭୁଙ୍କୁ ପ୍ରତିଷ୍ଠା କରିଲେ ।
ଦାରୁରୂପେ ଭଗବାନ ଜୀବମାନଙ୍କର
ଜୀବର ସଞ୍ଚିତ ପାପ କରୁଛନ୍ତି ଦୂର ।
ଯେ ରୂପେ ଅଗ୍ନିରେ ତୁଳା ଭସ୍ମ ହୋଇଯାଏ
ସେ ରୂପେ ପାତକ ରାଶି କ୍ଷୟ ହୋଇଥାଏ ।
ପ୍ରଭୁଙ୍କୁ ଦର୍ଶନ କରି ଏ କ୍ଷେତ୍ରେ ମରଣ
ହେଲେ ଭଗବାନ ମୁକ୍ତି କରନ୍ତି ପ୍ରଦାନ ।
ହେ ଯମ୍ ସମ୍ମୁଖେ ଦେଖ ଭଗବାନଙ୍କର
ସୁଦର୍ଶନ ଚକ୍ର କରେ ଦୁଷ୍ଟଙ୍କୁ ସଂହାର ।
ଏତିକିବେଳେ ଏ ସ୍ଥାନୁ କର ପଳାୟନ
ନିଜ ଅଧିକାରେ ସୁଖେ କର ଅବସ୍ଥାନ ।
ଏକାଳେ ପ୍ରଧାନ ବିଷ୍ଣୁ ଦୂତ ବ୍ରାହ୍ମଣକୁ
ଟେକି ନେଇଗଲେ ଚତୁଃସୀମାର ମଧ୍ୟକୁ ।
ସେ ବିପ୍ରର ପ୍ରାଣ ଥାଇ ବିହ୍ୱଳ ଚିତ୍ତରେ
ପ୍ରବେଶ କରନ୍ତେ ଚତୁଃସୀମାର ମଧ୍ୟରେ ।
ପଞ୍ଚଜନ୍ୟ ଶଙ୍ଖଧ୍ୱନି କଲେ ଭଗବାନ
ତାହା ଶୁଣି ଯମଗଣ କଲେ ପଳାୟନ ।
ସେ କ୍ଷଣରେ ବ୍ରାହ୍ମଣର ସର୍ବାଙ୍ଗ ଉପରେ
ପୁଷ୍ପବୃଷ୍ଟି କଲେ ଦେବଗଣ ଆକାଶରେ ।
ଶଙ୍ଖ ଚକ୍ର ଗଦାପଦ୍ମ ଶାର୍ଙ୍ଗଧନୁ କରେ
କଟୀଦେଶ ଶୋଭା ପାଏ ପୀତ ବସନରେ ।
ବକ୍ଷରେ କୌସ୍ତୁଭମଣି ଦେହ ନୀଳବର୍ଣ୍ଣ
ଗରୁଡ଼ ପୃଷ୍ଠରୁ କଲେ ସେ ଅବତରଣ ।
ବାମଦେବ ଶୁକଦେବ ଆଦି ମୁନିଗଣ
ତେଜିଣ ପାର୍ଥିବ ଘଟ ପଟ ଆଦି ଜ୍ଞାନ ।
ଯେଉଁପରି ତାହାଙ୍କର ହୋଇଲା ନିର୍ବାଣ
ବ୍ରାହ୍ମଣ କର୍ଣ୍ଣେ କହିଲେ ସେହି ତତ୍ତ୍ୱଜ୍ଞାନ ।
ଏହିପରି ବିଷ୍ଣୁଦତ୍ତଜ୍ଞାନ ପ୍ରଭାବରେ
ବ୍ରାହ୍ମଣର ମୋକ୍ଷ ରଜ୍ଜୁ ଛିଡ଼ିଲା ସତ୍ତ୍ୱରେ ।
ପ୍ରଭାତ କାଳରେ ସୂର୍ଯ୍ୟପରି ତେଜିୟାନ
ଅପୂର୍ବ ତେଜକୁ ଲାଭ କରେ ସେ ବ୍ରାହ୍ମଣ ।
ଦୁର୍ବାସାଦି ଋଷି ତହିଁ ଆଉ ଯେତେ ଥିଲେ
ବ୍ରାହ୍ମଣ ଦେହର ତେଜ ନୟନେ ଦେଖିଲେ ।
ଭଗବାନଙ୍କର ଚକ୍ର ପଦ୍ମର ମଧ୍ୟରେ
ସେ ତେଜ ବିଲୀନ ହେଲା ସେହି ସମୟରେ ।
ଏହାପରେ ଅନ୍ତର୍ଯ୍ୟାମୀ ହରି ଜଗନ୍ନାଥ
ସେହିସ୍ଥାନେ ସେହିକ୍ଷଣେ ହେଲେ ଅନ୍ତର୍ହିତ ।
ଦୁର୍ବାସା ଋଷି ମନରେ ବିସ୍ମୟ ହୋଇଲେ
ବ୍ରହ୍ମଲୋକକୁ ଗମନ କଲେ ସେ କାଳରେ ।
ସ୍କନ୍ଦପୁରାଣେ ଉକତ ଉତ୍କଳ ଖଣ୍ଡରେ
ଏ ପଞ୍ଚ ଅଧ୍ୟାୟଶେଷ ଉତ୍କଳ ଭାଷାରେ ।
ଜୟ ଜୟ ଜଗନ୍ନାଥ ଜୟ ବଳରାମ
ଜୟମା ସୁଭଦ୍ରା ଦେବୀ ତୋ ପାଦେ ଶରଣ ।
ବୃଥା କାର୍ଯ୍ୟେ ମାତି ଦିନ ବହି ଯାଉଅଛି
ରାତ୍ରିହେଲେ ନିଦ୍ରା ଦେବୀ ନୟନେ ଘାରୁଛି ।
ସ୍ମରଣ ମନନ କରିବାକୁ ବେଳ ନାହିଁ
ପ୍ରଥମରୁ ଗୁରୁ ବାକ୍ୟ କର୍ଣ୍ଣେ ଶୁଣିନାହିଁ ।
କେଉଁପରି ହେବ ନିଦିଧ୍ୟାସନ ସମ୍ଭବ
ଏ ଦୀନ ଜନକୁ ତ୍ରାହିକର ଦେବ ଦେବ ।
ଏତିକି ମାତ୍ର ମାଗୁଛି ଚରଣ ତଳରେ
ଅନ୍ତିମ କାଳେ ଦେଖିବି ଚର୍ମ୍ମ ନୟନରେ ।
ଜିହ୍ୱାରେ ତୁମ୍ଭର ନାମ କରୁଥିବି ଗାନ
କହେ ହରିହର ଅନ୍ୟେ ନାହିଁ ପ୍ରୟୋଜନ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ମଧ୍ୟପ୍ରଦେଶ ବ୍ରାହ୍ମଣ ମୋକ୍ଷଣେ ନାମ
ପଞ୍ଚାଶତ ଅଧ୍ୟାୟଃ ।



## ଏକପଞ୍ଚାଶତ ଅଧ୍ୟାୟ

ଜୈମିନି କହନ୍ତି ବତ୍ସ ଆତ୍ମ ସାକ୍ଷାତ୍କାର
ନ କଲେ ମଧ୍ୟ ମୁକ୍ତିରେ ହୁଏ ଅଧିକାର ।
ପୁରୁଷୋତ୍ତମ କ୍ଷେତ୍ରରେ ମରଣ ବିଷୟ
ତୁମ୍ଭ ଆଗରେ କରିଲୁ ବର୍ଣ୍ଣନ ନିଶ୍ଚୟ ।
ଏ କଥା ମନରେ ରଖ ସେ ପୁରୁଷୋତ୍ତମ
ଯେଉଁସ୍ଥାନେ ରକ୍ଷାକର୍ତ୍ତା ସ୍ୱୟଂ ଭଗବାନ ।
ଏ କଳିଯୁଗରେ କଲେ ନାମ ସଂକୀର୍ତ୍ତନ
ଯେପରି ମୁକତି ଲାଭ କରନ୍ତି ସଜ୍ଜନ ।
ସେପରି କରନ୍ତି ମୁକ୍ତି ଲାଭ ସର୍ବ ଜୀବ
ଶ୍ରୀପୁରୁଷୋତ୍ତମ କ୍ଷେତ୍ରେ କଲେ ମୃତ୍ୟୁ ଲାଭ ।
ସାକ୍ଷାତରେ ଦେବ ବିଷ୍ଣୁ ସୂକ୍ତେ କହିଛନ୍ତି
ସର୍ବଦା ନାମକୀର୍ତ୍ତନ କରିଲେ ମୁକତି ।
ଅଥବା ଆତ୍ମ ଦର୍ଶନ କଲେ ଯେଉଁଜନ
ସାଯୁଜ୍ୟ ମୁକତି ଲାଭ କରେ ସେହିଜନ ।

Digitized by srujanika@gmail.com

ଶ୍ରୁତି ସ୍ମୃତି ଏ ଉଭୟ ଭଗବାନଙ୍କର
ବାକ୍ୟ ରୂପରେ ପ୍ରସିଦ୍ଧି ମନରେ ବିଚାର ।
ଆତ୍ମଜ୍ଞାନର ଜନକ ଅଟଇ ଯେ ଶ୍ରୁତି
ସ୍ମୃତି ପୁରାଣାଦି ଶାସ୍ତ୍ର ଶ୍ରୁତିରୁ ଉତ୍ପତ୍ତି ।
ବେଦର ମତ ସ୍ମୃତିରେ ବିରୋଧ ନୁହଇ
ଏ କ୍ଷେତ୍ରେ ମରିଲେ ମୁକ୍ତି ଅବଶ୍ୟ ହୁଅଇ ।
ଯହିଁ କଲେ ଇନ୍ଦ୍ରଦ୍ୟୁମ୍ନ ଅଶ୍ୱମେଧ ଯାଗ
ସେ କ୍ଷେତ୍ରରେ କରେ ଯଦି କେହି ପ୍ରାଣତ୍ୟାଗ ।
ଆଉ କେହି ବ୍ରହ୍ମଜ୍ଞାନ କ୍ଳେଶରେ ସାଧଇ
ଏ ଦୁଇ ସମାନ ରୂପେ ମୁକତି ଦିଅଇ ।
ଉଭୟ ମତରେ ମୁକ୍ତି ସମାନ ରୂପରେ
ସଂଶୟ ନ କର ଆଉ ହେ ବତ୍ସ ମନରେ ।
ଯେଉଁ ପାପୀଗଣ ସେହି କ୍ଷେତ୍ରରେ ମରନ୍ତି
ସେମାନେ କ୍ଷେତ୍ର ମାହାତ୍ମ୍ୟ ବୁଝିତ ନ ଥାନ୍ତି ।
କିନ୍ତୁ ବହୁ ଜନ୍ମ ସାଧ୍ୟ ଯେଉଁ ଆତ୍ମଜ୍ଞାନ
ତାହା ଲଭି ମୋକ୍ଷେ ଅଧିକାରୀ ସେହି ଜନ ।
ବ୍ରହ୍ମଜ୍ଞାନ ଲାଭ ଆଉ ସେ କ୍ଷେତ୍ରେ ମରଣ
ଏ ଦୁଇ ଅଙ୍ଗାଙ୍ଗୀ ଭାବେ ଅଟନ୍ତି ପ୍ରଧାନ ।
ଯେହେତୁ ଅଙ୍ଗର ବଳ ଅଧିକ ହୋଇଲେ
ଅଙ୍ଗୀର ପ୍ରାଧାନ୍ୟ ବଢ଼େ ସେହି ଅନୁସାରେ ।
ବିଚାର କର ଦେହର ବଳ ପରିପୂର୍ଣ୍ଣ
ଦୀର୍ଘାୟୁ ଲଭିଣ ଯୋଗ କରନ୍ତି ସାଧନ ।
ବହୁ ଜନ୍ମରେ ଲଭନ୍ତି 'ଅହଂବ୍ରହ୍ମ' ଜ୍ଞାନ
ଆଉ ଅଜ୍ଞାନ ଜନର ଏ କ୍ଷେତ୍ରେ ମରଣ ।
ଏ ଦୁଇ ସମାନ ନୁହେ କସ୍ମିନ୍ କାଳରେ
ଅଙ୍ଗାଙ୍ଗୀ ଭାବ ସମ୍ବନ୍ଧ ହେବ କି ପ୍ରକାରେ ।
ଆତ୍ମଜ୍ଞାନ ବିନା ହୁଏ କର୍ମର ସଞ୍ଚୟ
ସେ କ୍ଷେତ୍ରେ ମରଣ ହେଲେ ଜ୍ଞାନର ଉଦୟ ।
ପୂର୍ବକାଳେ କାଶ୍ୟପାଦି ମହାଋଷି ଗଣ
ଏ ଜଗତେ ସୃଷ୍ଟି କାର୍ଯ୍ୟ କରିଲେ ସାଧନ ।
ସେମାନେ ସୃଷ୍ଟି ବ୍ୟାପାର ସାଧନ ନିମିତ୍ତ
ପୁରୁଷୋତ୍ତମ କ୍ଷେତ୍ରକୁ ରଖିଛନ୍ତି ଗୁପ୍ତ ।
ଯେ କାଳେ ହୁଅନ୍ତି ଅବତୀର୍ଣ୍ଣ ନାରାୟଣ
ଦୁଷ୍ଟଙ୍କୁ ସଂହାରି ଶିଷ୍ଟ କରନ୍ତି ପାଳନ ।
ସେ କାଳେ ବିଶ୍ୱାତ୍ମା ବିଭୁ ସ୍ୱୟଂ ଭଗବାନ
ଦୀନାର୍ତ୍ତ ଜନଙ୍କ ପ୍ରତି ହୋଇଣ ପ୍ରସନ୍ନ ।
ଏହି କ୍ଷେତ୍ରର ମହିମା ଲୋକରେ ପ୍ରକାଶ
କେତେକାଳ ପାଇଁ କରି ଦିଅନ୍ତି ଅବଶ୍ୟ ।
ପୁନର୍ବାର ଏ ସୃଷ୍ଟିର କଲ୍ୟାଣ ନିମିତ୍ତ
ଏ କ୍ଷେତ୍ର ମହିମା କରି ଦିଅନ୍ତି ଗୁପତ ।

ସଂସାରରେ ସ୍ୱଭାବ ତ ଏହି ରୂପ ଜାଣ
ଏ ଜଗତ ଏହି କେତେବେଳେ ଜଳେ ମଗ୍ନ ।
କେବେ ବା ପ୍ରକାଶ ହୁଏ ସଂସାର ସ୍ରୋତରେ
ଭାସେ ପୁଣି କେବେ ରହିଥାଏ ଗୋପନରେ ।
ସୃଷ୍ଟି ମଧ୍ୟେ ଏହିରୂପେ ତୀର୍ଥକ୍ଷେତ୍ର ଆଦି
ସପ୍ତ ସାଗର ପର୍ବତ ଗଙ୍ଗା ଆଦି ନଦୀ ।
କେବେ ଲୀନ ହୁଏ କେବେ ପ୍ରକାଶ ହୁଅଇ
ଆଉ କେତେବେଳେ ପୁଣି ଉନ୍ନତି ଲଭଇ ।
ଏହାର ଏକ ଦୃଷ୍ଟାନ୍ତ କହୁଅଛି ଶୁଣ
ଏ ସାଗର ବ୍ରହ୍ମ ଶାପେ ଥିଲା ଜଳଶୂନ୍ୟ ।
ଦଶ ସହସ୍ର ବରଷ ହୁଅନ୍ତେ ସମ୍ପୂର୍ଣ୍ଣ
ପୁନର୍ବାର ସ୍ୱର୍ଗ ଗଙ୍ଗା ଜଳେ ହେଲା ପୂର୍ଣ୍ଣ ।
କେବଳ ନାମ କୀର୍ତ୍ତନେ ପାପରୁ ମୁକତ
ଏ କ୍ଷେତ୍ରେ ମରଣ ସର୍ବ ପାପ ପ୍ରାୟଶ୍ଚିତ ।
ବେଦ ବାକ୍ୟେ ଆତ୍ମଜ୍ଞାନ ହୁଅଇ ପ୍ରକାଶ
କିନ୍ତୁ ଶ୍ରମଣ ମନନ କରିଲେ ଅବଶ୍ୟ ।
ଯୁକ୍ତିରେ ନିଦିଧ୍ୟାସନ ହେଲେ ଦୃଢ଼ତର
'ଅହଂବ୍ରହ୍ମ' ଜ୍ଞାନ ଜନ୍ମେ କୌଣସି ପ୍ରକାର ।
ପ୍ରକୃତରେ ଏହା ନାମ ଅଟଇ ଯେ ମୁକ୍ତି
କେଉଁ ଭାଗ୍ୟବାନ ଜନ ଏ ମୁକ୍ତି ପାଆନ୍ତି ।
ପ୍ରଭୁଙ୍କ ଦେହ ସଦୃଶ ଏକ୍ଷେତ୍ର ମଧ୍ୟରେ
ମରଣ ଜ୍ଞାନରେ ହେଉ ଅବା ଅଜ୍ଞାନରେ ।
ଚତୁଃସୀମାର ମଧ୍ୟରେ ବା ଅନ୍ୟ ସ୍ଥାନରେ
ମୁକ୍ତିଲାଭ ହୋଇଥାଏ ପୁରୁଷୋତ୍ତମରେ ।
ମୁକ୍ତି ମିଳେ ମୃତ୍ୟୁ ହେଲେ ଏ କ୍ଷେତ୍ର ମଧ୍ୟରେ
ଦୁର୍ବୁଦ୍ଧି ପଣେ ଆଶଙ୍କା ନ କର ମନରେ ।
ଆଶଙ୍କା କରିଲେ ମତେ ଅପରାଧ ହେବ
ତାହା ସହି ନ ପାରିବେ କେବେ ଦେବ ଦେବ ।
ହେ ଦ୍ୱିଜ ଭଗବାନଙ୍କ ଉଚ୍ଛିଷ୍ଟ ଯେ ଅନ୍ନ
ଅବମାନନା କରନ୍ତେ ବିଦ୍ୱାନ ବ୍ରାହ୍ମଣ ।
ପ୍ରାଣ ନାଶକର ମହାରୋଗ ହେଲା ଜାତ
ପୂର୍ବେ କହିଛୁ ତୁମ୍ଭଙ୍କୁ ସେ ସର୍ବ ବୃତ୍ତାନ୍ତ ।
ଏବେ କହିଛୁ ଦୁର୍ଲ୍ଲଭ ମାହାତ୍ମ୍ୟ ଯେ ଶୁଣ
ମାଘ ମାସରେ ପବିତ୍ର ଜଳେ କଲେ ସ୍ନାନ ।
ଯେକୌଣସି ସ୍ଥାନରେ ତ ହୁଏ ସ୍ୱର୍ଗ ପ୍ରାପ୍ତି
ନଦୀମାନଙ୍କ ମଧରେ ନର୍ମଦାର ଖ୍ୟାତି ।
ମାଘ ମାସରେ ତ୍ରିଦିନ ତହିଁ କଲେ ସ୍ନାନ
ଇନ୍ଦ୍ରଭୁବନେ ଗମନ କରେ ସେହି ଜନ ।
ନର୍ମଦା ଅପେକ୍ଷା ଗୋଦାବରୀ ଶତେଗୁଣ
ଗୋଦବାରୀ ଠାରୁ ରେବା ଆଉ ଶତେଗୁଣ ।

Digitized by srujanika@gmail.com

ରେବାରୁ ସମୁଦ୍ରେ ସ୍ନାନ ସହସ୍ରେକ ଗୁଣ
ପୁଣ୍ୟ ଫଳ ଲାଭ ହୁଏ ଏକଥା ପ୍ରମାଣ ।
ଭୂତଳେ ଯେତେ ତୀର୍ଥ ବାୟୁ କହିଛନ୍ତି
ବ୍ରହ୍ମା କହଇ ସେ ସର୍ବ ପ୍ରୟାଗେ ଅଛନ୍ତି ।
ଯେ ସମୟେ ଦିବାକର ମକର ରାଶିରେ
ମାଘ ମାସ କୃଷ୍ଣ ଶୁକ୍ଳ ଉଭୟ ପକ୍ଷରେ ।
ଯେ ବ୍ୟକ୍ତି ପ୍ରୟାଗେ ତିନିଦିନ କରେ ସ୍ନାନ
ଚୌଦ ଇନ୍ଦ୍ର ଯାଏ ବସେ ବ୍ରହ୍ମାଙ୍କ ସଦନ ।
ଏହି ମାଘ ମାସ ଶୁକ୍ଳ ଏକାଦଶୀ ଦିନ
ସମୁଦ୍ରେ ସଂଯତ ମନେ ଯେ କରଇ ସ୍ନାନ ।
ଦେବତା ପିତୃ ଗଣଙ୍କୁ କରେ ତରପଣ
ବାଲୁକା ମଣ୍ଡଳେ କରେ ପ୍ରଭୁଙ୍କୁ ଅର୍ଚ୍ଚନ ।
ଭଗବାନଙ୍କ ସନ୍ତୋଷ ବିଧାନ ନିମିତ୍ତ
ବିପ୍ରଙ୍କୁ ଦିଅଇ ଦାନ ତିଳ ପୂର୍ଣ୍ଣ ପାତ୍ର ।
ପବିତ୍ର ହୁଅଇ ସେହି ମାନବ ଶରୀର
ବୟାଳିଶ ପୁରୁଷଙ୍କୁ ସେ କରେ ଉଦ୍ଧାର ।
ଅତୀତରେ ଏକବିଂଶ ପୁରୁଷ ପିତୃଙ୍କୁ
ଭବିଷ୍ୟ କୁଳର ଏକବିଂଶ ପୁରୁଷଙ୍କୁ ।
ଏହାପରେ ମୌନ ହୋଇ କରିବ ଗମନ
ଆନନ୍ଦ ମନରେ ବଟବୃକ୍ଷ ପ୍ରଦକ୍ଷିଣ ।
ମନ୍ଦିର ମଧ୍ୟରେ ଯାଇଁ କରିବ ଦର୍ଶନ
ଆହେ ଦୀନବନ୍ଧୁ ମୋତେ କର ପରିତ୍ରାଣ ।
ହେ ପ୍ରଭୁ ଆପଣ ଏକା ଦୟାର ସାଗର
ଆପଣଙ୍କ କରୁଣାର ନାହିଁ ପଟାନ୍ତର ।
ଏ ଭବ ସାଗର ମଧେ ମୁଁ ତ ଭାସୁଅଛି
ଆପଣଙ୍କ ଚରଣରେ ଶରଣ ପଶୁଛି ।
କୃପାକରି ନାଥ ମୋତେ ପରିତ୍ରାଣ କର
ଆପଣଙ୍କ ଚରଣରେ କୋଟି ନମସ୍କାର ।
ପ୍ରଣିପାତ ପ୍ରଦକ୍ଷିଣ କରି ଏ ରୂପରେ
କୁନ୍ଦ ପୁଷ୍ପ ମାଳା ଆଦି ନାନା ଉପଚାରେ ।
ଯେ ଜନ ଜଗନ୍ନାଥଙ୍କୁ ଅର୍ଚ୍ଚନା କରଇ
କଳ୍ପେ କାଳ ପରିଯନ୍ତେ ବୈକୁଣ୍ଠେ ବସଇ ।
କଳ୍ପଶେଷେ ବ୍ରହ୍ମାଙ୍କର ଆୟୁ କ୍ଷୟ ହେଲେ
ବ୍ରହ୍ମରେ ଲୀନ ହୁଅଇ ବ୍ରହ୍ମାଙ୍କ ସଙ୍ଗରେ ।
ମାଘ ପୂର୍ଣ୍ଣିମା ଦିନରେ ପ୍ରଭୁଙ୍କୁ ପୂଜିବ
କୁନ୍ଦ ପୁଷ୍ପ ଆଦି ନାନା ଉପଚାର ଦେବ ।
ସ୍ୱଚ୍ଛମନେ ଭଗବାନଙ୍କର ସମକ୍ଷରେ
ବ୍ରାହ୍ମଣଙ୍କୁ ବିଷ୍ଣୁ ଜ୍ଞାନ କରିବ ମନରେ ।
ଚନ୍ଦନ ବସ୍ତ୍ରାଳଙ୍କାର କରିଣ ଅର୍ଚ୍ଚନ
ବ୍ରାହ୍ମଣମାନଙ୍କୁ ନାନାଦ୍ରବ୍ୟ ଦେବ ଦାନ ।।
ତା ପ୍ରତି ସନ୍ତୋଷ ହୋନ୍ତି ପ୍ରଭୁ ଭଗବାନ
ଯେହେତୁ ଏ କଳିଯୁଗେ ଶ୍ରେଷ୍ଠ ଏକା ଦାନ ।
ଯଦି କୌଣସି ବିଦ୍ୱାନ ନିଃସ୍ୱ ହୋଇଥିବ
ସ୍ତବ ପାଠ ଜପ ନାମ କୀର୍ତ୍ତନ କରିବ ।
ପ୍ରଭୁଙ୍କୁ ଯେ ବାରମ୍ବାର କରିବ ପ୍ରଣାମ
ଆଉ ମଧ୍ୟ ଯଦି କେହି ଦେବ ଧନଦାନ ।
ପ୍ରଭୁଙ୍କ ସନ୍ତୋଷ ଅର୍ଥେ ବିଶୁଦ୍ଧ ମନରେ
ବ୍ରାହ୍ମଣମାନଙ୍କୁ ଦାନ ଦେବ ସ୍ୱହସ୍ତରେ ।
ଅଳଂକୃତ ଧେନୁ ସ୍ୱର୍ଣ୍ଣ ତିଳ ପୂର୍ଣ୍ଣ ପାତ୍ର
ପ୍ରଦୀପ ବସନ ମାଳା ଭୋଜ୍ୟ ଜଳପାତ୍ର ।
କର୍ପୂର ଅଗୁରୁ ଆଦି କସ୍ତୁରୀ ଚନ୍ଦନ
ବିଷ୍ଣୁଙ୍କର ପ୍ରିୟତମ ଅନ୍ୟ ଦ୍ରବ୍ୟମାନ ।
କିମ୍ବା ନିଜ ମନ ତୃପ୍ତି ହୁଏ ଯେ ଦ୍ରବ୍ୟରେ
ତାହା ବ୍ରାହ୍ମଣଙ୍କୁ ଦେବ ଅତି ଆଗ୍ରହରେ ।
ପ୍ରୟାଗ କୁରୁକ୍ଷେତ୍ରରେ ଗ୍ରହଣ କାଳରେ
କୋଟିଏ ଗୋଦାନ କଲେ ପୁଣ୍ୟ ଯେତେ ମିଳେ ।
ଅଳଂକୃତା ସୁଲକ୍ଷଣା ଏକ ଗୋଦାନରେ
ସେହି ଫଳ ମିଳେ ମାଘ ପୂର୍ଣ୍ଣିମା ଦିନରେ ।
ହେ ବତ୍ସ ! ବଟସାଗର ମଧ୍ୟେ ଏ କ୍ଷେତ୍ରରେ
ଯେଉଁ ଜନ ଏକ ଧେନୁ ଦାନ କରିପାରେ ।
ଆଉ ମଧ୍ୟ ମାଘମାସ ପୂର୍ଣ୍ଣିମା ଦିନରେ
ଅନ୍ୟ କିଛି ବସ୍ତ୍ର ଦାନ କରେ ଏ କ୍ଷେତ୍ରରେ ।
ପୂର୍ବୋକ୍ତ ଫଳକୁ ଲାଭ କରିଣ ନିଶ୍ଚୟ
ଉଦ୍ଦାଳକ ଏ କଥାରେ ନ କର ସଂଶୟ ।
ଯେ କେହି ବ୍ରାହ୍ମଣ ଏହି କ୍ଷେତ୍ରର ମଧ୍ୟରେ
ବ୍ୟାସଦେବଙ୍କ ସମାନ ବିଚାରେ ମନରେ ।
ଯେ ଯୋଗେ ଦୁର୍ଲ୍ଲଭ ମାଘ ପୂର୍ଣ୍ଣିମା ଦିନରେ
ତା କହୁଛି ଶୁଣ ବତ୍ସ ! ଆନନ୍ଦ ମନରେ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ଏକ ପାଞ୍ଚଛାନ୍ଦ ଶେଷ ଉତ୍କଳ ଭାଷାରେ ।
ଜୟ ପ୍ରଭୁ ଜଗନ୍ନାଥ ଜୟ ବଳରାମ
ଜୟ ମା ସୁଭଦ୍ରା ଦେବୀ ତୋପାଦେ ଶରଣ ।
ଧନ ନାହିଁ ମନ୍ତ୍ର ନାହିଁ କି କରିବି ଧ୍ୟାନ
ଶିକ୍ଷା କରିନାହିଁ ସ୍ତୋତ୍ର ପାଠ ଜପ ମାନ ।
ଥରେ ମାତ୍ର ଭକ୍ତିରେ ନ କଲି ପ୍ରଣାମ
ଜିହ୍ୱା କରେ ନାହିଁ କେବେ ନାମ ସଂକୀର୍ତ୍ତନ ।
କି ପ୍ରକାରେ ଛାଡ଼ିବ ଏ ନିଗୂଢ଼ ବନ୍ଧନ
ଦୀନ ହରିହର ତୋର ପାଦରେ ଶରଣ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ପୁରୁଷୋତ୍ତମ କ୍ଷେତ୍ରେ ମରଣ ମାହାତ୍ମ୍ୟ ବର୍ଣ୍ଣନେ
ନାମ ଏକପଞ୍ଚାଶତୋଽଧ୍ୟାୟଃ ।



Digitized by srujanika@gmail.com

## ଦ୍ୱିପଞ୍ଚାଶତ ଅଧ୍ୟାୟ

ଜୈମିନି କହନ୍ତି ବତ୍ସ ! ଶୁଣ ସୁଚିତ୍ତରେ
ମାଘ ପୂର୍ଣ୍ଣିମା ଦିନରେ ରବିବାର ହେଲେ ।
ଶୋଭନ ନାମରେ ଯୋଗ ମଘା ନକ୍ଷତ୍ରରେ
ଚନ୍ଦ୍ର ଗମନ କରିବେ ଧନିଷ୍ଠା ମୂଳାରେ ।
ଗୁରୁ ଥିବେ ମୀନ ଧନୁ ସିଂହ କର୍କଟରେ
ମହା ମାଘୀ ନାମେ ଯୋଗ ଦୁର୍ଲ୍ଲଭ ସଂସାରେ ।
ମୂହୁର୍ତ୍ତେ ଯଦି ଏ ଯୋଗ ହୁଏ ଉପସ୍ଥିତ
ସେହିକାଳେ ପିତୃଗଣ ହୁଅନ୍ତି ମୁକତ ।
ପିତୃଗଣଙ୍କର ମୁକ୍ତି ହୋଇବା ନିମିତ୍ତ
ପ୍ରତ୍ୟେକ ବ୍ୟକ୍ତିର ଶ୍ରାଦ୍ଧ କରିବା ଉଚିତ ।
ଏ ଦିନ ଯେ କରେ ଗୟାକ୍ଷେତ୍ରେ ପିଣ୍ଡ ଦାନ
ନର୍କରୁ ସ୍ୱର୍ଗକୁ ଯାନ୍ତି ତାର ପିତୃଗଣ ।
ଯଦିଚ ସ୍ୱର୍ଗରେ ପିତୃଗଣ ରହିଥାନ୍ତି
ବହୁ କାଳଯାଏ ସ୍ୱର୍ଗେ ଆନନ୍ଦେ ରହନ୍ତି ।
ମହାମାଘୀ ପୂର୍ଣ୍ଣିମାରେ ପୁରୁଷୋତ୍ତମରେ
ଏକା ଗ୍ରସନେ ସମୁଦ୍ର ଜଳେ ସ୍ନାନ କଲେ ।
ପିତୃଗଣଙ୍କ ଉଦ୍ଦେଶ୍ୟେ ତିଳ ତରପଣ
କିମ୍ବା ଅପର ବ୍ୟକ୍ତିଙ୍କ ନାମ ଉଚ୍ଚାରିଣ ।
ସ୍ୱର୍ଗରେ ଥିଲେ ବା ନରକରେ ପିତୃଗଣ
ସେହିକାଳେ ବ୍ରହ୍ମଲୋକେ କରନ୍ତି ଗମନ ।
ଏ ହେତୁ ଏ ଯୋଗେ ଅତି ପବିତ୍ର ଦୁର୍ଲ୍ଲଭ
ହେ ବତ୍ସ ! କଦାପି ମନେ ବିସ୍ମୃତ ନ ହେବ ।
ଦେବତାମାନଙ୍କଠାରୁ କରି ବର ଲାଭ
ଗୟା ଶିର ପବିତ୍ରତା ହୋଇଛି ସମ୍ଭବ ।
ଯାର ସଂସର୍ଗରୁ ଅନ୍ୟ ପୁଣ୍ୟ କ୍ଷେତ୍ରମାନ
ଜନମାନଙ୍କୁ ପବିତ୍ର କରିବାକୁ କ୍ଷମ ।
ସେହି ଦେବଙ୍କର ଦେହ ସମାନ ଏ କ୍ଷେତ୍ର
ପୁରୁଷୋତ୍ତମ ନାମରେ ଅଟଇ ପବିତ୍ର ।
ଯେଉଁ ପୁତ୍ରଗଣ ଏହି ପୁରୁଷୋତ୍ତମରେ
ପିଣ୍ଡଦାନ କରିଥାନ୍ତି ଶ୍ରଦ୍ଧା ସହିତରେ ।
ତାହାଙ୍କର ପିତୃଗଣ ମୁକ୍ତ ହୋଇଯାନ୍ତି
ହେ ବତ୍ସ ମନରେ ଆଉ କର ନାହିଁ ଭ୍ରାନ୍ତି ।
ପିତୃଗଣଙ୍କ ଉଦ୍ଦେଶ୍ୟେ ବହୁବିଧ ଦାନ
ପୁରୁଷୋତ୍ତମରେ ଦିଏ ଶ୍ରଦ୍ଧାରେ ଯେ ଜନ ।
ପିତୃଗଣଙ୍କ ସହିତ ଦାତାକୁ ମୁକତି
ପ୍ରଦାନ କରନ୍ତି ସ୍ୱୟଂ ଦେବ ଲକ୍ଷ୍ମୀପତି ।
ସାଗର ଜଳରେ ପାକ କଲେ ଶ୍ରାଦ୍ଧ ଅନ୍ନ
ଭଗବାନଙ୍କୁ ସେ ଜଳେ କରିଲେ ଅର୍ଚ୍ଚନ ।
କୋଟି କୋଟି ଗୁଣ ଫଳ ଲଭଇ ନିଶ୍ଚୟ
ମହାମାଘୀ ପୂର୍ଣ୍ଣିମାରେ ନ କର ସଂଶୟ ।
ଅନ୍ୟ ସମୟରେ ମହୋଦଧି ଜଳେ ସ୍ନାନ
କରିବ ତର୍ପଣ ଭଗବାନଙ୍କୁ ଅର୍ଚ୍ଚନ ।
ଗଙ୍ଗାଜଳେ ସ୍ନାନ ବିଷ୍ଣୁ ପାଦୋଦକ ପାନ
କରିଲେ ହୁଅଇ ଯେତେ ପୁଣ୍ୟ ଅରଜନ ।
ଏକମାତ୍ର ସିନ୍ଧୁଜଳ ଯେ କରଇ ପାନ
ତାହାର ତ ପୁଣ୍ୟ କେତେ ନ ହୁଏ ଗଣନ ।
କୋଟି ଅଶ୍ୱମେଧ ଯାଗେ ଅବଭୃଥ ସ୍ନାନ
ଯେ ଜନ କରେ ତାହାର ହୁଏ ଯେତେ ପୁଣ୍ୟ ।
ଏକମାତ୍ର ସିନ୍ଧୁଜଳେ ଯେ କରଇ ସ୍ନାନ
ହରିଙ୍କର ଅନୁଗ୍ରହେ ଲଭେ ସେହି ପୁଣ୍ୟ ।
ଯେ ଜନ ଭକ୍ତିରେ କରେ ସିନ୍ଧୁଜଳେ ସ୍ନାନ
ଦେବତା ପିତୃଙ୍କୁ କରେ ବିଧିରେ ତର୍ପଣ ।
ହବିଷ୍ୟାନ୍ନ ଦ୍ୱାରା କରେ ଶ୍ରାଦ୍ଧ ପିଣ୍ଡଦାନ
ଶ୍ରୀ ଜଗନ୍ନାଥଙ୍କୁ କରେ ଦର୍ଶନ ଅର୍ଚ୍ଚନ ।
ଦାନ ଯୋଗ୍ୟ ଦ୍ରବ୍ୟମାନ ବିପ୍ରଙ୍କୁ ଦିଅଇ
ଯେ ଜନ ଏ କାର୍ଯ୍ୟମାନ ଶ୍ରଦ୍ଧାରେ କରଇ ।
ମାତୃ କୁଳ ପିତୃକୁଳ ଶ୍ୱଶୁର କୁଳର
ଶତେ ପୁରୁଷଙ୍କ କରେ ସଂସାରୁ ଉଦ୍ଧାର ।
ପିତୃ ପୁରୁଷଙ୍କ ସଙ୍ଗେ ବ୍ରହ୍ମେ ହୁଏ ଲୀନ
ଏହି ହେତୁ ମହାମାଘୀ ପୂର୍ଣ୍ଣିମା ପ୍ରଧାନ ।
ମହାମାଘୀ ପୂର୍ଣ୍ଣିମାରେ ପୁରୁଷୋତ୍ତମରେ
ଯେ ପୁତ୍ର ଶ୍ରାଦ୍ଧ ତର୍ପଣ ଶ୍ରଦ୍ଧାସହ କରେ ।
ତିନିକୁଳ ପିତୃଙ୍କର ସୌଭାଗ୍ୟ ବଳରେ
ଈଦୃଶ ପୁତ୍ର ଜନନୀ ପ୍ରସବ ଯେ କରେ ।
ଏ ଯୋଗେ ପୁରୁଷୋତ୍ତମେ ଶ୍ରାଦ୍ଧ ଯେହୁ କରେ
ତାହାର ଜୀବନ ଧନ୍ୟ ହୁଏ ସଂସାରରେ ।
ଶ୍ରାଦ୍ଧ ନିମିତ୍ତ କ୍ଷେତ୍ରକୁ କରନ୍ତେ ଗମନ
ପକ୍ଷୀଜନ୍ମ ହୋଇଥିଲେ ତାର ପିତୃଗଣ ।
ତାର ପାଦରେଣୁ ଯୋଗେ ଉନ୍ନତି ଲଭନ୍ତି
ଯେବେ ନୀଚକୁଳେ ପିତୃ ଜନ୍ମ ହୋଇଥାନ୍ତି ।
ତେବେ ସେହି ପିତୃଗଣ ଆନନ୍ଦ ମନରେ
ତାର ଆଗେ ପଛେ ଆଉ ଉଭୟ ପାର୍ଶ୍ୱରେ ।
କ୍ଷେତ୍ରକୁ ଯେ ତାରସଙ୍ଗେ କରନ୍ତି ଗମନ
ମହାମାଘୀ ଯୋଗ କଥା ଶ୍ରଦ୍ଧାମନେ ଶୁଣ ।
ବ୍ରହ୍ମାଙ୍କଠାରୁ ଆରମ୍ଭି ଏ ତିନି କୁଳରେ
ଯେ ପୁତ୍ର ଶ୍ରୀକ୍ଷେତ୍ରେ ଯାଏ ଏ ମାଘୀ ଯୋଗରେ ।
ସେ ଏକ ଯଥାର୍ଥ ପୁତ୍ର ପୁରୁଷୋତ୍ତମରେ
ଦୁର୍ଲ୍ଲଭ ଏ ଯୋଗ ହୁଏ ସହସ୍ର ବର୍ଷରେ ।

Digitized by srujanika@gmail.com

ହେ ବତ୍ସ ! ଏ ମହାଯୋଗ ଅତ୍ୟନ୍ତ ଦୁର୍ଲ୍ଲଭ
ଅଳ୍ପ ପୁଣ୍ୟକାରୀ ଜନ କେବେ ନ ପାଇବ ।
ଏ ଯୋଗ ପାଇବ ଯାର ଭାଗ୍ୟବଳ ଥିବ
କଦାଚ ସେ କାଳେ ବିତ୍ତଶାଠ୍ୟ ନ କରିବ ।
ଯେଣୁ ମାନବର ଧନ ଶରୀର ଅସ୍ଥିର
ଯଦ୍ୟପି ସେ ଧନ ଦିଆଯିବ ବିପ୍ରକର ।
ସେହି ଧନ କୋଟିଗୁଣେ ହୁଅଇ ବର୍ଦ୍ଧିତ
ହେ ବତ୍ସ ! କର୍ଣ୍ଣେ ଶୁଣିଲ କହୁଅଛି ସତ୍ୟ ।
ସକାମରେ ହେଉ ଅବା ନିଷ୍କାମ ଭାବରେ
ଯେଉଁ ଜନ କିଛି ଧନ ତହିଁ ଦାନ କରେ ।
ସେ ଜନ ନିଶ୍ଚୟ ଲାଭ କରିବ ମୁକତି
ବେଦାନ୍ତ ମତରେ ତତ୍ତ୍ୱଜ୍ଞାନ ଲାଭେ ମୁକ୍ତି ।
ସେ କାଳରେ ମନ୍ତ୍ର ଜପ ଯେଉଁଜନ କରେ
ତାର ମନ୍ତ୍ର ସିଦ୍ଧି ହୋଇଥାଏ ସେ କାଳରେ ।
ଜଗନ୍ନାଥ ମହାପ୍ରଭୁ ହୁଅନ୍ତି ପ୍ରସନ୍ନ
ଜପକର ମନସ୍କାମ କରନ୍ତି ପୂରଣ ।
ଆଉ କି ଅଧିକ ସେହିସ୍ଥାନେ ସେ କାଳରେ
କରେ କିଛି ପୁଣ୍ୟ କାର୍ଯ୍ୟ ଫଳ ଦାନ କରେ ।
ସମୁଦ୍ରର ଜଳେ ସ୍ନାନ କଲେ ଏ ସମୟେ
ଦୁରାରୋଗ୍ୟ ବ୍ୟାଧି ପୀଡ଼ାରୁ ସେ ମୁକ୍ତ ହୁଏ ।
ପାପ କ୍ଷୟ ଅର୍ଥେ ଯେବେ ଜଳେ କରେ ସ୍ନାନ
ତାହାର ପାପ ସକଳ ଜଳେ ହୁଏ ଲୀନ ।
ଏହି ହେତୁ ଏହିଯୋଗ ଅତୀବ ଦୁର୍ଲ୍ଲଭ
ମନେ ସଂଶୟ ନ କର ନୁହେଁ ଅସମ୍ଭବ ।
ଜ୍ୱଳନ୍ତ ଅଗ୍ନି ଯେପରି ତୁଳା ଭସ୍ମ କରେ
ପାପରାଶି ଭସ୍ମ ହୋଇଯାଏ ସେ ପ୍ରକାରେ ।
ମହାମାଘୀ ଯୋଗେ ସିନ୍ଧୁଜଳେ କଲେ ସ୍ନାନ
ସକଳ ପାତକରାଶି ହୁଅଇ କ୍ଷାଳନ ।
ମହାମାଘୀ ସ୍ନାନଯୋଗେ ପୁରୁଷୋତ୍ତମରେ
ପାପରାଶି ଦୂର ହୁଏ ଯଦି ସ୍ନାନ କରେ ।
ସେହି ସକଳ ବୃତ୍ତାନ୍ତ କହିଲୁ ବୁଝାଇ
ଦୃଷ୍ଟାନ୍ତ ଏକ କହୁଛି ଶୁଣ ମନଦେଇ ।
ପାଷାଣ୍ଡ ଦ୍ୱିଜଙ୍କ କୁଳେ ଧର୍ମ ପରାୟଣ
ଦୃଢ଼ ବ୍ରତ ବିଷ୍ଣୁଭକ୍ତ ହୋଇଲେ ଜନମ ।
ଏକଦା ନରକବାସୀ ତାର ପିତୃଗଣ
ଯେ ପିତୃ ପକ୍ଷୀ କୁଳରେ ହୋଇଲେକ ଜନ୍ମ ।
ଏ ସକଳେ ମେଳି ହୋଇ ଏକ ସମୟରେ
ଉପସ୍ଥିତ ହେଲେ ବିଷ୍ଣୁଭକ୍ତ ନିକଟରେ ।
କହିଲେ ହେ ସ୍ନେହାସ୍ପଦ ପୁତ୍ର ଏ କୁଳରେ
ଜନ୍ମ ହୋଇଅଛ ଆମ୍ଭ ସୌଭାଗ୍ୟ ବଳରେ ।

ଆମ୍ଭେମାନେ ଭୋଗ କରୁ ନକର ଯାତନା
ଗୟାଶିରେ ପିଣ୍ଡ ଦେଲେ ମୁକ୍ତ ହେବୁ ସିନା ।
ଆମ୍ଭେମାନେ ମୋହ ହୋଇ ଆଚାର ଛାଡ଼ିଲୁ
ଦାରୁଣ ଦୁଃଖ ଦୁର୍ଦ୍ଦଶା ଆସି ଭୋଗ କଲୁ ।
ଆମ୍ଭମାନଙ୍କ ହୃଦୟ ତମୋଗୁଣେ ପୂର୍ଣ୍ଣ
ଦିନେ ଜଗନ୍ନାଥଙ୍କୁ ଯେ ନ କଲୁ ଅର୍ଚ୍ଚନ ।
ଧର୍ମକାର୍ଯ୍ୟ କରୁଥିବା ସାଧୁମାନଙ୍କର
କାର୍ଯ୍ୟରେ ବିଘ୍ନ କରିବା କର୍ତ୍ତବ୍ୟ ଆମ୍ଭର ।
ଏକ୍ଷଣେ ନ ଜାଣୁ ଆମ୍ଭେ ଆମ୍ଭର କି ଗତି
କି ରୂପେ ଦୁଃଖାବର୍ତ୍ତରୁ ହୋଇବୁ ମୁକତି ।
ହେ ବତ୍ସ ଏକଥା ଶୁଣିଅଛି ଆମ୍ଭ କର୍ଣ୍ଣ
ପୁତ୍ର ଯଦି ଗୟାଶିରେ କରେ ପିଣ୍ଡ ଦାନ ।
ତା ପୂର୍ବ ପୁରୁଷ ପକ୍ଷୀ ଜନ୍ମ ହୋଇଥିଲେ
ତତ୍‌କାଳେ ମୁକ୍ତ ହୁଅନ୍ତି ନରକରେ ଥିଲେ ।
ପାଷାଣ୍ଡ କୁଳ ଭୂଷଣ ଶାସ୍ତ୍ରଜ୍ଞ ବ୍ରାହ୍ମଣ
ପିତୃଗଣଙ୍କ ବଚନ କରନ୍ତେ ଶ୍ରବଣ ।
ଆନନ୍ଦରେ ଭକ୍ତସହ ଗୟାକ୍ଷେତ୍ରେ ଗଲେ
ନ୍ୟାୟ ଉପାର୍ଜ୍ଜିତ ଧନେ ପିଣ୍ଡଦାନ କଲେ ।
ତହିଁ ଏକବର୍ଷ କାଳ ଅବସ୍ଥାନ କଲେ
ଶାସ୍ତ୍ରୀୟ ବିଧିରେ ନାନାବିଧ ଶ୍ରାଦ୍ଧ କଲେ ।
ଦୁଃଖାର୍ଣ୍ଣବରେ ନିମଗ୍ନ ମୂଢ଼ ମୋହଗ୍ରସ୍ତ
ପକ୍ଷୀକୁଳେ ଜନ୍ମ କିଏ ହୋଇଥିଲେ ପ୍ରେତ ।
ଏ ସକଳ ପିତୃଗଣ କେତେଦିନ ପରେ
ଉପସ୍ଥିତ ହେଲେ ଆସି ବ୍ରାହ୍ମଣ ଦୂଆରେ ।
ହେ ଶ୍ରେଷ୍ଠ ପଣ୍ଡିତ ପୁତ୍ର ଆମ୍ଭମାନଙ୍କର
ଉଦ୍ଧାର କାରଣେ ଶାସ୍ତ୍ର ବିଧି ଯେ ପ୍ରକାର ।
ସେ ପ୍ରକାରେ ଗୟାଧାମେ କଲ ପିଣ୍ଡ ଦାନ
କିନ୍ତୁ ଆମ୍ଭେମାନେ ତାହା ନ କଲୁ ଦର୍ଶନ ।
ସେ କାଳରେ ହେଲା ଦଣ୍ଡ ଧରି ଯମଗଣ
କରୁଥିଲେ ପ୍ରହାର ଯେ ଅତ୍ୟନ୍ତ ଦାରୁଣ ।
ଆମ୍ଭେମାନେ ସର୍ବଦା ତା ଦେଖୁଛୁ ନେତ୍ରରେ
ପୁତ୍ର ଯଦି ଗୟାଧାମେ ପିଣ୍ଡଦାନ କରେ ।
ତା ପିତୃଗଣ ବିମାନେ ବସି ସ୍ୱର୍ଗ ଯାନ୍ତି
ତହିଁ ଅତି ଆନନ୍ଦରେ ବସତି କରନ୍ତି ।
ଆମ୍ଭେ ମନେ କରୁଁ ସେହିମାନେ ଭାଗ୍ୟବନ୍ତ
ଦିବ୍ୟ ଗନ୍ଧ ମାଲ୍ୟେ ସଦା ଦେହ ବିଭୂଷିତ ।
କିନ୍ତୁ ପୁତ୍ର ଆମ୍ଭର ଯେ ପାପ ଘୋରତର
ତୁମ୍ଭେ ନାନାବିଧ ଶ୍ରାଦ୍ଧ କଲ ଗୟାଶିର ।
ତଥାପି ଆମ୍ଭର ପାପ କ୍ଷୟ ହେଲା ନାହିଁ
ଯେହେତୁ ଆମ୍ଭ ବିଶ୍ୱାସ ଧର୍ମ ଶାସ୍ତ୍ରେ ନାହିଁ ।

Digitized by srujanika@gmail.com

ପୁତ୍ର ଆମ୍ଭେମାନେ କିଛି ଜାଣିତ ନ ପାରୁ
କି ରୂପେ ମୁକତି ହେବୁଁ ଏ ଦୁଃଖ ସାଗରୁ ।
ହେ ପୁତ୍ର କ୍ଷୀର ସାଗରେ ଚନ୍ଦ୍ରମା ସମାନ
ଆମ୍ଭମାନଙ୍କ କୁଳରେ ହୋଉଛୁ ଜନମ ।
ତୁମ୍ଭଙ୍କୁ ଛାଡ଼ିଲେ ନାହିଁ ଆଉ ଅନ୍ୟଗତି
କି ରୂପେ ଦୁଃଖରୁ ଆମ୍ଭେ ହୋଇବୁ ମୁକତି ।
ଏକଥାକୁ ତୁମ୍ଭେମାନେ ବିଚାର କରିଣ
ଆମ୍ଭମାନଙ୍କୁ ଦୁଃଖରୁ କର ପରିତ୍ରାଣ ।
ପୁତ୍ରର ପୁତ୍ରତ୍ୱ ଏହା ବଂଶଜମାନଙ୍କୁ
ନରକକୁ ଉଦ୍ଧାରିବ କରି କର୍ତ୍ତବ୍ୟକୁ ।
ଯେ ପୁତ୍ର ନ୍ୟାୟ ଅନ୍ୟାୟ ବିଚାର ନ କରେ
ପୂର୍ବ ପୁରୁଷଙ୍କୁ ନେଇ ପକାଏ ନର୍କରେ ।
ତୁମ୍ଭପରି ପୁତ୍ର ଯେଉଁ ବଂଶେ ହେବ ଜନ୍ମ
ନରକେ ପଡ଼ିବେ କିମ୍ପା ତାର ପିତୃଗଣ ।
ଯେଉଁ ପାପାଚାରୀଗଣ ଯାତନା ଭୋଗନ୍ତି
ସତ୍‌ପୁତ୍ର କୁଳେ ଜନ୍ମିଲେ ମୁକତ ଲଭନ୍ତି ।
ସେହି ଦ୍ୱିଜୋତ୍ତମ ପୁତ୍ର ପିତୃଗଣଙ୍କର
ଏ ଦୀନ କାତର ବାକ୍ୟେ ନ ଦେଲେ ଉତ୍ତର ।
ଚଞ୍ଚଳ ମନରେ କଲେ ଏହିରୂପେ ଚିନ୍ତା
ମନୁଷ୍ୟ ପାଇଁ ଶାସ୍ତ୍ରରେ ଅଛିତ ବ୍ୟବସ୍ଥା ।
ଯେ କାର୍ଯ୍ୟ ଶାସ୍ତ୍ର ବିଧିରେ ହୋଇବ ସମ୍ପନ୍ନ
ବିପରୀତ ଫଳ ଦେବ ନାହିଁ କଦାଚନ ।
ଶାସ୍ତ୍ର ବିଧିରେ ଗୟାରେ କଲେ ପିଣ୍ଡ ଦାନ
ନରକରେ ମୁକ୍ତ ହୋଇଥାନ୍ତି ପିତୃଗଣ ।
ଯେତେ ପାପ ଥିବ ତାହା ହୋଇବ ବିନଷ୍ଟ
କି ହେତୁ ମୁକ୍ତ ନ ହୋଇ ପାଉଛନ୍ତି କଷ୍ଟ ।
କର୍ତ୍ତବ୍ୟା କର୍ତ୍ତବ୍ୟ କରିବାକୁ ନିରୂପଣ
ଏକମାତ୍ର ଶାସ୍ତ୍ର ବାକ୍ୟ କେବଳ ପ୍ରମାଣ ।
ଏକଥା ଭଗବାନଙ୍କ ମୁଖରୁ ନିର୍ଗତ
ଏଥିରେ କିଛି ସନ୍ଦେହ ନାହିଁ ଏହା ସତ୍ୟ ।
ସେ ବ୍ରାହ୍ମଣ ଏହିରୂପେ ଚିନ୍ତା କରୁଥିଲେ
ଆକାଶରୁ ଦୈବବାଣୀ ସେ କାଳେ ଶୁଣିଲେ ।
ହେ ବ୍ରାହ୍ମଣ ଯାହା ଚିନ୍ତା କରୁଅଛ ସତ୍ୟ
ଗୟାଶ୍ରାଦ୍ଧ କଲେ ପିତୃଗଣ ହେବେ ମୁକ୍ତ ।
ପାପ ନାଶ ହୋଇ ଦୁର୍ଗତିରୁ ମୁକ୍ତି ପାନ୍ତି
ଅବଶ୍ୟ ବ୍ରହ୍ମ ଲୋକକୁ ଗମନ କରନ୍ତି ।
ନାନାବିଧ ପାପ କଲେ ତୁମ୍ଭ ପିତୃଗଣ
ବେଦ ଦ୍ରୋହୀ ହୋଇ କଲେ ଜୀବନ ଯାପନ ।
ଅନ୍ତର୍ଯ୍ୟାମୀ ଈଶ୍ୱରଙ୍କୁ ଅବଜ୍ଞା କରିଲେ
ଏହିହେତୁ ନରକରେ ଯାତନା ଭୋଗିଲେ ।
ଯେ ଦେବଦ୍ରୋହୀ ତା ପାଇଁ ଗୟାଶ୍ରାଦ୍ଧ କଲେ
ସେ ତ ମୁକ୍ତି ଲାଭ ନ କରିବ କେଉଁ କାଳେ ।
ତୁମ୍ଭେ ପାଷାଣ୍ଡଙ୍କ କୁଳେ ହୋଇଅଛ ଜାତ
ବୈଦିକ କର୍ମର ଫଳ ହୋଇବ ପ୍ରାପତ ।
କିନ୍ତୁ ତୁମ୍ଭେ ବ୍ରହ୍ମତେଜ କରିଅଛ ଲାଭ
ପୂର୍ବ ପୁରୁଷମାନଙ୍କୁ ଉଦ୍ଧାର କରିବ ।
କହୁଅଛୁ ଗୂଢ଼ତତ୍ତ୍ୱ କରନ୍ତୁ ଶ୍ରବଣ
ପାଷାଣ୍ଡ କୁଳେ ମୁକତ ହେବେ ପିତୃଗଣ ।
ଅଜ୍ଞାନ ନାଶ ହୋଇବ ହୃଦରୁ ତାଙ୍କର
ଏ ଦୁଇକଥା ସମାନ ମନରେ ବିଚାର ।
ମନିଷୀଗଣ କହନ୍ତି ଆତ୍ମ ସାକ୍ଷାତ୍‌କାର
ଯେ କରେ ଅବଶ୍ୟ ମୁକ୍ତି ହୁଅଇ ତାହାର ।
ଅଥବା ପୁରୁଷୋତ୍ତମ ସାଗର ତୀରରେ
ମହାମାଘୀ ଯୋଗେ ପିଣ୍ଡଦାନେ ମୁକ୍ତି ମିଳେ ।
ଏ ଦୁଇ ମୋକ୍ଷଲାଭର ଅଟଇ କାରଣ
ପାପୀଜନ ଆତ୍ମଦର୍ଶନରେ ନୁହେଁ କ୍ଷମ ।
ହେ ପାଷାଣ୍ଡ କୁଳଦୀପ ମେଧାବୀ ବ୍ରାହ୍ମଣ
ମାଘୀଯୋଗେ ଶ୍ରୀକ୍ଷେତ୍ରରେ କର ପିଣ୍ଡଦାନ ।
ଚକ୍ଷୁରେ ଦେଖିବ ପୂର୍ବପୁରୁଷମାନଙ୍କୁ
ପାପମୁକ୍ତ ହୋଇ ଯିବ ବୈକୁଣ୍ଠ ପୁରକୁ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ଦୁଇ ପାଞ୍ଚ ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ଜୟ ଜଗନ୍ନାଥ ଜୟ କମଳା ରମଣ
ଜୟ ରେବତୀ ବଲ୍ଲଭ ପ୍ରଭୁ ବଳରାମ ।
ଜୟ ମା ସୁଭଦ୍ରା ଦେବୀ ତୋ ପାଦେ ଶରଣ
କରଯୋଡ଼ି ମାଗୁଅଛି ହରିହର ଦୀନ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ମହାମାଘୀ ସ୍ନାନ ଯୋଗ ବର୍ଣ୍ଣନେ
ଦ୍ୱିପଞ୍ଚାଶତୋଽଧ୍ୟାୟଃ ।

□□

## ତ୍ରିପଞ୍ଚାଶତ ଅଧ୍ୟାୟ

ଜୈମିନି ମୁନି କହିଲେ ଶୁଣ ଦ୍ୱିଜବର
ଆକାଶବାଣୀ ଶୁଣନ୍ତେ ରୋମାଞ୍ଚ ଶରୀର ।
ମହାମାଘୀ ଯୋଗ ଆସି ହେଲା ଉପସ୍ଥିତ
ପୁରୁଷୋତ୍ତମ କ୍ଷେତ୍ରରୁ ଚଳିଲେ ତୁରିତ ।
ଆଶ୍ଚର୍ଯ୍ୟ ବିଷୟ ସେହି ଦ୍ୱିଜ ଯେତେବେଳେ
ପୁରୁଷୋତ୍ତମ କ୍ଷେତ୍ରର ସମୀପେ ମିଳିଲେ ।
ଦେଖିଲେ ନିଜର ପୂର୍ବ ପୁରୁଷ ସକଳ
ପଛେ ଧାଇଁ ଆସୁଛନ୍ତି ହୋଇଣ ଆକୁଳ ।

Digitized by srujanika@gmail.com

ପାପକ୍ଷୟ ହେତୁ ଦେହ ପବିତ୍ର ହୋଇଛି
ଅପୂର୍ବ ଶୋଭାରେ ତାଙ୍କ ଦେହ ଝଟକୁଛି ।
ଶୁଦ୍ଧ ସତ୍ତ୍ୱଗୁଣେ ଅନ୍ତଃକରଣ ବିମଳ
କରିଛନ୍ତି ପରିଧାନ ବସନ ସକଳ ।
ଅତି ଆନନ୍ଦରେ ପରସ୍ପର ମେଳି ହୋଇ
ବିନୟେ ମଧୁରବାଣୀ କହନ୍ତି ତୁହାଇ ।
ହେ ପୁତ୍ର ଆମ୍ଭର ବଂଶେ ଧନ୍ୟ ତୋ ଜୀବନ
ଉଦ୍ଧାର କରିବୁ ପାପକାରୀ ପିତୃଗଣ ।
ହେ ତାତ ମୁକତି ଦାନ କରେ ଯେଉଁ ସ୍ଥାନ
ଭୂତଳେ ପବିତ୍ର ନାମ ଶ୍ରୀ ପୁରୁଷୋତ୍ତମ ।
ସେ କ୍ଷେତ୍ରକୁ ଯେଣୁ ତୁମ୍ଭେ କଲ ଆଗମନ
ତୁମ୍ଭ ସଙ୍ଗେ ଆସି ଆସି ପାପ ହେଲା ଲୀନ ।
ପୂର୍ବଦିଗେ ସୂର୍ଯ୍ୟଦେବ ହୁଅନ୍ତେ ଉଦୟ
ଯେଉଁପରି ତମୋରାଶି ହୁଅଇ ବିଲୟ ।
କ୍ଷେତ୍ର ନିକଟରେ ଆମ୍ଭେ ହୁଅନ୍ତେ ପ୍ରବେଶ
ଅଜ୍ଞାନାନ୍ଧକାର ହୃଦୟରୁ ହେଲା ନାଶ ।
ପାପ ଶୂନ୍ୟ ପିତୃଗଣ ଏମନ୍ତ କହିଲେ
ଶୁଣନ୍ତେ ସେହି ବ୍ରାହ୍ମଣ ବିସ୍ମୟ ହୋଇଲେ ।
କ୍ଷେତ୍ର ମହିମା ମନରେ ପ୍ରଶଂସା କରନ୍ତି
କ୍ଷେତ୍ରକୁ ଯିବା ବାଟରେ ଏ ରୂପ ଦେଖନ୍ତି ।
ବ୍ରହ୍ମ ଲୋକରୁ ଆଗତ ବ୍ରହ୍ମ ଋଷିଗଣ
ସେ ପଥେ କ୍ଷେତ୍ରକୁ କରୁଅଛନ୍ତି ଗମନ ।
ସର୍ବଦା ଲୋକାନୁଗ୍ରହକାରୀ ଦେବଗଣ
କହିଲେ ଆକାଶେ ରହି ସତ୍ୟ ଯେ ବଚନ ।
ଆକାଶବାଣୀ ତ କଦାଚନ ନୁହେଁ ମିଥ୍ୟା
କି ହେତୁ ମିଥ୍ୟା ବଚନ କହିବେ ଦେବତା ।
କର୍ମଫଳ ତତ୍ତ୍ୱ ଦେବଗଣ ବୁଝିଛନ୍ତି
ତେଣୁ ଲୋକଙ୍କୁ କର୍ମରେ ପ୍ରବର୍ତ୍ତାନ୍ତି ନିତି ।
ଯାହାହେଉ ନର୍କବାସୀ ପିତୃଗଣଙ୍କର
ଉଦ୍ଧାର ବିଷୟେ ହେଲା ସାମର୍ଥ୍ୟ ମୋହର ।
ସେହି ପାଷାଣ୍ଡ କୁଳରେ ଜନ୍ମ ଲଭିଅଛି
ଭାଗ୍ୟକୁ ପିତୃମାନଙ୍କୁ ଉଦ୍ଧାର କରୁଛି ।
ଆଶ୍ଚର୍ଯ୍ୟ ବିଷୟ ଗୟାକ୍ଷେତ୍ରେ ପିଣ୍ଡ ଦେଲି
ପିତୃଗଣଙ୍କୁ ଉଦ୍ଧାର କରି ନ ପାରିଲି ।
ଏହି କ୍ଷେତ୍ରର ମହିମା ଅଟଇ ଏସନ
ସୂର୍ଯ୍ୟ ତେଜ ପ୍ରାପ୍ତହୋଇ ପାପକାରୀଗଣ ।
ଚିତ୍ତଶୁଦ୍ଧି ଲଭିଛନ୍ତି ପାଇବେ ମୁକତି
ସେମାନେ ପ୍ରଶଂସା ମୋତେ ତେଣୁ କରୁଛନ୍ତି ।
ମୋ କର୍ମରୁ ପିତୃଗଣ ହେଲେ ପାପ ମୁକ୍ତ
ନିଶ୍ଚୟେ ମୋ ଦେହ ହୋଇଅଛି ତ ପବିତ୍ର ।

ସେହିଦିନ ଏହିପରି ମନରେ ଚିନ୍ତିଲେ
ବହୁଜନ ସମାକୀର୍ଣ୍ଣ ପଥରେ ଚାଲିଲେ ।
ଧୀରେ ଧୀରେ ପୂର୍ବ ପୁରୁଷଙ୍କ ସହିତରେ
ଅତି କଷ୍ଟେ ମହୋଦଧି ତୀର୍ଥରେ ମିଳିଲେ ।
ଶାସ୍ତ୍ର ବିଧାନରେ ସିନ୍ଧୁ ଜଳେ କରି ସ୍ନାନ
ଦେବତା ପିତୃମାନଙ୍କୁ କରିଲେ ତର୍ପଣ ।
ଅତି ଆଦର ଭକ୍ତିରେ ଶ୍ରାଦ୍ଧ ତହିଁ କଲେ
ଶ୍ରୀ ଜଗନ୍ନାଥଙ୍କୁ ଧ୍ୟାନ ଶେଷରେ କରିଲେ ।
ଧ୍ୟାନରେ ଦେଖିଲେ ଆକାଶରୁ ଆସୁଅଛି
ଉଜ୍ଜ୍ୱଳ ମଣି ରତନେ ଖଚିତ ହୋଇଛି ।
ସୁବର୍ଣ୍ଣ କିଙ୍କିଣୀ ମାଳା ଧ୍ୱନି ଶୁଭୁଅଛି
ମନୋହର ସ୍ୱରତାଳେ ବୀଣା ବାଜୁଅଛି ।
ଚନ୍ଦ୍ର ସୂର୍ଯ୍ୟସମ କାନ୍ତି କାମଚାରୀ ରଥ
ଧ୍ୟାନ ଦୃଷ୍ଟିରେ ଦେଖିଲେ ସଂଖ୍ୟା ଅଗଣିତ ।
ସେ ରଥେ ଅପ୍ସରା ଆଉ ବିଦ୍ୟାଧର ଗଣ
ଚତୁର୍ଦ୍ଦିଗେ କରୁଛନ୍ତି ପୁଷ୍ପ ବରଷଣ ।
ଏହା ଦେଖନ୍ତେ ବ୍ରାହ୍ମଣ ଧ୍ୟାନ ଭଙ୍ଗ କଲେ
ଚକ୍ଷୁ ମେଲାକରି ତାହା ବାହାରେ ରଖିଲେ ।
ଏହାପରେ ଦେବଦୂତଗଣ ଉପସ୍ଥିତ
ସେ ଦ୍ୱିଜ ପିତୃମାନଙ୍କୁ ହେଲେ ଦଣ୍ଡବତ ।
ମଧୁର ବାକ୍ୟେ ବିନୟ ହୋଇଣ କହିଲେ
ଆପଣେ ତ ଭାଗ୍ୟବନ୍ତ ବ୍ରହ୍ମାଙ୍କୁ ବୋଇଲେ ।
ଆପଣମାନଙ୍କ ପାଇଁ ଆଣିଅଛୁ ରଥ
ବ୍ରହ୍ମଲୋକ ଯାଅ ବେଗେ ହୋଇ ଆନନ୍ଦିତ ।
ଆପଣମାନେ ନର୍କରେ ଦୁଃଖ ଭୋଗୁଥିଲେ
ଆପଣଙ୍କ କୁଳେ ବିଷ୍ଣୁଭକ୍ତ ଜାତ ହେଲେ ।
ସେହି ଆପଣମାନଙ୍କୁ ଉଦ୍ଧାର କରିଲେ
ମହାମୋହ ଜନନୀ ଅବିଦ୍ୟା ନାଶ କଲେ ।
ଅବିଦ୍ୟାର ବଶହୋଇ ସାଧାରଣଜନ
ସଂସାର ମାର୍ଗେ ଭ୍ରମଣ କରି ପ୍ରତିଦିନ ।
ପାଷାଣ୍ଡ ହୁଅନ୍ତି ତାଙ୍କ ଉଦ୍ଧାର ନିମିତ୍ତ
ଆଉ ତ କିଛି ଉପାୟ ନାହିଁ ନ ହେବ ତ ।
ଜୈମିନି କହନ୍ତି ହେ ଶୌନକ ମୁନି ଶୁଣ
ନିଶ୍ଚୟ କରି କହୁଛି ବଂଶଧର ଗୁଣ ।
ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରାଦ୍ଧ ନ କରିଲେ
ପାପୀବଂଶର ମୁକତି ନୁହେଁ କେଉଁ କାଳେ ।
ଭଗବାନଙ୍କୁ ମନରେ ଚିନ୍ତି ଇନ୍ଦ୍ରଦ୍ୟୁମ୍ନ
ଅତିକ୍ଳେଶେ ଯଜ୍ଞ ଦୀକ୍ଷା କରିଲେ ଗ୍ରହଣ ।
ଭଗବାନଙ୍କର ଦୟା ପ୍ରକୃତ ନ ଥିଲେ
କ୍ଳେଶ ସାଧ୍ୟ ବହୁ ଅର୍ଥ ବ୍ୟୟ ବହୁକାଳେ ।

Digitized by srujanika@gmail.com

ସହସ୍ରାଶ୍ୱମେଧ ଯଜ୍ଞ କରିଲେ ସମ୍ପୂର୍ଣ୍ଣ
ଯାହା କରି ନ ପାରିବେ ଅଳ୍ପ ଭାଗ୍ୟଜନ ।
ଏହି ହେତୁ ସ୍ନେହସିନ୍ଧୁ ଚନ୍ଦ୍ରମା ସମାନ
ଦୀନଜନ ପ୍ରତି ଅନୁଗ୍ରହ ପରାୟଣ ।
ସର୍ବକର୍ମ କର୍ତ୍ତା ନିରୁପାଧି ଦୟାମୟ
ଜଗନ୍ନାଥ ଦାରୁରୂପେ ହୋଇଲେ ଉଦୟ ।
ପ୍ରଶାନ୍ତ ମୂର୍ତ୍ତିରେ ଇନ୍ଦ୍ରଦ୍ୟୁମ୍ନେ ବର ଦେଲେ
ବହୁବିଧ ବର ପାଇ ରାଜା ଧନ୍ୟ ହେଲେ ।
ଏ ପୁରୁଷୋତ୍ତମ କ୍ଷେତ୍ର ଆମ୍ଭର ସ୍ୱରୂପ
ଏ କଥାରେ ମନେ କିଛି ନ କର ବିକଳ୍ପ ।
ମୁକ୍ତିଲାଭେ ଏହା ଅତି ଉତ୍ତମ ଉପାୟ
ତୁମ୍ଭଙ୍କୁ କହୁଛି ଏହା ଅତି ଗୋପନୀୟ ।
ନିଜ ଦୁଇବାହୁ ଟେକି ପ୍ରତିଜ୍ଞା କରୁଛୁ
ସତ୍ୟ ସତ୍ୟ ପୁନଃ ସତ୍ୟ କରି କହୁଅଛୁ ।
ଏକ୍ଷେତ୍ରେ ବଟ ସାଗର ମଧ୍ୟେ ପ୍ରାଣ ଗଲେ
ସାଯୁଜ୍ୟ ମୁକ୍ତି ଲଭିବ ନିଶ୍ଚୟ ରୂପରେ ।
କିନ୍ତୁ ମୋକ୍ଷ ଲାଭ ତତ୍ତ୍ୱ ସାକ୍ଷାତ୍‌କାର କଲେ
ମୁକ୍ତି ମିଳେ ଏ କ୍ଷେତ୍ରରେ ପ୍ରାଣ ବିସର୍ଜିଲେ ।
ଏ ଦୁଇ ବ୍ୟତୀତ ନାହିଁ ମୁକ୍ତିର ସାଧନ
ନିଶ୍ଚୟ ମୁକ୍ତି ବିଷୟେ ଏ ଦୁଇ ସମାନ ।
ହେ ଶୌନକ ମହାମାଘୀଯୋଗ ଏ କ୍ଷେତ୍ରରେ
ପିତୃଙ୍କ ଉଦ୍ଦେଶ୍ୟେ ଯେଉଁ ପୁତ୍ର ଶ୍ରାଦ୍ଧ କରେ।
ଏହିରୂପ ମୁକ୍ତି ଲାଭ ଏ ତିନି ଦୁର୍ଲ୍ଲଭ
ହେ ବତ୍ସ ମନରେ ଏହି କଥା ରଖିଥିବ ।
ଅର୍ଦ୍ଧୋଦୟ ଆଦି ଯୋଗ କହୁଛି ବୁଝାଇ
ମହାମାଘୀ ଯୋଗରୁ ଯେ ଅଧିକ ନୁହଇ ।
ଏହି ଯୋଗର ଶତାଂଶ ଏକାଂଶ ସମାନ
ହୋଇ ନ ପାରିବ କେବେ ଅନ୍ୟ ଯୋଗମାନ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ତିନି ପଞ୍ଚ ଛାନ୍ଦ ଶେଷ ଉତ୍କଳ ଭାଷାରେ ।
ହେ ପ୍ରଭୁ ସଂସାର ଦୁଃଖ ହେବାକୁ ନିପାତ
ତୁମ୍ଭ ଚରଣରେ କରୁନାହିଁ ଦଣ୍ଡବତ ।
କୁମ୍ଭୀପାକ୍ର ନର୍କ ଦୁଃଖ ସହିବା ଭୟରେ
କରୁନାହିଁ ନାମମାନ ମାତିଣ ପ୍ରେମରେ ।
ରମଣୀୟ କାନ୍ତାକୋଳ ନନ୍ଦନ ବନରେ
କ୍ରୀଡ଼ା କରିବାକୁ ଇଚ୍ଛା ନାହିଁ ମୋ ମନରେ ।
ମନରେ ଯେ ଭାବ ଜାତ ହୁଏ ଯେ ବେଳରେ
ସେ କାଳେ ରସନା ତବ ନାମ ଗାନ କରେ।
କେଉଁ ଫଳ ଲାଭ ହେବ ତାହା ତୁମ୍ଭେ ଜାଣ
ଦୀନ ହରିହର ପାଦ ପଦ୍ମରେ ଶରଣ ।
ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ ମହାମାଘୀ
ସ୍ନାନଯୋଗ ଫଳ କଥନେ ନାମ ତ୍ରିପଞ୍ଚାଶତୋଽଧ୍ୟାୟଃ ।

□□

## ଚତୁଃପଞ୍ଚାଶତ ଅଧ୍ୟାୟ

ଜୈମିନି ମୁନି କହନ୍ତି ଆହେ ମୁନିଗଣ
ଆଶ୍ଚର୍ଯ୍ୟ ଗୋପନ କଥା କହୁଅଛି ଶୁଣ ।
ତୁମ୍ଭଙ୍କୁ ଯେ ଯୋଗମାନ କହିଲୁଁ ବୁଝାଇ
ପାପିଷ୍ଠମାନଙ୍କୁ ଆଶ୍ୱାସନା ଦେବାପାଇଁ ।
ଏ ଯୋଗ ସକଳ ବହୁକାଳେ ଲାଭ ହୁଏ
କଷ୍ଟ ସହି ତୀର୍ଥଯାତ୍ରା କଲେ ପାପ କ୍ଷୟେ ।
ଏହି କଥା ବୁଝିଥାନ୍ତି ପାପକାରୀଗଣ
ସାଂସାରିକ କାର୍ଯ୍ୟେ ମାତିଥାନ୍ତି ପ୍ରତିଦିନ ।
କିନ୍ତୁ ଏମାନଙ୍କୁ ମୁକ୍ତି ପ୍ରଭୁ ନ ଦିଅନ୍ତି
ଧାର୍ମିକେ ବିଶ୍ୱାସ କରି ମୁକ୍ତି ପାଇଥାନ୍ତି ।
ପୂର୍ବକାଳେ ଏକ ଋଷି କଣ୍ଡୁନାମେ ଥିଲେ
ଏକ ସ୍ୱର୍ଗ ବେଶ୍ୟା ଦେଖି ମୋହିତ ହୋଇଲେ ।
ନିତ୍ୟ ନୈମିତ୍ତକ କ୍ରିୟା ସକଳ ଛାଡ଼ିଲେ
ଦିବାନିଶି ଅବିରତ ଭୋଗରେ ମାତିଲେ ।
ଆଠଶତ ବରଷ ଯେ ଭୋଗରେ ବିତିଲା
ନିଜର ସ୍ଖଳନ କଥା ମନରେ ପଡ଼ିଲା ।
ଏକଦା ମନ ଦୁଃଖରେ ହେଲେ ଅନୁତପ୍ତ
ପୁରୁଷୋତ୍ତମ କ୍ଷେତ୍ରକୁ ଚଳିଲେ ତ୍ୱରିତ ।
ଦାରୁରୂପୀ ଜଗନ୍ନାଥ ଦେବଙ୍କୁ ଦର୍ଶନ
ଉପାସନା କରି ବ୍ରହ୍ମପଦେ ହେଲେ ଲୀନ ।
ପୂର୍ବକାଳେ ଏକ ସମୟରେ କାର୍ତ୍ତିକେୟ
ସଦାଶିବଙ୍କୁ ପୁଛିଲେ ହୋଇଣ ବିନୟ ।
ହେ ତାତ ! ପୁରୁଷୋତ୍ତମ କ୍ଷେତ୍ରର ବିଷୟ
ବୁଝାଇ କହିଲେ ମନୁ ଛାଡ଼ିବ ସଂଶୟ ।
ସେ କ୍ଷେତ୍ର ମହିମା ନ ଜାଣନ୍ତି ଅନ୍ୟ କେହି
ତାହା ଶୁଣିବାକୁ ମନେ ଶରଧା ହୁଅଇ ।
ଯେଉଁ ଜନ ବହୁବାର ଶ୍ରୀକ୍ଷେତ୍ରକୁ ଯାନ୍ତି
ଯେଉଁ ଫଳ ପୂର୍ଣ୍ଣରୂପେ ଲଭି ନ ପାରନ୍ତି ।
ସେହି କ୍ଷେତ୍ରେ ଏକଦିନ କରି ଅବସ୍ଥାନ
ସେ ଫଳ ଲଭିବ ତାତ କହ ସେ ଆଖ୍ୟାନ ।
ଜୀବମାନଙ୍କର ପାପକ୍ଷୟ କି ପ୍ରକାରେ
ହୋଇକରି ମୁକ୍ତି ହେବ ଏ କଳିକାଳରେ ।
ପାପ ହେତୁ ଦୁଃଖ ଭୋଗୁଛନ୍ତି ଜୀବଗଣ
ସୁଖୀ ହେବେ କେଉଁ କାର୍ଯ୍ୟ କଲେ ଅନୁଷ୍ଠାନ ।
ସାଂସାରିକ କର୍ମମଧ୍ୟେ ଯେ କର୍ମ ପ୍ରଧାନ
ସର୍ବ ପାପ କ୍ଷୟ ହୁଏ କଲେ ଅନୁଷ୍ଠାନ ।
ଏପରି କୌଣସି କର୍ମ ଅଛି କି ସଂସାରେ
ଯାହାକରି ପାପ ମୁକ୍ତି ହୋଇଯିବେ ନରେ ।

Digitized by srujanika@gmail.com

ଈଶ୍ୱର କହନ୍ତି ବତ୍ସ ସାବଧାନେ ଶୁଣ
ଭୋଗ ସ୍ୱର୍ଗ ଅପବର୍ଗ ତିନିର କାରଣ ।
ସକଳ ପ୍ରକାରେ ଶ୍ରେୟ ଲାଭର ନିଦାନ
ପୁଣ୍ୟର ଜନକ ଦୁଃଖ ଦୁର୍ଗ ବିନାଶନ ।
ସୁଖ ସମୃଦ୍ଧି ସମ୍ପତ୍ତି ଆଦି ଲାଭ ହୁଏ
ଆୟୁବୃଦ୍ଧି ହୋଇ ପାପଭୟ ଦୂର ହୁଏ ।
ଏ ସକଳ କଥା ଆମ୍ଭେ କହୁଛୁ ବୁଝାଇ
ମନେ ରଖିଥିବୁ ବାବା ପାଶୋରିବୁ ନାହିଁ ।
ମାଘମାସ ଅମାବାସ୍ୟା ଶ୍ରବଣା ନକ୍ଷତ୍ର
ବ୍ୟତିପାତ ଯୋଗ ରବିମାସର ଏକତ୍ର ।
ଏହାକୁ କହନ୍ତି ଅର୍ଦ୍ଧୋଦୟ ଯୋଗ ବୋଲି
ସହସ୍ର ସୂର୍ଯ୍ୟପରାଗ ସମ ପୁଣ୍ୟହୋଇ ।
ଦିନ ମଧ୍ୟରେ ଏ ଯୋଗ ହୋଇଲେ ପ୍ରଶସ୍ତ
ଅପ୍ରଶସ୍ତ ହୁଏ ରାତ୍ରେ ହେଲେ ଉପଗତ ।
ଗର୍ଜ୍ଜନ କରନ୍ତି ପାପରାଶି ସେ ପର୍ଯ୍ୟନ୍ତ
ଅର୍ଦ୍ଧୋଦୟ ସ୍ନାନ ଯୋଗ ନ ହେବା ପର୍ଯ୍ୟନ୍ତ ।
କାଳକୃତ ପ୍ରାକୃତିକ ଯେ ପାପ ନିଚୟ
ଏ ଯୋଗରେ ସେ ପାପର ଅଧେ ହୁଏ କ୍ଷୟ ।
ଏହି ହେତୁ ବୁଧଗଣ ନାମ ଦେଇଛନ୍ତି
ଅର୍ଦ୍ଧୋଦୟ ଯୋଗ ତାର ଏ ରୂପ ଶକତି ।
ଦେବତାଗଣ ଏ ଯୋଗେ ପ୍ରାର୍ଥନା କରନ୍ତି
ପାପ ଅନ୍ଧକାରୁ ନରଗଣ ହେବେ ମୁକ୍ତି ।
ବିମଳ ଅନ୍ତଃକରଣ ହେବେ ସର୍ବଜନ
ଅର୍ଦ୍ଧୋଦୟଯୋଗ କାଳେ କାଳେ କଲେ ସ୍ନାନ ।
ସକଳ ଜଳ ଜାହ୍ନବୀ ଜଳ ସଙ୍ଗେ ତୁଲ୍ୟ
ଯେଉଁ ଦାନ ଦେବା ତାହା ହେବ ମେରୁତୁଲ୍ୟ ।
ପାପ କ୍ଷୟ ଅଭିଳାଷୀ ଜନ ଏ କାଳରେ
ଭୂମିଦାନ ଆଦି ଦେବେ ସ୍ୱର୍ଗ କାମନାରେ ।
ତୁଳା ପୁରୁଷ ପ୍ରଦାନ କରେ ଯେଉଁ ଜନ
କୈଳାସପୁରକୁ ସେହି କରଇ ଗମନ ।
ହିରଣ୍ୟ ଗର୍ଭ ସୁବର୍ଣ୍ଣ ଯଦି କରେ ଦାନ
ମାତୃଗର୍ଭେ କ୍ଲେଶ ସହି ନ ହୁଏ ଜନମ ।
ଏହିପରି ନାନାବିଧ ଦ୍ରବ୍ୟମାନ କଲେ
ପାପରୁ ମୁକତ ହୁଏ ସୁଖ ଭୋଗ ମିଳେ ।
ସ୍କନ୍ଦ କହୁଛନ୍ତି ବାପା ଶୁଣ ମୋ ବଚନ
ଅଳ୍ପ ଭାଗ୍ୟବନ୍ତ ହେବେ କଳିକାଳେ ଜନ ।
ଜମିଦାନ ଦେବାପାଇଁ ସମର୍ଥ ନ ହେବେ
କି ରୂପ ପାପ ପଙ୍କରୁ ଉଦ୍ଧାର ପାଇବେ ।
ତୁଳା ପୁରୁଷ ସୁବର୍ଣ୍ଣ ଆଦି ଭୂମି ଦାନ
ସହସ୍ର ଗୋଦାନ ଆଉ ନାନା ଦ୍ରବ୍ୟ ଦାନ ।
ଅର୍ଦ୍ଧୋଦୟ ଯୋଗେ କଲେ ଯେଉଁ ଫଳ ଲାଭ
ଏକମାତ୍ର କେଉଁ ଦାନେ ସେ ଫଳ ଲଭିବ ।
ମହେଶ୍ୱର କହୁଛନ୍ତି ବତ୍ସ ଏବେ ଶୁଣ
ସମସ୍ତ ଫଳ ଲଭିବ ଦେଲେ ଏକ ଦାନ ।
ସର୍ବପାପ ନାଶ ହୋଇ ହେବ ପୁଣ୍ୟବାନ
କହୁଅଛି ଅତି ଗୁହ୍ୟତମ ଦାନ ଶୁଣ ।
ଚତୁଷଷ୍ଟୀ ଚତ୍ୱାରିଂଶ ଅବା ବିଂଶପଳ
କାଂସ୍ୟପାତ୍ରେ ପୂରାଇବ ପାୟସ କେବଳ ।
ତା ଉପରେ ଅଷ୍ଟଦଳ କମଳ ଆଙ୍କିବ
କର୍ଣ୍ଣିକା ମଧ୍ୟରେ କର୍ଷେ ସୁବର୍ଣ୍ଣ ଥୋଇବ ।
ଏଶକ୍ତ ହୋଇଲେ ଅର୍ଦ୍ଧ ପରିମିତ ଦେବ
ଅଳ୍ପ ମାତ୍ର ଦେଇ ବିତ୍ତଶାଠ୍ୟ ନ କରିବୁ ।
ଯଥା ବିଧାନରେ ସ୍ନାନ କରି ଯହିଁ ତହିଁ
ଏ କାର୍ଯ୍ୟରେ ଅନ୍ୟମନ୍ତ୍ର ଆବଶ୍ୟକ ନାହିଁ ।
ଏହି ମନ୍ତ୍ର ନିତି ସ୍ନାନ ପରେ ଉଚ୍ଚାରଣ
ପୁନର୍ବାର ଆଉଥରେ କରିବ ଯେ ସ୍ନାନ ।
ତ୍ରୟୋଦଶ ସ୍ୱରଶିରେ କଳାବିନ୍ଦୁ ଦେଇ
ଅଥବା କାମ ବୀଜକୁ ତାହାସ୍ଥାନେ ଥୋଇ ।
ବିକାର ପୁରୁଷ ଚତୁର୍ଥ୍ୟନ୍ତ ପରେ ନମଃ
ଅନଳସ ଚିତ୍ତେ କରିବଟି ଉଚ୍ଚାରଣ ।
ଏମନ୍ତ୍ର ସକଳ କାର୍ଯ୍ୟେ ଅଟଇ ପ୍ରଶସ୍ତ
ଆମ୍ଭର ପରମଧନ ଆଉ ଅତି ଗୁପ୍ତ ।
ଏହା ସର୍ବସିଦ୍ଧି କର ପୁଣ୍ୟର ଜନକ
ମୋକ୍ଷଦ ପାପ ନାଶକ ଶୁଭ ପ୍ରଦାୟକ ।
ପବିତ୍ର ବସ୍ତୁ ମଧ୍ୟରେ ପରମ ପବିତ୍ର
ଯୋଗୀଙ୍କର ଯୋଗସିଦ୍ଧି କରେ ଏହି ମନ୍ତ୍ର ।
ସ୍ନାନାନ୍ତେ ପିତୃମାନଙ୍କୁ ତର୍ପଣେ ତୋଷିବ
ଧୌତବସ୍ତ୍ର ପିନ୍ଧି ଆଚମନ ଯେ କରିବ ।
ଯଥା ବିଧାନେ ସୂର୍ଯ୍ୟଙ୍କୁ ଅର୍ଦ୍ଧ୍ୟେକରି ଦାନ
ତ୍ରୟୀମୟ ତୁମ୍ଭଙ୍କୁ ମୁଁ କରୁଛି ପ୍ରମାଣ ।
ଦେବ ଦେବ ଦିବାକର ଯେ ପୁଣ୍ୟ ମୋହର
ପୂର୍ବ ଜନ୍ମକୃତ ତାହା ଅକ୍ଷୟ ଯେ କର ।
ତଣ୍ଡୁଳରେ ପୂର୍ଣ୍ଣ ହୋଇଥିବା ପାତ୍ରପରେ
ଅଷ୍ଟଦଳ ପଦ୍ମଟିଏ ଲେଖିବ ଯତ୍ନରେ ।
ପାୟସରେ ପୂର୍ଣ୍ଣ ପାତ୍ର ଅମୃତ ସମାନ
ବ୍ରହ୍ମାବିଷ୍ଣୁ ଶିବରୂପେ କରିବ ଚିନ୍ତନ ।
ତଣ୍ଡୁଳ ପୂର୍ଣ୍ଣ ପାତ୍ରର ଉପରେ ଥୋଇବ
ଶ୍ୱେତବସ୍ତ୍ର ଶ୍ୱେତମାଲ୍ୟ ଭୂଷଣ କରିବ ।
ବ୍ରହ୍ମାବିଷ୍ଣୁ ଶିବଙ୍କର ସନ୍ତୋଷ ଅର୍ଥରେ
ସମର୍ପଣ କରିଦେବ ବ୍ରାହ୍ମଣ ହସ୍ତରେ ।

Digitized by srujanika@gmail.com

ସେ ବ୍ରାହ୍ମଣ ସଚ୍ଚରିତ୍ର ପ୍ରଶାନ୍ତ ସ୍ୱଭାବ
ବିଧିଜ୍ଞ ତାହାରି ଥିବେ ବହୁତ କୁଟୁମ୍ବ ।
ଶେତ୍ୱବସ୍ତ୍ର ଶ୍ୱେତମାଲ୍ୟ ସେ ବିପ୍ରଙ୍କୁ ଦେବ
ବିନୟ ହୋଇ ଏ ରୂପେ ପ୍ରାର୍ଥନା କରିବ ।
ହେ ଦ୍ୱିଜସତ୍ତମ ସ୍ୱର୍ଣ୍ଣ ପାୟସରେ ପୂର୍ଣ୍ଣ
ଏହି ପାତ୍ର ଦିଶୁଅଛି ଅତି ମନୋରମ ।
ଦାତା ଗ୍ରହୀତା ଦୁହିଁଙ୍କୁ ଏ କରେ ନିସ୍ତାର
ଶ୍ରଦ୍ଧା ମନରେ ଏ ପାତ୍ର ଗ୍ରହଣ ଯେ କର ।
ତୀର୍ଥାଟନେ ଯେତେ ପୁଣ୍ୟ ଅର୍ଜନ ହୋଇଛି
ଦାନ ଦେଇ ଅତି ଯେତେ ତପସ୍ୟା କରିଛି ।
ସେ ସକଳ ପୁଣ୍ୟଫଳ ସମ୍ପୂର୍ଣ୍ଣ ରୂପରେ
ସିଦ୍ଧି ହେଉ ବିପ୍ରମଣି ତୁମ୍ଭ ପ୍ରସାଦରେ ।
ବ୍ରାହ୍ମଣ ବେଦ ମୁରତି ନାହିଁ ଯେ ସଂଶୟ
ମୋର ପୁଣ୍ୟଫଳ ବୃଦ୍ଧି ହୋଇବ ନିଶ୍ଚୟ ।
ପୁଷ୍ଟିମେଧା ବଳାରୋଗ୍ୟ ସମ୍ପଦ ଆୟୁଷ
ପୁଣ୍ୟକାର୍ଯ୍ୟେ ଫଳ ବୃଦ୍ଧି ହୋଇବ ଅବଶ୍ୟ ।
ଏହି ରୂପରେ ପ୍ରାର୍ଥନା କରିବ ବିପ୍ରଙ୍କୁ
ଯେ ବ୍ୟକ୍ତି ଶ୍ରଦ୍ଧାରେ କରେ ଏ ଅନୁଷ୍ଠାନକୁ ।
ସେ ଜନର ପୁଣ୍ୟଫଳ ଶୁଣ କହୁଅଛି
ପଞ୍ଚାଶକୋଟି ଯୋଜନ ବିସ୍ତୃତ ହୋଇଛି ।
ସୁବର୍ଣ୍ଣ ମଣିରତନ ସ୍ଥାନେ ସ୍ଥାନେ ପୂର୍ଣ୍ଣ
ସମୁଦ୍ର ମେଖଳା ପୃଥିବୀକୁ କଲେ ଦାନ ।
ଯେତେ ପୁଣ୍ୟଫଳ ମିଳେ ସେ ଫଳ ପାଇବ
ଅମନ୍ତ୍ରକ ଏ ପାୟସ ଦାନ ଯେ କରିବ ।
ସର୍ବାଭୀଷ୍ଟ ସିଦ୍ଧି ହେବ ତାହାର ନିଶ୍ଚୟ
କାର୍ତ୍ତିକେୟ ଏ କଥାରେ ନ କର ସଂଶୟ ।
ଅର୍ଦ୍ଧୋଦୟ ଯୋଗେଭୂମି ଗୋଚର୍ମ୍ମ ପ୍ରମାଣ
ତା ଅଭାବେ ଯଥାଶକ୍ତି ଭୂମି ଦେବ ଦାନ ।
ହେ ଷଣ୍ମୁଖ ସେହିଜନ ମୋ ଅନୁଗ୍ରହରେ
ଚକ୍ରବର୍ତ୍ତୀ ରାଜା ହୁଏ ଏହି ପୃଥିବୀରେ ।
ଏ ଯୋଗରେ ବ୍ରାହ୍ମଣଙ୍କୁ କରିବ ଅର୍ଚ୍ଚନ
ବସ୍ତ୍ର ଅଳଙ୍କାର ଦେଇ କରିବ ଭୂଷଣ ।
ପୟସ୍ୱିନୀ ଧେନୁ ବସ୍ତ୍ରେ ମଣ୍ଡି ବତ୍ସାସହ
ଦକ୍ଷିଣା ସଙ୍ଗତେ ଦେଲେ ହୁଏ ପାପ କ୍ଷୟ ।
ସେ ଜନ କୈଳାସ ପୁରେ କରଇ ଗମନ
ଏହି କଥା ସତ୍ୟ ମିଥ୍ୟା ନୁହେଁ କଦାଚନ ।
ନିଜ ବଂଶରେ ଯେ ଅଧୋଗତି ଲଭିଛନ୍ତି
ତାଙ୍କ ଉଦ୍ଦେଶ୍ୟରେ ଦାନ ଯେ ଜନ ଦିଅନ୍ତି ।
ବ୍ରାହ୍ମଣ ହସ୍ତରେ ଦେଲେ ତିଳପାତ୍ର ଦାନ
ସଙ୍କଟୁ ଉଦ୍ଧାର ପାନ୍ତି ତାର ପିତୃଗଣ ।

ଅର୍ଦ୍ଧୋଦୟ ଯୋଗବଳେ ବ୍ରାହ୍ମଣ ହସ୍ତରେ
ଭୂମି ବସ୍ତ୍ର ଗୋସୁବର୍ଣ୍ଣ ଧାନ୍ୟ ଦାନ କରେ ।
ସେ ଦାତା ଜନ୍ମ ନ ହେବ ଇନ୍ଦ୍ରତ୍ୱ ଲଭିବ
ଅବା ନିରାମୟ ରାଜପଣ ସେ କରିବ ।
ଏ ଯୋଗ କାଳରେ ଏ ସକଳ ଦାନ ଭିନ୍ନ
ନାନାବିଧ ଦ୍ରବ୍ୟ ବିପ୍ରେ କରିବ ପ୍ରଦାନ ।
ଯେ ହେତୁ ଏ ଯୋଗେ ପିତୃଗଣ ଉଦ୍ଦେଶ୍ୟରେ
ଯାହା ଦେବ ତା ଅକ୍ଷୟ ଫଳ ଜାତ କରେ ।
ଏ ଯୋଗରେ ଯେ କୌଣସି ସ୍ଥାନରେ କରିବ
ସ୍ନାନ ତରପଣ ପିଣ୍ଡ ନାନାଦି ସରବ ।
ଯେହେତୁ ଗୟା କ୍ଷେତ୍ରରେ ପିଣ୍ଡ ଦାନ କଲେ
ଯେଉଁ ଫଳ ହୁଏ ଅର୍ଦ୍ଧୋଦୟ ତାହା ମିଳେ ।
ଏ ଯୋଗେ ପିତୃଙ୍କ ଉଦ୍ଦେଶ୍ୟରେ ଦାନ କଲେ
ପିତୃଗଣ ପ୍ରେତତ୍ୱରୁ ମୁକ୍ତି ସେହିକାଳେ ।
ନିଶ୍ଚୟ ସ୍ୱର୍ଗ ଭୁବନେ କରନ୍ତି ଗମନ
କର୍ମକ୍ଷୟ ହୋଇଥାଏ ସନ୍ଦେହ ନ ମଣ ।
ଗଙ୍ଗା ସାଗର ସଙ୍ଗମେ ପ୍ରୟାଗ ତୀର୍ଥରେ
ଦେବନଦୀ ଗଙ୍ଗା ଗର୍ଭେ ପ୍ରଭାସ ପୁଷ୍କରେ ।
ବାରାଣସୀ ଅନ୍ୟ ପୁଣ୍ୟ କ୍ଷେତ୍ର ମାନଙ୍କରେ
ଦାନ କରି ନର ଯେଉଁ ଫଳ ଲାଭ କରେ ।
ସେ ପୁଣ୍ୟ ଫଳକୁ ଲାଭ କରେ ସେହି ଜନ
ଏହି ଅର୍ଦ୍ଧୋଦୟ ଯୋଗେ ଯଦି କରେ ଦାନ ।
ଅର୍ଦ୍ଧୋଦୟ ଯୋଗକାଳେ ଯେକୌଣସି ସ୍ଥଳେ
ଜଳେ ସ୍ନାନ କଲେ ତୀର୍ଥ ସ୍ନାନ ଫଳ ମିଳେ ।
ପବିତ୍ର ପୁଣ୍ୟ ତୀର୍ଥର ଜଳେ କଲେ ସ୍ନାନ
ମୋକ୍ଷ ପଦବୀ ଲଭଇ ନିଶ୍ଚୟ ସେ ଜନ ।
ହେ ବତ୍ସ ଏ ଯୋଗ କଥା କରିଲ ଶ୍ରବଣ
ସକଳ ସ୍ଥାନେ ସମାନ ଫଳ କରେ ଦାନ ।
ତୁମ୍ଭେ ଯେଉଁ ବିଷୟରେ ଆମ୍ଭଙ୍କୁ ପୁଛିଲ
ଶୁଣ ସାବଧାନେ କହୁଅଛି ସେ ସକଳ ।
ପୂର୍ବେ ଏହି କଥା କାହାରିକୁ କହି ନାହିଁ
ବେଦରେ ଅତି ଗୋପନ ଭାବେ ଅଛି ରହି ।
ଧନୀ ବା ଦରିଦ୍ର ସଚ୍ଚରିତ୍ର ଯେ ମାନବ
ଅର୍ଦ୍ଧୋଦୟ ଯୋଗେ ବିତ୍ତ ଶାଠ୍ୟ ନ କରିବ ।
ଦୈନ୍ୟ କାର୍ପଣ୍ୟ ସ୍ୱଭାବ ତେଜି ଆନନ୍ଦରେ
ଭକ୍ତି ସହକାରେ ଭଗବାନଙ୍କୁ ସୁମରେ ।
ପୁରୁଷୋତ୍ତମ କ୍ଷେତ୍ରକୁ କରିବେ ଗମନ
କ୍ଷେତ୍ର ନାମ ଶୁଣି ପାପ ହୁଅଇ ଦହନ ।
ଅର୍ଦ୍ଧୋଦୟ ଯୋଗ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର
କପଟ ଦାରୁ ରୂପରେ ବିଜେ ଜଗନ୍ନାଥ ।

Digitized by srujanika@gmail.com

ଏ ତିନି ଏକତ୍ର ଯଦି ହୁଅନ୍ତି ମିଳିତ
ଏହାଠାରୁ ଶ୍ରେଷ୍ଠ ଯୋଗ ଆମ୍ଭେ ନ ଜାଣୁ ତ ।
ପୂର୍ବ କଳ୍ପେ କଳିଯୁଗ ହୋଇଥିବା ବେଳେ
ଏକ ଅର୍ଦ୍ଧୋଦୟ ଯୋଗ ସେତେବେଳେ ।
ସେ କାଳେ ସ୍ୱର୍ଗରୁ ଦେବଗଣ ଆସିଥିଲେ
ପାତାଳ ପୁରରୁ ନାଗଗଣ ସଙ୍ଗେ ଥିଲେ ।
ପୃଥିବୀ ମଣ୍ଡଳେ ସର୍ବେ ହୋଇ ଉପସ୍ଥିତ
ଏକତ୍ରେ ଚଳିଲେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ।
ସେ କ୍ଷେତ୍ରେ ଯାଇ ସାଗର ଜଳେ କଲେ ସ୍ନାନ
ଦାରୁବ୍ରହ୍ମ ଜଗନ୍ନାଥ କରିଲେ ଦର୍ଶନ ।
ନାନାବିଧ ଉପଚାରେ ଅର୍ଚ୍ଚନା କରିଲେ
ବ୍ରାହ୍ମଣମାନଙ୍କୁ ଯଥାଶକ୍ତି ଦାନ ଦେଲେ ।
ସେ କଳ୍ପର କଳିଯୁଗ ଲୋକେ ଧର୍ମେ ରତ
ଯେପରି କି ସତ୍ୟଯୁଗ ହେଲା ଉପସ୍ଥିତ ।
ତାହାପରେ ଆୟୁ ଶେଷ ହେଲା ଯେତେବେଳେ
ପରମ ନିର୍ବାଣ ଲାଭ କରିଲେ ସେ କାଳେ ।
ହେ ବତ୍ସ ଦେବତା ଅବା ମନୁଷ୍ୟ ବା କେହି
ମନକାମନା ଯାହା ସେ କ୍ଷେତ୍ରେ କରିଥାଇ ।
ସେ କାମନା ଫଳ ଯଦି ଅତ୍ୟନ୍ତ ଦୁର୍ଲ୍ଲଭ
ତଥାପି ସେ ଫଳ ଲାଭ ନିଶ୍ଚୟ ହୋଇବ ।
ବାସ୍ତବିକ ଭୂମଣ୍ଡଳେ ଏ ତିନି ମିଳନ
ପାପୀଜନଙ୍କ ପକ୍ଷରେ ଦୁର୍ଲ୍ଲଭ ଜାଣିମ ।
ଯେ ମାନବ ଆତ୍ମଜ୍ଞାନ ଶୂନ୍ୟ ମୂଢ଼ ହେବ
ଏ ତିନିଯୋଗ ପାଇଲେ ମୋକ୍ଷ ସେ ହୋଇବ ।
ହେ ପୁତ୍ର ତୁମ୍ଭଙ୍କୁ ଅତି ଗୋପନ ବିଷୟ
କହିଲୁ ନିଜ ମନରେ ରଖିବ ନିଶ୍ଚୟ ।
ଏ କ୍ଷେତ୍ର ଦଶବତାର ମହିମା ଅନେକ
ଅତି ଗୁପ୍ତ ରହିଅଛି ନ ଜାଣନ୍ତି ଲୋକ ।
ଶ୍ରୀ ସ୍କନ୍ଦ ପୁରାଣେ ଉକ୍ତ ଉତ୍କଳ ଖଣ୍ଡରେ
ଚାରି ପଞ୍ଚଧ୍ୟାୟ ଶେଷ ଉତ୍କଳ ଭାଷାରେ ।
ଜୟ ଜୟ ଜଗନ୍ନାଥ କମଳାର ବର
ଶ୍ରୀବତ୍ସ ଚିହ୍ନରେ ବକ୍ଷସ୍ଥଳ ମନୋହର ।
ନୀଳାଚଳେ ବସି ନିତ୍ୟ ଲୀଳା କରୁଅଛ
ପାପୀ ତପୀ ଜନଙ୍କୁ ସେ ମୁକ୍ତି ଦେଉଅଛ ।
ଭକ୍ତଜନଙ୍କୁ ଉଦ୍ଧାର କରିବା ଇଚ୍ଛାରେ
ଦାରୁରୂପ ଧରିଅଛ ଭକତ ଚିନ୍ତାରେ ।
ତୁମ୍ଭର ଯେ ଭକ୍ତ ହେବ ତାକୁ ଉଦ୍ଧାରିବ
ଏଥିରେ ବଡ଼ିମା ପଣ ପ୍ରକାଶ ନୋହିବ ।
ଅଭକ୍ତ ଜନଙ୍କୁ ଆଉ କିଏ ଉଦ୍ଧାରିବ
ଜଗନ୍ନାଥ ଏହି ନାମ କିମ୍ପାଇ ବହିବ ।
ମୋପରି ପାତକୀ ଯଦି ନ ହେବ ମୁକତ
କୃପାସିନ୍ଧୁ କୃପାବିନ୍ଦୁ ଶୁଷ୍କ ହୋଇବ ତ ।
ହେ ପ୍ରଭୁ ମୁକତି ଦାନ ଯଦି ନ କରିବ
ହରିହର କହେ ଆଉ କିଏ ସେ ଶୁଣିବ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ଅର୍ଦ୍ଧୋଦୟ ଯୋଗ ସ୍ନାନବିଧି ବର୍ଣ୍ଣନେ
ନାମ ଚତୁଃପଞ୍ଚାଶତୋଽଧ୍ୟାୟଃ ।



## ପଞ୍ଚପଞ୍ଚାଶତ ଅଧ୍ୟାୟ

ଷଣ୍ମୁଖ କହନ୍ତି ବାପା ଶୁଣ ମୋ ବଚନ
ପୂର୍ବେ କହିଥିଲେ ନାମ ଶ୍ରୀ ପୁରୁଷୋତ୍ତମ ।
ଏବେ କହୁଛ ତା ନାମ ଦଶ ଅବତାର
ଏ ନାମ କାହିଁକି ହେଲା କହନ୍ତୁ ସତ୍ୱର ।
ଏହା ଶୁଣି ସଦାଶିବ କହନ୍ତି ବଚନ
ହେ ବତ୍ସ ଅତ୍ୟକ୍ତ ରୂପୀ ପ୍ରଭୁ ଭଗବାନ ।
ସକଳ ନିୟନ୍ତା ଲୋକ ପାଳନ ନିମିତ୍ତ
ପ୍ରତି ଯୁଗେ ଅବତୀର୍ଣ୍ଣ ହୁଅନ୍ତି ଏ ସତ୍ୟ ।
ଧର୍ମରକ୍ଷା ଅର୍ଥେ ପୂର୍ବକାଳେ ନାରାୟଣ
ପ୍ରତିଜ୍ଞା କରିଅଛନ୍ତି କରିବେ ପାଳନ ।
ଏହି ହେତୁ ଧର୍ମ ବୃକ୍ଷ ସୁରକ୍ଷା ନିମିତ୍ତ
ନାନା ମୂର୍ତ୍ତି ଧରି ପ୍ରତିଯୁଗେ ଆବିର୍ଭୂତ ।
ଯାହାଠାରୁ ଏ ସଂସାର ଚକ୍ର ଘୁରୁଅଛି
ସେ ବିଷ୍ଣୁ ପରମ ପଦ କିଏ ବା ଜାଣିଛି ।
ପ୍ରକୃତି ପୁରୁଷାତୀତ ନିର୍ମଳ ନିର୍ଗୁଣ
ନିର୍ମଳ ବିଷ୍ଣୁ ସ୍ୱରୂପ ଜାଣିବ କେସନ ।
ଏବଂ ଭୂତ ବିଷ୍ଣୁଲୋକ ରକ୍ଷାର ନିମିତ୍ତ
ନିଜ ମାୟା ପ୍ରକୃତିକୁ ଆଶ୍ରୟ କରିତ ।
ଯୁଗେ ଯୁଗେ ଅବତୀର୍ଣ୍ଣ ସେହି ହୋଇଥାନ୍ତି
ଯେତେବେଳେ ଜଗତ୍ ସୃଷ୍ଟି କରିବା ଇଚ୍ଛନ୍ତି ।
ସେବେଳେ ସେ ପ୍ରଭୁ ଜଗତ୍ ସୃଷ୍ଟିର ନିମିତ୍ତ
ବ୍ରହ୍ମାଦି ରୂପରେ ଅବତୀର୍ଣ୍ଣ ହୁଅନ୍ତି ତ ।
ସୃଷ୍ଟି କରିବାକୁ ବ୍ରହ୍ମାରୂପେ ଅବତାର
ଦ୍ୱିତୀୟରେ ଆମ୍ଭେ ହେଲୁ ମୋ ନାମ ଶଙ୍କର ।
ସନକାଦି ମୁନି ତିନି ଗୌତମାଦି ଚାରି
ପଞ୍ଚମେ ତ୍ରିଂଶତ କୋଟି ଦେବ ରୂପ ଧରି ।
ଆଉ କି ଅଧିକ ବିଷ୍ଣୁ ବିବିଧ ରୂପରେ
ଚଣ୍ଡାଳ ପର୍ଯ୍ୟନ୍ତ ଜଗତ୍ ମଧ୍ୟରେ ବିହରେ ।
ଏହି ଚରାଚର ବିଶ୍ୱ ବିଷ୍ଣୁଙ୍କ ସ୍ୱରୂପ
ଏ ବିଷୟେ ମନମଧ୍ୟେ ନ କର ବିକଳ୍ପ ।

Digitized by srujanika@gmail.com

ପୂର୍ବକାଳେ ବିଷ୍ଣୁଲୋକ ରକ୍ଷାର ନିମିତ୍ତ
ମତ୍ସାଦି ଦଶାବତାରେ ହେଲେ ପ୍ରକାଶିତ ।
ସର୍ବୋତ୍ତମ ଶ୍ରୀପୁରୁଷୋତ୍ତମ ଏ କ୍ଷେତ୍ରରେ
ପ୍ରକାଶ ହୋଇଲେ ଦଶବିଧ ଅବତାରେ ।
ଏହି ହେତୁ ବୁଧଗଣ ଏହାକୁ କହନ୍ତି
ଦିବ୍ୟ ଭୌମ କ୍ଷେତ୍ର ବୋଲି ନାମ ଦେଇଛନ୍ତି ।
ସୃଷ୍ଟି ସ୍ଥିତି ପ୍ରଳୟର ଯେ ମୂଳ କାରଣ
ସେ ବିଷ୍ଣୁ ନାନା ମୂର୍ତ୍ତିରେ ହୋଇ ଅବତୀର୍ଣ୍ଣ ।
ଏ ସ୍ଥାନରୁ ଅନ୍ୟସ୍ଥାନେ କରନ୍ତି ଗମନ
କର୍ତ୍ତବ୍ୟକୁ ସାରି ଶେଷେ ଆସନ୍ତି ଏ ସ୍ଥାନ ।
ପ୍ରଭୁଙ୍କ ଦଶାବତାର ଦର୍ଶନ କରିଲେ
ଯେତେ ପୁଣ୍ୟଫଳ ଲାଭ ହୋଇଥାଏ ଭଲେ ।
ଏକା ପୁରୁଷୋତ୍ତମଙ୍କୁ ଦର୍ଶନ କରିଲେ
ଯେ କେହି ମାନବ ସେହି ଫଳ ଲାଭ କରେ ।
ହେ ପୁତ୍ର ଏ ହେତୁ ଶ୍ରୀପୁରୁଷୋତ୍ତମ କ୍ଷେତ୍ର
ନାମ ହୋଇଅଛି ଦଶଅବତାର କ୍ଷେତ୍ର ।
ଏକଥା ତୁମ୍ଭ ଆଗରେ କହିଲୁ ବୁଝାଇ
ଆଉ କହୁଅଛି ବାବା ଶୁଣ ମନଦେଇ ।
ଏ ବିଷୟ ଇତି ପୂର୍ବେ କେହି କହି ନାହିଁ
ଆଉ କେହି ମଧ୍ୟ ଏହା ଶୁଣିନାହିଁ କାହିଁ ।
ଏହି କ୍ଷେତ୍ରର ପରମ ଗୋପନୀୟ କଥା
ପାପୀମାନଙ୍କର ପାପ ନାଶଇ ସର୍ବଥା ।
ଅଳ୍ପାୟାସେ ପାପୀ ନର ହୁଅନ୍ତି ଉଦ୍ଧାର
ଅସୀମ ପାତକ ମର୍ତ୍ତ୍ୟବାସୀ ଜନଙ୍କର ।
କିନ୍ତୁ ଅଳ୍ପ ପୁଣ୍ୟ ସେହି ଅର୍ଜନ କରନ୍ତି
ବିଷୟ ଲାଭ ହୋଇବା ସର୍ବଦା ଇଚ୍ଛନ୍ତି ।
କାୟ ମନୋବାକ୍ୟେ ପାପ କରନ୍ତି ସଞ୍ଚୟ
ସ୍ତୁପାକାରେ ରହିଥାଏ ସେ ପାପ ନିଶ୍ଚୟ ।
ନରକ ଗମନଦ୍ୱାର ଉନ୍ମୁକ୍ତ ପାପରେ
ନର୍କେ ବାସ କରି ନୀଚଯୋନି ଲାଭ କରେ ।
ଯଦିଚ ମାନବ କୁଳେ ସେ ହୁଏ ଜନମ
ଦରିଦ୍ର କୃପଣ ରୋଗୀ ପାପକାର୍ଯ୍ୟେ ମନ ।
ପୁନରପି ଦୁଃଖ ଭୋଗ ପାପ ଯେଣୁ କରେ
ତାର ପାପ କାର୍ଯ୍ୟେ ଭୟ ନ ଥାଏ ମନରେ ।
ପୁଣ୍ୟାତ୍ମା ଜନ କରଇ ପୁଣ୍ୟ କାର୍ଯ୍ୟମାନ
ପାପାତ୍ମା ଜନ କରଇ ପାପ କାର୍ଯ୍ୟମାନ ।
ନାନା କାର୍ଯ୍ୟ ପ୍ରସଙ୍ଗରେ ପୁଣ୍ୟାତ୍ମା ଯେ ଜନ
ସେ ମଧ୍ୟ ସମୟେ କରେ ପାପ ଆଚରଣ ।
ସେ ଯେତେ ନିମେଷ ପାପ କାର୍ଯ୍ୟମାନ କରେ
ସେତିକି ସହସ୍ର ବର୍ଷ ପଡ଼େ ନରକରେ ।
ସର୍ବଦା ଦୁଃଖ ଭୋଗନ୍ତି ପାପକାରୀଗଣ
ଏ ରୂପେ ସଂସାର ଜାଲେ ହୁଅନ୍ତି ବନ୍ଧନ ।
ପ୍ରାୟଶ୍ଚିତ୍ତ ଦ୍ୱାରା ପାପ ନ ହୁଏ କ୍ଷାଳନ
ନିଶ୍ଚୟ ବିବିଧ ଦୁଃଖ ଭୋଗେ ପାପୀଜନ ।
ମହାପାତକର ଶୁଦ୍ଧ ଦେହତ୍ୟାଗ ଭିନ୍ନ
ଅନ୍ୟ ଉପାୟରେ ହୁଏ ନାହିଁ କଦାଚନ ।
ଏ ରୂପ ନୟନ ଦେଖି ପ୍ରଭୁ ଭଗବାନ
କୃପା କଲେ ପାପୀଜନେ ହେବେ ପରିତ୍ରାଣ ।
ନିଜର ଦେହ ସ୍ୱରୂପ ଶ୍ରୀପୁରୁଷୋତ୍ତମ
କ୍ଷେତ୍ର ପ୍ରଥମରେ ସୃଷ୍ଟି କଲେ ଭଗବାନ ।
ବିଷ୍ଣୁଙ୍କ ଦେହ ସ୍ୱରୂପ ଏ କ୍ଷେତ୍ର ମଧ୍ୟରେ
ପାପିଷ୍ଠଗଣ ସମ୍ରାଟ ଯଦି ବାସ କରେ ।
ଅପାତ୍ରୀ କରଣ ଆଦି ସର୍ବବିଧ ପାପ
ଶୁଦ୍ଧି ହୁଏ ଅନାୟାସେ ନ କରି ବିଳମ୍ବ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ପଞ୍ଚ ପଞ୍ଚାଧ୍ୟାୟ ଶେଷ ଉତ୍କଳ ଭାଷାରେ ।
ହେ ମଧୁକୈଟବ ନିସୂଦନ ଜନ୍ମ ମୋର
ସଫଳ କରନ୍ତୁ ମାଗୁଅଛି ଏହି ବର ।
ଆହେ ପ୍ରଭୁ ଅନୁଗ୍ରହ କରିବ ତୁରିତ
ତୁମ୍ଭର ଯେ ଭୃତ୍ୟ ପଣେ ଖଟେ ଅବିରତ ।
ସେ ଭୃତ୍ୟର ଭୃତ୍ୟ ଆଉ ତାହାଙ୍କର ଭୃତ୍ୟ
ତାହାର ଯେ ଭୃତ୍ୟପଣ କରେ ଅବିରତ ।
ତାହାର ଯେ ଭୃତ୍ୟପଣେ ସରିବ ମୋ ଦିନ
ଏହି ବର ମାଗୁଅଛି ହରିହର ଦୀନ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳଖଣ୍ଡେ
ଦଶାବତାର କ୍ଷେତ୍ର ମାହାତ୍ମ୍ୟ ବର୍ଣ୍ଣନେ
ନାମ ପଞ୍ଚପଞ୍ଚାଶତୋଽଧ୍ୟାୟଃ ।

□□

## ଷଟ୍‌ପଞ୍ଚାଶତ ଅଧ୍ୟାୟ

ମହାଦେବ କହୁଛନ୍ତି ବତ୍ସ ଏବେ ଶୁଣ
ଶାସ୍ତ୍ର ସିଦ୍ଧାନ୍ତ ବିଷୟ କରିଣ ଶ୍ରବଣ ।
ସଂକଳ୍ପ କରି କ୍ଷେତ୍ରକୁ କରିବ ଗମନ
ମନମଧ୍ୟେ ଚିନ୍ତାକରି ଶ୍ରୀପୁରୁଷୋତ୍ତମ ।
ସେ ସ୍ଥାନକୁ ଯାଇ ଜଗଦ୍‌ଗୁରୁଙ୍କୁ ଦର୍ଶନ
ଯଥାବିଧି ପୂଜାସାରି କରିବ ପ୍ରଣାମ ।
ପ୍ରାର୍ଥନା କରିବ ଦୁଇ କରଯୋଡ଼ି କରି
ହେ ନାଥ ସଂସାର ସମୁଦ୍ରରୁ କର ପାରି ।
ଯେତେଥର ଏ ସଂସାରେ ହେଲି ମୁଁ ଜନମ
ପ୍ରତି ଜନ୍ମେ କଲି ନାନାବିଧ କାର୍ଯ୍ୟମାନ ।

Digitized by srujanika@gmail.com

ସେ କାର୍ଯ୍ୟରେ ଅଗଣିତ ପାତକ ସଞ୍ଚିତ
କୃପା କଲେ ସେ ସକଳ ହେବ କ୍ଷୟପ୍ରାପ୍ତ ।
ଆପଣଙ୍କର ସନ୍ତୋଷ ଅର୍ଥେ କେତେଦିନ
କରିବି ଶକ୍ତିରେ ପୂଜା ବ୍ରତ ଅନୁଷ୍ଠାନ ।
ଏ ବିଷୟରେ କରନ୍ତୁ ଅନୁଜ୍ଞା ପ୍ରଦାନ
ହେ ପ୍ରଭୁ ଲୋକଙ୍କୁ କୃପା କରନ୍ତି ଆପଣ ।
ହେ ଦେବ ପାପ ସାଗରୁ ଯେ ରୂପେ ଉତ୍ତୀର୍ଣ୍ଣ
ସେ ରୂପ ଆପଣ ଆଜ୍ଞା କରନ୍ତୁ ପ୍ରଦାନ ।
ଜଗନ୍ନାଥଙ୍କୁ ଏ ରୂପେ ପ୍ରାର୍ଥନା କରିବ
କାର୍ତ୍ତିକ ମାସରେ ବ୍ରତ ସଂକଳ୍ପ କରିବ ।
ସେହି ଦିନଠାରୁ ଗବ୍ୟ ଦୁଗ୍ଧ ଶାଳି ଅନ୍ନ
ଶୁଚିହୋଇ ପ୍ରତିଦିନ କରିବ ଭୋଜନ ।
ପ୍ରତ୍ୟେହ ସ୍ନାନ ସାଗର ଜଳେ ତ୍ରିସନ୍ଧ୍ୟାରେ
ପୁରୁଷ ପ୍ରତିପାଦକ ମନ୍ତ୍ର ଯେ ବେଦରେ ।
ଚତୁର୍ବର୍ଗ ପୁରୁଷାର୍ଥ ଲାଭର କାରଣ
ବୈକୁଣ୍ଠ ଗମନ ପକ୍ଷେ ଅଟଇ କଲ୍ୟାଣ ।
ସର୍ବ କଲ୍ମଷ ନାଶନ ପୁରୁଷ ସୂକ୍ତିକୁ
ସମ୍ପୂର୍ଟେ ମନ୍ତ୍ର ଜପିବ ଅଷ୍ଟ ଅକ୍ଷରକୁ ।
ମୁକ୍ତିଲାଭ ଇଚ୍ଛାଥିଲେ ଯହିଁରେ ନିର୍ବାଣ
ସେ ଅଷ୍ଟାକ୍ଷର ମନ୍ତ୍ରକୁ ଜପି ପ୍ରତିଦିନ ।
ଅଷ୍ଟାକ୍ଷର ମୁଖ ବର୍ଣ୍ଣ ରୂପେ ଭଗବାନ
ମାନବର ମୁଖ ମଧ୍ୟେ ବିଜୟ ତକ୍ଷଣ ।
ଶ୍ରୁତି ସ୍ମୃତି ପୁରାଣେ ପ୍ରସିଦ୍ଧ ଏମନ୍ତ
ପୂଟିତ କରି ପୁରୁଷ ସୂକ୍ତ ପ୍ରତିମନ୍ତ୍ର ।
ଜପ କରିବା କର୍ତ୍ତବ୍ୟ ଅଷ୍ଟୋତ୍ତର ଶତ
ପୁରୁଷ ସୂକ୍ତ ମନ୍ତ୍ରକୁ ଜପିବ ନିୟତ ।
ଏହାପରେ ଷୋଳ ଉପଚାର କରି ଦାନ
ଜଗନ୍ନାଥଙ୍କୁ ବିଧିରେ କରିବ ଅର୍ଚ୍ଚନ ।
ଅର୍ଚ୍ଚନା ବିଷୟେ ବିତ୍ତ ଶାଠ୍ୟ ନ କରିବ
ପ୍ରାଣପଣ ପାପକ୍ଷୟ ଅର୍ଥରେ ପୂଜିବ ।
ସେହି ଲୋକକର୍ତ୍ତା ହରି ଭିନ୍ନ ଆଉ କିଏ
ପାପକ୍ଷୟ କରିବାକୁ ସମରଥ ନୁହେଁ ।
ସେହି ପ୍ରଭୁ ଦୟାମୟ ସକଳ ଜନର
ସୁହୃଦ ବାନ୍ଧବ ବୋଲି ମନରେ ବିଚାର ।
ସେ ପ୍ରଭୁ ପ୍ରାଣୀମାନଙ୍କୁ ଅର୍ଚ୍ଚନା କରନ୍ତି
ପାଳନ କରିଣ ଶେଷକାଳେ ସଂହାରନ୍ତି ।
ଏଣୁ ଭାବ ଶୁଦ୍ଧି ସହିତରେ ଯେଉଁ ଜନ
ଜଗନ୍ନାଥଙ୍କୁ ଶ୍ରଦ୍ଧାରେ କରିବ ଅର୍ଚ୍ଚନ ।
ଆଉ ଅନ୍ୟ କର୍ମରେ ବା କେଉଁ ପ୍ରୟୋଜନ
ମୁକ୍ତି କରତଳଗତ ବୋଲିଣ ଜାଣିବ ।

ପାର୍ଥିବ ଭୋଗ ବା ସ୍ୱର୍ଗଲାଭ ତା ପକ୍ଷରେ
ଯତ୍‌କିଞ୍ଚିତ ଫଳ ବୋଲି ବିଚାର ମନରେ ।
ଅନନ୍ତର ଜଗନ୍ନାଥଙ୍କର ସମ୍ମୁଖରେ
ବୈଷ୍ଣବାଗ୍ନି ସଂସାର ଯେ କରିବ ବିଧିରେ ।
ଅଷ୍ଟାକ୍ଷର ମନ୍ତ୍ରେ ଅଷ୍ଟୋତ୍ତର ସସ୍ରାହୁତି
ପାୟସେ କରିବ ନିଜ ମନେ ବହି ପ୍ରୀତି ।
ଏହାପରେ ଦିନ ଶେଷ ସାରି ନିତ୍ୟକର୍ମ
ପୁରୁଷ ସୂକ୍ତ ମନ୍ତ୍ରରେ କରିବ ପୂଜନ ।
ପାୟସ ନୈବେଦ୍ୟ ସହ ନାନା ଉପଚାରେ
ହରିଙ୍କି ପୂଜା କରିବ ଭକତି ମନରେ ।
ତୁଳସୀ ସହ ପାୟସ ପ୍ରସାଦ ଭୋଜନ
ଅବଶ୍ୟ କରିବେ ବ୍ରତକାଳେ ବ୍ରତୀଜନ ।
ଏହାପରେ ଜଗନ୍ନାଥ ଦେବଙ୍କୁ ମନରେ
ଚିନ୍ତାକରି ମୌନଭାବେ ସ୍ଥଣ୍ଡିଳ ଉପରେ ।
ଶୟନ କରି ରଜନୀ ଯାପନ କରିବ
ବ୍ରାହ୍ମଣ ବୈଷ୍ଣବେ ଭକ୍ତି ପରାୟଣ ହେବ ।
ବ୍ରାହ୍ମଣ ବୈଷ୍ଣବ ଗଣ ଜଗନ୍ନାଥଙ୍କର
ଚଳନ୍ତି ଦେବ ବୋଲିଣ ମନରେ ବିଚାର ।
କଦାପି ମିଥ୍ୟା ବଚନ ମୁଖେ ନ କହିବ
ପର ଅନିଷ୍ଟକୁ କେବେ ଚିନ୍ତା ନ କରିବ ।
ବଳ ସୁଭଦ୍ରା ସହିତ ଶ୍ରୀ ଜଗନ୍ନାଥଙ୍କୁ
ଯଥାଶକ୍ତି ଭକ୍ତିଭରେ ପୂଜିବ ତାହାଙ୍କୁ ।
ସେହି ଭକତ ବତ୍ସଳ ପ୍ରଭୁ ଭଗବାନ
କେବଳ ଭକ୍ତିରେ ସଦା ଦିଅନ୍ତି ଦର୍ଶନ ।
ଏହି ହେତୁ ସେ ପ୍ରଭୁଙ୍କୁ ସର୍ବଦା ଭକ୍ତରେ
ଆରାଧନା କରିବ ଯେ ଶ୍ରଦ୍ଧା ସହିତରେ ।
ହେ ବତ୍ସ ସେ ପ୍ରଭୁ ଆମ୍ଭର ଯେ ଉତ୍ପାଦକ
ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ଅଟନ୍ତି ଜନକ ।
ତାଙ୍କଠାରୁ ଶ୍ରେଷ୍ଠ କିଛି ନାହିଁ ଜଗତରେ
ସେହି ଏକା ବିଦ୍ୟମାନ ବିବିଧ ରୂପରେ ।
ହେ ବତ୍ସ ସେ ପ୍ରଭୁ ପ୍ରକୃତରେ ତ ନିର୍ଗୁଣ
ନିଜର ଇଚ୍ଛା ଶକ୍ତିରେ ହୋଇଲେ ସଗୁଣ ।
ତାଙ୍କଠାରୁ ଚତୁର୍ମୁଖ ଜନମ ହୋଇଲେ
କାହାପାଇଁ ଜନ୍ମ ହେଲି ମନେ ଚିନ୍ତାକଲେ ।
ବୁଦ୍ଧି ନ ଦିଶିଲା ତପସ୍ୟାରେ ହେଲେ ମଗ୍ନ
ଶରଣ ଯାଇ ତାହାଙ୍କୁ ମନେ କଲେ ଧ୍ୟାନ ।
ତପସ୍ୟା ଶେଷରେ ବ୍ରହ୍ମରୂପୀ ଜଗନ୍ନାଥ
ବ୍ରହ୍ମାଙ୍କୁ ଦର୍ଶନ ଦେଇ କହିନ୍ତି ଏମନ୍ତ ।
ହେ ବ୍ରହ୍ମନ୍ ଆମ୍ଭଠାରୁ ହୋଇଛ ଜନମ
କେଉଁ ହେତୁ ତୁମ୍ଭେ ହୋଇଅଛ ବୁଦ୍ଧି ହୀନ ।

Digitized by srujanika@gmail.com

ଏହାଶୁଣି ଚତୁର୍ମୁଖ ପ୍ରଣାମ କରିଲେ
ଶ୍ରୀ ଜଗନ୍ନାଥଙ୍କୁ ଏହି ରୂପରେ କହିଲେ ।
ଯେଉଁଠାରୁ ଜାତ ହେଲି କି କରିବି ବୋଲି
ମନ ସନ୍ଦେହରେ ସ୍ଥିର କରି ନ ପାରିଲି ।
ଏ ବିଷୟେ ଆଜ୍ଞା ଦିଅ ଆହେ ଭଗବାନ
ତହିଁ ହରି ନିଃଶ୍ୱାସରୁ ବେଦ କଲେ ଜନ୍ମ ।
ସେ ବେଦ ବ୍ରହ୍ମାଙ୍କୁ ଉପଦେଶ ଶୀଘ୍ର ଦେଲେ
ଦେଖୁଁ ଦେଖୁଁ ବ୍ରହ୍ମା ହରି ଅନ୍ତର୍ଦ୍ଧାନ ହେଲେ ।
ତତ୍ପରେ ଚତୁରାନନ ସୃଷ୍ଟି ଭିଆଇଲେ
ନିଜ ମନରୁ ଯେ ନିଜମତ ଅନୁସାରେ ।
ଚତୁର୍ବିଧ ଭୂତ ଗ୍ରାମ ସର୍ଜ୍ଜନ କରିଲେ
ଭଗବାନଙ୍କର ଆଜ୍ଞା ଯେଉଁ ଅନୁସାରେ ।
ଆମ୍ଭେ ଆଉ ପିତାମହ କେହି ତ ନଜାଣୁ
ଆଦି ମଧ୍ୟ ଅନ୍ତ ସେହି ପ୍ରଭୁଙ୍କର ତେଣୁ ।
ସେହି ପ୍ରଭୁ ଆମ୍ଭମାନଙ୍କର ଯେ ରକ୍ଷକ
ଆଉ ସେ ଆମ୍ଭମାନଙ୍କ ଐଶ୍ୱର୍ଯ୍ୟ ଦାୟକ ।
ତାହାଙ୍କ ଆଜ୍ଞାରେ ଆଉ ତାଙ୍କରି ଭୟରେ
ଚରାଚର ଜଗତ୍‌ତଳେ ବିଧି ନିୟମରେ
ଧର୍ମ ମୂଳରେ ଜଗତ ହୁଏ ପ୍ରତିଷ୍ଠିତ
ସେହି ପ୍ରଭୁ ପ୍ରଜାପତି ରୂପେ ଆବିର୍ଭୂତ ।
ଜଗତକୁ କର୍ମ ମାର୍ଗେ ସେହି ପ୍ରବର୍ତ୍ତାନ୍ତି
ଫଳ ଦାତା ଫଳ ଭୋକ୍ତା ରୂପେ ସେ ହୁଅନ୍ତି ।
ସେ ପ୍ରସନ୍ନ ହେଲେ ସୁଖ ସକଳେ ଭୁଞ୍ଜନ୍ତି
ତାଙ୍କ ଆଦେଶକୁ ଦେବଗଣ ମାନିଥାନ୍ତି ।
ସେ ଅନ୍ତର୍ଯ୍ୟାମୀ ପ୍ରଭୁଙ୍କ ଆଦେଶାନୁସାରେ
ଆମ୍ଭେ କର୍ମ ଫଳ ଦାନ କରୁଁ ଜଗତରେ ।
ଏ ବିଷୟରେ ସନ୍ଦେହ କିଛି ମାତ୍ର ନାହିଁ
ଅଧିକା କହିବା ଆଉ ପ୍ରୟୋଜନ ନାହିଁ ।
ତାଙ୍କରି ଆଜ୍ଞାରେ କୃମୀ ବିଷ୍ଠାମଧ୍ୟେ ରହେ
ତାଙ୍କ କୃପା ହେଲେ କୃମୀ ମୁକ୍ତି ପାଇଥାଏ ।
ବ୍ୟକ୍ତାବ୍ୟକ୍ତ ରୂପ ଦୀନ ଅନୁଗ୍ରହକାରୀ
ପୁରୁଷୋତ୍ତମ କ୍ଷେତ୍ରରେ ସେହି ବିଜେ କରି ।
ଏ କ୍ଷେତ୍ର ଶ୍ରେଷ୍ଠତା ମୁକ୍ତି ତୀର୍ଥମାନଙ୍କରେ
ଗୁପ୍ତଅଛି ସନ୍ଦେହ ଯେ ନ କର ମନରେ ।
ପୂର୍ବକାଳେ ଆମ୍ଭେ ତାଙ୍କ ଆଦେଶାନୁସାରେ
ପ୍ରବର୍ତ୍ତିଲୁ ତାଙ୍କୁ ଆରାଧନା କରିବାରେ ।
ତେଣୁ ପାପ ମହାରଣ୍ୟେ ସଂସାର ମଧ୍ୟରେ
ଏହି ବ୍ରତ ଅନୁଷ୍ଠାନ କରିଲୁ ବିଧିରେ ।
ସ୍ୱାୟମ୍ଭୁବ ମନୁ ଆମ୍ଭଠାରୁ ଶିକ୍ଷା କଲେ
ତତ୍ପରେ ଅଗସ୍ତିମୁନି ଏହି ବ୍ରତ କଲେ ।
ହେ ବତ୍ସ ଚତୁର୍ଥ ବ୍ୟକ୍ତି ଆଉ କେହି ନାହିଁ
ଅଦ୍ୟାପି ଏ ବ୍ରତ ଅନୁଷ୍ଠାନ କରି ନାହିଁ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ଷଟପଞ୍ଚାଧ୍ୟାୟ ଶେଷ ଉତ୍କଳ ଭାଷାରେ ।
ଶ୍ରୀକୃଷ୍ଣ କମଳାନାଭ କମଳା ରମଣ
କଂସକେଶୀ ନିସୂଦନ କାଳୀୟ ଦଳନ ।
ଏ ଭବସାଗରୁ ନାଥ କର ପରିତ୍ରାଣ
ହରିହର ଶ୍ରୀପଦରେ ପଶୁଛି ଶରଣ ।

ଇତି ଶ୍ରୀ ସ୍କନ୍ଦପୁରାଣେ ଉତ୍କଳ ଖଣ୍ଡେ
କାର୍ତ୍ତିକ ବ୍ରତ କଥନେ ନାମ
ଷଟ୍‌ପଞ୍ଚାଶତ ଅଧ୍ୟାୟଃ ।

□□

## ସପ୍ତପଞ୍ଚାଶତ ଅଧ୍ୟାୟ

ମହାଦେବ କହୁଛନ୍ତି କାର୍ତ୍ତିକେୟ ଶୁଣ
ତୁମ୍ଭ ପ୍ରତି ଅନୁଗ୍ରହ କଲୁ ଏହିକ୍ଷଣ ।
ଗୁପ୍ତତମ ଶ୍ରେଷ୍ଠ ବ୍ରତ କହିଲୁ ବୁଝାଇ
ସେ ବ୍ରତ ପ୍ରତିଷ୍ଠା ବିଧି ଶୁଣ ମନ ଦେଇ ।
ବ୍ରତୀ ବ୍ୟକ୍ତି ଏକମାସ କାଳ ନିୟମରେ
ଏ ବ୍ରତକୁ ଆଚରଣ କରିବ ବିଧିରେ ।
କାର୍ତ୍ତିକ ପୂର୍ଣ୍ଣିମା ଦିନ ନିତ୍ୟକର୍ମ ସାରି
ଜଗଦ୍‌ଗୁରୁ ଜଗନ୍ନାଥଙ୍କୁ ଯେ ପୂଜା କରି ।
ବୈଷ୍ଣବ ଶାସ୍ତ୍ରରେ ଜ୍ଞାନ ସମ୍ପନ୍ନ ବ୍ରାହ୍ମଣ
ଆଚାର୍ଯ୍ୟ ପଦରେ ଆଣି କରିବ ବରଣ ।
କୁଣ୍ଡଳ ମୁଦିକା ବସ୍ତ୍ର ଯୁଗଳ ଚନ୍ଦନ
ସୁଗନ୍ଧ ପୁଷ୍ପ ମାଲ୍ୟରେ କରିବ ଅର୍ଚ୍ଚନ ।
ସେ ବିପ୍ରଙ୍କୁ ଜଗନ୍ନାଥ ଦେବ ମନେ କରି
ପ୍ରାର୍ଥନା କରିବ ଦୁଇ କରଯୋଡ଼ି କରି ।
ହେ ମହାମତି ଭୂଦେବ ଆପଣ ତ ନିଜେ
ବିଷ୍ଣୁଙ୍କ ଚଳନ୍ତି ମୂର୍ତ୍ତିରୂପେ କର ବିଜେ ।
ହେ ପଣ୍ଡିତବର ସର୍ବ ପାପହାରୀ ହରି
କୃପା କରିଣ ପ୍ରସନ୍ନ ହୋଇବେ ଯେପରି ।
ସେ ରୂପରେ ପୂଜା କରି ଉପହାର ଦେଇ
ଶଙ୍ଖ ଚକ୍ର ଗଦାଧର ଜ୍ୟୋତିର୍ମୟ ସ୍ୱାମୀ ।
ଦେବାଧିପତି ପ୍ରଭୁଙ୍କୁ କରାନ୍ତି ପ୍ରସନ୍ନ
ମୋ ବ୍ରତ ପ୍ରତିଷ୍ଠା ବିଧି କରନ୍ତୁ ସମ୍ପନ୍ନ ।
ପାପାର୍ଣ୍ଣବେ ବୁଡ଼ି ନାନା ଦୁଃଖ ସହୁଅଛି
ନିରାଶ୍ରୟେ ଅଚେତନ ପ୍ରାୟ ପଡ଼ିଅଛି ।
ଶରଣ ଯାଉଛି ମୋତେ କର ପରିତ୍ରାଣ
ବ୍ରତ ପ୍ରତିଷ୍ଠା ନିମିତ୍ତ ଆଚାର୍ଯ୍ୟ ବ୍ରାହ୍ମଣ ।

Digitized by srujanika@gmail.com

ହସ୍ତ ପ୍ରମାଣରେ କୁଣ୍ଡ କରିବେ ଖନନ
ଶ୍ରୀ ଭଗବାନଙ୍କୁ ମନେ କରିଣ ସ୍ମରଣ ।
ତହିଁ ସଂସ୍କାର କରିଣ ବୈଷ୍ଣବ ଅଗ୍ନିକୁ
ଷୋଡ଼ଶୋପଚାରେ ପୂଜା କରିବେ ବହ୍ନିକୁ ।
ନାରାୟଣ ସ୍ୱରୂପରେ ଅଗ୍ନି ଦେବଙ୍କର
ପୂଜା କରିବେ ପୁରୁଷ ସୂକ୍ତରେ ସତ୍ୱର ।
ଆଦ୍ୟନ୍ତେ ପ୍ରଣବ ଶେଷେ ସ୍ୱାହା ଏ ମନ୍ତ୍ରରେ
ଅଷ୍ଟାକ୍ଷର ରୂପେ ନାରାୟଣ ସାକ୍ଷାତରେ ।
ଅଗ୍ନିରେ ଆହୁତି ପଞ୍ଚ ସହସ୍ର ସଂଖ୍ୟାରେ
ଆଚାର୍ଯ୍ୟ କରିବେ ହୋମ ପ୍ରତ୍ୟେକ ଦ୍ରବ୍ୟରେ ।
ଘୃତ ମଧୁଯୁକ୍ତ ପାୟାସାନ୍ନ କୃଷ୍ଣତିଳ
ପଲାଶ ସମିଧ ଗବ୍ୟଘୃତ ଏ ସକଳ ।
ଅନନ୍ତର ବ୍ରତୀ ବ୍ରହ୍ମା ଋତ୍ୱିକ ବ୍ରାହ୍ମଣ
ସ୍ପଷ୍ଟାକ୍ଷରେ ସୁମଧୁର ସ୍ୱରରେ ଗାୟନ ।
ପୌରୁଷ ଆଗ୍ନେୟ ବିଷ୍ଣୁ ସୂକ୍ତାଦି ପଢ଼ିବେ
ବସୁଧରା ପକାଇଣ ପ୍ରାର୍ଥନା କରିବେ ।
ପରମ ପୁରୁଷ ରୂପୀ ଅଗ୍ନି ଦେବଙ୍କର
ପୁରୁଷ ସୂକ୍ତରେ ସ୍ତୁତି କରି ଯୋଡ଼ିକର ।
ହେ ଦେବ ଜଗତନାଥ ସଂସାର ତାରଣ
ଦୁସ୍ତର ପାପ ସାଗରେ ହୁଏ ଭାସମାନ ।
ହେ ଦୀନତାରକ ମୋତେ ପରିତ୍ରାଣ କର
ଆପଣଙ୍କ ବିନା କିଏ କରିବ ଉଦ୍ଧାର ।
ହେ ଅପ୍ରମେୟ କରୁଣା ସିନ୍ଧୁ କୃପାକର
ମାଦୃଶଜନ ହୋଇବ ପୁଣ୍ୟାତ୍ମା ପ୍ରବର ।
ଏ ରୂପ ପ୍ରାର୍ଥନା କରି ଦେବ ନାରାୟଣ
ରୂପରେ ବହ୍ନିକୁ ଚିନ୍ତା କରିବ ତକ୍ଷଣ ।
ସପ୍ତବାର ପ୍ରଦକ୍ଷିଣ ବେଗେ କରିସାରି
ଦଣ୍ଡବତ ପ୍ରଣାମ ଯେ କ୍ଷିତିତଳେ କରି ।
ତତ୍ପରେ ଷୋଡ଼ଶାକ୍ଷର ମନ୍ତ୍ର ଉଚ୍ଚାରିଣ
ଷୋଳଥର ପୁଷ୍ପାଞ୍ଜଳି କରିବ ପ୍ରଦାନ ।
ନିଜକୁ ଯେ ପାପମୁକ୍ତ ମନରେ ଚିନ୍ତିବ
ପୂର୍ଣ୍ଣାହୁତି ଦେଇ କର୍ମ ସମାପ୍ତ କରିବ ।
ଏହାପରେ ପ୍ରଭୁଙ୍କର ସମ୍ମୁଖେ ବସିବ
ବିଷ୍ଣୁଙ୍କ ମହିମା ପୂର୍ଣ୍ଣ ପୁରାଣ ପଢ଼ିବ ।
ବୃହତ୍ ସାମ ବାମଦେବ୍ୟ ସାମ ଗାଥାମାନ
ସୁମଧୁରେ ଉଦ୍ଦାତ୍ତାଦି ସ୍ୱରେ କରି ଗାନ ।
ମୃଣାଚିକେତ ଯେ ସାମ ଉଦାତ୍ତ ସ୍ୱରରେ
ଗାନ କରିବା କର୍ତ୍ତବ୍ୟ ଅଟେ ସେ କାଳରେ ।
ଏହି ରୂପରେ ଅନ୍ୟାନ୍ୟ ସ୍ତୁତି ଗୀତମାନ
ଶ୍ରୁତି ଉପନିଷଦାଦି କରିବ ପଠନ ।

ଅଖିଳ ଜଗତନାଥ ଶ୍ରୀ ଭଗବାନଙ୍କୁ
ପ୍ରସନ୍ନ କରାଇ ବିତାଇବ ରଜନୀକୁ ।
ପ୍ରଭାତ କାଳ ହୁଅନ୍ତେ ସେହି ଯଜମାନ
ଅନ୍ୟ ବ୍ରତୀଗଣ ସହ କରିବ ଗମନ ।
ତୀର୍ଥରାଜ ସମୁଦ୍ରର ଜଳେ କରି ସ୍ନାନ
ବଟମୂଳେ ଉପସ୍ଥିତ ହେବ ଯଜମାନ ।
ଭଗବାନଙ୍କ ରୂପରେ ସେ କଳ୍ପପଟକୁ
ବିଧିରେ ପୂଜା କରିବ ଆଉ ଗରୁଡ଼ଙ୍କୁ ।
ଅନନ୍ତର ଦାରୁବ୍ରହ୍ମ ରୂପୀ ଭଗବାନ
ପାପାନ୍ଧକାରେ ନାଶନେ ଭାସ୍କର ସମାନ ।
ପୁରୁଷ ସୂକ୍ତରେ ଯଥାବିଧି ପୂଜା ସାରି
ପ୍ରାର୍ଥନା କରିବ ଦୁଇକର ଯୋଡ଼ିକରି ।
ହେ ଦେବ ! ପାଦ ପଦ୍ମରେ କରୁଛି ପ୍ରଣାମ
କୃପାକରି ମୋତେ କର ବେଗେ ପରିତ୍ରାଣ ।
ତ୍ରିତାପ ଜଳଧି ଜଳେ ହୋଇଛି ନିମଗ୍ନ
ଚେତନା ଶୂନ୍ୟ ହୋଇଛି କର ପରିତ୍ରାଣ ।
ହେ ଦୀନଜନ ଉଦ୍ଧାର କରଣେ ତତ୍ପର
ଜଗନ୍ନାଥ ଏହି ଦୁଃଖ ସାଗରୁ ଉଦ୍ଧାର ।
ହେ ନାଥ ! ଆପଣ ମୋତେ କଲେ ଅନୁଗ୍ରହ
ମୋ ବ୍ରତ ସଫଳ ହେବ ନାହିଁତ ସନ୍ଦେହ ।
ହେ ଦେବ ! ଜଗତ ପ୍ରଭୁ ଯେପରି ମୋହର
ଆତ୍ମା ପ୍ରସନ୍ନ ହୋଇବ ନିର୍ମଳ ଶରୀର ।
ଆପଣଙ୍କ ଚରଣାରବିନ୍ଦ ସନ୍ନିଧିରେ
ବାସ କରିଣ ରହିବି ମୁଁ ଯେଉଁ ପ୍ରକାରେ ।
ପୁରୁଷ ସୂକ୍ତ ସହସ୍ର ନାମ ବିଷ୍ଣୁଙ୍କର
ପାଠ କରି ପ୍ରଦକ୍ଷିଣ କରିବ ସତ୍ୱର ।
ହିରଣ୍ୟ ଗର୍ଭ ନାମକୁ ଦ୍ୱାଦଶ ଅକ୍ଷରେ
ସମ୍ପୁଟ କରି ପ୍ରଣାମ କରିବ ବିଧିରେ ।
ତତ୍ପରେ ଗୃହକୁ ଆସି ଅଗ୍ନି ସମୀପରେ
ଉପବିଷ୍ଟ ହୋଇ ପୂଜା କରିବ ବିଧିରେ ।
ପ୍ରଜ୍ୱଳିତ ଅଗ୍ନି ମଧ୍ୟେ ଦେବ ଦେବଙ୍କର
ଭକ୍ତିଭରେ ପୂର୍ବପରି ଦେଇ ଉପଚାର ।
ପ୍ରଣାମ କରି ତାପରେ ଅଗ୍ନି ବିସର୍ଜନ
ଦକ୍ଷିଣା ଦେଇ ତୋଷିବ ଆଚାର୍ଯ୍ୟଙ୍କ ମନ ।
ସୁଲକ୍ଷଣା ଦେହଶୋଭା ସ୍ୱର୍ଣ୍ଣ ଭୂଷଣରେ
ଦୁଗ୍ଧବତୀ ଧେନୁ ଦେବ ବତ୍ସା ସହିତରେ ।
ମହାମୂଲ୍ୟ ବସ୍ତ୍ର ଯୁଗ ଧାନ୍ୟ ଯେ ସୁବର୍ଣ୍ଣ
ତାମ୍ରପାତ୍ରେ ଘୃତ କାଂସ୍ୟପାତ୍ରେ ପରିପୂର୍ଣ୍ଣ ।
କାଂସ୍ୟରେ ନିର୍ମିତ ତୈଳପାତ୍ର ପୟଃପାତ୍ର
ଦଧିପାତ୍ର ଆଦି ସବୁ ଦକ୍ଷିଣା ସହିତ ।

Digitized by srujanika@gmail.com

ଅନ୍ୟ ବ୍ରତୀଗଣ ନିଜ ଶକ୍ତି ଅନୁସାରେ
ବ୍ରାହ୍ମଣ ଦକ୍ଷିଣା ଯେ ଦେବେ ସେ ସ୍ଥାନରେ ।
ମଧୁପାତ୍ର ଆଦି ଷୋଳହସ୍ତ ପରିମିତ
ବସ୍ତ୍ର ଯୁଗ୍ମ ଆନନ୍ଦରେ ଦକ୍ଷିଣା ଦେବତ ।
ଏ ଦିନ ବହୁ ବିପ୍ରଙ୍କୁ ଗନ୍ଧମାଲ୍ୟ ଦେଇ
ଭୋଜନ ଯେ କରାଇବେ ଦକ୍ଷିଣାକୁ ଥୋଇ ।
ଇଷ୍ଟଦେବ ଦେବୀଙ୍କୁ ଯେ କରିବ ଅର୍ଚ୍ଚନା
ଭଗବାନ ସ୍ୱରୂପରେ କରିବ ବନ୍ଦନା ।
ଦୀନ ଅନାଥ ବିପନ୍ନ ଜନ ଥିବେ ଯେତେ
ସେମାନଙ୍କୁ ଅନ୍ନ ଦାନ ଦେବ ଶ୍ରଦ୍ଧା ଚିତ୍ତେ ।
ଏହାପରେ ଦିନ ଶେଷେ ଇଷ୍ଟ ବନ୍ଧୁଗଣ
ସହିତରେ ଆନନ୍ଦରେ କରିବ ଭୋଜନ ।
ହେ ପୁତ୍ର ଏ ବ୍ରତ କରେ ମଙ୍ଗଳ ପ୍ରଦାନ
ଏହାଠାରୁ ଅତ୍ୟୁତ୍ତମ ବ୍ରତ ନାହିଁ ଅନ୍ୟ ।
ଏ ବ୍ରତ ସମାନ ନାହିଁ ଆଉ ଅନ୍ୟ ବ୍ରତ
ଥିଲେ କୁହା ଯାଇଥାନ୍ତା ଅନ୍ୟ ଶାସ୍ତ୍ରରେ ତ ।
ଏ ବ୍ରତ କରିଲେ ପାପ ହୁଅଇ ବିଲୀନ
ଏ ସ୍ଥାନରେ ତୁମ୍ଭଆଗେ କରିଲୁ ବର୍ଣ୍ଣନ ।
ହେ ଷଡ଼ ଆନନ ଆମ୍ଭେ ଜାଣୁ ଯେତେ ବ୍ରତ
ତା ମଧ୍ୟରେ ଶ୍ରେଷ୍ଠତମ ଏ କାର୍ତ୍ତିକ ବ୍ରତ ।
ଯେ ବ୍ରତେ ଅନାଦି ଜନ୍ମ କଳ୍ମଷ ନିଶ୍ଚୟ
ଦୁଃଖ ଦାନ କରେ ଯାହା ତା ହୁଏ ବିଲୟ ।
ଏ ବିଧିରେ ଏହିବ୍ରତ କଲେ ଅନୁଷ୍ଠାନ
ଭକ୍ତି ଅନୁସାରେ ସିଦ୍ଧି ହୁଏ ସର୍ବକାମ ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ସପ୍ତପଞ୍ଚାଧ୍ୟାୟ ଶେଷ ଉତ୍କଳ ଭାଷାରେ ।
ବୃନ୍ଦାବନଚନ୍ଦ୍ରଜୟ ଗୋକୁଳ ବିହାରୀ
ଲୀଳାଚ୍ଛଳେ ଗୋପପୁର ଅନିଷ୍ଟ ନିବାରି ।
ପାପୀମାନଙ୍କର ପାପ କରୁଛ ଦହନ
ସେ ଅଭୟ ପଦ ହରିହରର ଶରଣ ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
କାର୍ତ୍ତିକ ବ୍ରତ ପ୍ରତିଷ୍ଠା ବର୍ଣ୍ଣନେ
ନାମ ସପ୍ତପଞ୍ଚାଶତ ଅଧ୍ୟାୟଃ ।



# ପରିଶିଷ୍ଟ ଅଧ୍ୟାୟ

ବେଦ ବେଦାନ୍ତାଦି ଶାସ୍ତ୍ରଜ୍ଞାନରେ ନିପୁଣ
ଜୈମିନି ମୁନିଙ୍କୁ ପଚାରନ୍ତି ମୁନିଗଣ ।
ହେ ମୁନି କହିଲ ଜଗନ୍ନାଥଙ୍କ ଚରିତ
ପୁରୁଷୋତ୍ତମ କ୍ଷେତ୍ରର ସକଳ ବୃତ୍ତାନ୍ତ ।
ଦ୍ୱାଦଶ ଯାତ୍ରା ବିଧାନ କରିଲ ବର୍ଣ୍ଣନ
ଅନ୍ନ ପ୍ରସାଦ ଭକ୍ଷଣ କଲେ ଯେତେ ପୁଣ୍ୟ ।
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ଦୁର୍ଲ୍ଲଭ କୀରତି
ଯେ ରୂପେ ନୀଳମାଧବ ହେଲେ ଦାରୁମୂର୍ତ୍ତି ।
ଏ ସକଳ ବୃତ୍ତାନ୍ତ ଯେ କରିଲୁ ଶ୍ରବଣ
ପୁରାଣ ଶ୍ରବଣ ବିଧି କହନ୍ତୁ ଏକ୍ଷଣ ।
ଆପଣଙ୍କ ଶ୍ରୀମୁଖରୁ କରିବୁ ଶ୍ରବଣ
ବିସ୍ତାରି କହ କି ରୂପେ ଶ୍ରବଣ ବିଧାନ ।
ଆପଣଙ୍କର କରୁଣା ଯଦି ଆମ୍ଭ ପ୍ରତି
ଯଥାବିଧିରେ ବର୍ଣ୍ଣନା କରନ୍ତୁ ସମ୍ପ୍ରତି ।
ଏହା ଶୁଣି ଜଇମିନି କହନ୍ତି ବଚନ
ଉତ୍ତମ କଥା ପୁଚ୍ଛିଲ ଆହେ ମୁନିଗଣ ।
ଯେଉଁ ପ୍ରଶ୍ନ କରିଅଛ ମନ ଆନନ୍ଦରେ
ତାହା କହିବାକୁ ଶ୍ରଦ୍ଧା ହେଉଛି ମନରେ ।
ରୋମ ଟାଙ୍କୁରି ଉଠୁଛି ଶରୀର ଆମ୍ଭର
ମୁନିବରଗଣ ଶୁଣ ମନ କରି ସ୍ଥିର ।
ପୁରାଣ ଶ୍ରବଣ ଇଚ୍ଛା ଯାହାର ହୋଇବ
ପ୍ରଥମରେ ଯଥାବିଧି ସଂକଳ୍ପ କରିବ ।
ଯେ ବ୍ରାହ୍ମଣ ଶୁଦ୍ଧବଂଶେ ହୋଇଥିବେ ଜାତ
ତାର କେଉଁ ଅଙ୍ଗ ହୋଇ ନ ଥିବ ବିକୃତ ।
ଶାନ୍ତ ସ୍ୱଭାବ ଶାସ୍ତ୍ରାର୍ଥ ଜ୍ଞାନରେ ନିପୁଣ
ନିଜର ବେଦ ଶାଖାରେ ଅତୀବ ପ୍ରବୀଣ ।
ନିଜକୁଳ ପୁରୋଧାଙ୍କୁ କରିବ ବରଣ
ବିଭବାନୁସାରେ ଦେଇ ବସନ ଭୂଷଣ ।
ପ୍ରାର୍ଥନା କରିବ ତାଙ୍କୁ ଅତି ବିନୟରେ
ଦୁଇକର ଯୋଡ଼ିକରି ପ୍ରଣମି ପଦରେ ।
ହେ ବ୍ରାହ୍ମଣ ଆପଣ ଯେ ବିଷ୍ଣୁଙ୍କ ସ୍ୱରୂପ
ଭଗବାନ ଧରିଥାନ୍ତି ବ୍ରାହ୍ମଣ ସ୍ୱରୂପ ।
ବିଷ୍ଣୁ ଆବର ବ୍ରାହ୍ମଣ ଏ ଦୁଇ ମଧ୍ୟରେ
କିଛି ତ ପ୍ରଭେଦ ନାହିଁ କୌଣସି କାଳରେ ।
ହେ ବ୍ରାହ୍ମଣ ଆମ୍ଭଙ୍କୁ ଯେ ହୁଅ ସୁପ୍ରସନ୍ନ
ପୁରାଣ ପଠନ କଲେ କରିବୁ ଶ୍ରବଣ ।
ଏ ବିଧିରେ ବ୍ରାହ୍ମଣଙ୍କୁ ବରଣ କରିବ
ବହୁମୂଲ୍ୟ ଆସନରେ ନେଇ ବସାଇବ ।

Digitized by srujanika@gmail.com

ମସ୍ତକରେ ପୁଷ୍ପଗ୍ରନ୍ଥି ଗଳେ ମାଳା ଦେବ
ସୁଗନ୍ଧ ଚନ୍ଦନ ସର୍ବ ଅଙ୍ଗରେ ଲେପିବ ।
ଯେ ହେତୁ ପୁରାଣ ପାଠ କାଳରେ ବ୍ରାହ୍ମଣ
ବ୍ୟାସ ଦେବଙ୍କର ସଙ୍ଗେ ହୁଅନ୍ତି ସମାନ ।
ବିଷ୍ଣୁସମ ସେ ବ୍ରାହ୍ମଣ ପୁସ୍ତକ ଥୋଇଣ
ଭକ୍ତିରେ ବ୍ୟାସ ଦେବଙ୍କୁ କରିବେ ଅର୍ଚ୍ଚନ ।
ଅଗୁରୁ ଚନ୍ଦନ ପୁଷ୍ପ ଧୂପ ଦୀପାଦିରେ
ଭକ୍ଷ୍ୟ ଭୋଜ୍ୟ ଆଦି ନାନାବିଧ ଉପଚାରେ ।
ଏହିପରି ପ୍ରତିଦିନ ଭକ୍ତି ସହକାରେ
ଆସନାଦି ବ୍ରାହ୍ମଣଙ୍କୁ ଦେବ ଯେ ଶ୍ରଦ୍ଧାରେ ।
ବର୍ତ୍ତମାନ କହୁଅଛୁ ଶ୍ରୋତାର ଲକ୍ଷଣ
ପରମ୍ପରା ବିଧି ରକ୍ଷାଅର୍ଥେ ଯାର ମନ ।
ପୁରାଣ ପଠନ କାଳେ ଆସିବେ ଯେ ମନ
ସେମାନଙ୍କ ଅର୍ଥେ ଦେବ ଉତ୍ତମ ଆସନ ।
ପୁରାଣ ଶ୍ରବଣେ ନିଜେ ଆଗ୍ରହୀ ହୋଇବ
ଉତ୍ତମ ଯୋଗ୍ୟ ଆସନ ବିଛାଇ ବସିବ ।
ଅଥବା ନିର୍ମଳ ସ୍ଥାନ ଯେବେ ହୋଇଥିବ
ସମସ୍ତଙ୍କ ସଙ୍ଗେ ଭୂମି ଉପରେ ବସିବ ।
ବ୍ୟାସାମାନ ସମ୍ମୁଖରେ ଉପବିଷ୍ଟ ହେବ
ଉଚ୍ଚ ଆସନକୁ ତହିଁ ବର୍ଜନ କରିବ ।
ସ୍ନାନ ଆଚମନ କରି ଆନନ୍ଦ ମନରେ
ପିନ୍ଧିବ ଶୁକ୍ଳବସନ ଦ୍ୱୟ ସେ କାଳରେ ।
ପୁରାଣ ବ୍ରାହ୍ମଣ ମନ୍ତ୍ର ଦେବତା ତୀର୍ଥରେ
ବୃଦ୍ଧର ବାକ୍ୟେ ବିଶ୍ୱାସ କଲେ ଫଳ ମିଳେ ।
ମନରେ ପ୍ରଥମେ କରି ବିଶ୍ୱାସ ସ୍ଥାପନ
ପୁରାଣ ଶ୍ରବଣ କଲେ ଲାଭ ହୁଏ ପୁଣ୍ୟ ।
ପୁରାଣ ଶ୍ରବଣ କାଳେ ବିଷୟର ଚିନ୍ତା
ବୃଥାଳାପ ବର୍ଜନ ଯେ କରିବ ସର୍ବଥା ।
ବେଦ ଆଦି ଶାସ୍ତ୍ରେ ଯାର ବିଶ୍ୱାସ ନ ଥିବ
ସେ ପାଷାଣ୍ଡ ସଙ୍ଗେ ସମ୍ଭାଷଣ ନ କରିବ ।
ମୁନିଗଣ ଶୁଣ ଏହି ବିଧି ଅନୁସାରେ
ଶୁଣିଣ ପୁରାଣ ପ୍ରତିଦିନ ଆନନ୍ଦରେ ।
ପୁରାଣ ପଠନ ଶେଷ ଯେତେବେଳେ ହେବ
ହସ୍ତେ କରତାଳି ଧରି କୀର୍ତ୍ତନ କରିବ ।
ଜୟକୃଷ୍ଣ ଜୟ ଜଗନ୍ନାଥ ଦେବହରି
ଇତ୍ୟାଦି ନାମକୁ ଅତି ଉଚ୍ଚେ ଗାନ କରି ।
ଯେପରି ଆକାଶ ମାର୍ଗ କୀର୍ତ୍ତନ ଧ୍ୱନିରେ
ପୂର୍ଣ୍ଣ ହେବ ସେହିପରି ଗାଇବ ଉଚ୍ଚରେ ।
ଏହିପରି ପ୍ରତିଦିନ ଶୁଣିଲେ ପୁରାଣ
ସନ୍ତୋଷେ ହୁଅନ୍ତି ତାହାପ୍ରତି ଭଗବାନ ।

ଯେତେବେଳେ ଗ୍ରନ୍ଥପାଠ ସମାପ୍ତ ହୋଇବ
ବିଷ୍ଣୁଙ୍କ ସନ୍ତୋଷ ପାଇ ତତ୍ପର ହୋଇବ ।
ବ୍ୟାସସମ ସେ ଦ୍ୱିଜଙ୍କୁ ଭକତି କରିବ
ବସ୍ତ୍ର ମାଲ୍ୟାଦି ଚନ୍ଦନ ଅଳଙ୍କାର ଦେବ ।
ନିଜଶକ୍ତି ଅନୁସାରେ ଦକ୍ଷିଣା ଯେ ଦେବ
ଦକ୍ଷିଣା ବିଷୟେ ବିତ୍ତଶାଠ୍ୟ ନ କରିବ ।
ଯେଉଁମାନେ ଯେଉଁବସ୍ତୁ କରିବ ପ୍ରଦାନ
ତାହା କହୁଅଛି ଏବେ ସାବଧାନେ ଶୁଣ ।
ରାଜା ଦେବ ଅଳଙ୍କାର ସଙ୍ଗେ ଶ୍ରେଷ୍ଠହସ୍ତୀ
ଅନ୍ୟ କ୍ଷତ୍ରୀୟ ତା ଦେବେ ଦୟାର୍ଦ୍ଧ ବୋଲାନ୍ତି ।
ବ୍ରାହ୍ମଣମାନେ ଯେ ଦେବେ ଉତ୍ତମ ପୁସ୍ତକ
ଦେବପୂଜା ଉପଯୋଗୀ ପାତ୍ର ଯେ ଅନେକ ।
କନକ ରଜତ ଧାନ୍ୟ ବସ୍ତ୍ର ଭକତିରେ
ବୈଶ୍ୟ ଜାତିଙ୍କ ବ୍ୟବସ୍ଥା ଶୁଣନ୍ତି ଶ୍ରଦ୍ଧାରେ ।
ଶ୍ରେଷ୍ଠ ଅଶ୍ୱ ରତ୍ନାଦିରେ କରିଣ ଭୂଷଣ
ଦୁଗ୍ଧବତୀ ବସାସହ ଧେନୁ ଦେବ ଦାନ ।
ସୁବର୍ଣ୍ଣ ଧାନ୍ୟ ଶସ୍ୟାଦି ପାତ୍ର କରି ପୂର୍ଣ୍ଣ
ଏବେ କହୁଅଛି ଶୁଣ ଶୂଦ୍ରଙ୍କ ବିଧାନ ।
ଶୂଦ୍ରମାନେ ଆନନ୍ଦରେ ପରମ ଭକ୍ତିରେ
କୃପଣ ନ ହୋଇ ବିଷ୍ଣୁ ଚିନ୍ତିଣ ମନରେ ।
ବସନ ସୁବର୍ଣ୍ଣ ଧାନ୍ୟ ରତ୍ନ ଆଦି ଦ୍ରବ୍ୟ
ଅଳଙ୍କାର ସଙ୍ଗେ ଦୁଗ୍ଧବତୀ ଧେନୁ ଦେବ ।
ଅଥବା ଗର୍ଭିଣୀ ଧେନୁ ଦକ୍ଷିଣା ରୂପରେ
ସନ୍ତୁଷ୍ଟ ହୋଇବେ ଗୁରୁ ଯେବଣ ଦ୍ରବ୍ୟରେ ।
ମୁନିଗଣ ଶୁଣ ଦେବଶକ୍ତି ଅନୁସାରେ
ବିତ୍ତଶାଠ୍ୟ ନ କରିବ କୌଣସି କାଳରେ ।
ଶାନ୍ତିକ ପୌଷ୍ଟିକ ବ୍ରତ ବିବାହାଦି କର୍ମ
ପୁରାଣ ଶ୍ରବଣ ମୋକ୍ଷ ସାଧକ କରମ ।
ପଞ୍ଚଯଜ୍ଞ ଦାନ ନାନାବିଧ ବ୍ରତମାନ
ନିଷ୍ଫଳ ହୁଏ ଯଦ୍ୟପି ଦକ୍ଷିଣା ବିହୀନ ।
ଅସୁରମାନେ ସେ ସ୍ଥାନେ ହୋଇ ଉପସ୍ଥିତି
କର୍ମର ପ୍ରକୃତ ଫଳ ହରଣ କରନ୍ତି ।
ଯେଉଁପରି ନାରୀମାନେ ହୋଇ ରୂପବତୀ
ଯଦିଚ ସ୍ୱାମୀ ସ୍ନେହରୁ ବଞ୍ଚିତ ହୁଅନ୍ତି ।
ଯୁଦ୍ଧ କ୍ଷେତ୍ରେ ଯୋଦ୍ଧା ଯଦି ପୃଷ୍ଠଭଙ୍ଗ କରି
ପଳାଇଯାଏ ସେପରି ଶତ୍ରୁ ପକ୍ଷେ ଡରି ।
ଧାଇଁ ନ ପାରିବା ଅଶ୍ୱ ଯେପରି ଦୂଷିତ
ଅଷ୍ଟାଦଶ ବିଦ୍ୟାରେ ବା ହୋଇଲେ ପଣ୍ଡିତ ।
ସଭାରେ ସେ ଜନ ଯଦି ମୂକ ହୋଇ ରହେ
ଲୋକ ସମାଜରେ ଯେଉଁପରି ନିନ୍ଦା ପାଏ ।

Digitized by srujanika@gmail.com

ସେପରି ଯେତେକ କର୍ମ ଦକ୍ଷିଣା ବିହୀନ
ନିଷ୍ଫଳ ହୁଅଇ ଏହା ଶାସ୍ତ୍ରର ବଚନ ।
ଯେପରି ପାପ ସମୂହ ଦାନେ ହୁଏ କ୍ଷୟ
ସେହିପରି ଦକ୍ଷିଣାରେ ପାପ ହୁଏ ଲୟ ।
ସେପରି ଯେତେକ କର୍ମ ଦକ୍ଷିଣା ବିହୀନ
ନିଷ୍ଫଳ ହୁଅଇ ଏହା ଶାସ୍ତ୍ରର ବଚନ ।
ବିପ୍ରମାନଙ୍କୁ ଆନନ୍ଦ ମନେ ଭୁଞ୍ଜାଇବ
ନିଜ ଶକ୍ତି ଅନୁସାରେ ଯାହା ଭିଆଇବ ।
କର୍ପୂର ଖଣ୍ଡ ପାୟସ ଘୃତ କରି ଯୁକ୍ତ
ସୁସ୍ୱାଦୁ ଅମୃତୋପମ ଅନ୍ନେ କରି ତୃପ୍ତ ।
ସେମାନଙ୍କୁ ଯଥାଶକ୍ତି ଦକ୍ଷିଣା ଯେ ଦେବ
ସ୍ୱର୍ଣ୍ଣ ବସନ ଇତ୍ୟାଦି ଭାଗ୍ୟେ ଯା ମିଳିବ ।
ପୁରାଣ ଶ୍ରବଣ ବିଧି କହିଲୁ ସକଳ
ଯେ ବିଧିରେ କଲେ କର୍ମ ହୁଅଇ ସଫଳ ।
ମୁନିଗଣ ଶୁଣିଲ ତ କହିଲୁ ବୁଝାଇ
ଆଉ କି ଶୁଣିବ ତାହା କହନ୍ତୁ ଫିଟାଇ ।
ମୁନିଗଣ କହୁଛନ୍ତି ଆମ୍ଭମାନଙ୍କର
ଭାଗ୍ୟୋଦୟ ଦେଲା ଯେଣୁ ପାପ ନାଶ କର ।
ପୁରାଣ ଶ୍ରବଣ ବିଧି ଶ୍ରୋତାମାନଙ୍କର
ଆପଣଙ୍କ ଶ୍ରୀମୁଖରୁ ହୋଇଲା ବାହାର ।
ତାହା ଶୁଣି ଧନ୍ୟ ହେଲୁ ଜୀବ ହେଲା ମୁକ୍ତ
ଆମ୍ଭେମାନେ ସର୍ବେ ପୁଣ୍ୟଫଳ ହେଲୁ ପ୍ରାପ୍ତ ।
ହେ ମୁନି ଦକ୍ଷିଣା ନିଅ ଅତି ଆନନ୍ଦରେ
ଗ୍ରହଣ କର ଦେଉଛି ଶକ୍ତି ଅନୁସାରେ ।
ତୁମ୍ଭେ ପ୍ରସନ୍ନ ହୋଇଲେ ଫଳ ହେବ ପ୍ରାପ୍ତ
ଅକିଞ୍ଚନେ ମୁନିଗଣ କହିଲେ ଏମନ୍ତ ।
ପୁରୁଷୋତ୍ତମ କ୍ଷେତ୍ରକୁ ବେଗେ ଚଳିଗଲେ
ଅତି ଆନନ୍ଦରେ ମୁଖେ ନାମ ଗାନ କଲେ ।
ହେ ପ୍ରଭୁ ଜଗତନାଥ କରୁଣା ସାଗର
ଦରଦ୍ର ସଙ୍ଗାଳି ଦୁଃଖୀଜନର ସୋଦର ।
ଆପଣଙ୍କ କୃପା ହେଲା ଏ ଅଧମ ପ୍ରତି
କ୍ଷେତ୍ରମାହାତ୍ମ୍ୟ ପଠନେ ବଳିଲା ମୋ ମତି ।
ସ୍କନ୍ଦ ପୁରାଣେ ଉକତ ଉତ୍କଳ ଖଣ୍ଡରେ
ବ୍ୟାସଦେବ ଲେଖିଛନ୍ତି ସଂସ୍କୃତ ଭାଷାରେ ।
ତାର ଅର୍ଥ ସାଧାରଣ ବୁଝି ନ ପାରନ୍ତି
ଉତ୍କଳ ଭାଷାରେ ଲେଖିବାକୁ ମନେ ପ୍ରୀତି ।
ଛନ୍ଦୋବନ୍ଧ ବୃତ୍ତି ବିଷୟରେ ନାହିଁ ଜ୍ଞାନ
ଚଉଦ ଅକ୍ଷରେ ପଦ କରିଲି ରଚନ ।
ସୁଧୀଗଣ ନିଜଗୁଣେ ଦୋଷ କ୍ଷମାକର
କରଯୋଡ଼ି ଜଣାଉଛି ଦୀନ ହରିହର ।
ପୁରୁଷୋତ୍ତମ ମଣ୍ଡଳ ଗୋପ ଅଞ୍ଚଳରେ
କୌଶଗୋତ୍ରେ ଜନ୍ମ ଗ୍ରାମ ଗଣେଶ୍ୱରପୁରେ ।
ଅସାଧୁ ଜନ ସଂସର୍ଗେ ମଳିନ ମୋ ମତି
ବୁଦ୍ଧିରେ ଉନ୍ନତ ଚିନ୍ତା ନ ହୁଏ ଉତ୍ପତ୍ତି ।
ଖଳଜନେ କରି କୂଟ କପଟ ଆଚାର
ଅନିଷ୍ଟ ସାଧନେ ହେଉଛନ୍ତି ତତପର ।
ଏ ବିପଦୁଁ ରକ୍ଷାକର ବେଗେ ଚକ୍ରଧର
ଶ୍ରୀପଦରେ ଜଣାଉଛି ମିଶ୍ର ହରିହର ।

ଇତି ଶ୍ରୀ ସ୍କନ୍ଦ ପୁରାଣେ ଉତ୍କଳ ଖଣ୍ଡେ
ପୁରୁଷୋତ୍ତମ କ୍ଷେତ୍ର ପ୍ରଶଂସା ବର୍ଣ୍ଣନ ପ୍ରସଙ୍ଗେ
ପୁରାଣ ଶ୍ରବଣ ବିଧି କଥନେ ନାମ ଅଷ୍ଟପଞ୍ଚାଶତ ଅଧ୍ୟାୟଃ ।

## ସ୍କନ୍ଦ ପୁରାଣ ସମାପ୍ତଃ



ମୁଦ୍ରଣ : ବିଶ୍ୱବିଦ୍ୟା ପ୍ରେସ୍

Digitized by srujanika@gmail.com

**ବିଜ୍ଞାପନ**

ଆମ୍ଭର ପୁସ୍ତକ ସବୁ ସରସ କାଗଜରେ ସୁନ୍ଦର ଛାପା ହୋଇ ବିକ୍ରୟ ନିମିତ୍ତ ଗଚ୍ଛିତ ଅଛି । କ୍ରୟ କରିବା ପାଇଁ ଆପଣଙ୍କ ନିକଟସ୍ଥ ପୁସ୍ତକ ବ୍ୟବସାୟୀଙ୍କ ସହିତ ଯୋଗାଯୋଗ କରନ୍ତୁ ।

# ଅଷ୍ଟାଦଶ ପୁରାଣ

୧. ବ୍ରହ୍ମ ପୁରାଣ ସେଟ୍
୨. ପଦ୍ମ ପୁରାଣ ସେଟ୍
୩. ମହାବିଷ୍ଣୁ ପୁରାଣ
୪. ଶିବ ପୁରାଣ ସେଟ୍(୫ଖଣ୍ଡ)
୫. ନାରଦ ପୁରାଣ
୬. ମାର୍କଣ୍ଡେୟ ପୁରାଣ
୭. ଅଗ୍ନି ପୁରାଣ
୮. ଭବିଷ୍ୟ ପୁରାଣ
୯. ବ୍ରହ୍ମବୈବର୍ତ୍ତ ପୁରାଣ
୧୦. ଲିଙ୍ଗ ପୁରାଣ
୧୧. ବରାହ ପୁରାଣ
୧୨. ସ୍କନ୍ଦ ପୁରାଣ (ଉତ୍କଳଖଣ୍ଡ)
୧୩. ବାମନ ପୁରାଣ
୧୪. କୂର୍ମ ପୁରାଣ
୧୫. ମତ୍ସ୍ୟ ପୁରାଣ
୧୬. ଗରୁଡ଼ ପୁରାଣ
୧୭. ବ୍ରହ୍ମାଣ୍ଡ ପୁରାଣ
୧୮. ଭାଗବତ ସେଟ୍




ଧର୍ମଗ୍ରନ୍ଥ ଷ୍ଟୋର ®

ଅଲିଶାବଜାର, କଟକ- ୨ ଫୋନ୍ ନଂ- ୨୫୦୮୨୯୬

website : www.dharmagranthastore.com

Digitized by srujanika@gmail.com